# ଉତ୍କଳ ପ୍ରସଙ୍ଗ

**The Utkal Prasanga**

**June-July- 2018**

୭୪ ଭାଗ ୧୧-୧୨ଶ ସଂଖ୍ୟା ଜ୍ୟେଷ୍ଠ - ଶ୍ରାବଣ ଜୁନ୍ - ଜୁଲାଇ - ୨୦୧୮



---



ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର-୭୫୧୦୦୧

ଇ-ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.odisha.gov.in
ଫୋନ୍ : ୦୬୭୪-୨୫୩୦୨୧୧

**ପ୍ରତିଖଣ୍ଡ : ଟ. ୫.୦୦**




**ରଥଯାତ୍ରା ବିଶେଷାଙ୍କ**
**ଜୁନ୍‌-ଜୁଲାଇ- ୨୦୧୮**



ପ୍ରାଚୀନ କାଳର ସ୍କନ୍ଦ ପୁରାଣ, ବାମଦେବ ସଂହିତା ଓ ସୁତ ପୁରାଣରେ ବର୍ଣ୍ଣିତ ପୁରୁଷୋତ୍ତମ କ୍ଷେତ୍ର ପୁରୀକୁ ଶଙ୍ଖକ୍ଷେତ୍ର ଭାବରେ ବର୍ଣ୍ଣନା କରାଯାଇଛି ।

## ପୁରାଣ ବର୍ଣ୍ଣନା ଅନୁସାରେ ଶଙ୍ଖକ୍ଷେତ୍ରରେ ଅବସ୍ଥିତ ପ୍ରସିଦ୍ଧ ସ୍ଥାନମାନଙ୍କର ନାମ

୧. ବଳଭଦ୍ର, ଜଗନ୍ନାଥ, ସୁଭଦ୍ରା ଓ ସୁଦର୍ଶନ
୨. ଶ୍ରୀକ୍ଷେତ୍ରେଶ୍ୱରୀ ବିମଳା
୩. ଶ୍ରୀମହାଲକ୍ଷ୍ମୀ
୪. ଉତ୍ତର ଦୁର୍ଗା
୫. ବାଟମଙ୍ଗଳା
୬. ଗରୁଡ଼ସ୍ତମ୍ଭ
୭. ଭୋଗମଣ୍ଡପ
୮. କଳ୍ପବୃକ୍ଷ
୯. ରୋହିଣୀକୁଣ୍ଡ
୧୦. ବାଟଗଣେଶ
୧୧. ଉଷ୍ଣ ଗଣପତି
୧୨. ଶ୍ରୀସରସ୍ୱତୀ ଦେବୀ
୧୩. ନବଗ୍ରହ
୧୪. କୋଣାର୍କ ସୂର୍ଯ୍ୟଦେବ
୧୫. ପାଦପଦ୍ମ
୧୬. ଯଜ୍ଞବଟ
୧୭. ଅଗ୍ନେଶ୍ୱର
୧୮. ଇନ୍ଦ୍ରାଣିଦେବୀ
୧୯. କ୍ଷେତ୍ରପାଳ
୨୦. ସ୍ନାନ ଭୈରବୀ
୨୧. ମୁକ୍ତେଶ୍ୱରୀ
୨୨. ଛତ୍ରକାଳୀ
୨୩. ବାଟ ମାର୍କେଣ୍ଡେୟ
୨୪. କାତ୍ୟାୟନୀ
୨୫. ଗୋପେଶ୍ୱର
୨୬. ବେଦ କାଳୀ
୨୭. ପାତାଳେଶ୍ୱର
୨୮. ଭୁବନେଶ୍ୱରୀ
୨୯. ବୈକୁଣ୍ଠେଶ୍ୱର
୩୦. ଯାଜ୍ଞ୍ୟେଶ୍ୱରୀ
୩୧. ଈଶାନେଶ୍ୱର
୩୨. ଶୀତଳା ଦେବୀ
୩୩. ପାକଶାଳା
୩୪. ଦକ୍ଷିଣେଶ୍ୱର
୩୫. କୁଣ୍ଡଳେଶ୍ୱର
୩୬. ରାମ ଚୈତନ୍ୟ ମନ୍ଦିର
୩୭. ବରଡ଼ି ହନୁମାନ
୩୮. ନିର୍ମାଲ୍ୟ ହନୁମାନ
୩୯. ଅଳକା ବାଟିକା
୪୦. ଚକ୍ର ନାରାୟଣ
୪୧. ରାମେଶ୍ୱର
୪୨. ଚତୁର୍ଧାମ
୪୩. କାନପଟା ହନୁମାନ
୪୪. ନିଳାଦ୍ରୀ ବିହାରୀ
୪୫. ବଟେଶ୍ୱର
୪୬. ଶିଆଳି ଲଟା
୪୭. କୋଇଲି ବୈକୁଣ୍ଠ
୪୮. ତପସ୍ୱୀ ହନୁମାନ
୪୯. ସୁବର୍ଣ୍ଣ କୂପ
୫୦. ଆନନ୍ଦ ବଜାର
୫୧. ଦେବସ୍ନାନ ମଣ୍ଡପ
୫୨. ମେଘନାଦ ପାଚେରୀ
୫୩. ସିଂହଦ୍ୱାର (ପୂର୍ବଦ୍ୱାର)
୫୪. ଅରୁଣ ସ୍ତମ୍ଭ
୫୫. ବଡ଼ଛାଟ ମଠ
୫୬. ଛାଉଣି ମଠ
୫୭. ପଜନତା
୫୮. ପ୍ରହରୀ ହନୁମାନ
୫୯. ଦକ୍ଷିଣ ଦ୍ୱାର
୬୦. ଦୁର୍ଗାମାଧବ
୬୧. ମଙ୍ଗଳେଶ୍ୱରୀ
୬୨. ପଶ୍ଚିମ ଦ୍ୱାର
୬୩. ଉତ୍ତର ଦ୍ୱାର
୬୪. ଶ୍ରୀଲୋକନାଥ
୬୫. ରାମେଶ୍ୱର
୬୬. କାନ୍ଦୁ ନୃସିଂହ
୬୭. କାନ୍ଦୁ ଆଶ୍ରମ
୬୮. ନିକୁମ୍ଭିଲାବଟ
୬୯. ହରଚଣ୍ଡୀ
୭୦. ଚାମୁଣ୍ଡେଶ୍ୱରୀ
୭୧. ବନଦୁର୍ଗା
୭୨. ବାସେଳୀ
୭୩. କପାଳମୋଚନ
୭୪. ମଣିକର୍ଣ୍ଣିକା ତୀର୍ଥ
୭୫. ଘାଟମଙ୍ଗଳା
୭୬. ଭଗବତୀ
୭୭. ମାର୍କେଣ୍ଡେଶ୍ୱର
୭୮. ମାର୍କେଣ୍ଡେୟ ତୀର୍ଥ
୭୯. ସପ୍ତମାତୃକା
୮୦. ଅଳମ୍ବା ଦେବୀ
୮୧. ଅଠରନାଥ
୮୨. ମକରଧ୍ୱଜ ହନୁମାନ
୮୩. ଭାର୍ଗବୀ ନଦୀ
୮୪. ମୁକ୍ତାଶ୍ୱର
୮୫. ବାଟମଙ୍ଗଳା
୮୬. କପାଟେଶ୍ୱର
୮୭. ଭିଲ୍ଲେଶ୍ୱର
୮୮. ସିଦ୍ଧ ହନୁମାନ
୮୯. ଇନ୍ଦ୍ରଦ୍ୟୁମ୍ନ ତୀର୍ଥ
୯୦. ନୀଳକଣ୍ଠେଶ୍ୱର
୯୧. ଆଦି ନୃସିଂହ
୯୨. ଗୁଣ୍ଡିଚା ମଣ୍ଡପ
୯୩. ଅର୍ଦ୍ଧ ସୁଶାନି (ମାଉସୀମା)
୯୪. ମାର୍ଚ୍ଚିକା ଦେବୀ
୯୫. ଚର୍ଚ୍ଚିକା ଦେବୀ
୯୬. ଷୋଡ଼ଶ ପୁତ୍ରୀ
୯୭. ନାରାୟଣୀ
୯୮. ଅଙ୍ଗିରାଶ୍ରମ
୯୯. ଅଙ୍ଗିରାବଟ
୧୦୦. ଦକ୍ଷିଣକାଳୀ
୧୦୧. ଉଗ୍ରେଶ ଆଶ୍ରମ
୧୦୨. ଶ୍ୱେତଗଙ୍ଗା
୧୦୩. ମୁକ୍ତିଶୀଳା
୧୦୪. ଆଦିଶଙ୍କର ପୀଠ
୧୦୫. ସ୍ୱର୍ଗଦ୍ୱାର
୧୦୬. ବରାହୀ ଦେବୀ
୧୦୭. ଶ୍ୟାମାକାଳୀ
୧୦୮. ବଟ ହନୁମାନ
୧୦୯. ଚକ୍ରତୀର୍ଥ
୧୧୦. ଚକ୍ର ନାରାୟଣୀ
୧୧୧. ମହୋଦଧୀ ତୀର୍ଥ
୧୧୨. ଜଗନ୍ନାଥ ବଲ୍ଲଭ
୧୧୩. କାଶୀ ବିଶ୍ୱନାଥ
୧୧୪. ବିଶ୍ୱେଶ୍ୱରୀ
୧୧୫. ନରେନ୍ଦ୍ର ସରୋବର





ଶ୍ରୀଜୀଉଙ୍କ ରଥ ନିର୍ମାଣ





ଶ୍ରୀଜୀଉଙ୍କ ଚନ୍ଦନ ଯାତ୍ରା





ସ୍ନାନମଣ୍ଡପରେ ଚତୁର୍ଦ୍ଧାମୂର୍ତ୍ତି

# ଶ୍ରୀଜଗନ୍ନାଥାଷ୍ଟକ



ଗୋପଅଙ୍ଗନା-ବଦନ-　　କମଳୁଁ ଯେ ମଧୁପାନ
କଲେକ ଆବର ଯା'ଙ୍କ ମୁରଲୀ-ନାଦ,
କାଳିନ୍ଦୀ-ତଟ-ବିପିନ　　କଲାକ ମୋଦେ ମଗନ
ରମା ଶମ୍ଭୁ ଆଦିରେ ଯେ ପୂଜିତ-ପଦ,
ପଥୁକି ମୋ' ନୟନ ପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୧)

ବାମକରେ ମୁରଲିକା　　ଶିରେ ଶିଖିପୁଚ୍ଛ ଶିଖା
କଟୀତଟେ ପୀତାମ୍ବର ଯା'ଙ୍କ ଶୋଭିତ,
କଟାକ୍ଷବାଣ ପ୍ରହାରି　　ମୋହନ୍ତି ଯେ ଗୋପନାରୀ
ଶ୍ରୀବୃନ୍ଦାକାନନେ ନିତ୍ୟ ହୋଇଣ ସ୍ଥିତ,
ପଥୁକି ମୋ' ନୟନପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୨)



ଯେହୁ ମହୋଦଧିତୀରେ　　ସ୍ୱର୍ଣ୍ଣକାନ୍ତି ନୀଳାଦ୍ରିରେ
ସ୍ଥିତ ମହାମନ୍ଦିରରେ ନିତ୍ୟ ରାଜିତ,
ସାଦରେ ସଙ୍ଗତେ ଘେନି　　ବଳଭଦ୍ର ଭଦ୍ରା ବେନି
ଦେବଙ୍କୁ ପୟରସେବା କରିଣ ଦତ୍ତ,
ପଥୁକି ମୋ' ନୟନପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୩)

ଯେହୁ କୃପା-ପାରାବାର　　ନବନୀରଦ ରୁଚିର
ରମାବାଣୀ-ବିନୋଦନ କମଳାନନ,
ଲକ୍ଷକୋଟି ଦେବରାଜ　　ଶିରେ ଯା'ଙ୍କ ପଦରଜ
ବହନ୍ତି ବେଦାନ୍ତ ଯା'ଙ୍କୁ କରେ ବଖାଣ,
ପଥୁକି ମୋ' ନୟନ ପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୪)



ଯେ ପ୍ରଭୁ କରୁଣାସିନ୍ଧୁ　　ଅଖିଳ ଜଗତବନ୍ଧୁ
ସିନ୍ଧୁ-ସୁତା-ଚିରି-ଇନ୍ଦୁ ଗମନ୍ତେ ରଥେ,
ବିପ୍ରଗଣ ପଥେ ମିଳି　　ଗାଆନ୍ତେ ସ୍ତୁତିଆବଳୀ
ଘେନା ଯେ କରନ୍ତି ସ୍ତୁତିକଥା ସୁଚିତ୍ତେ,
ପଥୁକି ମୋ' ନୟନପଥେ,
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୫)



ବିରଞ୍ଚି ଶିରଭୂଷଣ ପଦ୍ମପଲାଶଲୋଚନ
ନିଳାଦ୍ରି ବିହାରୀ ଯେ ଅନନ୍ତ–ମସ୍ତକେ,
ପୟର ଥାପି ଆସୀନ ସଦା ରସାନନ୍ଦ ଘନ
ମଗନ ଶ୍ରୀରାଧାଅଙ୍ଗ–ଆଶ୍ଳେଷ ସୁଖେ,
ପଥୁକି ମୋ' ନୟନପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୬)

ନମାଗଇଁ ରାଜ୍ୟସୁଖ ନ ମାଗେଁ ମଣି ମାଣିକ୍ୟ
ନମାଗେଁ ନୟନ ନିଧି ବର କାମିନୀ,
ଯାହାଙ୍କ ଚରିତାବଳୀ ଗାଆନ୍ତି ଚନ୍ଦ୍ର ମଉଳି
ପରାଣ ଲୋଡ଼େ ମୋ' ତାଙ୍କୁ ଦିନଯାମିନୀ,
ପଥୁକି ମୋ' ନୟନ ପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୭)

ଅସାର ସଂସାର ବନ୍ଧ ଛେଦ ମୋ' ଖରେ ମୁକୁନ୍ଦ
ଅଥଳ ପାପପୟୋଧି ଦିଅ ଶୁଖାଇ,
ହେ ନାଥ ! ଦୀନ ଅନାଥ ପାଇଁ ଶାଶ୍ୱତ ନିଶ୍ଚିତ
ପ୍ରେମପତ୍ର କ୍ଷେତ୍ରେ ଏଥି ଅଛ ରୁହାଇ,
ପଥୁକି ମୋ' ନୟନପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୮)



ଜଗନ୍ନାଥାଷ୍ଟକଂ ପୁଣ୍ୟଂ ଯଃ ପଠେତ୍ ପ୍ରୟତଃ ଶୁଚିଃ
ସର୍ବପାପ ବିଶୁଦ୍ଧାତ୍ମା ବିଷ୍ଣୁ ଲୋକଂ ସ ଗଚ୍ଛତି,
ପ୍ରାକୃତ ପଦେ ପୟାର ରଚିଲା ବିଚ୍ଛନ୍ଦ ଛାର
ସ୍ଥିରମନେ ଶୁଚିମନ୍ତ ହୋଇ ଗାଇଲେ,
ପାତକି–ପାତକମାନ ହୁଅଇ ହେଳେ ଦହନ
ଅନ୍ତେ ବିଷ୍ଣୁ ଲୋକେ ଗତି ହୁଏ ତା' ଭଲେ,
ଜୟ ଜୟ ଶ୍ରୀଜଗନ୍ନାଥ
ନିତ୍ୟକାଳ ପଦେ ତୁମ୍ଭ ଲୋଟୁ ମୋ' ମାଥ । (୯)




**(ଓଡ଼ିଆ ରୂପାନ୍ତର : ବିଚ୍ଛନ୍ଦ ଚରଣ ପଟ୍ଟନାୟକ)**

(ସଂସ୍କୃତରେ ଲିଖିତ 'ଜଗନ୍ନାଥାଷ୍ଟକମ୍'କୁ ଶ୍ରୀଚୈତନ୍ୟ ମହାପ୍ରଭୁ ରଚନା କରିଥାନ୍ତୁ କି ଶ୍ରୀଶଙ୍କରାଚାର୍ଯ୍ୟ ରଚନା କରିଥାନ୍ତୁ, ତାହାର ଓଡ଼ିଆ ଅନୁବାଦ କରିଥିଲେ କବି ଓ ଅନୁବାଦକ ସ୍ୱର୍ଗୀୟ ବିଚ୍ଛନ୍ଦ ଚରଣ ପଟ୍ଟନାୟକ । କଟକରେ ୧୯୪୪ରେ ସେ 'କଳିଙ୍ଗ ଭାରତୀ'ର ପ୍ରତିଷ୍ଠାତା ଓ ଭଂଜ ସାହିତ୍ୟର ପ୍ରସାରକ ଭାବେ ପରିଚିତ ଥିଲେ । ୧୯୪୨ରେ ସେ ଓଡ଼ିଶା ସରକାରଙ୍କଦ୍ୱାରା ଅନୁବାଦକ ଭାବେ ନିଯୁକ୍ତି ପାଇଥିଲେ । ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସଂପର୍କ ବିଭାଗରେ 'ଉତ୍କଳ ପ୍ରସଙ୍ଗ' ଓ 'ଓଡ଼ିଶା ରିଭ୍ୟୁ'ର ସଂପାଦନା କାର୍ଯ୍ୟ ମଧ୍ୟ କରିଥିଲେ । ତାଙ୍କର ସୁପୁତ୍ର ଶ୍ରୀପୁରୁଷୋତ୍ତମ ପଟ୍ଟନାୟକଙ୍କ ସୌଜନ୍ୟରୁ ଏହା ପ୍ରାପ୍ତ ।)

# ସମ୍ପାଦକୀୟ



ଉତ୍କଳର ସଂସ୍କୃତି କହିଲେ ଶ୍ରୀଜଗନ୍ନାଥ ସଂସ୍କୃତି । ଓଡ଼ିଆ ଜାତିର ଶ୍ରେଷ୍ଠ ବିଭବ ପ୍ରଭୁ ଶ୍ରୀଜଗନ୍ନାଥ । ଦେହର ଆତ୍ମା ପରି ଜଗନ୍ନାଥ ହେଉଛନ୍ତି ଓଡ଼ିଶାର ସର୍ବସ୍ୱ । ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କଠାରେ ସବୁ ଧର୍ମର ସମନ୍ୱୟ ଘଟିଛି । ଓଡ଼ିଶାର ପ୍ରସିଦ୍ଧ କବିମାନେ ଜଗନ୍ନାଥଙ୍କର ଯଶଗାନ ଦ୍ୱାରା ନିଜ ନିଜ କାବ୍ୟର ଉତ୍କର୍ଷ ପ୍ରତିପାଦନ କରିଛନ୍ତି । ଜଗତର ନାଥ ଜଗନ୍ନାଥ ମହାପ୍ରଭୁଙ୍କ ଘୋଷଯାତ୍ରା କେବଳ ହିନ୍ଦୁ ଧର୍ମ କାହିଁକି, ସମଗ୍ର ମାନବ ଧର୍ମର ଏକ ମୋକ୍ଷ ଯାତ୍ରା ଭାବେ ପରିଚିତ । ସର୍ବଧର୍ମ ସମନ୍ୱୟର ପ୍ରତୀକ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରାର ବିଶେଷତ୍ୱ ଆଜି ସାରା ବିଶ୍ୱରେ ଅନୁଭୂତ । ପ୍ରତ୍ୟେକ ବର୍ଷ ଆଷାଢ଼ ମାସ ଶୁକ୍ଲପକ୍ଷ ଦ୍ୱିତୀୟା ତିଥିରେ ମହାପ୍ରଭୁ ଶ୍ରୀଜଗନ୍ନାଥ, ଭ୍ରାତା ଶ୍ରୀବଳଭଦ୍ର, ଭଗିନୀ ଦେବୀ ସୁଭଦ୍ରା ଓ ଚକ୍ରରାଜ ସୁଦର୍ଶନଙ୍କ ସହ ସିଂହଦ୍ୱାରଠାରୁ ନବଦିନ ପାଇଁ ଶ୍ରୀଗୁଣ୍ଡିଚା ମନ୍ଦିରକୁ ଯାତ୍ରା କରିଥାନ୍ତି । ଶ୍ରୀଗୁଣ୍ଡିଚା ମନ୍ଦିରରେ ଅବସ୍ଥାନ ପରେ ପୁନଶ୍ଚ ପହଣ୍ଡି ହୋଇ ବାହୁଡା ଯାତ୍ରା କରନ୍ତି ଓ ସିଂହଦ୍ୱାର ପହଞ୍ଚିବା ପରେ ସୁନାବେଶ ହୁଅନ୍ତି ଚତୁର୍ଦ୍ଧାମୂରତି । ରଥ ଉପରେ ଅଧରପଣା ନୀତି ସମେତ ଅନେକ ନୀତି ସମ୍ପାଦିତ ହୋଇଥାଏ । ଏହା ପରେ ସେବକମାନେ ମହାପ୍ରଭୁଙ୍କୁ ପୁନଶ୍ଚ ପହଣ୍ଡି କରି ରତ୍ନସିଂହାସନରେ ବିଜେ କରାଇଥାନ୍ତି, ଯାହା 'ନୀଳାଦ୍ରି ବିଜେ' ନାମରେ ବିଶ୍ୱବିଦିତ । ଲୌକିକ ଆଚାରରେ ପୂଜିତ ଜୀବନ୍ତ ଠାକୁରଙ୍କ ଲୀଳା ଖେଳା ଅନ୍ତର୍ଭୁକ୍ତ ଏହି ରଥଯାତ୍ରାର ପୃଷ୍ଠଭୂମିରେ 'ମାନବ ଧର୍ମର ଜୟ ଜୟକାର' ଓ 'ପତିତ ଜନର ଉଦ୍ଧାର' ବାର୍ତ୍ତା ପ୍ରସାରିତ ।

ସାରା ସଂସାରରେ ଏପରି ଠାକୁର ଆଉ କେଉଁଠି ନାହାଁନ୍ତି, ଯିଏ ଜଗତଜନଙ୍କୁ ଦର୍ଶନ ଦେବାଲାଗି ରତ୍ନସିଂହାସନରୁ ଓହ୍ଲାଇ ଆସନ୍ତି ବଡ଼ଦାଣ୍ଡକୁ । ବିଭିନ୍ନ ଧର୍ମ ଓ ମତର ଊର୍ଦ୍ଧ୍ୱରେ ଶ୍ରୀଜଗନ୍ନାଥ ସଂସ୍କୃତି ଏକ ନୂତନ ଧର୍ମ ପ୍ରତିଷ୍ଠା କରିଛି 'ଶ୍ରୀଜଗନ୍ନାଥ ଧର୍ମ' । ଓଡ଼ିଆ ସଂସ୍କୃତି ଓ ପରମ୍ପରାର ଭିତ୍ତିଭୂମି ଶ୍ରୀଜଗନ୍ନାଥ ସଂସ୍କୃତି ମଧ୍ୟରେ ସବୁ ଧର୍ମର ସାରବତ୍ତା ନିହିତ । ହିନ୍ଦୁ, ମୁସଲିମ୍, ଖ୍ରୀଷ୍ଟିୟାନ, ଜୈନ, ବୌଦ୍ଧ ପ୍ରତ୍ୟେକ ଶ୍ରୀଜଗନ୍ନାଥ ସଂସ୍କୃତିରେ ନିଜକୁ ପ୍ରତିବିମ୍ବିତ କରିଥାନ୍ତି ।

ମହାପ୍ରଭୁଙ୍କ ଆକର୍ଷଣୀୟ ନେତ୍ର ଯୁଗଳ, ବିସ୍ତାରିତ ମହାବାହୁ ଓ ରଙ୍ଗ ଅଧରର ରହସ୍ୟମୟ ହସ ଦ୍ୱାରା ସାରା ବିଶ୍ୱବାସୀ ଆକର୍ଷିତ ହୋଇ ଶ୍ରୀକ୍ଷେତ୍ର ପୁରୀରେ ନିଜକୁ ଧନ୍ୟ ମଣନ୍ତି ।

ଶ୍ରୀଜଗନ୍ନାଥଙ୍କ ଅସୀମ କରୁଣାରୁ ଆଜି ଓଡ଼ିଶା ସାମଗ୍ରିକ ବିକାଶ କ୍ଷେତ୍ରରେ ଆମ ଦେଶ ପାଇଁ ଆଦର୍ଶ ପଦବାଚ୍ୟ ହୋଇପାରିଛି । ମାନବ ଏବଂ ପ୍ରାକୃତିକ ସମ୍ବଳ, ସାମୂହିକ ଏବଂ ସାମାଜିକ ଭିତ୍ତିଭୂମି ତଥା ଆନୁଷ୍ଠାନିକ କ୍ଷେତ୍ରର ବିକାଶ ନିମନ୍ତେ ରାଜ୍ୟ ସରକାର ଏକ ସୁଦୃଢ଼ ଭିତ୍ତିଭୂମି ସ୍ଥାପନ କରିପାରିଛନ୍ତି । ନିରବଚ୍ଛିନ୍ନ ପ୍ରଚେଷ୍ଟା ବଳରେ ରାଜ୍ୟରେ ଆଖିଦୃଶିଆ ଉନ୍ନତି ଉପଲବ୍ଧ ହୋଇପାରିଛି । ସାଧାରଣ ଜନତାର ହିତସାଧନ, ସବୁଜ ବିଶ୍ୱ ଏବଂ ସମୃଦ୍ଧ ଜୀବନ ଦିଗରେ ଜାତିସଂଘର ପୋଷଣୀୟ ବିକାଶ ଲକ୍ଷ୍ୟ ସହ ସମ୍ବନ୍ଧିତ ହୋଇ ରାଜ୍ୟର ବିକାଶ ପ୍ରକ୍ରିୟା ସ୍ୱଚ୍ଛ ଓ ସୁବ୍ୟବସ୍ଥିତ ହୋଇପାରିଛି । ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ଦୂରଦୃଷ୍ଟିସମ୍ପନ୍ନ ନେତୃତ୍ୱ ବଳରେ, ଜନସାଧାରଣ ବିଶେଷତଃ ଗରିବ ଏବଂ ଦୁର୍ବଳ ବର୍ଗର ଆବଶ୍ୟକତା ପୂରଣ ନିମନ୍ତେ ରାଜ୍ୟ ସରକାର ସଂକଳ୍ପବଦ୍ଧ ଭାବେ ନିଷ୍ଠାପର ଉଦ୍ୟମ କରୁଛନ୍ତି ।

ଶ୍ରୀଜଗନ୍ନାଥ ହେଲେ ଭାବର ଠାକୁର । ଉତ୍କର୍ଷ କଳା ବିମଣ୍ଡିତ ଠାକୁରଙ୍କ ନିବାସ ଉତ୍କଳ ତଥା ଓଡ଼ିଶା ଓ ଏହାର ଜନସାଧାରଣଙ୍କ ସର୍ବବିଧ ଉନ୍ନତି ଦିଗରେ, ଆସନ୍ତୁ, ସଭିଏଁ ମିଳିମିଶି ନିଜ ନିଜର ଭୂମିକା ନିର୍ବାହ କରିବା ।

ଜୟ ଜଗନ୍ନାଥ ।

ଲେନିନ୍ ମହାନ୍ତି

ସମ୍ପାଦକ

# ଲୋକଙ୍କ ଆସ୍ଥା ଓ ବିଶ୍ୱାସକୁ ସମ୍ମାନ ଦେଇ ଉତ୍ସର୍ଗୀକୃତ ମନୋଭାବ, ଦୃଢ଼ ସଂକଳ୍ପ ଓ ନିଷ୍ଠାର ସହିତ କଠିନ ପରିଶ୍ରମ କରିବା ।

– ମୁଖ୍ୟମନ୍ତ୍ରୀ

'୨୦୧୪ ମଇ ୨୧ ତାରିଖ ଆଜିର ଦିନରେ ଓଡ଼ିଶାବାସୀଙ୍କ ଆଶୀର୍ବାଦରେ ଆମେ ଦାୟିତ୍ୱ ଗ୍ରହଣ କରିଥିଲୁ ଏବଂ ଚାରିବର୍ଷ ପୂର୍ତ୍ତି ପରେ ଆମେ କ'ଣ ହାସଲ କରିଛୁ, ତା'ର ସମୀକ୍ଷା କରିବା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

ଜନସାଧାରଣଙ୍କ ପ୍ରତି ଆମ ପ୍ରତିବଦ୍ଧତାର ନିଦର୍ଶନ ସ୍ୱରୂପ ଶପଥ ଗ୍ରହଣ ପରେ ମନ୍ତ୍ରୀ ପରିଷଦର ପ୍ରଥମ ବୈଠକରେ ଆମେ ଆମର ନିର୍ବାଚନ ଇସ୍ତାହାରକୁ ଆମ ସରକାରଙ୍କ ନୀତି ଭାବରେ ଗ୍ରହଣ କରିଛୁ । ସେହିଦିନଠାରୁ ଆଜି ପର୍ଯ୍ୟନ୍ତ ଆମେ ହାସଲ କରିଥିବା ସଫଳତାଗୁଡିକ ହେଲା ଏହିପରି ।



ଆମର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ପ୍ରତିଶ୍ରୁତି ଥିଲା, ଆଶ୍ରୟ ନିରାପତ୍ତା– ସବୁ କଚାଘରକୁ ପକ୍କା ଘର କରିବାର ପ୍ରତିଶ୍ରୁତି । ଗ୍ରାମ୍ୟ ଗୃହ ନିର୍ମାଣ କ୍ଷେତ୍ରରେ ଓଡ଼ିଶା ଜାତୀୟସ୍ତରରେ ନୂତନ କୀର୍ତ୍ତିମାନ ସ୍ଥାପନ କରିଛି । ଗତ ଚାରି ବର୍ଷ ମଧ୍ୟରେ ପ୍ରାୟ ୧୭ ଲକ୍ଷ ପକ୍କା ଘର ନିର୍ମାଣ ହୋଇଛି । ଆଉ ବାକି ରହିଥିବା ୭ଲକ୍ଷ ଘର ଆଗାମୀ ମାର୍ଚ୍ଚ ୫ ତାରିଖ ବିଜୁବାବୁଙ୍କ ଜୟନ୍ତୀ ସୁଦ୍ଧା ସମ୍ପୂର୍ଣ୍ଣ ହେବ । ଏହା ହେବ ମହାନାୟକ ବିଜୁବାବୁଙ୍କ ପ୍ରତି ଆମର ବିନମ୍ର ଶ୍ରଦ୍ଧାଞ୍ଜଳି । ବିଜୁବାବୁଙ୍କ ଭାଷାରେ, 'ମୁଁ ଚାହେଁ ମୋ ରାଜ୍ୟର ସବୁ ପରିବାରର ମୁଣ୍ଡ ଉପରେ ସୁନ୍ଦର ଛାତ ଘରଟିଏ ଥାଉ । ପ୍ରତି ପରିବାର ପାଇଁ ଭଲ ପିଇବା ପାଣି ଏବଂ ଖରାବର୍ଷା ଆଦିରୁ ସୁରକ୍ଷା' ।



ସହରାଞ୍ଚଳର ବସ୍ତିମାନଙ୍କରେ ରହୁଥିବା ଗରିବ ଲୋକମାନଙ୍କୁ ଜମି ଓ ସମ୍ପତ୍ତି ଅଧିକାର ଦେବା ପାଇଁ ଆମେ ଏକ ଐତିହାସିକ ଆଇନ ତିଆରି କରିଛୁ । ପ୍ରାୟ ୧୦ ଲକ୍ଷ ଗରିବ ଲୋକଙ୍କ ସଶକ୍ତିକରଣ ଦିଗରେ ଏହି ଆଇନ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିବ, ଯାହାକି ସାରା ବିଶ୍ୱରେ ଅଭୂତପୂର୍ବ ।

କୃଷି ଆମ ରାଜ୍ୟର ମୁଖ୍ୟ ଜୀବିକା ଏବଂ ଓଡ଼ିଶା ସାରା ଦେଶରେ ଏକମାତ୍ର ରାଜ୍ୟ ଯିଏକି ଚାଷୀମାନଙ୍କ ରୋଜଗାରକୁ ଦୁଇଗୁଣ କରିବାରେ ସଫଳ ହୋଇପାରିଛି । ଅତିରିକ୍ତ ୧୦ ଲକ୍ଷ ହେକ୍ଟର ଜମିକୁ ଜଳସେଚନ ସୁବିଧା ଯୋଗାଇଦେବା ପାଇଁ ଆମେ ପ୍ରତିଶ୍ରୁତି ଦେଇଛୁ । ବର୍ତ୍ତମାନ ସୁଦ୍ଧା ଆମେ ଅତିରିକ୍ତ ୭ ଲକ୍ଷ ହେକ୍ଟର ଜମିରେ ଜଳସେଚନ ସୁବିଧାର ବିକାଶ କରିଥିବା ବେଳେ, ଅପ୍ରେଲ ପହିଲା ୨୦୧୯ ସୁଦ୍ଧା ସମ୍ପୂର୍ଣ୍ଣ ଲକ୍ଷ୍ୟ ହାସଲ କରିବୁ । ଆମର ଖାଦ୍ୟ ଶସ୍ୟ ଉତ୍ପାଦନ ୧୧୭ ଲକ୍ଷ ମେଟ୍ରିକ ଟନ୍‌ରେ ପହଞ୍ଚିପାରିଛି, ଯାହାକି ଏକ ସର୍ବକାଳୀନ ରେକର୍ଡ । ଜାତୀୟ ଖାଦ୍ୟ ନିରାପତ୍ତା କାର୍ଯ୍ୟକ୍ରମକୁ ସୁଦୃଢ଼ କରିବାରେ ଓଡ଼ିଶା ଅନ୍ୟତମ ଅଗ୍ରଣୀ ରାଜ୍ୟ । ପ୍ରତ୍ୟେକ କ୍ଷେତ୍ରରେ ଥିବା ଦୁର୍ବଳ ବର୍ଗଙ୍କ ପ୍ରତି ମୋ ସରକାର ସବୁବେଳେ ସ୍ୱତନ୍ତ୍ର ଧ୍ୟାନ ଦେଇଆସିଛି । ଭାଗଚାଷୀଙ୍କୁ ଫସଲ ଋଣ ଦେବା ସହିତ ବୃଷ୍ଟିପୁଷ୍ଟ ଅଞ୍ଚଳର ଚାଷୀମାନଙ୍କୁ ମିଲେଟ ମିଶନ ଜରିଆରେ ଶସ୍ୟର ଉପଯୁକ୍ତ ମୂଲ୍ୟ ପ୍ରଦାନ ପାଇଁ ବ୍ୟବସ୍ଥା କରାଯାଇଛି । ଯୋଗାଯୋଗ ବ୍ୟବସ୍ଥା ମୋ ସରକାରର ପ୍ରାଥମିକତା । ଗ୍ରାମ୍ୟ ରାସ୍ତା ନିର୍ମାଣ କ୍ଷେତ୍ରରେ ଗତ ୪ବର୍ଷରେ ୨୨,୫୦୦ କିଲୋମିଟର ରାସ୍ତା ନିର୍ମାଣ କରି ଓଡ଼ିଶା ସାରା ଦେଶରେ ଆଗରେ ରହିଛି । ୪ ବର୍ଷ ମଧ୍ୟରେ ବିଜୁସେତୁ ଯୋଜନାରେ ୬୦୦ ସେତୁ ନିର୍ମିତ ହୋଇଛି । କେ.ବି.କେ. ଅଞ୍ଚଳ ଦେଇ ଯାଇଥିବା ବିଜୁ ଏକ୍ସପ୍ରେସ ୱେ ଜରିଆରେ ଦକ୍ଷିଣ ଓ ଉତ୍ତର ଓଡ଼ିଶାକୁ ସଂଯୁକ୍ତ କରିବା ଆମର ଲକ୍ଷ୍ୟ । ମହାନଦୀ ଉପରେ ଉତ୍କଳଗୌରବ ମଧୁସୂଦନ ସେତୁ ଏବଂ ଇବ୍ ଓ କାଠଯୋଡି ଉପରେ ଗୁରୁତ୍ୱପୂର୍ଣ୍ଣ ସେତୁ ରେକର୍ଡ ସମୟରେ ଶେଷ ହୋଇଥିବା ସହିତ ଦୂରତା ହ୍ରାସରେ ମଧ୍ୟ ସହାୟକ ହୋଇଛି । ମାଲକାନଗିରିରେ ଗୁରୁପ୍ରିୟା ସେତୁ ଖୁବ୍‌ଶୀଘ୍ର ସମ୍ପୂର୍ଣ୍ଣ ହେବାକୁ ଯାଉଛି ।

ସମସ୍ତଙ୍କ ପାଇଁ ସ୍ୱାସ୍ଥ୍ୟ ଆମର ମିଶନ । କୋରାପୁଟ, ବାରିପଦା, ବାଲେଶ୍ୱର ଓ ବଲାଙ୍ଗୀରରେ ୪ଟି ନୂଆ ସରକାରୀ ମେଡିକାଲ କଲେଜ କାମ ଆରମ୍ଭ କରିଥିବା ବେଳେ ଆଉ ୫ଟି ସରକାରୀ ମେଡିକାଲ କଲେଜ ଖୁବ୍‌ଶୀଘ୍ର ହେବାକୁ ଯାଉଛି । ଶିଶୁମୃତ୍ୟୁ ହାର ହ୍ରାସ କ୍ଷେତ୍ରରେ ସାରା ଦେଶରେ ଓଡ଼ିଶା ଉଲ୍ଲେଖନୀୟ ସଫଳତା ହାସଲ କରିଛି ଏବଂ ଆଜି ଏ କ୍ଷେତ୍ରରେ ଆମେ ଜାତୀୟ ହାରଠାରୁ ମଧ୍ୟ ଭଲ ସ୍ଥିତିରେ ରହିଛୁ ।

ମହିଳା ସଶକ୍ତିକରଣ ଉପରେ ଆମର ସମସ୍ତ ଯୋଜନା ଓ ଉଦ୍ୟମରେ ଗୁରୁତ୍ୱ ଆରୋପ କରାଯାଇଛି । ୩୦ ଲକ୍ଷରୁ ଅଧିକ ମହିଳା, ମମତା ଯୋଜନା ଦ୍ୱାରା ଉପକୃତ ହୋଇଛନ୍ତି । ପ୍ରାୟ ସତୁରୀ ଲକ୍ଷ ମହିଳା ମିଶନ ଶକ୍ତିରେ ସାମିଲ ହୋଇ ଏହି ଆନ୍ଦୋଳନକୁ ମଜବୁତ କରିଛନ୍ତି । ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କରେ ମହିଳାମାନଙ୍କ ପାଇଁ ୫୦ ପ୍ରତିଶତ ସ୍ଥାନ ସଂରକ୍ଷଣ, ନିଷ୍ପତ୍ତି ଗ୍ରହଣ ପ୍ରକ୍ରିୟାରେ ମହିଳାଙ୍କ ଭୂମିକାକୁ ସୁନିଶ୍ଚିତ କରିଛି ।

ଆମର ପରବର୍ତ୍ତୀ ପିଢିର ସଶକ୍ତିକରଣରେ ଶିକ୍ଷା ଓ ଦକ୍ଷତା ବିକାଶର ବିଶେଷ ଗୁରୁତ୍ୱ ରହିଛି । ୫୬ ହଜାର ପିଲାଙ୍କୁ ନେଇ ୧୩୦ଟି ଆଦର୍ଶ ବିଦ୍ୟାଳୟ କାମ ଆରମ୍ଭ କରିଛି । ଏକ ପ୍ରତିଶତ ସୁଧରେ ଶିକ୍ଷା ଋଣ ଏବଂ ପ୍ରାୟ ୨୦ ଲକ୍ଷ ଛାତ୍ରଛାତ୍ରୀଙ୍କ ପାଇଁ ବୃତ୍ତି ଶିକ୍ଷା କ୍ଷେତ୍ରରେ ଏକ ନୂଆ ଅଧ୍ୟାୟ ସୃଷ୍ଟି କରିଛି । ନିଜେ ପାଠ ପଢିଥିବା ଶିକ୍ଷାନୁଷ୍ଠାନ ସହିତ ପୁରାତନ ଛାତ୍ରଛାତ୍ରୀମାନଙ୍କୁ ଓ ସମାଜକୁ ଯୋଡିବା ପାଇଁ ‘ମୋ ସ୍କୁଲ’ ପରି ଏକ ନୂତନ କାର୍ଯ୍ୟକ୍ରମ ଆରମ୍ଭ କରାଯାଇଛି ।



ଓଡ଼ିଶାର ୧୧ ଲକ୍ଷ ଆକାଂକ୍ଷୀ ଯୁବକଯୁବତୀଙ୍କ ଦକ୍ଷତା ବିକାଶ ପାଇଁ ଓଡ଼ିଶା ଦକ୍ଷତା ମିଶନ ଆରମ୍ଭ କରାଯାଇଛି । ଜୀବନଜୀବିକାକୁ ସୁଦୃଢ କରିବା ଏବଂ ରୋଜଗାର ଦେବା ପାଇଁ ଆମର ପ୍ରତିଶ୍ରୁତି ସ୍ୱରୂପ ଆମେ ୯ଲକ୍ଷ ଯୁବକ ଯୁବତୀଙ୍କୁ ତାଲିମ ଦେଇ ସଶକ୍ତ କରିପାରିଛୁ ।

ନିଯୁକ୍ତିଭିତ୍ତିକ ଶିଳ୍ପ ବିକାଶ ଆମର ଲକ୍ଷ୍ୟ । ପ୍ରାୟ ୧.୮ ଲକ୍ଷ କୋଟିର ବିଭିନ୍ନ ପ୍ରକଳ୍ପ ପାଇଁ ପଦକ୍ଷେପ ନିଆଯାଇଛି । ଏହା ୧.୩୨ ଲକ୍ଷ ନିଯୁକ୍ତି ସୁଯୋଗ ସୃଷ୍ଟି କରିବ । ଗତ ଚାରିବର୍ଷ ମଧ୍ୟରେ ରପ୍ତାନି ଅଢେଇ ଗୁଣ ବଢିଛି । ସାରା ଦେଶରେ ଏହା ସର୍ବାଧିକ ଅଭିବୃଦ୍ଧି । ରପ୍ତାନି କ୍ଷେତ୍ରରେ ଓଡ଼ିଶା ଏକ ଚମ୍ପିଆନ ରାଜ୍ୟ । ଉତ୍ପାଦନ ଭିତ୍ତିକ ପୁଞ୍ଜି ନିବେଶ କ୍ଷେତ୍ରରେ ଓଡ଼ିଶା ସାରା ଦେଶରେ ଶୀର୍ଷରେ ରହିଛି ।

ଗତ ଚାରି ବର୍ଷରେ ୧୭ ଲକ୍ଷ ପରିବାରକୁ ବିଜୁଳି ଯୋଗାଇ ଦିଆଯାଇଛି ଏବଂ ଅକ୍ଟୋବର ୨ ତାରିଖ ସୁଦ୍ଧା ସବୁ ପରିବାରକୁ ବିଦ୍ୟୁତ ଯୋଗାଇଦେବା ପାଇଁ ଲକ୍ଷ୍ୟ ରଖି ଆମେ କାମ କରୁଛୁ ।

ବିଶୁଦ୍ଧ ପିଇବା ପାଣି ଯୋଗାଣ ମୋ ସରକାରର ପ୍ରାଥମିକତା । ଚଳିତ ବର୍ଷ ଶେଷ ସୁଦ୍ଧା ପ୍ରତି ପଞ୍ଚାୟତର ଅନ୍ତତଃ ପକ୍ଷେ ଦୁଇଟି ଗାଁକୁ ପାଇପ ପାଣି ଯୋଗାଇବା ପାଇଁ ଆମେ ଲକ୍ଷ୍ୟ ରଖିଛୁ ।

ସମସ୍ତଙ୍କୁ ସାଥିରେ ନେଇ ବିକାଶ ଆମର ଲକ୍ଷ୍ୟ । ଆମର ବିଭିନ୍ନ ଜନଜାତି ଗୋଷ୍ଠୀଗୁଡିକର ଅନନ୍ୟ ସାଂସ୍କୃତିକ ସ୍ୱତନ୍ତ୍ରତାର ସୁରକ୍ଷା ଓ ସଂରକ୍ଷଣକୁ ଦୃଷ୍ଟିରେ ରଖି ୯ଟି ଜନଜାତି ବହୁଳ ଜିଲ୍ଲାରେ 'ସ୍ୱତନ୍ତ୍ର ବିକାଶ ପରିଷଦ' ଗଠନ କରାଯାଇଛି । ଏହି ପରିଷଦରେ ସବୁ ଜନଜାତି ଗୋଷ୍ଠୀକୁ ସାମିଲ କରାଯାଇଛି ।

ଓଡ଼ିଆ ଭାଷା ଶାସ୍ତ୍ରୀୟ ମାନ୍ୟତା ପାଇଛି ଏବଂ ପୁରୀଠାରେ ୨୦୧୭ ଡିସେମ୍ବର ୨୬ ତାରିଖରେ ଅନୁଷ୍ଠିତ ସ୍ୱତନ୍ତ୍ର କ୍ୟାବିନେଟରେ ଆମ ମାତୃଭାଷାର ବିକାଶ ପାଇଁ ଅନେକ ଯୁଗାନ୍ତକାରୀ ନିଷ୍ପତ୍ତି ଗ୍ରହଣ କରାଯାଇଛି ।

ଓଡ଼ିଶାରେ କ୍ରୀଡା ହେଉଛି ଜୀବନ । ଆମେ ଭୁବନେଶ୍ୱରରେ ୨୨ତମ ଏସିଆନ ଆଥଲେଟିକ୍ସ ଚମ୍ପିଆନସିପ୍‌କୁ ରେକର୍ଡ ୯୦ ଦିନ ସମୟ ମଧ୍ୟରେ ସମ୍ପୂର୍ଣ୍ଣ କରିପାରିଛୁ । ହକି ପ୍ରତି ଆମ ଲୋକମାନଙ୍କ ଶ୍ରଦ୍ଧା, ଜାତୀୟ ଦଳକୁ ପ୍ରୋତ୍ସାହିତ କରିବା ପାଇଁ ଆମକୁ ପ୍ରେରଣା ଦେଇଛି । ଯେତେବେଳେ ଟିମ୍ ଇଣ୍ଡିଆ ଓଡ଼ିଶା ଜର୍ସି ଓ ଲୋଗୋ ସହିତ ଖେଳପଡିଆକୁ ଓହ୍ଲାଉଛି ତାହା ଆମକୁ ଗର୍ବିତ କରୁଛି ।

ଏକ ସଶକ୍ତ ଓଡ଼ିଶା ଗଠନ ଦିଗରେ ଆମର ପ୍ରତିଶ୍ରୁତି ଓ ଦକ୍ଷତା ଉପରେ ସାଢେ ଚାରି କୋଟି ଓଡ଼ିଶାବାସୀଙ୍କ ଆସ୍ଥା ପାଇଁ ମୁଁ ଋଣୀ ।

ପରିବର୍ତ୍ତନ ପାଇଁ ଥ୍ରୀଟି ସ୍ୱଚ୍ଛତା, ସମ୍ମିଳିତ ଉଦ୍ୟମ ଓ ବୈଷୟିକ କୌଶଳ ଆମର ମନ୍ତ୍ର ।

ଆସନ୍ତୁ, ଆମେ ସମସ୍ତେ ଶପଥ ନେବା, ଲୋକଙ୍କ ଆସ୍ଥା ଓ ବିଶ୍ୱାସକୁ ସମ୍ମାନ ଦେଇ ଥ୍ରୀଡି ଉତ୍ସର୍ଗୀକୃତ ମନୋଭାବ, ଦୃଢ ସଂକଳ୍ପ ଓ ନିଷ୍ଠାର ସହିତ ପ୍ରତି ମିନିଟ କଠିନ ପରିଶ୍ରମ କରିବା ।





# ପ୍ରଶାସନକୁ ଅଧିକ ଉତ୍ତରଦାୟୀ ଓ ଲୋକାଭିମୁଖୀ କରିବା ଆବଶ୍ୟକ ।

- ମୁଖ୍ୟମନ୍ତ୍ରୀ



ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ସଚିବାଳୟରେ ବିଭିନ୍ନ ବିଭାଗର ଅତିରିକ୍ତ ମୁଖ୍ୟ ସଚିବ, ପ୍ରମୁଖ ସଚିବ ଓ ସଚିବମାନଙ୍କୁ ଏକ ବୈଠକରେ ଭେଟିଥିଲେ । ଏହି ବୈଠକ ଚିରାଚରିତ ବୈଠକଠାରୁ ସମ୍ପୂର୍ଣ୍ଣ ଭିନ୍ନ ଥିଲା । ଏଥିରେ ମୁଖ୍ୟମନ୍ତ୍ରୀ ବିଭାଗ ନିର୍ବିଶେଷରେ ପ୍ରଶାସନକୁ ଅଧିକ ଉତ୍ତରଦାୟୀ ଓ ଲୋକାଭିମୁଖୀ କରିବା ପାଇଁ ସଚିବମାନଙ୍କୁ ପ୍ରସ୍ତାବ ଦେବା ପାଇଁ କହିଥିଲେ । ଲୋକଙ୍କର ସମସ୍ୟାର ତୁରନ୍ତ ସମାଧାନ ତଥା ପ୍ରଶାସନିକ ବ୍ୟବସ୍ଥାକୁ ଅଧିକ ପାରଦର୍ଶୀ କରି ଲୋକଙ୍କୁ ଉତ୍ତମ ସେବା ଯୋଗାଇଦେବା ନିମନ୍ତେ ସେମାନଙ୍କର ସୁଚିନ୍ତିତ ମତାମତ ଦେବା ପାଇଁ ମୁଖ୍ୟମନ୍ତ୍ରୀ ସଚିବମାନଙ୍କୁ କହିଥିଲେ । ସଚିବମାନେ ବିଭିନ୍ନ ଜିଲ୍ଲା ଗସ୍ତ କରୁଛନ୍ତି ଏବଂ ସେମାନଙ୍କର ପ୍ରଶାସନିକ ଅଭିଜ୍ଞତା ଓ ଅନୁଭୂତିକୁ ଆଧାର କରି ପ୍ରସ୍ତାବ ଦେବାପାଇଁ ମୁଖ୍ୟମନ୍ତ୍ରୀ ପରାମର୍ଶ ଦେଇଥିଲେ । ତଦନୁସାରେ ବିଭିନ୍ନ ବିଭାଗର ସଚିବମାନେ ପ୍ରଶାସନର ବିଭିନ୍ନ ଦିଗ, ବିକାଶ ଓ କଲ୍ୟାଣ କାର୍ଯ୍ୟକ୍ରମ ତଥା ଲୋକଙ୍କ ସମସ୍ୟାର ଶୀଘ୍ର ସମାଧାନକୁ ଦୃଷ୍ଟିରେ ରଖି ସେମାନଙ୍କ ମତାମତ ଉପସ୍ଥାପନା କରିଥିଲେ । ଏଥିରେ ପ୍ରଶାସନକୁ ଅଧିକ

ଉତ୍ତରଦାୟୀ ଓ ଲୋକାଭିମୁଖୀ କରିବା ପାଇଁ ସଚିବମାନେ ଅନେକ ନୂଆ ନୂଆ ପ୍ରସ୍ତାବ ଦେଇଥିଲେ । ମୁଖ୍ୟମନ୍ତ୍ରୀ ସଚିବମାନଙ୍କର ବିଭିନ୍ନ ପ୍ରସ୍ତାବର ଉଚ୍ଚପ୍ରଶଂସା କରିଥିଲେ ଏବଂ ଏ ସଂକ୍ରାନ୍ତରେ ଏକ ପୃଷ୍ଠାର ବିଶଦ ପ୍ରସ୍ତାବ ପ୍ରତ୍ୟେକ ସଚିବ ଓ ମୁଖ୍ୟ ଶାସନ ସଚିବଙ୍କୁ ପ୍ରଦାନ କରିବା ପାଇଁ ପରାମର୍ଶ ଦେଇଥିଲେ । ଏହିସବୁ ପ୍ରସ୍ତାବ ଉପରେ ତର୍ଜମା କରାଯାଇ ଆବଶ୍ୟକୀୟ ପଦକ୍ଷେପ ଗ୍ରହଣ କରାଯିବ ବୋଲି ମୁଖ୍ୟମନ୍ତ୍ରୀ କହିଥିଲେ । ସଚିବମାନଙ୍କ ସହିତ ଏଭଳି ଆଲୋଚନା ନିୟମିତ ଜାରି ରହିବ ବୋଲି ମୁଖ୍ୟମନ୍ତ୍ରୀ କହିଥିଲେ ।

**ପ୍ରଶାସନକୁ ଅଧିକ ଉତ୍ତରଦାୟୀ ଓ ଲୋକାଭିମୁଖୀ କରିବା ଉପରେ ମୁଖ୍ୟମନ୍ତ୍ରୀଙ୍କ ଗୁରୁତ୍ୱ ।**

ଏହି ବୈଠକରେ ଓଡ଼ିଶା ଦକ୍ଷତା ମିଶନର ଅଧକ୍ଷ, ମୁଖ୍ୟ ଶାସନ ସଚିବ ପ୍ରମୁଖ ଉପସ୍ଥିତ ଥିଲେ । ସୂଚନାଯୋଗ୍ୟ ମନ୍ତ୍ରୀ ପରିଷଦ ବୈଠକରେ ମୁଖ୍ୟମନ୍ତ୍ରୀ ମନ୍ତ୍ରୀମାନଙ୍କୁ ଭେଟି ସେମାନଙ୍କ ବିଭାଗର ସଫଳତା ସମ୍ପର୍କରେ ଆଲୋଚନା କରିଥିଲେ ଏବଂ ସେମାନଙ୍କୁ ଉତ୍ସର୍ଗୀକୃତ ମନୋଭାବ, ଦୃଢ ସଂକଳ୍ପ ଓ ନିଷ୍ଠାର ସହିତ କଠିନ ପରିଶ୍ରମ କରିବା ପାଇଁ ପରାମର୍ଶ ଦେଇଥିଲେ ।





# ସୁଲଭ ଗୁଣାତ୍ମକ ସ୍ୱାସ୍ଥ୍ୟସେବା ପ୍ରଦାନ ସରକାରଙ୍କ ପ୍ରାଥମିକତା

## ମେଡ଼ିକାଲ କଲେଜ ପ୍ରତିଷ୍ଠା, ଭିତ୍ତିଭୂମି ବିକାଶ ଓ ନୂତନ ସ୍ୱାସ୍ଥ୍ୟ ସେବା ଯୋଜନା




୨୦୧୪ ମସିହା ମଇ ମାସଠାରୁ ବିଗତ ୪ବର୍ଷ ମଧ୍ୟରେ ଓଡ଼ିଶା ସରକାର ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ବଳିଷ୍ଠ ନେତୃତ୍ୱରେ ରାଜ୍ୟବାସୀଙ୍କ ସ୍ୱାସ୍ଥ୍ୟ ସୁରକ୍ଷା ଦିଗରେ ଅନେକ ଉଲ୍ଲେଖନୀୟ ସଫଳତା ହାସଲ କରିଛନ୍ତି । ରାଜ୍ୟବାସୀଙ୍କୁ ସୁଲଭ ଗୁଣାତ୍ମକ ସ୍ୱାସ୍ଥ୍ୟସେବା ପ୍ରଦାନ କରିବା ଉପରେ ରାଜ୍ୟ ସରକାର ପ୍ରାଥମିକତା ଦେଇଛନ୍ତି ।

ରାଜ୍ୟ ସରକାର ଆରମ୍ଭରୁ ରାଜ୍ୟର ସମସ୍ତ ଜନସାଧାରଣଙ୍କୁ ବିନା ମୂଲ୍ୟରେ ଔଷଧ ଯୋଗାଇବା ସହିତ ସ୍ୱାସ୍ଥ୍ୟବୀମା ସୁବିଧା ଉପଲବ୍ଧ କରାଇବାକୁ ପ୍ରାଥମିକତା ପ୍ରଦାନ କରିଥିଲେ ।

ଏହି କ୍ରମରେ ବିନା ମୂଲ୍ୟରେ ଔଷଧ ବିତରଣ ସେବା 'ନିରାମୟ' ଯୋଜନାରେ ରାଜ୍ୟ ସରକାର ୨୦୧୪-୧୮ ବର୍ଷ ମଧ୍ୟରେ ୫୦୦ କୋଟି ଟଙ୍କାର ଔଷଧ ବିନା ମୂଲ୍ୟରେ ଯୋଗାଇ ଦେଇଛନ୍ତି । ଏହି ଯୋଜନାରେ ୩କୋଟିରୁ ଊର୍ଦ୍ଧ୍ୱ ଲୋକ ଉପକୃତ ହୋଇପାରିଛନ୍ତି ।

ସ୍ୱାସ୍ଥ୍ୟବୀମା ସୁବିଧାକୁ ସାର୍ବଜନୀନ କରିବା ନିମନ୍ତେ ରାଜ୍ୟ ସରକାର ବିଜୁ କୃଷକ କଲ୍ୟାଣ ଯୋଜନା (ବିକେକେୱାଇ), ଓଡ଼ିଶା ରାଜ୍ୟ ଚିକିତ୍ସା ପାଣ୍ଠି (ଓଏସ୍‌ଟିଏଫ୍), ରାଷ୍ଟ୍ରୀୟ ସ୍ୱାସ୍ଥ୍ୟବୀମା ଯୋଜନା (ଆର୍‌ଏସ୍‌ବିୱାଇ) ଓ ମୁଖ୍ୟମନ୍ତ୍ରୀ ରିଲିଫ ପାଣ୍ଠି (ସିଏମ୍‌ଆର୍‌ଏଫ୍) ଭଳି ଯୋଜନାଗୁଡିକରେ ରାଜ୍ୟରେ ପ୍ରାୟ ୭୦ ଲକ୍ଷ ପରିବାରଙ୍କ ଚିକିତ୍ସା ନିମନ୍ତେ ୮୦୦ କୋଟି ଟଙ୍କା ବ୍ୟୟ କରିଛନ୍ତି ।

ରାଜ୍ୟରେ ସ୍ୱାସ୍ଥ୍ୟସେବା କ୍ଷେତ୍ରରେ ହୋଇଥିବା ସମସ୍ତ ବିକାଶମୂଳକ ପଦକ୍ଷେପ ମଧ୍ୟରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ହେଉଛି ୪ଗୋଟି ନୂତନ ମେଡିକାଲ କଲେଜ ଓ ହସପିଟାଲର ପ୍ରତିଷ୍ଠା । ଏଥିନିମନ୍ତେ ରାଜ୍ୟ ସରକାର ୬୦୦ କୋଟି ଟଙ୍କା



ବ୍ୟୟ କରିଛନ୍ତି । ପଣ୍ଡିତ ରଘୁନାଥ ମୁର୍ମୁ ମେଡିକାଲ କଲେଜ, ବାରିପଦା ଓ ସହିଦ ଲକ୍ଷ୍ମଣ ନାଏକ ମେଡିକାଲ କଲେଜ, କୋରାପୁଟରେ ପାଠପଢ଼ା ଆରମ୍ଭ ହୋଇଥିବା ବେଳେ ବାଲେଶ୍ୱର ଓ ବଲାଙ୍ଗୀର ମେଡିକାଲ କଲେଜରେ ଚଳିତ ଶିକ୍ଷାବର୍ଷଠାରୁ ନାମ ଲେଖା ଆରମ୍ଭ ହେବ ।

ଓଡ଼ିଶାର ଜନସାଧାରଣଙ୍କୁ ବିନା ମୂଲ୍ୟରେ ଉଚ୍ଚମାନର ସ୍ୱାସ୍ଥ୍ୟସେବା ପ୍ରଦାନ କରିବା ପାଇଁ ରାଜ୍ୟ ସରକାର ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ଯୋଜନା କାର୍ଯ୍ୟକାରୀ କରାଇଛନ୍ତି । 'ନିଦାନ' ଯୋଜନାରେ ବିନା ମୂଲ୍ୟରେ ରୋଗ ନିରୂପଣ, 'ସହାୟ' ଯୋଜନାରେ ବିନା ମୂଲ୍ୟରେ ଡାୟାଲିସିସ୍, ୧୦୨ ଓ ୧୦୮ ଯୋଜନାରେ ବିନା ମୂଲ୍ୟରେ ଆମ୍ବୁଲାନ୍ସ ସେବା, ଜିଲ୍ଲାସ୍ତରରେ ବିନା ମୂଲ୍ୟରେ କେମୋଥେରାପି ଓ କର୍କଟ ରୋଗୀଙ୍କ ସେବା ଯତ୍ନ ନିମନ୍ତେ ଡେ–କେୟାର କେନ୍ଦ୍ର ପ୍ରତିଷ୍ଠା, 'ସୁନେତ୍ର' ଯୋଜନାରେ ବିନା ମୂଲ୍ୟରେ ଚକ୍ଷୁରୋଗ ଚିହ୍ନଟ ଓ ଚିକିତ୍ସା, 'ଆମ କ୍ଲିନିକ୍' ଜରିଆରେ ବିନା ମୂଲ୍ୟରେ ସହରାଞ୍ଚଳଗୁଡିକରେ ବିଶେଷଜ୍ଞ ଡାକ୍ତରଙ୍କ ଦ୍ୱାରା ଚିକିତ୍ସା ସେବା ପ୍ରଦାନ, ରକ୍ତ ସମ୍ବନ୍ଧୀୟ ରୋଗରେ ପୀଡିତ ରୋଗୀଙ୍କ ପାଇଁ ବିନା ମୂଲ୍ୟରେ ରକ୍ତ ଯୋଗାଣ ସହିତ ଚିକିତ୍ସା ନିମନ୍ତେ ଡାକ୍ତରଖାନାକୁ ଯାତାୟାତ ପାଇଁ ଆର୍ଥିକ ସହାୟତା ପ୍ରଦାନ, ରାଜ୍ୟର ଦୁର୍ଗମ ଓ ଅପହଞ୍ଚ (ଆମ୍ବୁଲାନ୍ସ ପହଞ୍ଚି ପାରୁନଥିବା) ଅଞ୍ଚଳଗୁଡିକରେ ଗର୍ଭବତୀ ମା'ମାନଙ୍କୁ ଡାକ୍ତରଖାନାରେ ପ୍ରସବ ନିମନ୍ତେ ଏକ ହଜାର ଟଙ୍କାର ଯାତାୟାତ ସହାୟତା ପ୍ରଦାନ ଏବଂ 'ଖୁସି' ଯୋଜନାରେ ବିଦ୍ୟାଳୟ ଛାତ୍ରୀମାନଙ୍କୁ ବିନା ମୂଲ୍ୟରେ ସାନିଟାରୀ ନାପ୍‌କିନ୍ ପ୍ରଦାନ କରି ସମୟୋଚିତ ପଦକ୍ଷେପ ମାଧ୍ୟମରେ ରାଜ୍ୟରେ ସ୍ୱାସ୍ଥ୍ୟସେବା ବ୍ୟବସ୍ଥାକୁ ସୁଦୃଢ଼ କରାଯାଇଛି ।

ଦୁର୍ଗମ ଅଞ୍ଚଳରେ ସ୍ୱାସ୍ଥ୍ୟସେବା ପ୍ରଦାନ କ୍ଷେତ୍ରରେ ରାଜ୍ୟ ସରକାର 'ଦମନ' ଯୋଜନାରେ ମ୍ୟାଲେରିଆ ନିୟନ୍ତ୍ରଣରେ ବିଶେଷ ସଫଳତା ହାସଲ କରିଛନ୍ତି । ସେହିପରି 'ସମ୍ପୂର୍ଣ୍ଣା' ଯୋଜନାରେ ସରକାରୀ ଡାକ୍ତରଖାନାରେ ପ୍ରସବ ଓ ଟୀକାକରଣ ହାର ମଧ୍ୟ ଉଲ୍ଲେଖନୀୟ ଭାବେ ବୃଦ୍ଧି ପାଇବା ସହିତ ନବଜାତ ଶିଶୁ ମୃତ୍ୟୁହାରରେ ବିଶେଷ ହ୍ରାସ ଘଟିଛି । ଅପହଞ୍ଚ ଓ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳଗୁଡିକରେ ବିଶେଷଜ୍ଞ ଡାକ୍ତରମାନଙ୍କ ଦ୍ୱାରା ଚିକିତ୍ସାସେବା ଉପଲବ୍ଧ କରାଇବା ପାଇଁ ଡିଜିଟାଲ ଜ୍ଞାନକୌଶଳର ବ୍ୟବହାର ପୂର୍ବକ ଟେଲି–ମେଡିସିନ ବ୍ୟବସ୍ଥା ଜରିଆରେ 'ଡିଜିଟାଲ ଡିସପେନସାରି' ପ୍ରତିଷ୍ଠା କ୍ରମେ ସ୍ୱାସ୍ଥ୍ୟସେବା ପ୍ରଦାନକୁ ତ୍ୱରାନ୍ୱିତ କରାଯାଇଛି । ସ୍ୱାସ୍ଥ୍ୟସେବା ଦିଗରେ ମାନବ ସମ୍ବଳ ବିକାଶକୁ ଗୁରୁତ୍ୱ ପ୍ରଦାନ କରି ରାଜ୍ୟ ସରକାର ୨୬୬୨ଟି ନୂତନ ଡାକ୍ତର ପଦବୀ ଓ ୫୭୧୯ଟି ପାରାମେଡିକ ପଦବୀ ସୃଷ୍ଟି କରିଛନ୍ତି । ରାଜ୍ୟର ଦୁର୍ଗମ ଓ ଅପହଞ୍ଚ ଅଞ୍ଚଳଗୁଡିକରେ ଡାକ୍ତରମାନଙ୍କ ଉପସ୍ଥିତି ବୃଦ୍ଧି ନିମନ୍ତେ ସ୍ଥାନର ଭୌଗୋଳିକତା ଭିତ୍ତିରେ ଆର୍ଥିକ ପ୍ରୋତ୍ସାହନ ପ୍ରଦାନର ବ୍ୟବସ୍ଥା କରାଯାଇଛି । 'ଆଶା କଲ୍ୟାଣ ଯୋଜନା'ରେ ଆଶାମାନଙ୍କର ସାମାଜିକ ସୁରକ୍ଷା ନିମନ୍ତେ ପଦକ୍ଷେପ ଗ୍ରହଣ କରାଯାଇଛି । ସ୍ୱାସ୍ଥ୍ୟ ଅନୁଷ୍ଠାନଗୁଡିକର ଉନ୍ନତି ନିମନ୍ତେ ନୂତନ ନିର୍ମାଣ, ମରାମତି, ଉନ୍ନତିକରଣ ଓ ନବୀକରଣ ମାଧ୍ୟମରେ ଭିତ୍ତିଭୂମି ବିକାଶ ଉପରେ ରାଜ୍ୟ ସରକାର ଧ୍ୟାନ ଦେଇଛନ୍ତି । 'ନିର୍ମଳ' ଯୋଜନାରେ ସ୍ୱାସ୍ଥ୍ୟ ଅନୁଷ୍ଠାନଗୁଡିକରେ ପରିଷ୍କାର ପରିଚ୍ଛନ୍ନତା ଓ ଅନୁକୂଳ ପରିବେଶ ସୃଷ୍ଟି ଦିଗରେ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି ।

ଉପରୋକ୍ତ ଅଭିନବ ପଦକ୍ଷେପ ତଥା ଯୋଜନାଗୁଡିକ କାର୍ଯ୍ୟକାରୀ ହେବା ଫଳରେ ରାଜ୍ୟବାସୀଙ୍କୁ ସାର୍ବଜନୀନ ସ୍ୱାସ୍ଥ୍ୟସେବା ପ୍ରଦାନ କରିବାର ପ୍ରତିଶ୍ରୁତିକୁ ପୂରଣ କରିବା ଦିଗରେ ରାଜ୍ୟ ସରକାର ଆଶାନୁରୂପ ସଫଳତା ହାସଲ କରିଛନ୍ତି ।

ମାନ୍ୟବର ମୁଖ୍ୟମନ୍ତ୍ରୀ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗର କାର୍ଯ୍ୟକଳାପ ସମ୍ପର୍କରେ ସମୀକ୍ଷା କରିବା ଅବସରରେ ଖାଲିଥିବା ପଦବୀ ପୂରଣ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବା ଏବଂ କାର୍ଯ୍ୟକାରୀ କରାଯାଇଥିବା ଯୋଜନାଗୁଡିକର ସଫଳ କାର୍ଯ୍ୟକାରିତା ନିମନ୍ତେ ନିୟମିତ ତଦାରଖ କରିବାକୁ ନିର୍ଦ୍ଦେଶ ଦେଇଛନ୍ତି ।



# ବିଜୁ ସ୍ୱାସ୍ଥ୍ୟ କଲ୍ୟାଣ ଯୋଜନା : ଏକ ଐତିହାସିକ ପଦକ୍ଷେପ

ODISHA HOCKEY MEN'S WORLD CUP BHUBANESWAR 2018
ODISHA INDIA'S BEST KEPT SECRET.
ODISHA ONE

## ସମସ୍ତଙ୍କ ପାଇଁ ସ୍ୱାସ୍ଥ୍ୟସେବା

ରାଜ୍ୟବାସୀଙ୍କ ପାଇଁ
ଆଉ ୩ ଟି ନୂତନ ଉପକ୍ରମ

### ବିଜୁ ସ୍ୱାସ୍ଥ୍ୟ କଲ୍ୟାଣ ଯୋଜନା

- ବିଜୁ ସ୍ୱାସ୍ଥ୍ୟ କଲ୍ୟାଣ ଯୋଜନାରେ ଦୁର୍ବଳ ଆର୍ଥିକ ସ୍ଥିତିରେ ରହିଥିବା ପରିବାର ପାଇଁ ବିନା ଦେୟରେ ଚିକିତ୍ସା ବ୍ୟବସ୍ଥା । ରାଜ୍ୟର ହାରାହାରି ୭୦ ଭାଗ ଲୋକ ପାଇବେ ଏହି ସୁବିଧା ।
- ଜିଲ୍ଲା ମୁଖ୍ୟ ଚିକିତ୍ସାଳୟ ଏବଂ ମେଡିକାଲ୍ କଲେଜରେ ୫ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ମିଳିବ ଏହି ଚିକିତ୍ସା ସୁବିଧା ।

ସୁସ୍ଥ ଓଡ଼ିଶା ସୁଖୀ ଓଡ଼ିଶା

### ସରକାରୀ ସ୍ୱାସ୍ଥ୍ୟ ଅନୁଷ୍ଠାନରେ ବିନା ଦେୟରେ ଚିକିତ୍ସା

- ରାଜ୍ୟର ସମସ୍ତ ସରକାରୀ ସ୍ୱାସ୍ଥ୍ୟ ଅନୁଷ୍ଠାନରେ ବିନା ଦେୟରେ ଚିକିତ୍ସା ସୁବିଧା ।
- ଏହି ଯୋଜନା ସମସ୍ତ ଆର୍ଥିକ ବର୍ଗର ଲୋକମାନଙ୍କ ପାଇଁ ଉଦ୍ଦିଷ୍ଟ ।

ସୁସ୍ଥ ଓଡ଼ିଶା ସୁଖୀ ଓଡ଼ିଶା

### ଗର୍ଭବତୀ ମହିଳା ଓ ଶିଶୁମାନଙ୍କ ଘର ଫେରନ୍ତା ଖର୍ଚ୍ଚ ଭରଣା

- 'ସମ୍ପୂର୍ଣ୍ଣା' କାର୍ଯ୍ୟକ୍ରମ ଅଧୀନରେ ଗର୍ଭବତୀ ମହିଳା ଓ ୧ ବର୍ଷ ପର୍ଯ୍ୟନ୍ତ ଅସୁସ୍ଥ ଶିଶୁଙ୍କୁ ସରକାରୀ ଡାକ୍ତରଖାନାରେ ଚିକିତ୍ସା ପରେ ୫୦୦ ଟଙ୍କାର ଘର ଫେରନ୍ତା ଖର୍ଚ୍ଚ ଭରଣା ।
- ଉକ୍ତ ଅର୍ଥରାଶି ଉପଭୋକ୍ତାଙ୍କ ବ୍ୟାଙ୍କ ଖାତାରେ ସିଧାସଳଖ ଜମା କରାଯିବ ।

ସୁସ୍ଥ ଓଡ଼ିଶା ସୁଖୀ ଓଡ଼ିଶା

ଏହି କାର୍ଯ୍ୟକ୍ରମ ଗୁଡିକ ୧୫ ଅଗଷ୍ଟ ୨୦୧୮ ଠାରୁ କାର୍ଯ୍ୟକାରୀ ହେବ

facebook.com/HFWOdisha http://www.health.odisha.gov.in/ @HFWOdisha

ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ, ଓଡ଼ିଶା ସରକାର





# ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ବିକାଶ

- ନବକଳେବର ୨୦୧୫ ଉପରେ ତା ୧୭.୭.୧୫ରିଖରେ ଏକ ସ୍ମାରକ ଡାକଟିକଟ ଉନ୍ମୋଚିତ ହୋଇଥିଲା ।
- ନବକଳେବର ଉପଲକ୍ଷେ ଜାତୀୟ ଚିତ୍ରଶିଳ୍ପୀ ଶିବିର 'ନୀଳ କନ୍ଦର'ର ଆୟୋଜନ କରାଯାଇଥିଲା ।
- ରାଜ୍ୟ ଅଭିଲେଖାଗାର ତରଫରୁ 'ନବକଳେବର-ଆନ୍ ଆର୍କାଇଭାଲ୍ ଡକୁମେଣ୍ଟ୍' ପ୍ରକାଶିତ ହୋଇଛି ।



- ଆଦିକବି ସାରଳା ଦାସଙ୍କ ନାମରେ ତା ୨୨.୦୨.୨୦୧୭ରିଖରେ ନୂଆଦିଲ୍ଲୀର ଜବାହରଲାଲ୍ ନେହେରୁ ବିଶ୍ୱବିଦ୍ୟାଳୟରେ ଏକ ଓଡ଼ିଆ ଚେୟାର୍ ପ୍ରତିଷ୍ଠା ହୋଇଅଛି । ସେହିପରି କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ନାମରେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ତା ୨୮.୦୨.୨୦୧୮ରିଖରେ ଅନ୍ୟଏକ ଓଡ଼ିଆ ଚେୟାର୍ ମଧ୍ୟ ପ୍ରତିଷ୍ଠା କରାଯାଇଅଛି । ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ଓଡ଼ିଶା ବାହାରେ ଉପରୋକ୍ତ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଚେୟାର୍ ପ୍ରତିଷ୍ଠା କରାଯିବା ଏକ ପ୍ରଥମ ଘଟଣା । ସେହିପରି ଭାରତ ସରକାରଙ୍କ ମାନବ ସମ୍ବଳ ବିକାଶ ମନ୍ତ୍ରଣାଳୟକୁ ଗୁଜୁରାଟର କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟରେ ଏବଂ ହାଇଦ୍ରାବାଦର କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ନିମନ୍ତେ ଗୋଟିଏ ଲେଖାଏଁ ଓଡ଼ିଆ ଚେୟାର୍ ପ୍ରତିଷ୍ଠା ପାଇଁ ପ୍ରସ୍ତାବ ରହିଛି ।
- ଓଡ଼ିଆ ନବବର୍ଷ ତା ୧୪.୦୪.୨୦୧୭ରିଖ ଦିନ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ଓଡ଼ିଆ ଭର୍ଚୁଆଲ୍ ଏକାଡେମୀର ଲୋକାର୍ପଣ କରାଯାଇଛି ।





- ସଂସ୍କୃତି ବିଶ୍ୱବିଦ୍ୟାଳୟର ପୁରାତନ କ୍ୟାମ୍ପସରେ ଓଡ଼ିଆ ଭାଷା ସଂସ୍ଥାନ ପ୍ରତିଷ୍ଠା ନିମନ୍ତେ ମାନବ ସମ୍ବଳ ବିକାଶ ମନ୍ତ୍ରଣାଳୟ, ଭାରତ ସରକାରଙ୍କୁ ପ୍ରସ୍ତାବ ପ୍ରେରଣ କରାଯାଇଛି ।
- ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରାୟ ୧୪ ଖଣ୍ଡ ମୌଳିକ ସୃଜନଶୀଳ ରଚନା ବିଭିନ୍ନ ଭାଷା ଯଥା–ତେଲୁଗୁ, ବଙ୍ଗଳା, ହିନ୍ଦୀ ଏବଂ ଇଂରାଜୀରେ ଅନୁବାଦ ହୋଇଅଛି । ଓଡ଼ିଆ ନବବର୍ଷ ଉପଲକ୍ଷେ ସାତଦିନ ଧରି ସାଂସ୍କୃତିକ କାର୍ଯ୍ୟକ୍ରମରେ ସାହିତ୍ୟ ଏକାଡେମୀ ଦ୍ୱାରା ବିଭିନ୍ନ ଲେଖକଙ୍କର ଅନ୍ୟୂନ ୨୫ ଖଣ୍ଡ ପୁସ୍ତକ ଉନ୍ମୋଚିତ ହୋଇଛି ।
- ପ୍ରଥମଥର ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ତା ୧୭.୦୯.୨୦୧୫ରିଖ ନୂଆଦିଲ୍ଲୀରେ ଆଦିକବି ସାରଳା ଦାସଙ୍କ ଓଡ଼ିଆ ମହାଭାରତର ହିନ୍ଦୀ ଅନୁବାଦ ପୁସ୍ତକ ଲୋକାର୍ପିତ ହୋଇଅଛି ।
- ଓଡ଼ିଆ ଭାଷା ପ୍ରତିଷ୍ଠାନ ଦ୍ୱାରା 'ପ୍ରଶାସନ ଶବ୍ଦକୋଷ' ଏବଂ 'ଓଡ଼ିଆ ଭାଷାର ଇତିବୃତ୍ତ' ପୁସ୍ତକ ପ୍ରକାଶିତ ହୋଇଅଛି ।
- 'ନ' ଅଙ୍କ ଦୁର୍ଭିକ୍ଷ ଏବଂ ଭାରତ ଛାଡ ଆନ୍ଦୋଳନ ଉପରେ ରାଜ୍ୟ ଅଭିଲେଖାଗାର ତରଫରୁ ଦୁଇଖଣ୍ଡ ପୁସ୍ତକ ଉନ୍ମୋଚିତ ହୋଇଛି ।
- ମଧୁବାବୁ ଏବଂ ବିଜୁ ପଟ୍ଟନାୟକଙ୍କ ଉପରେ ଦୁଇଟି ପୁସ୍ତକ ରାଜ୍ୟ ସଂଗ୍ରହାଳୟ ଦ୍ୱାରା ଲୋକାର୍ପଣ କରାଯାଇଛି ।
- ଭୂତପୂର୍ବ ମୁଖ୍ୟମନ୍ତ୍ରୀ ତଥା ସ୍ୱାଧୀନତା ସଂଗ୍ରାମୀ ପ୍ରବାଦ ପୁରୁଷ ସ୍ୱର୍ଗତ ବିଜୁ ପଟ୍ଟନାୟକଙ୍କ ଜନ୍ମ ଶତବାର୍ଷିକୀ ଉପଲକ୍ଷେ ମାର୍ଚ୍ଚ ୫ ତାରିଖ ୨୦୧୬ରେ ୧୦୦ଟଙ୍କା ଏବଂ ୫ ଟଙ୍କାର ସ୍ମାରକୀ ମୁଦ୍ରା ଉନ୍ମୋଚନ କରାଯାଇଅଛି ଏବଂ ତା ୦୫.୦୩.୨୦୧୮ରିଖରେ ଏକ ସ୍ମାରକୀ ଡାକଟିକଟ ଭୁବନେଶ୍ୱରର ଜୟଦେବ ଭବନରେ ଏକ ରାଜ୍ୟସ୍ତରୀୟ ବର୍ଣ୍ଣାଢ୍ୟ ଉତ୍ସବରେ ଉନ୍ମୋଚନ କରାଯାଇଅଛି ।
- ରାଜ୍ୟରେ ଥିବା ଭାଗବତ ଟୁଙ୍ଗୀର ପୁନରୁଦ୍ଧାର ନିମନ୍ତେ ସଂସ୍କୃତି ବିଭାଗ ଦ୍ୱାରା ୩ବର୍ଷ ମଧ୍ୟରେ ୯କୋଟି ଟଙ୍କା ଆବଣ୍ଟନ କରାଯାଇଛି ଓ ୨୦୧୮–୧୯ ଆର୍ଥିକ ବର୍ଷରେ ୯କୋଟି ଟଙ୍କାର ବଜେଟ୍ ବ୍ୟବସ୍ଥା କରାଯାଇଅଛି ।
- ଅଭାବୀ/ଦାରିଦ୍ର୍ୟ କଳାକାର ପେନ୍‌ସନ୍ ବାବଦ ଅର୍ଥ ଟ. ୧୦୦୦/–ରୁ ଟ.୧୨୦୦/–କୁ ବୃଦ୍ଧି କରାଯାଇଛି ଏବଂ କଳାକାର ହିତାଧିକାରୀଙ୍କ ସଂଖ୍ୟା ବୃଦ୍ଧି କରାଯିବା ସହିତ ରାଜ୍ୟର ଦୁଃସ୍ଥ କଳାକାରମାନଙ୍କୁ ସହାୟତା ପ୍ରଦାନ ଉଦ୍ଦେଶ୍ୟରେ 'ମୁଖ୍ୟମନ୍ତ୍ରୀ କଳାକାର ସହାୟତା ଯୋଜନା' ମାଧ୍ୟମରେ ରାଜ୍ୟର ୫୦,୦୦୦ କଳାକାରମାନଙ୍କୁ ଭତ୍ତା ପ୍ରଦାନ କରାଯିବା ନିମନ୍ତେ ନିଷ୍ପତ୍ତି ନିଆଯାଇଅଛି ।
- ନୀଳାଦ୍ରି ବିହାରସ୍ଥିତ ରାଜ୍ୟର ପ୍ରଥମ ଆର୍ଟ ଗ୍ୟାଲେରୀ 'ବୁଦ୍ଧ ଆର୍ଟ ଗ୍ୟାଲେରୀ' ଓଡ଼ିଶାର ସୁନାମଧନ୍ୟ କଳାକାରମାନଙ୍କ ଉପସ୍ଥିତିରେ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ତା ୧୬.୦୭.୧୫ରିଖରେ ଉଦ୍‌ଘାଟନ ହୋଇଅଛି ।
- ସ୍ୱରାଜ ଆଶ୍ରମଠାରେ ହରେକୃଷ୍ଣ ମହତାବ ସଂଗ୍ରହାଳୟ ପ୍ରତିଷ୍ଠା କରାଯାଇଛି ।
- ନଗର କଳା ସଂସ୍କୃତି ସଂଘ ଏବଂ ରାଜ୍ୟ କଳା ସଂସ୍କୃତି ସଂଘ, କଳାକାର ଫେଡେରେସନ୍ ସ୍କିମ୍‌ର ଅଂଶ ହୋଇଥିବା ଦୃଷ୍ଟିରୁ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ଏପ୍ରିଲ୍ ୨,୨୦୧୭ରେ ଉଦ୍‌ଘାଟନ କରାଯାଇଥିଲା । ଅଷ୍ଟମ ଲୋକକଳା ମହୋତ୍ସବରେ 'ଲୋକ କଳା ଗ୍ରାମ'ର ଶୁଭାରମ୍ଭ ହୋଇଛି ।



- ରାଜ୍ୟ କଳା ସଂସ୍କୃତି ସଂଘ ନିମନ୍ତେ ୪କୋଟିର କର୍ପସ ପାଣ୍ଠି ସୃଷ୍ଟି ହୋଇଛି । ଅଦ୍ୟାବଧି ୬୦ଟି ବ୍ଲକ୍ ଏବଂ ପ୍ରାୟ ୧୦୦୦ ଗ୍ରାମରେ ଲୋକକଳା ପରିବେଷଣ କରାଯାଇଛି ।
- ପାଇକ ବିଦ୍ରୋହର ଦୁଇଶହ ବର୍ଷ ପୂର୍ତ୍ତି ଉପଲକ୍ଷେ ରାଜ୍ୟ ସଂଗ୍ରହାଳୟରେ ଏକ ପାଇକ ଗ୍ୟାଲେରୀ ଖୋଲାଯିବା ସହ ଏକ ପ୍ରାମାଣିକ ଚିତ୍ର ପ୍ରସ୍ତୁତ କରାଯାଇଅଛି ।
- ତା ୧୪.୦୪.୨୦୧୭ରିଖ ମହାବିଷୁବ ସଂକ୍ରାନ୍ତିକୁ ଓଡ଼ିଆ ନବବର୍ଷର ଆରମ୍ଭ ଭାବେ ପାଳନ କରିବା ନିମନ୍ତେ ଏପ୍ରିଲ୍ ୦୮,୨୦୧୭ରିଖରୁ ସାତଦିନ ବ୍ୟାପି ଉତ୍ସବ ଉତ୍କଳ ମଣ୍ଡପଠାରେ ଆୟୋଜିତ କରାଯାଇଥିଲା । ଏହି ଅବସରରେ ପ୍ରାୟ ୩୦ ଗୋଟି ପୁସ୍ତକ ଉନ୍ମୋଚିତ ହୋଇଥିଲା ।
- 'ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଭାଗ–୪' ଓ 'ପାଇକ ରିବେଲିୟନ– ଏ ଡକୁମେଣ୍ଟାରୀ ଷ୍ଟଡି' ନାମକ ଦୁଇଟି ପ୍ରତ୍ନତାତ୍ତ୍ୱିକ ପ୍ରକାଶନକୁ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ତା ୦୯.୦୬.୨୦୧୭ରିଖ ଦ୍ୱାରା ଉନ୍ମୋଚିତ ହୋଇଥିଲା ।
- ୨୦୧୭ ମସିହା ଅକ୍ଟୋବର ୨୧ ଓ ୨୨ ତାରିଖରେ ନୂଆଦିଲ୍ଲୀଠାରେ ପାଇକ ବିଦ୍ରୋହ ଉପରେ ଏକ ଜାତୀୟ ଆଲୋଚନାଚକ୍ର ଅନୁଷ୍ଠିତ ହୋଇଥିଲା । ରାଜ୍ୟସ୍ତରୀୟ ପାଇକ ବିଦ୍ରୋହ ଉତ୍ସବ ଖୋର୍ଦ୍ଧାରେ ଉଦ୍‌ଯାପିତ ହୋଇଛି ।
- ତା ୦୫.୦୧.୨୦୧୮ରିଖରେ ମାନ୍ୟବର ସଂସ୍କୃତି ମନ୍ତ୍ରୀ, ଧର୍ମଶାଳା ବିଧାୟକ ଓ ସଂସ୍କୃତି ସଚିବ ମହୋଦୟଙ୍କ ଉପସ୍ଥିତିରେ ଯାଜପୁରର ଧର୍ମଶାଳାଠାରେ ତାରାପୁର ସାଇଟ୍ ସଂଗ୍ରହାଳୟ ଉଦ୍‌ଘାଟନ ହୋଇଥିଲା ।
- ସଂସ୍କୃତି ବିଭାଗକୁ ପର୍ଯ୍ୟଟନ ଓ ସଂସ୍କୃତି ବିଭାଗରୁ ପୃଥକ କରାଯାଇ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ବିଭାଗ ନାମରେ ଏକ ସ୍ୱତନ୍ତ୍ର ବିଭାଗ ଗଠନ କରାଗଲା ।
- କଟକରେ ଥିବା ସ୍ୱର୍ଗତ ବିଜୁ ପଟ୍ଟନାୟକଙ୍କ ପୈତୃକ ବାସସ୍ଥାନ 'ଆନନ୍ଦ ଭବନ'କୁ ଏକ ସଂଗ୍ରହାଳୟ ଓ ପଠନ କେନ୍ଦ୍ର ଭାବରେ ରାଷ୍ଟ୍ରପତି ମହୋଦୟ ଶ୍ରୀ ରାମ ନାଥ କୋବିନ୍ଦଙ୍କ ଦ୍ୱାରା ତା ୧୭.୦୩.୨୦୧୮ରିଖରେ ଜାତି ଉଦ୍ଦେଶ୍ୟରେ ଉତ୍ସର୍ଗ ହୋଇଥିଲା ।





# ବସ୍ତି ବାସିନ୍ଦାମାନଙ୍କ ପାଇଁ ଜମି ଅଧିକାର ଅଧିନିୟମ - ୨୦୧୭




ବସ୍ତି ବାସିନ୍ଦାମାନଙ୍କୁ ଜମି ଅଧିକାର ପ୍ରଦାନ ନିମନ୍ତେ ରାଜ୍ୟ ସରକାରଙ୍କ ଦ୍ୱାରା ଗୃହୀତ 'ବସ୍ତି ବାସିନ୍ଦାମାନଙ୍କ ପାଇଁ ଜମି ଅଧିକାର ଅଧିନିୟମ, ୨୦୧୭' ଏକ ଐତିହାସିକ ପଦକ୍ଷେପ, ଯାହାକି ସମଗ୍ର ଦେଶରେ ସର୍ବ ପ୍ରଥମ ଅଟେ । ରାଜ୍ୟର ବସ୍ତି ବାସିନ୍ଦାମାନଙ୍କ ପାଇଁ ଜମି ଅଧିକାର ନିୟମ, ୨୦୧୭ ଓଡ଼ିଶା ରାଜପତ୍ରରେ ୧୬ ସେପ୍ଟେମ୍ବର, ୨୦୧୭ ପ୍ରକାଶ ପାଇଲା । ଏହି ନିୟମ କାର୍ଯ୍ୟକାରୀ ହେଲେ ୩୦ ଗୋଟି ଜିଲ୍ଲାର ସମସ୍ତ ପୌର ପରିଷଦ ଉପକୃତ ହେବେ । ଏହି ଅଧିନିୟମ ବଳରେ ପ୍ରାୟ ୨୫୦୦ ବସ୍ତିରେ ବାସ କରୁଥିବା ଅନ୍ୟୂନ ଅଢେଇ ଲକ୍ଷ ବସ୍ତିବାସିନ୍ଦା ଜମି ଅଧିକାର ପ୍ରମାଣପତ୍ର ପାଇବେ ।

ସହରାଞ୍ଚଳ ବସ୍ତିରେ ବାସ କରୁଥିବା ଗରିବ ଲୋକମାନେ ଯେଉଁ ଜମି ଅଧିକାର ପାଇବେ ତାହା ବଂଶାନୁକ୍ରମିକ ପ୍ରାପ୍ତ ହେବ, ଯାହାକୁ ବନ୍ଧକ ରଖି ଗୃହ ଋଣ କରିପାରିବେ, ମାତ୍ର ତାହା ହସ୍ତାନ୍ତର ଯୋଗ୍ୟ ନୁହେଁ । ବିଜ୍ଞାପିତ ଅଞ୍ଚଳରେ ସର୍ବାଧିକ ୬୪୬ ବର୍ଗ ଫୁଟ ଏବଂ ପୌର ପରିଷଦ ଅଞ୍ଚଳରେ ସର୍ବାଧିକ ୪୮୪ ବର୍ଗ ଫୁଟ ଜମି ପ୍ରତ୍ୟେକ ବସ୍ତିବାସିନ୍ଦାଙ୍କୁ ପ୍ରଦାନ କରାଯିବ । ଯଦି ରହୁଥିବା ବସ୍ତି ବାସୋପଯୋଗୀ ନୁହେଁ ତେବେ ସ୍ଥାନାନ୍ତର ସମୟରେ ପ୍ରତ୍ୟେକ ବାସିନ୍ଦା ସର୍ବାଧିକ ୩୨୩ ବର୍ଗ ଫୁଟ ଜମି ପାଇବେ । ବସ୍ତିବାସିନ୍ଦାମାନଙ୍କର ସହମତି ଭିତ୍ତିରେ ସ୍ଥାନାନ୍ତର କରାଯିବ ।




ଆର୍ଥିକ ଅନଗ୍ରସର ବର୍ଗର ଲୋକମାନଙ୍କୁ ଜମିରୁ ସର୍ବାଧିକ ୩୨୩ ବର୍ଗଫୁଟ ଜମି ପ୍ରତ୍ୟେକ ବସ୍ତିବାସିନ୍ଦାଙ୍କୁ ମାଗଣାରେ ଯୋଗାଇ ଦିଆଯିବ । ସହରାଞ୍ଚଳରେ ନିର୍ଦ୍ଧାରିତ ଜମିମୂଲ୍ୟର ୨୫ ପ୍ରତିଶତ ଏବଂ ୫୦ ପ୍ରତିଶତ ମୂଲ୍ୟ ଯଥାକ୍ରମେ ଆର୍ଥିକ ଅନଗ୍ରସର ବର୍ଗ ଏବଂ ଧନୀବର୍ଗର ଜନସାଧାରଣଙ୍କୁ ବନ୍ଦୋବସ୍ତ ସମୟରେ ପ୍ରଦାନ କରାଯିବ ।

ବସ୍ତିବାସିନ୍ଦାଙ୍କୁ ବାସ ଉପଯୋଗୀ ଜମି ଅଧିକାର ପ୍ରଦାନ ପ୍ରକ୍ରିୟା ଏହା ଆରମ୍ଭ ମାତ୍ର । ଜମି ଅଧିକାର ପ୍ରମାଣପତ୍ର ପ୍ରଦାନ ପରେ ସମସ୍ତ ଯୋଗ୍ୟ ବ୍ୟକ୍ତି ବିଶେଷଙ୍କୁ ସୁଲଭ ଦରରେ ଗୃହ ଯୋଗାଇ ଦେବା ପାଇଁ ମଧ୍ୟ ବ୍ୟବସ୍ଥା କରାଯାଇଛି । ଜମି ବନ୍ଦୋବସ୍ତ ସମୟରେ ବସ୍ତିବାସିନ୍ଦାମାନଙ୍କଠାରୁ ସଂଗୃହୀତ ଅର୍ଥକୁ 'ସହରାଞ୍ଚଳ ଗରିବ ଜନ କଲ୍ୟାଣ ପାଣ୍ଠି' ଭାବରେ ପ୍ରତ୍ୟେକ ସହରାଞ୍ଚଳ ସ୍ଥାନୀୟ ସଙ୍ଗଠନରେ ଜମା କରାଯିବ, ଯାହାକି ବସ୍ତିମାନଙ୍କରେ ଭିତ୍ତିଭୂମି ନିର୍ମାଣରେ ସହାୟକ ହେବ ।

ପ୍ରଥମ ପର୍ଯ୍ୟାୟରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଗଞ୍ଜାମ ଜିଲ୍ଲାର ୮ ଗୋଟି ପୌର ପରିଷଦ ଏବଂ ପୁରୀ ଜିଲ୍ଲାର ୧ଟି ପୌର ପରିଷଦର ୨୦୦୦ ବସ୍ତିବାସିନ୍ଦାଙ୍କୁ ଟାଟା ଟ୍ରଷ୍ଟର ଅଧ୍ୟକ୍ଷ ରତନ ଟାଟା ଏବଂ ବିଶିଷ୍ଟ ସ୍ଥପତି ଲର୍ଡ ନରମନ୍ ଫଷ୍ଟରଙ୍କ ଉପସ୍ଥିତିରେ ଜମି ଅଧିକାର ପ୍ରମାଣପତ୍ର ଏକ ରାଜ୍ୟସ୍ତରୀୟ ଉତ୍ସବରେ ୭ ମେ, ୨୦୧୮ରେ ଗଞ୍ଜାମ ଜିଲ୍ଲାର ଛତ୍ରପୁରଠାରେ ପ୍ରଦାନ କଲେ । ମାନ୍ୟବର ମୁଖ୍ୟମନ୍ତ୍ରୀ 'ସ୍ୱପ୍ନର ଘର' ଏବେ 'ଜାଗା' ସହରାଞ୍ଚଳର ଗରିବ ବସ୍ତିବାସିନ୍ଦାଙ୍କ ପାଇଁ ଏହି ନୂଆ ଯୋଜନାର ମଧ୍ୟ ଶୁଭାରମ୍ଭ କରିଛନ୍ତି, ଯାହାକି ବସ୍ତିଗୁଡ଼ିକୁ ସ୍ୱପ୍ନର ଘର ନିମନ୍ତେ ପରିବର୍ତ୍ତନ କରିବାକୁ ଲକ୍ଷ୍ୟ ରଖାଯାଇଛି ।







# ସାମ୍ବାଦିକଙ୍କ କଲ୍ୟାଣ ପାଇଁ ମୁଖ୍ୟମନ୍ତ୍ରୀଙ୍କ ଯୁଗାନ୍ତକାରୀ ପଦକ୍ଷେପ

ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ସଚିବାଳୟରେ ରାଜ୍ୟର କାର୍ଯ୍ୟରତ ସାମ୍ବାଦିକମାନଙ୍କ ପାଇଁ ଅନେକ ଯୁଗାନ୍ତକାରୀ କଲ୍ୟାଣ ଯୋଜନା କାର୍ଯ୍ୟକାରୀ କରିବା ପାଇଁ ନିଷ୍ପତ୍ତି ଗ୍ରହଣ କରିଛନ୍ତି । ସୂଚନାଯୋଗ୍ୟ ଯେ ନିକଟରେ ମୁଖ୍ୟମନ୍ତ୍ରୀ ସାମ୍ବାଦିକମାନଙ୍କ ପାଇଁ ଗୋପବନ୍ଧୁ ସାମ୍ବାଦିକ ସ୍ୱାସ୍ଥ୍ୟବୀମା ଯୋଜନା ଘୋଷଣା କରିଥିଲେ । ୨୦୧୮ ଜୁନ୍ ପହିଲାଠାରୁ କାର୍ଯ୍ୟକାରୀ ହୋଇଥିବା ଏହି ଯୋଜନାରେ ପ୍ରଥମ ପର୍ଯ୍ୟାୟରେ ୩୨୩୩ ଜଣ ସାମ୍ବାଦିକ ଅନ୍ତର୍ଭୁକ୍ତ ହୋଇଛନ୍ତି । ବୈଠକର ନିଷ୍ପତ୍ତି ଅନୁଯାୟୀ-

- କାର୍ଯ୍ୟରତ ସାମ୍ବାଦିକଙ୍କ ପାଇଁ ୪ ଲକ୍ଷ ଟଙ୍କାର ମୃତ୍ୟୁକାଳୀନ ସହାୟତା
- ସାମ୍ବାଦିକଙ୍କ ୨ଲକ୍ଷ ଟଙ୍କା ପର୍ଯ୍ୟନ୍ତ ବୀମା ସୁବିଧା ସହିତ ଅଧିକ ଆର୍ଥିକ ସହାୟତାର ବ୍ୟବସ୍ଥା । ଯଦି କୌଣସି କ୍ଷେତ୍ରରେ ସ୍ୱାସ୍ଥ୍ୟ ଖର୍ଚ୍ଚ ୨ ଲକ୍ଷ ଟଙ୍କାରୁ ଅଧିକ ହୁଏ, ତେବେ ସ୍ୱାସ୍ଥ୍ୟଶିକ୍ଷା ଓ ପ୍ରଶିକ୍ଷଣ ନିର୍ଦ୍ଦେଶାଳୟର ଅନୁମତିକ୍ରମେ ଅଧିକ ସହାୟତାର ବ୍ୟବସ୍ଥା କରାଯିବ ।

**ସ୍ୱାସ୍ଥ୍ୟ ବୀମା ସହିତ ଅଧିକ ଆର୍ଥିକ ସହାୟତା, ମୃତ୍ୟୁକାଳୀନ ସହାୟତା ଏବଂ ଆହୁରି ଅନେକ ସହାୟତା ଘୋଷଣା**

- ୨୫ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ଗୃହ ଋଣ ଉପରେ ୩ ପ୍ରତିଶତ ସୁଧ ଛାଡ । ଋଣ କରିଥିବା ସାମ୍ବାଦିକ ତାଙ୍କର ନିୟମିତ ଦେୟ ପ୍ରଦାନ କରିସାରିବା ପରେ ଏହି ଛାଡ ପରିମାଣ ପ୍ରତି ବର୍ଷ ପ୍ରଦାନ କରାଯିବ ।
- ୪ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ଚାରି ଚକିଆ ଯାନ ଋଣ ଉପରେ ୩ ପ୍ରତିଶତ ସୁଧ ଛାଡ । ଋଣ କରିଥିବା ସାମ୍ବାଦିକ ତାଙ୍କର ନିୟମିତ ଦେୟ ପ୍ରଦାନ କରିସାରିବା ପରେ ଏହି ଛାଡ ପରିମାଣ ପ୍ରତି ବର୍ଷ ପ୍ରଦାନ କରାଯିବ ।
- ୫୦ ହଜାର ଟଙ୍କା ପର୍ଯ୍ୟନ୍ତ ଦୁଇଚକିଆ ଯାନ ଋଣ ଉପରେ ୩ ପ୍ରତିଶତ ସୁଧ ଛାଡ । ଋଣ କରିଥିବା ସାମ୍ବାଦିକ ତାଙ୍କର ନିୟମିତ ଦେୟ ପ୍ରଦାନ କରିସାରିବା ପରେ ଏହି ଛାଡ ପରିମାଣ ପ୍ରତି ବର୍ଷ ପ୍ରଦାନ କରାଯିବ ।
- ଯଦି କୌଣସି ସାମ୍ବାଦିକ ସ୍ଥାୟୀଭାବେ ଅକ୍ଷମ ହୁଅନ୍ତି, ସେ କ୍ଷେତ୍ରରେ ତାଙ୍କୁ ୨ ଲକ୍ଷ ଟଙ୍କାର ଆର୍ଥିକ ସହାୟତା ଦିଆଯିବ ।
- କାର୍ଯ୍ୟରତ ସାମ୍ବାଦିକଙ୍କ ମୃତ୍ୟୁ କ୍ଷେତ୍ରରେ ସେମାନଙ୍କ ପିଲାମାନଙ୍କ ଶିକ୍ଷା ପାଇଁ ସହାୟତା ଦିଆଯିବ । ଦଶମ ଶ୍ରେଣୀ ପର୍ଯ୍ୟନ୍ତ ମାସିକ ୧୫୦୦ ଟଙ୍କା ଏବଂ ଉଚ୍ଚ ଶିକ୍ଷା ପାଇଁ ମାସିକ ୨୫୦୦ ଟଙ୍କା ପ୍ରଦାନ କରାଯିବ ।
- ସାମ୍ବାଦିକମାନଙ୍କୁ ବୃତ୍ତିଗତ ପ୍ରଶିକ୍ଷଣ ଦେବା ପାଇଁ ସରକାର ସହାୟତା ଯୋଗାଇଦେବେ । ଆଇ.ଆଇ.ଏମ୍.ସି ପରି ସଂସ୍ଥାଗୁଡ଼ିକରେ ୨୫ରୁ ୩୫ ଜଣ ସାମ୍ବାଦିକଙ୍କୁ ରାଜ୍ୟ ଭିତରେ ୩ ଦିନିଆ ଏକ ସପ୍ତାହ କିମ୍ବା ଦୁଇ ସପ୍ତାହ ପର୍ଯ୍ୟନ୍ତ ପ୍ରଶିକ୍ଷଣ ଦିଆଯିବ । ରାଜ୍ୟ ସରକାର ୫ ବର୍ଷିଆ ବ୍ଲକ୍ ପିରିୟଡ ମଧ୍ୟରେ ଜଣ ପିଛା ୧୦,୦୦୦ ଟଙ୍କା ପର୍ଯ୍ୟନ୍ତ ଖର୍ଚ୍ଚ ବହନ କରିବେ ।

ଏହିସବୁ ସୁବିଧାଗୁଡ଼ିକ ତୁରନ୍ତ କାର୍ଯ୍ୟକାରୀ କରିବା ପାଇଁ ମୁଖ୍ୟମନ୍ତ୍ରୀ ବିଭାଗୀୟ ଅଧିକାରୀମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ । ବୈଠକରେ ସ୍ୱାସ୍ଥ୍ୟ, ପରିବାର କଲ୍ୟାଣ ଏବଂ ସୂଚନା ଓ ଲୋକସମ୍ପର୍କ ମନ୍ତ୍ରୀ ଶ୍ରୀ ପ୍ରତାପ ଜେନା, ମୁଖ୍ୟ ଶାସନ ସଚିବ ଶ୍ରୀ ଆଦିତ୍ୟ ପ୍ରସାଦ ପାଢ଼ୀ, ସୂଚନା ଓ ଲୋକସମ୍ପର୍କ ବିଭାଗ ଶାସନ ସଚିବ ଶ୍ରୀ ହେମନ୍ତ ଶର୍ମା, ନିର୍ଦ୍ଦେଶକ ଓ ବରିଷ୍ଠ ଅଧିକାରୀମାନେ ଉପସ୍ଥିତ ଥିଲେ ।



# ଓଡ଼ିଶା ସହରାଞ୍ଚଳ ବାସଗୃହ ମିଶନ ପରିଚାଳିତ ବାସଗୃହ ଯୋଜନା

**ଲକ୍ଷ୍ୟ:** ଓଡ଼ିଶାର ସହରାଞ୍ଚଳରେ ବସବାସ କରୁଥିବା ସମସ୍ତ ବ୍ୟକ୍ତିଙ୍କ ପାଇଁ ସ୍ୱଳ୍ପ ମୂଲ୍ୟରେ ବାସଗୃହର ବିବିଧ ବିକଳ୍ପ ଉପଲବ୍ଧ ହେବା ।

**ଉଦ୍ଦେଶ୍ୟ:** ୭ ବର୍ଷ ମଧ୍ୟରେ ରାଜ୍ୟର ବାସଗୃହ ନିଅଣ୍ଟକୁ ସମ୍ପୂର୍ଣ୍ଣ ଦୂରୀଭୂତ କରିବା ପାଇଁ ସ୍ୱଳ୍ପ ମୂଲ୍ୟରେ ଉପଲବ୍ଧ ହୋଇପାରୁଥିବା ବାସଗୃହ ସମୂହର ନିରବଛିନ୍ନ ନିର୍ମାଣ ।

**କାର୍ଯ୍ୟକାରିଣୀ ସଂସ୍ଥା:** ଓଡ଼ିଶା ସହରାଞ୍ଚଳ ବାସଗୃହ ମିଶନ ଏବଂ ୩୧ଗୋଟି ଜିଲ୍ଲା ସହରାଞ୍ଚଳ ବାସଗୃହ ସଙ୍ଗଠନ ଓଡ଼ିଶା ସହରାଞ୍ଚଳ ବାସଗୃହ ମିଶନର ଶୁଭାରମ୍ଭ ୧୯.୦୧.୨୦୧୬ ତାରିଖ ଦିନ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ଉଦ୍‌ଘାଟିତ ।

**ନୀତିଗତ ଢାଞ୍ଚା:** ଓଡ଼ିଶା ସହରାଞ୍ଚଳରେ ସମସ୍ତଙ୍କ ପାଇଁ ଗୃହ ନୀତି- ୨୦୧୫

**କାର୍ଯ୍ୟ ସମ୍ପାଦନ ଢାଞ୍ଚା:** ସ୍ୱଳ୍ପ ମୂଲ୍ୟରେ ଉପଲବ୍ଧ ହେଉଥିବା ବାସଗୃହର ସାତୋଟି ନମୁନା ପ୍ରସ୍ତୁତ ହୋଇଛି, ଯେଉଁଥିରେ ପ୍ରଧାନମନ୍ତ୍ରୀ ଆବାସ ଯୋଜନାର ତିନୋଟି ମୁଖ୍ୟ ଅଂଶ ଯଥା ହିତାଧିକାରୀ କୃତ ବାସଗୃହ ନିର୍ମାଣ, ଭାଗୀଦାରୀ ଭିତ୍ତିରେ ସୁଲଭ ଗୃହନିର୍ମାଣ, ସ୍ୱସ୍ଥାନ ବସ୍ତି ପୁନଃ ଉନ୍ନୟନ ଯୋଜନା ବ୍ୟତୀତ Rental Housing ଯୋଜନା ମଧ୍ୟ ସମାବେଶିତ ହୋଇଛି ।

**ବାଧ୍ୟତାମୂଳକ ବ୍ୟବସ୍ଥା:** ସହରାଞ୍ଚଳରେ ବାସଗୃହ ନିର୍ମାଣକାରୀ ସରକାରୀ ଏବଂ ବେସରକାରୀ ସଂସ୍ଥାମାନଙ୍କ ପ୍ରକଳ୍ପଗୁଡିକରେ ୨୦ ପ୍ରତିଶତ ଏବଂ ୧୦ ପ୍ରତିଶତ ଗୃହ ସହରର ଗରିବ ଜନସାଧାରଣଙ୍କ ପାଇଁ ସଂରକ୍ଷିତ ରଖିବା ବ୍ୟବସ୍ଥା ।

**ଓଡ଼ିଶା ସହରାଞ୍ଚଳ ବାସଗୃହ ମିଶନର ଉପଲବ୍ଧି**

୧. ଆଇଏସ୍ଏଚ୍‌ଡିପି ପ୍ରକଳ୍ପ ଅନ୍ତର୍ଗତ ୧୦,୮୨୦ଟି, ବିଏସ୍ୟୁପି ପ୍ରକଳ୍ପ ଅନ୍ତର୍ଗତ ୧,୭୩୮ଟି, ରାଜୀବ ଆବାସ ଯୋଜନା ଅନ୍ତର୍ଗତ ୨୭୪୨ଟି ଏବଂ ପ୍ରଧାନମନ୍ତ୍ରୀ ଆବାସ ଯୋଜନା ଅନ୍ତର୍ଗତ ୨୩୯୭ଟି ଗୃହ ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇଛି ।

୨. ପ୍ରଧାନମନ୍ତ୍ରୀ ଆବାସ ଅନ୍ତର୍ଗତ ବିଏଲ୍‌ସି ପ୍ରକଳ୍ପ ନିମନ୍ତେ ୫୪୨୭୨ଟି, ଏଏଚ୍‌ପି ପ୍ରକଳ୍ପ ନିମନ୍ତେ ୬୪୬୨ଟି ଏବଂ ଆଇଏସ୍ଏସ୍ଆର୍ ପ୍ରକଳ୍ପ ନିମନ୍ତେ ୭୩୦୦ଟି ବାସଗୃହ ନିର୍ମାଣ ପାଇଁ ମଞ୍ଜୁରୀ ମିଳିଛି ।

୩. ପ୍ରଧାନମନ୍ତ୍ରୀ ଆବାସ ଯୋଜନା ଅନ୍ତର୍ଗତ ୨୧୫୭୬ଟି ଗୃହ, ରାଜୀବ ଆବାସ ଯୋଜନା ଅନ୍ତର୍ଗତ ୨୯୪୮ଟି ଗୃହ ନିର୍ମାଣ କାର୍ଯ୍ୟ ଚୂଡାନ୍ତ ପର୍ଯ୍ୟାୟରେ ପହଞ୍ଚିଛି ଏବଂ ଏଗୁଡିକ ଡିସେମ୍ବର ୨୦୧୮ ସୁଦ୍ଧା ସମ୍ପୂର୍ଣ୍ଣ ହେବ ।



୪. ଏଯାବତ ବାସଗୃହ ପ୍ରକଳ୍ପମାନଙ୍କ ପାଇଁ ସମୁଦାୟ ୯୧୭୨୬.୫୦ ଲକ୍ଷ ଟଙ୍କା ବ୍ୟୟ କରାଯାଇଅଛି ।

## ଓଡ଼ିଶା ସହରାଞ୍ଚଳ ବାସଗୃହ ମିଶନର ମୂଳଭୁତ ଶକ୍ତି

**କ- ସ୍ୱଚ୍ଛତା:** ହିତାଧିକାରୀଙ୍କ ବ୍ୟାଙ୍କ ଜମା ଖାତାକୁ ସିଧାସଳଖ ଆର୍ଥିକ ସହାୟତା ରାଶି ପ୍ରେରଣ କରିବା, ପ୍ରଭାବଶାଳୀ ଅଭିଯୋଗ ଶୁଣାଣି ବ୍ୟବସ୍ଥା, ଗୋଷ୍ଠୀ ସମୀକ୍ଷା ବ୍ୟବସ୍ଥା, ବହୁସ୍ତରୀୟ ପର୍ଯ୍ୟବେକ୍ଷଣ ବ୍ୟବସ୍ଥା ଇତ୍ୟାଦିର ପ୍ରଚଳନ ଯୋଗୁଁ ସମ୍ପୂର୍ଣ୍ଣ ସ୍ୱଚ୍ଛତା ନିଶ୍ଚିତ ହୋଇପାରିଛି ।

**ଖ- ବୈଷୟିକ ଜ୍ଞାନକୌଶଳ ପ୍ରୟୋଗ:** ଆଧୁନିକ ବୈଷୟିକ ବିଦ୍ୟା ମାଧ୍ୟମରେ Electronic fund management system ପାଇଁ ଏକ ସ୍ୱତନ୍ତ୍ର ପ୍ରୟୋଗ ଡିବିଟି-ଓପିଏସ୍ ନାମରେ ପ୍ରଚଳିତ କରାଯାଇ ସ୍ୱଚ୍ଛତା ଏବଂ ପାରଦର୍ଶିତାକୁ ବହୁଗୁଣିତ କରାଯାଇପାରିଛି ।

**ଗ- ଦଳଗତ କାର୍ଯ୍ୟ:** ଜିଲ୍ଲାପାଳ ତଥା ପୌର କମିଶନରମାନଙ୍କୁ ଆର୍ଥିକ ସହାୟତା ରାଶି ଅନୁମୋଦନ କ୍ଷମତା ହସ୍ତାନ୍ତର କରାଯାଇଛି ଏବଂ ସେମାନଙ୍କ ଅଧୀନରେ ୭୨ଜଣ ପେଶାଦାର ଇଞ୍ଜିନିୟରମାନଙ୍କୁ ନିଯୁକ୍ତକରି ପୌର, ଜିଲ୍ଲା ଏବଂ ରାଜ୍ୟସ୍ତରର ସମସ୍ତ ସଂସ୍ଥାକୁ ଏକୀକୃତ କରାଯାଇପାରିଛି ।

**ଘ- ବିଶ୍ୱାସ:** ସମ୍ପୂର୍ଣ୍ଣ ସ୍ୱଚ୍ଛତା ଅବଲମ୍ବନ ପୂର୍ବକ ଯଥା ସମୟରେ ହିତାଧିକାରୀମାନଙ୍କୁ ସହାୟତା ପ୍ରଦାନ କରିବା ଦ୍ୱାରା ଓୟୁଏଚ୍ଏମ୍ ସର୍ବସାଧାରଣଙ୍କ ବିଶ୍ୱାସଭାଜନ ହୋଇଛି ।

## ପୁରସ୍କାର/ସ୍ୱୀକୃତି

କେନ୍ଦ୍ର ସରକାରଙ୍କ ସଂସ୍ଥା ଏଚ୍‌ୟୁଡିସିଓ ତା ୨୫.୦୪.୨୦୧୮ରିଖରେ ଦିଲ୍ଲୀଠାରେ ରାଜ୍ୟ ଗୃହ ଏବଂ ନଗର ଉନ୍ନୟନ ବିଭାଗକୁ ଡିବିଟି-ଓପିଏସ୍ ପ୍ରୟୋଗର ପ୍ରବର୍ତ୍ତନ କରି ସହରାଞ୍ଚଳରେ ବାସୋପଯୋଗୀ ବାତାବରଣ ସୃଷ୍ଟିକରିବା ଭଳି ଉତ୍କୃଷ୍ଟ ପରମ୍ପରା ପ୍ରଚଳନ କରିଥିବା ନିମନ୍ତେ ପୁରସ୍କୃତ କରିଛନ୍ତି ।





# ସହରୀ ରୂପାନ୍ତରୀକରଣ : ରାଜ୍ୟ ସରକାରଙ୍କ ଏକ ଯୁଗାନ୍ତକାରୀ ପଦକ୍ଷେପ

କ୍ରମ ବର୍ଦ୍ଧିଷ୍ଣୁ ସହରୀ ଜୀବନକୁ ଆହୁରି ବିକଶିତ କରିବା ପାଇଁ ଓଡ଼ିଶା ସରକାରଙ୍କର ପ୍ରୟାସ ହେଉଛି 'ଉନ୍ନତି' ବା ସହରୀ ରୂପାନ୍ତରୀକରଣର ସୂତ୍ରପାତ ଯୋଜନା । ଏହି ଯୋଜନା ସମସ୍ତ ଯୋଜନାର ଏକ ସମାହାର । ଓଡ଼ିଶାର ସମସ୍ତ ଛୋଟ ବଡ ସହରରେ ବିକାଶର ସ୍ୱାଦ ପହଞ୍ଚାଇବା ଏହି ଯୋଜନାର ମୂଳ ଲକ୍ଷ୍ୟ । ସୁସଂଗଠିତ, ବିଧିବଦ୍ଧ ଯୋଜନା ଅନୁଯାୟୀ ଧାର୍ଯ୍ୟ ସମୟ ଅନୁସାରେ ପୌରାଞ୍ଚଳମାନଙ୍କରେ ଆବଶ୍ୟକ ହେଉଥିବା ପରିକଳ୍ପନାକୁ କାର୍ଯ୍ୟକ୍ଷମ କରିବାର ଲକ୍ଷ୍ୟ ନେଇ ଏହି ଯୋଜନା ପ୍ରଣୟନ କରାଯାଇଅଛି ।

ଏହି ଯୋଜନା ମାଧ୍ୟମରେ ପୌରାଞ୍ଚଳମାନଙ୍କରେ ଥିବା କଚ୍ଚା ସଡକକୁ ସିମେଣ୍ଟ କଂକ୍ରିଟ ରୋଡରେ ପରିଣତ କରିବା ସହିତ ଉପଯୁକ୍ତ ଡ୍ରେନର ବ୍ୟବସ୍ଥା କରିବା, ସାମାଜିକ ଭିତ୍ତିଭୂମି ଯଥା, ଭେଣ୍ଡିଂ ଜୋନ, ପାର୍କ, ଶ୍ମଶାନ ଘାଟ ଇତ୍ୟାଦିର ଉନ୍ନତିକରଣ । ଏତଦ୍ ଭିନ୍ନ ପୌରାଞ୍ଚଳର ସମସ୍ତ ପାରମ୍ପରିକ ଷ୍ଟ୍ରିଟ ଲାଇଟକୁ ସ୍ମାର୍ଟ ଏଲ୍ଇଡି ଲାଇଟରେ ପରିଣତ କରାଯିବାକୁ ଲକ୍ଷ୍ୟ ରଖାଯାଇଛି ।

ଗତବର୍ଷ ନୂତନ ଭାବେ ଏହି ଯୋଜନାରେ ୬୩୩.୪୨୯୦ କୋଟି ଟଙ୍କା ବ୍ୟୟବରାଦ ହୋଇଥିଲା । ଉକ୍ତ ଅର୍ଥ ସମସ୍ତ ଜିଲ୍ଲା ସହରାଞ୍ଚଳ ବିକାଶ ସଂସ୍ଥାର ପ୍ରକଳ୍ପ ନିର୍ଦ୍ଦେଶକମାନଙ୍କୁ ମହାନଗର ନିଗମ, ପୌରାଞ୍ଚଳ ଓ ବିଜ୍ଞାପିତ ଅଞ୍ଚଳ ପରିଷଦର ପ୍ରତ୍ୟେକ ୱାର୍ଡ ୱାରି ଯଥାକ୍ରମେ ୫୦.୦୦ଲକ୍ଷ ଟଙ୍କା, ୨୫.୦୦ ଲକ୍ଷ ଟଙ୍କା ଓ ୧୫.୦୦ ଲକ୍ଷ ଟଙ୍କା ହିସାବରେ ପ୍ରଦାନ କରାଯାଇଅଛି । ବର୍ତ୍ତମାନ ଉକ୍ତ ଅର୍ଥ ବିନିଯୋଗ ପାଇଁ ସମ୍ପୃକ୍ତ ଜିଲ୍ଲା ସହରାଞ୍ଚଳ ବିକାଶ ସଂସ୍ଥାର ପ୍ରକଳ୍ପ ନିର୍ଦ୍ଦେଶକ ମୋଟ ୧୧,୬୨୨ ଗୋଟି ପ୍ରକଳ୍ପ ବିଭିନ୍ନ ନିକାୟ ସଂସ୍ଥାରେ କାର୍ଯ୍ୟକାରୀ ନିମନ୍ତେ ଅନୁମୋଦନ କରିଥିବାବେଳେ ୩୦୭୨ ପ୍ରକଳ୍ପ ପାଇଁ କାର୍ଯ୍ୟାଦେଶ ପ୍ରଦାନ କରାଯାଇଅଛି ଓ ୩୪୮୨ ପ୍ରକଳ୍ପ ପାଇଁ ନିବିଦା ଆହ୍ୱାନ କରାଯାଇଅଛି । ଏତଦ ବ୍ୟତୀତ, ସମସ୍ତ ପୌରାଞ୍ଚଳରେ ପାରମ୍ପରିକ ଆଲୋକ ବଦଳରେ ଏଲ୍ଇଡି ଲାଇଟ ମାଧ୍ୟମରେ ରାସ୍ତାର ଆଲୋକୀକରଣ ନିମନ୍ତେ ଆବଶ୍ୟକୀୟ ଅର୍ଥ ବ୍ୟବସ୍ଥା କରାଯାଇଅଛି ।





# ଆହାର

ସହରାଞ୍ଚଳର ଗରିବ ଓ ଅଭାବି ଲୋକମାନଙ୍କୁ ୫ଟଙ୍କା ସୁଲଭ ମୂଲ୍ୟରେ ଖାଦ୍ୟ (ଗରମ ଭାତ, ଡାଲମା) ଯୋଗାଇଦେବା ପାଇଁ ଅପ୍ରେଲ ପହିଲା ୨୦୧୫ ମସିହାରୁ ଆହାର କାର୍ଯ୍ୟକ୍ରମର ଶୁଭାରମ୍ଭ ହୋଇଥିଲା । ପ୍ରାଥମିକ ପର୍ଯ୍ୟାୟରେ ଏହି କାର୍ଯ୍ୟକ୍ରମ ରାଜ୍ୟର ୫ଟି ମହାନଗର ନିଗମରେ ୨୧ଗୋଟି ଆହାର କେନ୍ଦ୍ର ମାଧ୍ୟମରେ ଦୈନିକ ୨୨୦୦୦ ହିତାଧିକାରୀଙ୍କ ପାଇଁ କାର୍ଯ୍ୟକ୍ଷମ




ହୋଇଥିଲା । ଏହି ଆହାର କେନ୍ଦ୍ରଗୁଡିକ ସହରାଞ୍ଚଳର ଜନବହୁଳ ସ୍ଥାନ ଯଥା, ହସପିଟାଲ, ବସଷ୍ଟାଣ୍ଡ, ରେଳଷ୍ଟେସନ ଆଦି ଅଞ୍ଚଳରେ ଅବସ୍ଥାପିତ କରାଯାଇଅଛି । ଏହି ଆହାର କାର୍ଯ୍ୟକ୍ରମର ସଫଳ କାର୍ଯ୍ୟକାରିତା ପାଇଁ ରାଜ୍ୟସ୍ତରରେ 'ଓଡ଼ିଶା ରାଜ୍ୟ





ଆହାର ସମିତି' ପ୍ରତିଷ୍ଠା କରି Societies Registration Act, 1860 (XXXI of 1860) ଅନୁସାରେ ପଞ୍ଜୀକୃତ କରାଯାଇଅଛି । ସମାନୁପାତିକ ହିସାବରେ ଜିଲ୍ଲାସ୍ତରରେ ମଧ୍ୟ 'ଜିଲ୍ଲା ଆହାର ସମିତି' ପ୍ରତିଷ୍ଠା କରାଯାଇ ଉପରୋକ୍ତ ଆଇନ ଅନୁସାରେ ପଞ୍ଜୀକୃତ କରାଯାଇଅଛି ।

ଏହି ଆହାର କାର୍ଯ୍ୟକ୍ରମର ବହୁଳ ଜନାଦୃତି ତଥା ବିଭିନ୍ନ ଜିଲ୍ଲାର ଜିଲ୍ଲାପାଳମାନଙ୍କ ପ୍ରସ୍ତାବକୁ ଅନୁଶୀଳନ କରି ଏହି କାର୍ଯ୍ୟକ୍ରମକୁ ୨୦୧୬ ମସିହାରେ ରାଜ୍ୟର ସମସ୍ତ ୩୦ଗୋଟି ଜିଲ୍ଲାକୁ ସମ୍ପ୍ରସାରିତ କରାଯାଇ ୧୧୧ଟି ଆହାରକେନ୍ଦ୍ର ସ୍ଥାପନ କରାଯାଇଥିଲା ।

ଏହି କ୍ରମରେ ୨୦୧୭ ମସିହାରେ ଆଉ ୧୩ଗୋଟି ଆହାର କେନ୍ଦ୍ର ଅନୁମୋଦିତ ହୋଇଥିଲା । ଅଧୁନା ରାଜ୍ୟର ୩୦ଟି ଜିଲ୍ଲାରେ ସର୍ବମୋଟ ୧୨୪ଟି ଅନୁମୋଦିତ ଆହାର କେନ୍ଦ୍ରଗୁଡିକ ମଧ୍ୟରୁ ୧୧୫ ଗୋଟି ଆହାର କେନ୍ଦ୍ର କାର୍ଯ୍ୟକ୍ଷମ ଅଛନ୍ତି । ଏହି ୧୧୫ଟି ଆହାର କେନ୍ଦ୍ର ମାଧ୍ୟମରେ ଦୈନିକ ପ୍ରାୟ ୭୦,୦୦୦ ହିତାଧିକାରୀ ଉପକୃତ ହୋଇପାରୁଛନ୍ତି ।

ରାଜ୍ୟରେ 'ଆହାର କାର୍ଯ୍ୟକ୍ରମ'ରେ ନିୟୋଜିତ ସମସ୍ତ ଆହାର କେନ୍ଦ୍ରର ପରିଚାଳନା ସଂସ୍ଥା ପ୍ରତ୍ୟେକ ଭୋଜନ ପିଛା ଓଡ଼ିଶା ଜିଲ୍ଲା ଆହାର ସମିତିଠାରୁ ୧୫ଟଙ୍କା ଏବଂ ହିତାଧିକାରୀଙ୍କଠାରୁ ୫ଟଙ୍କା ଏହିପରି ସର୍ବମୋଟ ୨୦ ଟଙ୍କା ପାଇଥାଆନ୍ତି । ସମ୍ପୃକ୍ତ ଅର୍ଥ 'ମୁଖ୍ୟମନ୍ତ୍ରୀଙ୍କ ସହାୟତା ପାଣ୍ଠି' ତଥା ନିଗମ ନିକାୟ ସାମାଜିକ ଦାୟିତ୍ୱବୋଧ ପାଣ୍ଠିରୁ ପ୍ରାପ୍ତ ହୋଇଥାଏ ।





# ଜଳସେଚନର ବିକାଶ ଓ ସୁବିନିଯୋଗ ରାଜ୍ୟ ସରକାରଙ୍କ ପ୍ରାଥମିକତା ।

## ଜଳ ସମ୍ପଦ ବିଭାଗ ପକ୍ଷରୁ କରାଯାଇଥିବା କାର୍ଯ୍ୟର ବିବରଣୀ

ରାଜ୍ୟ ସରକାର ଜଳସେଚନର ବିକାଶ ଓ ସୁବିନିଯୋଗ ପାଇଁ ସର୍ବଦା ପ୍ରାଥମିକତା ଦେଇଆସୁଛନ୍ତି । ଯୋଜନାଗୁଡିକର ସଫଳ ରୂପାୟନ ପାଇଁ ଜଳସମ୍ପଦ ବିଭାଗର ବ୍ୟୟ ଅଟକଳ ଆଶାନୁରୂପ ଭାବେ ବୃଦ୍ଧି କରାଯାଇଛି । ୨୦୧୩–୧୪ ମସିହାରେ ୪ ହଜାର ୨୪ କୋଟି ଟଙ୍କା ବ୍ୟୟ ଅଟକଳ ଥିବାବେଳେ ଏହାକୁ ବୃଦ୍ଧି କରାଯାଇ ୨୦୧୮–୧୯ ଆର୍ଥିକ ବର୍ଷରେ ୧୦ ହଜାର ୧୯୬ କୋଟି ଟଙ୍କାକୁ କରାଯାଇଅଛି ।

ରାଜ୍ୟ ସରକାର ୨୦୧୪ ମସିହାରେ ୫ ବର୍ଷ ମଧ୍ୟରେ ଅଧିକ ୧୦ ଲକ୍ଷ ହେକ୍ଟର ଚାଷ ଜମିକୁ ଜଳସେଚନ ସୁବିଧା ଯୋଗାଇ ଦେବା ପାଇଁ ପ୍ରତିଶ୍ରୁତି ଦେଇଥିଲେ । ତନ୍ମଧ୍ୟରୁ ବିଗତ ୪ବର୍ଷ ମଧ୍ୟରେ ୭ ଲକ୍ଷ ହେକ୍ଟରରୁ ଅଧିକ ଚାଷ ଜମିପାଇଁ ଜଳସେଚନ ସୁବିଧା ସୃଷ୍ଟି କରାଯାଇଅଛି । ଚଳିତ ଆର୍ଥିକ ବର୍ଷରେ ଅବଶିଷ୍ଟ ଚାଷଜମିକୁ ଜଳସେଚନ ଯୋଗାଇ ଦେବାପାଇଁ ଉଦ୍ୟମ ଜାରି ରହିଛି ।

**ବୃହତ୍ ଓ ମଧ୍ୟମ ଜଳସେଚନ:** ଇନ୍ଦ୍ରାବତୀ ବୃହତ୍ ଜଳସେଚନ ପ୍ରକଳ୍ପର କେନାଲ ସଂପ୍ରସାରଣ ସମ୍ପୂର୍ଣ୍ଣ କରାଯାଇ କଳାହାଣ୍ଡି ଜିଲ୍ଲାର ୨୫ ହଜାର ୪୮୪ ହେକ୍ଟର ଏବଂ ଟିଟିଲାଗଡ ମଧ୍ୟମ ଜଳସେଚନ ପ୍ରକଳ୍ପକୁ କାର୍ଯ୍ୟକ୍ଷମ କରାଯାଇ ବଲାଙ୍ଗୀର ଜିଲ୍ଲାର ୨ ହଜାର ହେକ୍ଟର ଚାଷଜମିକୁ ଜଳସେଚିତ କରାଯାଇଅଛି । ଏତଦ୍‌ବ୍ୟତୀତ ରେଙ୍ଗାଲି ଜଳସେଚନ ପ୍ରକଳ୍ପର ଗଁନ୍ଦିଆ ବ୍ରାଞ୍ଚ କେନାଲକୁ ମଧ୍ୟ କାର୍ଯ୍ୟକ୍ଷମ କରାଯାଇ ଢେଙ୍କାନାଳ ଜିଲ୍ଲାର ୧୧ ହଜାର ହେକ୍ଟର ଚାଷଜମିକୁ ଜଳସେଚନ ସୁବିଧା ଯୋଗାଇ ଦିଆଯାଇଛି । ଚଳିତବର୍ଷ ଖରିଫ ଋତୁରେ ରୁକୁରା, ରେତ୍, ତେଲେଙ୍ଗିରୀ ଏବଂ ଲୋୟର ଇନ୍ଦ୍ର ଜଳସେଚନ ପ୍ରକଳ୍ପକୁ କାର୍ଯ୍ୟକ୍ଷମ କରାଯାଇ କେ.ବି.କେ. ଏବଂ ପଶ୍ଚିମ ଓଡ଼ିଶା ଅନ୍ତର୍ଗତ ଜିଲ୍ଲାଗୁଡିକରେ ଥିବା ୫୪ ହଜାର ୧୦୦ ହେକ୍ଟର ଚାଷ ଜମିକୁ ଜଳସେଚିତ କରାଯିବ ।

୨୦୧୫ ମସିହାରେ ୨୨୫୫ କୋଟି ଟଙ୍କା ବ୍ୟୟରେ ରେଙ୍ଗାଲି ଜଳସେଚନ ପ୍ରକଳ୍ପର ବାମପାର୍ଶ୍ୱ କେନାଲ କାର୍ଯ୍ୟ ଆରମ୍ଭ କରାଯାଇଅଛି । ଏହାଦ୍ୱାରା ଢେଙ୍କାନାଳ, ଯାଜପୁର, କେଉଁଝର ଜିଲ୍ଲାର ୩୯ ହଜାର ୪୧୬ ହେକ୍ଟର ଜମିକୁ ଜଳସେଚନ ସୁବିଧା ଯୋଗାଇ ଦିଆଯିବ । ଏତଦ୍‌ବ୍ୟତୀତ ଗତବର୍ଷ ଆମ ସରକାର ବରଗଡ ଜିଲ୍ଲାର ୨୫ ହଜାର ୬୦୦ ହେକ୍ଟର ଚାଷ ଜମିକୁ ଜଳସେଚନ ଯୋଗାଇ ଦେବାପାଇଁ ୧ ହଜାର ୨୪୬ କୋଟି ଟଙ୍କା ଅଟକଳ ମୂଲ୍ୟର ଗଙ୍ଗାଧର ମେହେର ଲିଫ୍ଟ କେନାଲ କାର୍ଯ୍ୟ ଆରମ୍ଭ କରିଛନ୍ତି ।

**ପାର୍ବତୀ ଗିରି ବୃହତ୍ ଉଠା ଜଳସେଚନ ଯୋଜନା:** ବର୍ତ୍ତମାନ ସୁଦ୍ଧା ଏହି ଯୋଜନାରେ ଇନ୍ଦ୍ରାବତୀ Lift Canalକୁ ମିଶାଇ ସମୁଦାୟ ୧୭୧ ଗୋଟି ବୃହତ୍ ଉଠା ଜଳସେଚନ ପ୍ରକଳ୍ପର କାର୍ଯ୍ୟ ଆରମ୍ଭ କରାଯାଇଛି । ଏଥିମଧ୍ୟରୁ ବିଗତ ୪ବର୍ଷ



ମଧ୍ୟରେ ୫ ହଜାର ୮୧୫ କୋଟି ଟଙ୍କା ଅଟକଳ ମୂଲ୍ୟର ୧୪୩ ଗୋଟି ପ୍ରକଳ୍ପର କାର୍ଯ୍ୟ ଆରମ୍ଭ କରାଯାଇଅଛି । ଇତିମଧ୍ୟରେ ନିର୍ମାଣାଧୀନ ଥିବା ପ୍ରକଳ୍ପଗୁଡିକ ମଧ୍ୟରୁ ୪୪ଗୋଟି ପ୍ରକଳ୍ପର କାର୍ଯ୍ୟ ସମ୍ପୂର୍ଣ୍ଣ କରାଯାଇଅଛି । ଚଳିତ ବର୍ଷ ଖରିଫ ଋତୁରେ ସମ୍ପୂର୍ଣ୍ଣ ହୋଇଥିବା ପ୍ରକଳ୍ପଗୁଡିକୁ କାର୍ଯ୍ୟକ୍ଷମ କରାଯାଇ କେ.ବି.କେ. ଏବଂ ପଶ୍ଚିମ ଓଡ଼ିଶା ଅନ୍ତର୍ଗତ ଜିଲ୍ଲାଗୁଡିକରେ ଥିବା ୫୩ ହଜାର ୬୭୦ ହେକ୍ଟର ଚାଷ ଜମିକୁ ଜଳସେଚିତ କରାଯିବ । ଏତଦ୍‌ବ୍ୟତୀତ ଏହି ଯୋଜନାରେ ଚଳିତ ଆର୍ଥିକ ବର୍ଷରେ ୨୮ ଗୋଟି ନୂତନ ବୃହତ୍ ଉଠା ଜଳସେଚନ ପ୍ରକଳ୍ପ ଆରମ୍ଭ କରିବା ସହିତ ନିର୍ମାଣାଧୀନ ଥିବା ୧୨୭ ଗୋଟି ପ୍ରକଳ୍ପରୁ ୮୦ ଗୋଟି ପ୍ରକଳ୍ପକୁ ସମ୍ପୂର୍ଣ୍ଣ କରାଯାଇ ଅଧିକ ୧ଲକ୍ଷ ହେକ୍ଟର ଚାଷ ଜମିକୁ ଜଳସେଚନ ଯୋଗାଇ ଦିଆଯିବ ।

**ଗଭୀର ନଳକୂପ ଯୋଜନା:** ଏହି କାର୍ଯ୍ୟକ୍ରମରେ ଆରମ୍ଭରୁ ୨୦୧୮ ମସିହା ମାର୍ଚ୍ଚ ମାସ ଶେଷସୁଦ୍ଧା କେ.ବି.କେ. ଓ ପଶ୍ଚିମ ଓଡ଼ିଶା ଅନ୍ତର୍ଗତ ଜିଲ୍ଲାମାନଙ୍କରେ ୪୮ ହଜାର ୫୭୩ ଗୋଟି ଏବଂ ଅନ୍ୟ ଜିଲ୍ଲାମାନଙ୍କରେ ୧୪ ହଜାର ୩୫୧ ଗୋଟି ଏହିପରି ସର୍ବମୋଟ ୬୨ ହଜାର ୯୨୪ ଗୋଟି ନଳକୂପ ନିର୍ମାଣ କରାଯାଇ ହିତାଧିକାରୀମାନଙ୍କୁ ହସ୍ତାନ୍ତର କରାଯାଇଅଛି । ୨୦୧୮–୧୯ ଆର୍ଥିକ ବର୍ଷରେ ଏହି କାର୍ଯ୍ୟକ୍ରମରେ ଅଧିକ ୨୦ ହଜାର ନଳକୂପ ନିର୍ମାଣ କରାଯାଇ ହିତାଧିକାରୀମାନଙ୍କୁ ହସ୍ତାନ୍ତର କରାଯିବା ପାଇଁ ଲକ୍ଷ୍ୟ ରଖାଯାଇଅଛି ।

**ଅଚଳ ଉଠା ଜଳସେଚନ ପ୍ରକଳ୍ପ ପୁନରୁଦ୍ଧାର କାର୍ଯ୍ୟକ୍ରମ:** ୨୦୧୪ ନିର୍ବାଚନୀ ଇସ୍ତାହାର ଅନୁଯାୟୀ ଅଚଳ ଉଠା ଜଳସେଚନ ପ୍ରକଳ୍ପ ପୁନରୁଦ୍ଧାର କରିବା ପାଇଁ ରାଜ୍ୟ ସରକାର ୫୨୧ କୋଟି ୮୫ ଲକ୍ଷ ଟଙ୍କାର ଏକ ଯୋଜନା ଆରମ୍ଭ କରିଛନ୍ତି । ଏଥିରେ ୩ ହଜାର ୭୭୩ ଅଚଳ ନଳକୂପକୁ ମରାମତି କରିବା ପାଇଁ ଲକ୍ଷ୍ୟଧାର୍ଯ୍ୟ କରାଯାଇଥିଲା । ଏତଦ୍‌ବ୍ୟତୀତ ଆର୍‌ଆଇଡିଏଫ୍, ବିଜୁ କେବିକେ, ବିଜୁ କୃଷକ ବିକାଶ ଯୋଜନା ଇତ୍ୟାଦିରୁ ୧ ହଜାର ୬୭୪ ଗୋଟି ଅଚଳ ପ୍ରକଳ୍ପକୁ ମଧ୍ୟ ମରାମତି କରାଯିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଥିଲା । ଅର୍ଥାତ୍ ୨୦୧୯ ମସିହା ମାର୍ଚ୍ଚ ମାସ ଶେଷ ସୁଦ୍ଧା ସର୍ବମୋଟ ୫ ହଜାର ୪୪୭ ଗୋଟି ଅଚଳ ଉଠାଜଳସେଚନ ପ୍ରକଳ୍ପକୁ ମରାମତି କରାଯିବା ପାଇଁ ଲକ୍ଷ୍ୟଧାର୍ଯ୍ୟ କରାଯାଇଥିଲା । ତନ୍ମଧ୍ୟରୁ ବିଗତ ୪ବର୍ଷ ମଧ୍ୟରେ କେ.ବି.କେ. ଓ ପଶ୍ଚିମ ଓଡ଼ିଶା ଅନ୍ତର୍ଗତ ଜିଲ୍ଲାମାନଙ୍କରେ ୧ହଜାର ୫୭୦ ଗୋଟି ଏବଂ ଅନ୍ୟ ଜିଲ୍ଲାମାନଙ୍କରେ ୩ ହଜାର ୨୪୪ ଗୋଟି ଏହିପରି ସର୍ବମୋଟ ୪ହଜାର ୮୧୪ ଗୋଟି ଅଚଳ ଉଠା ଜଳସେଚନ ପ୍ରକଳ୍ପଗୁଡିକୁ ସଚଳ କରାଯାଇ ୯୯ ହଜାର ୧୨୭ ହେକ୍ଟର ସେଚାଞ୍ଚଳକୁ ପୁନରୁଦ୍ଧାର କରାଯାଇଅଛି । ଏତଦ୍‌ବ୍ୟତୀତ ଉଠା ଜଳସେଚନ ନିଗମ ଦ୍ୱାରା ବିଜୁ କୃଷକ ବିକାଶ ଯୋଜନା, ହୀରାକୁଦ ସେଚାଞ୍ଚଳ ଓ ଅନ୍ୟାନ୍ୟ ଯୋଜନାରେ ବିଗତ ୪ବର୍ଷ ମଧ୍ୟରେ କେ.ବି.କେ ଓ ପଶ୍ଚିମ ଓଡ଼ିଶା ଅନ୍ତର୍ଗତ ଜିଲ୍ଲାମାନଙ୍କରେ ୨ହଜାର ୬୫୭ ଏବଂ ଅନ୍ୟ ଜିଲ୍ଲାମାନଙ୍କରେ ୧ ହଜାର ୮୦୦ ଗୋଟି ଏହିପରି ସର୍ବମୋଟ ୪ ହଜାର ୪୫୭ ଗୋଟି ନୂତନ ଉଠା ଜଳସେଚନ ପ୍ରକଳ୍ପ ନିର୍ମାଣ କରି ପାଣିପଞ୍ଚାୟତମାନଙ୍କୁ ହସ୍ତାନ୍ତର କରାଯାଇଅଛି ।

**ମୁଖ୍ୟମନ୍ତ୍ରୀ ଆଡିବନ୍ଧ ତିଆରି ଯୋଜନା:** ଏହି କାର୍ଯ୍ୟକ୍ରମରେ ଆରମ୍ଭରୁ ୨୦୧୮ ମସିହା ମାର୍ଚ୍ଚ ମାସ ଶେଷସୁଦ୍ଧା କେ.ବି.କେ ଓ ପଶ୍ଚିମ ଓଡ଼ିଶା ଜିଲ୍ଲାମାନଙ୍କରେ ୬ହଜାର ୭୬୩ ଗୋଟି ଏବଂ ଅନ୍ୟ ଜିଲ୍ଲାମାନଙ୍କରେ ୬ହଜାର ୪୨୪ ଗୋଟି ଏହିପରି ସର୍ବମୋଟ ୧୩ ହଜାର ୧୮୯ ଗୋଟି ଚେକ୍‌ଡ୍ୟାମ୍ ନିର୍ମାଣ କରାଯାଇଅଛି । ଏଥିମଧ୍ୟରୁ ବିଗତ ୪ବର୍ଷ ମଧ୍ୟରେ ୮ ହଜାର ୪୧୩ ଗୋଟି ଆଡିବନ୍ଧ ନିର୍ମାଣ କରାଯାଇଅଛି ।

**ବନ୍ୟା ନିୟନ୍ତ୍ରଣ:** ଜଳସମ୍ପଦ ବିଭାଗର ଏହା ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ । ବନ୍ୟାଜନିତ କ୍ଷୟକ୍ଷତିକୁ ହ୍ରାସ କରିବା ପାଇଁ ରୁରାଲ ଇନ୍‌ଫ୍ରାଷ୍ଟ୍ରକଚର ଡେଭ୍‌ଲପ୍‌ମେଣ୍ଟ ଫଣ୍ଡ ବିଗତ ୪ବର୍ଷରେ ୧ ହଜାର ୪୮୦ କୋଟି ଟଙ୍କା ବ୍ୟୟ କରାଯାଇ ୪ ଲକ୍ଷ ହେକ୍ଟର ଚାଷ ଜମିକୁ ବନ୍ୟା ଦାଉରୁ ରକ୍ଷା କରାଯାଇଅଛି ।



**ଜଳ ନିଷ୍କାସନ:** ୨୦୧୪ ସାଧାରଣ ନିର୍ବାଚନୀ ଇସ୍ତାହାର ମୁତାବକ ଗ୍ରାମାଞ୍ଚଳରେ ଥିବା ପାଟନାଳୀ ଓ ସହରାଞ୍ଚଳରେ ଥିବା ପ୍ରାକୃତିକ ଜଳ ନିଷ୍କାସନ ନାଳୀଗୁଡ଼ିକର ପୁନରୁଦ୍ଧାର କରି ଜଳ ନିଷ୍କାସନ ବ୍ୟବସ୍ଥାରେ ସୁଧାର ଆଣିବା ପାଇଁ ରାଜ୍ୟ ସରକାର ୧ ହଜାର କୋଟି ଟଙ୍କାର ଜଳ ନିଷ୍କାସନ ଉନ୍ନତିକରଣ ଯୋଜନା ଆରମ୍ଭ କରିଛନ୍ତି । ଏହି କାର୍ଯ୍ୟକ୍ରମରେ ବିଗତ ୪ ବର୍ଷ ମଧ୍ୟରେ ୬୦୧ କୋଟି ଟଙ୍କା ବ୍ୟୟ କରାଯାଇ ୩ ହଜାର ୭୪୭ କି.ମି. ଜଳ ନିଷ୍କାସନ ନାଳୀର ଉନ୍ନତିକରଣ କରାଯାଇ ୫୪ ହଜାର ୪୨୦ ହେକ୍ଟର ଜମିକୁ ଜଳପ୍ଲାବନ ସମସ୍ୟାରୁ ମୁକ୍ତ କରାଯାଇଅଛି ।

**ସେଚାଞ୍ଚଳ ଉନ୍ନୟନ କାର୍ଯ୍ୟକ୍ରମ:** ଏହି କାର୍ଯ୍ୟକ୍ରମରେ ବିଗତ ୪ବର୍ଷରେ ୨ ଲକ୍ଷ ୫୪ ହଜାର ୬୩୦ ହେକ୍ଟର ପରିମିତ ସେଚାଞ୍ଚଳରେ କ୍ଷେତ୍ରନାଳୀ ଏବଂ ୬୫ ହଜାର ୬୧୦ ହେକ୍ଟର ପରିମିତ ସେଚାଞ୍ଚଳରେ କ୍ଷେତ୍ର ଜଳ ନିଷ୍କାସନ ନାଳୀ ନିର୍ମାଣ କରାଯାଇଅଛି ।

**କେନାଲ ଲାଇନିଂ ଏବଂ ପୁନରୁଦ୍ଧାର କାର୍ଯ୍ୟକ୍ରମ:** ବିଗତ ୪ବର୍ଷରେ ୬୧୪ କୋଟି ଟଙ୍କା ବ୍ୟୟ କରାଯାଇ ବୃହତ୍ ଓ ମଧ୍ୟମ ଜଳସେଚନ ପ୍ରକଳ୍ପ ଅନ୍ତର୍ଗତ ୨୭୪ କି.ମି. କେନାଲର ଲାଇନିଂ ଏବଂ କ୍ଷୁଦ୍ର ଜଳସେଚନ ପ୍ରକଳ୍ପ ଅନ୍ତର୍ଗତ ୩୭୮ କି.ମି. କେନାଲର ଲାଇନିଂ ସମ୍ପୂର୍ଣ୍ଣ କରାଯାଇଛି ।

**ସହରାଞ୍ଚଳ ଛାତ ଉପର ବର୍ଷାଜଳ ଅମଳ ପ୍ରକଳ୍ପ:** ଏହି କାର୍ଯ୍ୟକ୍ରମରେ ପ୍ରଥମ ପର୍ଯ୍ୟାୟରେ ୫ଗୋଟି ସହର ଯଥା ଭୁବନେଶ୍ୱର, ବ୍ରହ୍ମପୁର, ଟିଟିଲାଗଡ, ଝାରସୁଗୁଡା ଓ ବଲାଙ୍ଗୀର ଅନ୍ତର୍ଭୁକ୍ତ କରାଯାଇଥିଲା । ବିଗତ ୪ ବର୍ଷରେ ଏହି କାର୍ଯ୍ୟକ୍ରମରେ ୨୨୬ ଗୋଟି ସରକାରୀ କୋଠା ଓ ୪ ହଜାର ୮୭ ଗୋଟି ବେସରକାରୀ କୋଠା ବର୍ଷାଜଳ ଅମଳ ପ୍ରକଳ୍ପ ନିର୍ମାଣ କରାଯାଇଅଛି । ଏହି କାର୍ଯ୍ୟକ୍ରମରେ ନିକଟରେ ଅନ୍ୟ ୬ଗୋଟି ସହର ଯଥା: ପୁରୀ, କଟକ, ରାଉରକେଲା, ଅନୁଗୋଳ, ତାଳଚେର ଓ ସମ୍ବଲପୁରକୁ ସାମିଲ କରାଯାଇଛି ।

ବିଗତ ୪ବର୍ଷ ମଧ୍ୟରେ ଜଳସମ୍ପଦ ବିଭାଗ ଦ୍ୱାରା ଜଳସେଚନ ପ୍ରକଳ୍ପ ନିର୍ମାଣ, ପରିଚାଳନା ଓ ରକ୍ଷଣାବେକ୍ଷଣ, ବନ୍ୟା ନିୟନ୍ତ୍ରଣ ଏବଂ ଜଳ ନିଷ୍କାସନ ଇତ୍ୟାଦି କାର୍ଯ୍ୟ ପାଇଁ ଯୋଜନା ଓ ଅଣଯୋଜନା ପାଣ୍ଠିରୁ ସମୁଦାୟ ୨୬ ହଜାର ୮୮୯ କୋଟି ଟଙ୍କା ବ୍ୟୟ କରାଯାଇଅଛି ।







HOCKEY INDIA

ODISHA HOCKEY MEN'S WORLD CUP BHUBANESWAR 2018

# ହକିର ପ୍ରୟୋଗଶାଳା ଓଡ଼ିଶା ଆଜି ଭାରତୀୟ ହକିର ପୃଷ୍ଠପୋଷକ ।

ଓଡ଼ିଶାରେ ହକି କେବଳ ଏକ ଖେଳ ନୁହେଁ, ବିଶେଷ କରି ଆମ ଜନଜାତି ଅଞ୍ଚଳରେ ଜୀବନ ପ୍ରବାହର ଏହା ଏକ ଅବିଚ୍ଛେଦ୍ୟ ଅଙ୍ଗ ପାଲଟି ଯାଇଛି । ଏଠି ପିଲାମାନେ ହାତରେ ହକି ଷ୍ଟିକ୍ ଧରି ଚାଲିବା ଶିଖନ୍ତି । ଏଣୁ ଏଥିରେ କିଛି ଆଶ୍ଚର୍ଯ୍ୟ ହେବାର ନାହିଁ ଯେ ଓଡ଼ିଶା ହିଁ ହକିରେ ଅନେକ କିମ୍ବଦନ୍ତୀ ଖେଳାଳୀଙ୍କୁ ସୃଷ୍ଟି କରିଛି । ଆମର ଏଇ ଜାତୀୟ ଖେଳ ପ୍ରତି ରହିଥିବା ଅମାପ ଭଲପାଇବାକୁ ସମ୍ମାନ ଜଣାଇ, ଓଡ଼ିଶା ପ୍ରଥମ କରି ଆଗାମୀ ୫ ବର୍ଷ ପାଇଁ ଉଭୟ ମହିଳା ଏବଂ ପୁରୁଷ ଜାତୀୟ ହକି ଦଳର ପ୍ରାୟୋଜକ ହେବାର ଏକ ଐତିହାସିକ ନିର୍ଣ୍ଣୟ ଗ୍ରହଣ କରିଛି । ଏହା ଦେଶ ପାଇଁ ଓଡ଼ିଶାର ଉପହାର ।

ଶ୍ରୀ ନବୀନ ପଟ୍ଟନାୟକ
ମାନ୍ୟବର ମୁଖ୍ୟମନ୍ତ୍ରୀ, ଓଡ଼ିଶା

ODISHA
INDIA'S BEST KEPT SECRET



# ହକିକୁ ଜାତୀୟ ଖେଳର ମାନ୍ୟତା ପ୍ରଦାନ ନିମନ୍ତେ ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ପ୍ରଧାନମନ୍ତ୍ରୀଙ୍କୁ ପତ୍ର

**NAVEEN PATNAIK**
**CHIEF MINISTER, ODISHA**



**STATE SECRETARIAT**
**BHUBANESWAR**

D.O.NO.-UM-1/2018-48/CM
Dt. 20.06.2018

Dear Prime Minister Ji,

For any country winning an Olympic gold medal is a proud moment. What makes it more glorious is to hear the national anthem being played on the global stage, while the country's flag goes up.

In 1948 as a new born nation, India witnessed this glory in London when the National Hockey Team won the Olympic gold medal. A nation of 33 crores rejoiced as the gold was won in London by defeating Great Britain.

In fact, prior to 1947, Great Britain avoided playing against India for many years fearing embarrassment to lose against its colony.

It was perhaps poetic justice that young and aspirational India won against its former coloniser in London.

Till the 1980s India's presence in the International sports arena was marked by its brilliance in Hockey. Crores of Indians rejoiced every time our Hockey Team became victorious and our National Anthem was played. Hockey became part of the Indian psyche.

Cutting across different strata of society and regions, cutting across the rural urban divide, Hockey is hugely popular. In the tribal areas of Odisha, Jharkhand and Chhattisgarh, Hockey is a way of life. In fact, in a first of its kind, the State of Odisha is sponsoring the National Hockey Teams for the next five years.

As you know Sir, the next World Cup Hockey will be held in Odisha in November this year. While reviewing the preparations, I was surprised and shocked to know that what is popularly known as the National Game – Hockey, has in fact never been notified as our National Game.

Hence I am sure you will agree with the crores of hockey loving fans of our country – that Hockey truly deserves to be notified as our National Game. This will be a fitting tribute to the great hockey players who have made our country proud. It will also inspire our future generations.

With regards,

Yours sincerely,

(NAVEEN PATNAIK)

**SHRI NARENDRA MODI,**
Prime Minister of India,
New Delhi.

# ରାସ ରସିକ ଶ୍ରୀଜଗନ୍ନାଥ

ଡକ୍ଟର ଉମେଶ ଚନ୍ଦ୍ର ଚିହ୍ନରା

ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ବିଶ୍ୱର ବିସ୍ମୟ ଦେବତା। ତାଙ୍କର ଦୈନନ୍ଦିନ ଜୀବନଚର୍ଯ୍ୟାକୁ ନିରୀକ୍ଷଣ କଲେ ଏକ ଅତି ମାନବୀୟ ଅଲୌକିକତା ଲକ୍ଷ୍ୟ କରାଯାଏ। ସାଧାରଣ ଦୃଷ୍ଟିରେ ସମସ୍ତ କାର୍ଯ୍ୟ ମାନବୀୟ ଧାରାରେ ସଂପାଦିତ ହେଉଥିଲା ବେଳେ ଏକ ଅତି ମାନବୀୟ ପୁରୁଷୋତ୍ତମୀୟ ଚେତନା ପ୍ରଚ୍ଛନ୍ନ ଭାବରେ ରହିଥାଏ। ସୂକ୍ଷ୍ମ ଚେତନାର ସୂକ୍ଷ୍ମ ଦୃଷ୍ଟିରେ ଏହି ଚେତନାର ଅଭିବ୍ୟକ୍ତି ଯୁଗ ଯୁଗ ଧରି ଜ୍ଞାନୀ ଗୁଣୀମାନଙ୍କୁ ପ୍ରଲୁବ୍ଧ କରି ଆସିଅଛି। ସେ ଅଲୌକିକ ବିଗ୍ରହ ଧାରଣ ପୂର୍ବକ ଲୌକିକ ଲୀଳା ପ୍ରକାଶ କରି ଅଗଣିତ ଭକ୍ତ ଓ ଶ୍ରଦ୍ଧାଳୁଙ୍କର ଆକର୍ଷଣର ବିନ୍ଦୁ ହୋଇପାରିଛନ୍ତି। ଅପରୂପ ତଥା ଅଲୌକିକ ପରିପ୍ରକାଶ ପାଖରେ ଯୁଗ ଯୁଗ ଧରି ମୁନିଋଷି, ସାଧକ, ଭାବୁକ, ଭକ୍ତ, ଜିଜ୍ଞାସୁ, ଜ୍ଞାନୀମାନଙ୍କର ବୁଦ୍ଧି ହାର ମାନିଯାଏ। ସେ ସୂକ୍ଷ୍ମ ନା ସ୍ଥୂଳ, ସାକାର ନା ନିରାକାର, ସଗୁଣ ନା ନିର୍ଗୁଣ, ବେଦାନ୍ତର୍ଗତ ନା ବେଦ ରହିତ ଏ ସବୁର ସମାଧାନ ଅଦ୍ୟାବଧି ହୋଇପାରି ନାହିଁ। ବିଶ୍ୱ ବିସ୍ମୟ ଅଦ୍ଭୁତ ରୂପରେ ପ୍ରତିଭାତ ମହାପ୍ରଭୁଙ୍କର ଦର୍ଶନରେ ଜ୍ଞାନୀ, ଗୁଣୀ, ଭକ୍ତ, ଭାବୁକଙ୍କର ଆକଳନର ପୂର୍ଣ୍ଣଚ୍ଛେଦ ପଡ଼ିପାରି ନାହିଁ। ଲୌକିକ ଦୃଷ୍ଟିରେ ସେ ଯେପରି ଅସଂପୂର୍ଣ୍ଣ ନିର୍ଦ୍ଦିଷ୍ଟ ଭାବରେ କୌଣସି ଧର୍ମ କିମ୍ବା ସଂପ୍ରଦାୟର ଇଷ୍ଟ ଦେବତା କହିବା ମଧ୍ୟ ଅସମ୍ଭବ। କେଉଁ ଅଜ୍ଞାତ ମୁହୂର୍ତ୍ତରେ ସ୍ୱୟଂ ପ୍ରକାଶିତ ପ୍ରତୀଭୂ ଚିନ୍ତାଶୀଳ ଗବେଷକମାନଙ୍କର ବୁଦ୍ଧି ହଜାଇଥାଏ। ରୂପ ପରିକଳ୍ପନା କଥା ଚିନ୍ତା କରି କରି କେବଳ ନିଜ ଇଷ୍ଟକୁ ହିଁ ତାଙ୍କ ମଧ୍ୟରେ ଆବିଷ୍କାର କରି ଆତ୍ମତୃପ୍ତି ଲାଭ କରିଥାଏ। ସୁତରାଂ ଏହି ଅଲୌକିକ ପ୍ରତିମାରେ ଲୌକିକ ମାନବୀୟ ଲୀଳାର ପରିପ୍ରକାଶ ଯୋଗୁଁ ଭକ୍ତ, ଭାବୁକ, ଆଗନ୍ତୁକ, ଧର୍ମାଚାର୍ଯ୍ୟାଗଣ, ସାଂପ୍ରଦାୟିକ ଆଚାର୍ଯ୍ୟ, ସାଧୁ, ସନ୍ଥ, ମୁନି, ଋଷି, ଆସ୍ତିକ–ନାସ୍ତିକ ଅଭିଭୂତ ହୋଇଯାଆନ୍ତି। ମହାପ୍ରଭୁଙ୍କର ରହସ୍ୟମୟ ରୂପ ଏବଂ ଲୀଳା ପାଖରେ ମନୁଷ୍ୟର ବୁଦ୍ଧି ହାର ମାନିଯାଏ, ଚେତନା ସୁଷୁପ୍ତି ଅବସ୍ଥା ପ୍ରାପ୍ତ ହେବା ସହିତ ସେହି ଦୁର୍ବୋଧ ଅବାଙ୍‌ମାନସଗୋଚର, ସମସ୍ତ ପରିସୀମା ଊର୍ଦ୍ଧ୍ୱରେ ବିରାଜମାନ କରନ୍ତି। କାଳାତୀତ ରହସ୍ୟମୟଙ୍କର ରୀତିନୀତି, ପୂଜାପଦ୍ଧତି, ଯାନିଯାତ୍ରା, ଲୀଳାଖେଳା ସବୁ ରହସ୍ୟମୟ କେଉଁ ରୂପରେ, କେଉଁ ପ୍ରକାରରେ, କେଉଁ ବେଶଭୂଷାରେ ତାଙ୍କୁ ବର୍ଣ୍ଣନା କରାଯାଇପାରିବ ? ସତ୍ୟ ଯୁଗର ଉଗ୍ରବୀର ନୃସିଂହ ଯେଉଁଭଳି ଭାବରେ ତାଙ୍କଠାରେ ପ୍ରକାଶିତ, ତ୍ରେତୟା ଯୁଗର ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମ ରୂପରେ ସେ ଦର୍ଶନୀୟ। ଦ୍ୱାପର ଯୁଗର ଲୀଳା ପୁରୁଷୋତ୍ତମ ଶ୍ରୀକୃଷ୍ଣ ରୂପେ ମଧ୍ୟ ସେ ବନ୍ଦନୀୟ। ଅତଏବ ସେସବୁର ଆଭାସ ତାଙ୍କଠାରେ ପ୍ରତିଭାତ ହେଲେ ହେଁ ସେ ଯେ ଏ ସବୁର ଅକଳନୀୟ ଏବଂ ଊର୍ଦ୍ଧ୍ୱରେ, ଏକଥା ସ୍ୱୀକାର୍ଯ୍ୟ।



ବର୍ତ୍ତମାନ ବଡ଼ ଦେଉଳରେ ଆରାଧିତ ମହାପ୍ରଭୁ ଶ୍ରୀଜଗନ୍ନାଥ ବେଶୀ ପରିମାଣରେ ଲୀଳା ପୁରୁଷୋତ୍ତମ ଶ୍ରୀକୃଷ୍ଣ ରୂପରେ ସମ୍ବୋଧିତ। ଆନୁମାନିକ ଦ୍ୱାଦଶୀ ଶତାବ୍ଦୀ ଶେଷ ଭାଗକୁ ଶ୍ରୀଜଗନ୍ନାଥ ଓ ଶ୍ରୀକୃଷ୍ଣ ଅଭିନ୍ନ ବୋଲି ପରିଗୃହୀତ ହୋଇଥିଲେ। ଏହାପରେ ଶ୍ରୀଚୈତନ୍ୟଙ୍କ ଓଡ଼ିଶା ଆଗମନ



ଅର୍ଥାତ୍ ଖ୍ରୀ.ଅ.୧୫୦୯ ପରେ ଶ୍ରୀଜଗନ୍ନାଥଙ୍କଠାରେ ଶ୍ରୀକୃଷ୍ଣଙ୍କର ଅଭିନ୍ନତ୍ୱ ବଳିଷ୍ଠ ଭାବରେ ପରିଲକ୍ଷିତ ହେଲା। ଶ୍ରୀଚୈତନ୍ୟଙ୍କ ଦୃଷ୍ଟିରେ ମହାପ୍ରଭୁ ହେଉଛନ୍ତି ଶ୍ରୀରାଧା ଶ୍ରୀକୃଷ୍ଣଙ୍କର ମିଳିତ ବିଗ୍ରହ। ପ୍ରେମ ପୁରୁଷ ଶ୍ରୀକୃଷ୍ଣ ଏବଂ ପ୍ରକୃତି ସ୍ୱରୂପା ଶ୍ରୀରାଧାଙ୍କର ନିତ୍ୟରାସକାଳୀନ ଯୁଗନଦ୍ଧ ରୂପ ହିଁ ରତ୍ନ ସିଂହାସନାରୂଢ଼ ଶ୍ରୀଜଗନ୍ନାଥ।

'ଐଶ୍ୱର୍ଯ୍ୟ ମାଧୁର୍ଯ୍ୟ ଘେନି ସିଂହାସନ ପରେ, ବିଜୟ କରିଅଛନ୍ତି ଚତୁର୍ଦ୍ଧା ରୂପରେ।' (ଶୂନ୍ୟ ସଂହିତା) ୪।୧୧୦

କୃଷ୍ଣାବତାର ଲୀଳାର ସର୍ବୋତ୍ତମ ପରିପ୍ରକାଶ ରାସରେ ଘଟିଅଛି। ଦ୍ୱାପର ଯୁଗରେ ଗୋପ ରହଣି ସମୟରେ ଗୋପୀମାନଙ୍କ ସହିତ ଲୀଳାଖେଳା ଥିଲା ଶ୍ରୀକୃଷ୍ଣଙ୍କର ମାଧୁର୍ଯ୍ୟ ଲୀଳା। ଯେଉଁ ଲୀଳା ହିଁ ଭଗବତ୍ ପ୍ରାପ୍ତିର ସର୍ବୋତ୍ତମ ମାଧ୍ୟମ। ମାଧୁର୍ଯ୍ୟ ଲୀଳାର ସର୍ବୋତ୍ତମ ପରିପ୍ରକାଶ ହେଉଛି ରାସ । ଗୋପୀମାନଙ୍କ ସହିତ କିଶୋର କୃଷ୍ଣଙ୍କର ମିଳନକୁ ରାସ କୁହାଯାଇଥାଏ। ଗୋପୀମାନଙ୍କ ମଧ୍ୟରେ ଶ୍ରେଷ୍ଠା, କୃଷ୍ଣଗତ ପ୍ରାଣା ଶ୍ରୀରାଧାଙ୍କ ସହିତ ମିଳିତ ହୋଇ ବୃନ୍ଦାବନରେ, ଯମୁନା ତଟରେ, କଦମ୍ବ ଗଛ ମୂଳରେ ଉଭୟଙ୍କର ଅସ୍ମିତା ବିସ୍ମୃତ ହେଉଥିଲା। ରାଧା କୃଷ୍ଣଙ୍କର ସଂପର୍କ ଗୋଟିଏ ବୀଜ ଦ୍ୱିଧା ବିଭକ୍ତ ହେବା ପରି। ଏକ ଆତ୍ମା ଲୀଳା ସଂପାଦନ ପାଇଁ ଦୁଇରେ ପରିପ୍ରକାଶ। ମାଧୁର୍ଯ୍ୟ ଲୀଳା ଆସ୍ୱାଦନ ପାଇଁ ପରମ ପୁରୁଷ ପରଂବ୍ରହ୍ମ ପ୍ରକୃତି ସ୍ୱରୂପା ଶ୍ରୀରାଧାଙ୍କୁ ନିଜ ଆତ୍ମାରୁ ସୃଷ୍ଟି କରିଛନ୍ତି।

'ଆଗେ ରାଧା ପଛେ ମୁହିଁ ଲମ୍ପଟ ଭାବରେ,
ଏକ ବୀଜ ବେନି ଫାଳ ଯୁଗଳ ଅଂଗରେ।'

(ଶୂନ୍ୟ ସଂହିତା ୧୧/୬୯)

ଆତ୍ମାକୁ ସ୍ତ୍ରୀରୀ ବେଶ କରି, ଶ୍ରୀରାଧା ଅଙ୍ଗରେ ବିହରି
କୃଷ୍ଣେ ଆସ୍ୱାଦ ରସ ଦେଇ, ଏହାକୁ ପ୍ରେମ ଭକ୍ତି କହି।

(ବଳରାମ ଦାସ ବେଦାନ୍ତ ସାର ଗୁପ୍ତଗୀତା ୨୪ଅ)

ପୁଣି– ଯେକ ବୀଜ ବେନି ଫାଳ ଯେସନେ ହୁଅଇ,
ରାଧାକୃଷ୍ଣ ବେନି ଅଂଗ ବାରଣ ନ ଯାଇ (୧ମ/୧୧୮)

ଶ୍ରୀମନ୍ଦିରରେ ଅନୁଷ୍ଠିତ ପୂଜା ପାର୍ବଣ ମଧ୍ୟରେ ରାସୋତ୍ସବର ପ୍ରାଧାନ୍ୟ ଶ୍ରଦ୍ଧାଳୁ ଭକ୍ତ ଅନୁଭବ କରିଥାଏ। ଦ୍ୱାପର ଯୁଗୀୟ ମାଧୁର୍ଯ୍ୟ ଲୀଳା, ରାସରସିକ ଶ୍ରୀକୃଷ୍ଣ ରୂପୀ ମହାପ୍ରଭୁ ଶ୍ରୀଜଗନ୍ନାଥ ସମ୍ପାଦନ କରିଥାନ୍ତି। ବର୍ଷକ ମଧ୍ୟରେ ଶ୍ରୀମନ୍ଦିର ମଧ୍ୟରେ ତିନିଗୋଟି ପ୍ରମୁଖ ରାସଲୀଳା ସମ୍ପାଦିତ ହୋଇଥାଏ। ବସନ୍ତ ଋତୁରେ ବସନ୍ତରାସ, ବର୍ଷାଋତୁରେ ପ୍ରାବୃଟ ରାସ ଏବଂ ଶରତ ଋତୁରେ ଶରତ ରାସ ଅନୁଷ୍ଠିତ ହୁଏ । ଏହି ରାସୋତ୍ସବରେ ଶ୍ରୀମନ୍ଦିର ଉତ୍ସବ ମୁଖରିତ ହେବା ସହିତ ଶ୍ରଦ୍ଧାଳୁ ଭକ୍ତ ଏହାକୁ ଉପଭୋଗ କରି ଦ୍ୱାପର ଯୁଗୀୟ ଶ୍ରୀରାଧା କୃଷ୍ଣଙ୍କର ବୃନ୍ଦାବନରେ ସଂଘଟିତ ରାସଲୀଳାକୁ ସ୍ମରଣ କରିଥାନ୍ତି। ବସନ୍ତ ଋତୁରେ ମହାପ୍ରଭୁଙ୍କର ପ୍ରତିନିଧି ସ୍ୱରୂପ ଦୋଳଗୋବିନ୍ଦ ମହାପ୍ରଭୁଙ୍କଠାରୁ ଆଜ୍ଞାମାଳ ଗ୍ରହଣ କରି ଶ୍ରୀରାଧାରୂପୀ ଶ୍ରୀଦେବୀଙ୍କ ସହିତ ଦୋଳ ଉତ୍ସବ ପାଳନ କରିଥାନ୍ତି। ଫଗୁ ଏବଂ ରଂଗ ଖେଳରେ ଶ୍ରୀରାଧାଙ୍କ ସହିତ ଗୋପୀମାନେ ପ୍ରାଣପ୍ରିୟ ଶ୍ରୀକୃଷ୍ଣଙ୍କ ସହିତ ରଙ୍ଗ ମଣ୍ଡିତ ହୋଇ ଯେଉଁଭଳି ଆନନ୍ଦାନୁଭୂତି ଲାଭ କରୁଥିଲେ, ତଦନୁରୂପ ଫଗୁ ଦଶମୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ମହାପ୍ରଭୁ ଦୋଳଗୋବିନ୍ଦଙ୍କ ଦୋଳଉତ୍ସବ ଅନୁଷ୍ଠିତ ହୋଇଥାଏ। ଶ୍ରୀମନ୍ଦିର ନୀତି ଅନୁସାରେ ଫାଲ୍‌ଗୁନ ଶୁକ୍ଳ ଦଶମୀ ତିଥି ମଧ୍ୟାହ୍ନ ଧୂପ ପରେ ତିନିବାଡ଼ରେ ମଇଲମ ହୋଇ ଲାଲ ରଂଗର ବସ୍ତ୍ର ଲାଗି ହୁଏ । ଏହି ଲାଲ ରଙ୍ଗର ବେଶକୁ ଚାଚେରୀ ବେଶ କୁହାଯାଏ। ଶ୍ରୀଦେବୀ ଓ ଭୂଦେବୀ ରତ୍ନସିଂହାସନ ଉପରୁ ମହାଜନମାନଙ୍କ ହସ୍ତରେ ଦକ୍ଷିଣ ଘର ଖଟ ଉପରେ ଉପବେଶନ କରାଯାଇ ମାଣ୍ଡୁଅ ସର୍ପାମଣୋହି କରାଯାଏ। ଏହାପରେ ଶ୍ରୀଦେବୀ ଓ ଭୂଦେବୀଙ୍କ ସହିତ ଦୋଳଗୋବିନ୍ଦ ରତ୍ନସିଂହାସନ ଉପରକୁ ବିଜେ କରନ୍ତି। ସେଠାରେ ପଞ୍ଚୋପଚାର ପୂଜା ଅନୁଷ୍ଠିତ ହୁଏ। ପୂଜା ପରେ ଝିମିରି ଫଗୁ ଅଞ୍ଜଳି କରାଯାଏ। ଏହାପରେ ମହାପ୍ରଭୁଙ୍କ ଦକ୍ଷିଣଭୁଜରୁ ଆଜ୍ଞାମାଳ ପାଇ ପୁଷ୍ପାଳକ ମହାପାତ୍ରଙ୍କ ଦ୍ୱାରା ଜୟବିଜୟ ଦ୍ୱାର ଲଣ୍ଡାବର୍ତ୍ତଠାରେ ବିଜେ ହୁଅନ୍ତି। ଏଠାରେ ପୁଣି ଫଗୁ, ଚନ୍ଦନ ଲାଗି ଓ ଆଳଟ କରାଯାଇ ବଟବୃକ୍ଷ ମୂଳରେ ଥିବା ସୁସଜ୍ଜିତ ବିମାନରେ ବିଜେ ହୁଅନ୍ତି। ମହାଜନମାନଙ୍କ ଦ୍ୱାରା ବିମାନରେ ଜଗନ୍ନାଥ ବଲ୍ଲଭ ମଠକୁ ଘଣ୍ଟ ବାଦ୍ୟ ସହ ପଟୁଆରରେ ଗମନ କରନ୍ତି। ଜଗନ୍ନାଥବଲ୍ଲଭ ମଠରେ ମୁଦିରସ୍ତ ଫଗୁ ଅଞ୍ଜଳି ଓ ପ୍ରସାଦ ଲାଗି କରାନ୍ତି। ବନ୍ଦାପନା, ଆଳଟ,



ଚାମର ଓ ପନ୍ତି ଭୋଗ ପରେ ଶ୍ରୀମନ୍ଦିର ଦକ୍ଷିଣ ଘରକୁ ଦୋଳଗୋବିନ୍ଦ ଓ ରତ୍ନସିଂହାସନ ଉପରକୁ ଶ୍ରୀଦେବୀ ଓ ଭୂଦେବୀ ବିଜେ କରିଥାନ୍ତି। ଫାଲଗୁନ୍ ଶୁକ୍ଳ ଚତୁର୍ଦ୍ଦଶୀରେ ଅଗ୍ନିଉତ୍ସବ ଏବଂ ପୂର୍ଣ୍ଣିମା ଦିନ ଦୋଳଉତ୍ସବ ଦୋଳବେଦୀରେ ଅନୁଷ୍ଠିତ ହୋଇଥାଏ। ଅତୀତରେ ଦୋଳମଣ୍ଡପ ସାହିରେ ଥିବା ଦୋଳବେଦୀରେ ମହାପ୍ରଭୁଙ୍କର ଫଗୁଖେଳ ଅନୁଷ୍ଠିତ ହେଉଥିବାବେଳେ ଖ୍ରୀ.ଅ. ୧୫୬୧ରେ ଗଜପତି ଗଉଡିଆ ଗୋବିନ୍ଦ ଦେବଙ୍କ ସମୟରେ ଦୋଳି ଛିଣ୍ଡି ଯିବାରୁ ବଡ଼ ଠାକୁର ବଳଭଦ୍ରଙ୍କ ଭୁଜ ଭଗ୍ନ ହୋଇଗଲା। ଏହା ପରଠାରୁ ଶ୍ରୀଜୀଉଙ୍କ ପ୍ରତିନିଧି ଭାବେ ଦୋଳଗୋବିନ୍ଦ ପ୍ରତିମା ଯାତ୍ରା କଲେ। 'ଏ ରାଜାଙ୍କ ଦିନରେ ଦୋଳବେଦୀ ଉପରେ ଦୋଳି ଛିଡ଼ି ପଡ଼ିଲା। ବଡ଼ଠାକୁରଙ୍କ ଭୁଜ ଭାଙ୍ଗିଗଲା। ଦେଉଳ ଭିତରେ ବିଜେ କଲା ଉତ୍ତାରୁ ଶ୍ରୀଭୁଜ ନିର୍ମାଣ ମହାସ୍ନାନ ହୋଇ ଏହିଠାରୁ ଦୋଳଯାତ୍ରାକୁ ଦୋଳଗୋବିନ୍ଦ ବିଜେ କଲେ। (ମାଦଳାପାଞ୍ଜି ରାଜଭୋଗ ଇତିହାସ ସଂ- ଡଃ. ଆର୍ତ୍ତବଲ୍ଲଭ ମହାନ୍ତି, ପୃ-୬୧ ଦ୍ୱିତୀୟ ସଂସ୍କରଣ ୧୯୬୯ ପ୍ରକାଶକ ଉତ୍କଳ ବିଶ୍ୱବିଦ୍ୟାଳୟ) ପରବର୍ତ୍ତୀ ସମୟରେ ଗଜପତି ମୁକୁନ୍ଦଦେବଙ୍କ ଦ୍ୱାରା ମେଘନାଦ ପାଚେରିର ଉତ୍ତର ପୂର୍ବ କୋଣରେ ଦୋଳବେଦୀ କୁଞ୍ଜ ନିର୍ମାଣ କରି ଦୋଳ ଉତ୍ସବ ଅନୁଷ୍ଠିତ କରାଇଥିଲେ। ଫାଲଗୁନ୍ ପୂର୍ଣ୍ଣିମା ଦିନ ରୋଷ ହୋମ ପରେ ମହାପ୍ରଭୁଙ୍କୁ ବୋଇରାଣୀ ଶାଢ଼ୀ ଖଣ୍ଡୁଆ ଓ ଗଭା ଲାଗି କରାଯାଏ। ପୁଷ୍ପାଳକ ଦୋଳଗୋବିନ୍ଦକୁ ଦକ୍ଷିଣ ଘରୁ ରତ୍ନ ସିଂହାସନକୁ ବିଜେ କରାନ୍ତି। ଶ୍ରୀଦେବୀ ଓ ଭୂଦେବୀ ଏବଂ ଦୋଳଗୋବିନ୍ଦ ମହାପ୍ରଭୁଙ୍କଠାରୁ ଆଜ୍ଞାମାଳ ଗ୍ରହଣ କରି ରତ୍ନ ସିଂହାସନ ୭ଥର ପ୍ରଦକ୍ଷିଣ କରି ନାଭିକଟା ମଣ୍ଡପରେ ଥିବା ଖଟ ଉପରେ ବିଜେ କରାନ୍ତି। ଏଠାରେ ମହାସ୍ନାନ, ମାଜଣା, ବନକ ଲାଗି ହୋଇ ପ୍ରସାଦ ଲାଗି ଓ ବନ୍ଦାପନା ଅନୁଷ୍ଠିତ ହୁଏ। ଏହାପରେ ମହାଜନମାନଙ୍କ ଦ୍ୱାରା ସାତପାହାଚ ତଳେ ଥିବା ବିମାନରେ ଠାକୁରମାନେ ବିଜେ ହୁଅନ୍ତି। ସେଠାରୁ ଦୋଳବେଦୀ ଅଭିମୁଖେ ବିମାନ ଘଣ୍ଟ, ଘଣ୍ଟା ବାଦ୍ୟ ସହିତ ଯାଇଥାନ୍ତି। ଦୋଳବେଦୀ ନିକଟରେ ପହଞ୍ଚିବା ପରେ ୭ଥର ପ୍ରଦକ୍ଷିଣ କରାଯାଇ ଦୋଳ ଉପରେ ଦକ୍ଷିଣାଭିମୁଖୀ ହୋଇ ବିଜେ କରନ୍ତି। ଏଠାରେ ଖଇ, ଶାକର, ଚଣା, ହଂସକେଳି, ଆରିଷା, ଡାଳିମ୍ବ ଓ ଲିଆ କ୍ଷୀରି ଭୋଗ ଷୋଡ଼ଶ ଉପଚାରରେ ଅନୁଷ୍ଠିତ ହୁଏ। ନବବର୍ଷର ପାଞ୍ଜି ପାଠ କରାଯାଏ। ରାତ୍ରରେ ପୁଣି ୭ ଥର ପ୍ରଦକ୍ଷିଣ କରି ବିମାନରେ ରତ୍ନବେଦୀକୁ ବାହୁଡ଼ା ବିଜେ ହୋଇଥାନ୍ତି। ଏହି ଦୋଳଉତ୍ସବ ହେଉଛି ମହାପ୍ରଭୁଙ୍କର ବସନ୍ତ ଋତୁକାଳୀନ ରାସୋତ୍ସବ। ବୃନ୍ଦାବନରେ ବସନ୍ତ ଋତୁରେ କିଶୋର ଶ୍ରୀକୃଷ୍ଣଙ୍କର ଗୋପୀ ଏବଂ ଶ୍ରୀରାଧାଙ୍କ ସହିତ ରାସ ଲୀଳାର ପ୍ରତୀକାତ୍ମକ ସ୍ୱାକ୍ଷର।

ଶ୍ରାବଣ ମାସରେ ଅନୁଷ୍ଠିତ ହୁଏ ପ୍ରାବୃଟ ରାସ। ଏହି ରାସ ଶ୍ରୀମନ୍ଦିରରେ ସାତଦିନ ବ୍ୟାପୀ ଅନୁଷ୍ଠିତ ଝୁଲଣ ଯାତ୍ରା ନାମରେ ପରିଚିତ। ଶ୍ରାବଣ ଶୁକ୍ଳପକ୍ଷ ଦଶମୀଠାରୁ ଭାଦ୍ରବ ମାସ କୃଷ୍ଣପକ୍ଷ ପ୍ରତିପଦା ପର୍ଯ୍ୟନ୍ତ ଆଡ଼ମ୍ବର ସହକାରେ ପାଳନ କରାଯାଇଥାଏ। ଏହି ଯାତ୍ରାର ବିଧି ମହାପ୍ରଭୁଙ୍କର ମଧ୍ୟାହ୍ନ ଧୂପ ପରେ ଅନୁଷ୍ଠିତ ହୁଏ। ରତ୍ନସିଂହାସନରୁ ଭୂଦେବୀ ଓ ଶ୍ରୀଦେବୀ ମହାଜନମାନଙ୍କ ଦ୍ୱାରା ଦକ୍ଷିଣଘର ଖଟ ଉପରେ ବିଜେ କରନ୍ତି। ଏହାପରେ ଦକ୍ଷିଣଘରୁ ମଦନମୋହନଙ୍କୁ ଆଣି ଖଟ ଉପରେ ବିଜେ କରାଯାଏ। ପୂଜାପଣ୍ଡାଙ୍କ ଦ୍ୱାରା ମାଣ୍ଡୁଅ ଭୋଗ ଅନୁଷ୍ଠିତ ହୁଏ। ପରେ ଛାମୁ ଦିହୁଡ଼ି ସହିତ ମହାଜନମାନେ ଭୂଦେବୀ, ଶ୍ରୀଦେବୀ ଓ ମଦନମୋହନଙ୍କୁ ରତ୍ନସିଂହାସନକୁ ବିଜେ କରାନ୍ତି। କର୍ପୂର ଆଳତି ଓ ସଂଧ୍ୟା ଆଳତି ପରେ ପୂଜାପଣ୍ଡା ମହାପ୍ରଭୁଙ୍କ ଦକ୍ଷିଣଭୁଜରୁ ଗୋଟିଏ ଆଜ୍ଞାମାଳ ଆଣି ମଦନମୋହନଙ୍କୁ ଏବଂ ବାମଭୁଜରୁ ଆଜ୍ଞାମାଳ ଶ୍ରୀଦେବୀ ଓ ଭୂଦେବୀଙ୍କୁ ଦିଅନ୍ତି। ଛାମୁ ଦିହୁଡ଼ିସହ ମହାଜନମାନେ ତିନି ପ୍ରତିମାଙ୍କୁ ହାତରେ ବିଜେ କରାଇ ଜଗମୋହନ ଦେଇ ବଟବୃକ୍ଷ ବାଟେ ଝୁଲଣ ମଣ୍ଡପ ବା ଝୁଲଣକୁଞ୍ଜକୁ ବିଜେ କରାନ୍ତି। ଝୁଲଣ କୁଞ୍ଜ ଦୋଳିରେ ବିରାଜମାନ କରି ପ୍ରାବୃଟ ରାସରେ ନିମଜ୍ଜିତ ହୁଅନ୍ତି। ଏହି ସମୟରେ ବିଡ଼ିଆ ଲାଗି ହୋଇଥାଏ। ମୁକ୍ତିମଣ୍ଡପ ତଳେ ରାସଗୀତ, ଓଡ଼ିଶୀ, ଚମ୍ପୂ ଇତ୍ୟାଦି ଶୃଙ୍ଗାର ରସାଶ୍ରିତ ସଂଗୀତ ଗାନ କରାଯାଏ। ଝୁଲଣ କୁଞ୍ଜ ସାଜସଜ୍ଜାର ଚମତ୍କାରିତା ଦର୍ଶକ ମନରେ ବୃନ୍ଦାବନର ସେବାକୁଞ୍ଜ ଓ ନିଧୁବନର ଭ୍ରମ ସୃଷ୍ଟି କରିଥାଏ। ଶରତ ଋତୁରେ ଅନୁଷ୍ଠିତ ରାସକୁ ଶ୍ରେଷ୍ଠତ୍ୱ ପ୍ରଦାନ କରାଯାଇଥାଏ। ଏହି ଋତୁର ରାକା ରଜନୀରେ ବୃନ୍ଦାବନରେ ଶ୍ରୀକୃଷ୍ଣଙ୍କର ଗୋପାଙ୍ଗନା ଏବଂ ଶ୍ରୀରାଧାଙ୍କ ସହିତ



ମିଳନକାଳୀନ ଲୀଳାକୁ ଶରତ ରାସ କୁହାଯାଏ । କାର୍ତ୍ତିକ ମାସ ପୂର୍ଣ୍ଣିମା ରାତ୍ରିରେ ବୃନ୍ଦାବନରୁ ଶ୍ରୀକୃଷ୍ଣଙ୍କର ମୁରଲୀ ଧ୍ୱନି ଶ୍ରବଣ କରି ଗୋପାଙ୍ଗନା ଘର ସଂସାର ପରିତ୍ୟାଗ ପୂର୍ବକ ଶ୍ରୀକୃଷ୍ଣଙ୍କ ସହିତ ମିଳିତ ହେବାକୁ ପହଞ୍ଚି ଥିଲେ । ସାରା ରାତ୍ରୀ ଉଜାଗର ରହି ଶ୍ରୀକୃଷ୍ଣଙ୍କ ସହିତ ନୃତ୍ୟଗୀତରେ ଗୋପୀଗଣ ନିଜକୁ ଭୁଲି ଶ୍ରୀକୃଷ୍ଣଙ୍କ ପ୍ରେମରେ ମଗ୍ନ ହୋଇଥିଲେ । ଷୋଳ ସହସ୍ର ଗୋପୀ ପ୍ରତ୍ୟେକ ଶ୍ରୀକୃଷ୍ଣଙ୍କ ସହିତ ମିଳିତ ହେବାର ଅନୁଭୂତି ଲାଭ କରୁଥିଲେ । ମିଳନ, ବିଚ୍ଛେଦ ଓ ମିଳନରେ ପୂର୍ଣ୍ଣିମାର ଚନ୍ଦ୍ରସ୍ନାତ ରଜନୀ ଶେଷ ହୋଇଯାଇଅଛି । ଜୀବାତ୍ମା ସହିତ ପରମାତ୍ମା ମିଳନର ଅନୁଭୂତି ଓ ଦିବ୍ୟାନନ୍ଦ ଲାଭ କରି କୃତାର୍ଥ ହୋଇଛନ୍ତି । ଏହି ଲୀଳାର ପ୍ରତୀକାତ୍ମକ ଅନୁଷ୍ଠାନ ଶରତ ଋତୁରେ ଶ୍ରୀମନ୍ଦିରରେ ଆଶ୍ୱିନ ମାସ ଶୁକ୍ଳ ଏକାଦଶୀଠାରୁ ଆରମ୍ଭ ହୋଇଥାଏ । ଏହି ଏକମାସ କାଳ ମହାପ୍ରଭୁ ଏକ ସ୍ୱତନ୍ତ୍ର ରାସୋତ୍ସବ ରାଧାଦାମୋଦର ବେଶରେ ସଜ୍ଜିତ ହୋଇଥାନ୍ତି । ସୂର୍ଯ୍ୟବଂଶୀ ରାଜା ପ୍ରତାପରୁଦ୍ର ଦେବଙ୍କ ସମୟରୁ ଏହି ବେଶର ପ୍ରଚଳନ ଶ୍ରୀମନ୍ଦିରରେ ହୋଇ ଆସୁଥିବା ଗବେଷକମାନେ ମତପୋଷଣ କରିଥାନ୍ତି । ସକାଳ ଧୂପ ପୂର୍ବରୁ ଏହି ବେଶ ଅନୁଷ୍ଠିତ ହୋଇଥାଏ । ଉକ୍ତ ବେଶରେ ମହାପ୍ରଭୁ ତ୍ରିକଚ୍ଛ ପିନ୍ଧନ୍ତି, ହସ୍ତରେ ସୁବର୍ଣ୍ଣ ନଳୀଭୁଜ, ଶଙ୍ଖ, ଚକ୍ର ଶୋଭାପାଏ । ତ୍ରିମୁଣ୍ଡି ଚୂଳ ଉପରେ ଚନ୍ଦ୍ରିକା କୁଣ୍ଡଳ, ଓଡ଼ିଆଣୀ, ଓଢ଼ଣୀ, ଚନ୍ଦ୍ରସୂର୍ଯ୍ୟ ଲାଗି ହୋଇଥାଏ । ଫୁଲମାଳ ଓ ପଦକ ଲାଗି ହୁଏ । ବାରଲାଗି ପାଟଶାଢ଼ୀ (ରବିବାର ଲାଲ, ସୋମବାର ଶୁକ୍ଳ, ମଙ୍ଗଳବାର ଗାର ଗାର ବାରପଟିଆ, ବୁଧବାର ସବୁଜ, ଗୁରୁବାର ହଳଦିଆ, ଶୁକ୍ରବାର ଶୁକ୍ଳଛିଟ ଓ ଶନିବାର କଳା ରଙ୍ଗ) ପରିଧାନ କରିଥାନ୍ତି । ଏହା ସହିତ ଫୁଲ, ଶିରିକାପଡ଼ା, ପହରଣ, ବଳା, ଅଧରବଳା ଓ ଉତ୍ତରୀୟ ପିନ୍ଧିଥାନ୍ତି । ମା' ସୁଭଦ୍ରା ଶ୍ରୀରାଧାଙ୍କ ଭଳି ଘାଗଡ଼ା ପରିଧାନ କରି ଶୋଭିତ ହୋଇଥାନ୍ତି । ଏକମାସ ବ୍ୟାପୀ ଅନୁଷ୍ଠିତ ଏହି ବେଶରେ ଶ୍ରୀରାଧା ଶ୍ରୀକୃଷ୍ଣଙ୍କ ବୃନ୍ଦାବନ ଧାମରେ ଅନୁଷ୍ଠିତ ଶରତ ରାସର ପ୍ରତିଫଳନ ହୋଇଥାଏ ।

ସର୍ବୋପରି ମହାନିତ୍ୟରାସ ଅନୁଷ୍ଠିତ ହୋଇଥାଏ ବ୍ରଜଧାମ ରୂପୀ ଶ୍ରୀଗୁଣ୍ଡିଚା ଯାତ୍ରା ସମୟରେ । ନିତ୍ୟଗୋଲକ ଧାମରେ ଜୀବାତ୍ମା ପରମାତ୍ମା ରୂପୀ ଶ୍ରୀରାଧା ଓ ଶ୍ରୀକୃଷ୍ଣ ଭିନ୍ନ କଳେବର ନୁହଁନ୍ତି । ସେଠାରେ ଏକ ରୂପରେ ପରସ୍ପର ଯୁଗନଦ୍ଧ ଅବସ୍ଥାରେ ଅହର୍ନିଶ ବିଦ୍ୟମାନ ଅଗ୍ନି ସହିତ ତା'ର ଦହନଶକ୍ତି ଭଳି ଶ୍ରୀରାଧା ଓ ଶ୍ରୀକୃଷ୍ଣ ଅଭିନ୍ନ ଭାବରେ ଶ୍ରୀଗୁଣ୍ଡିଚା ଯାତ୍ରାକାଳୀନ ଗୁଣ୍ଡିଚା ମନ୍ଦିରରେ ରାସ ସମୟରେ ଏକକ ମଦନମୋହନ ରୂପେ ରାସ ମଣ୍ଡପରେ ବିରାଜମାନ କରିଥାନ୍ତି । ଶ୍ରୀଗୁଣ୍ଡିଚା ମନ୍ଦିର ଜୟବିଜୟ ଦ୍ୱାର ନିକଟରେ ଥିବା ରାସ ବେଦୀକୁ ଆଷାଢ଼ ଶୁକ୍ଳ ଷଷ୍ଠୀଠାରୁ ନବମୀ ପର୍ଯ୍ୟନ୍ତ ବିଜେ ହୋଇଥାନ୍ତି । ସଂଧ୍ୟା ଧୂପ ପରେ ଏହି ନୀତି ଅନୁଷ୍ଠିତ ହୁଏ । ଅନ୍ୟ ରାସୋତ୍ସବରେ ଶ୍ରୀକୃଷ୍ଣଙ୍କ ସହିତ ଶ୍ରୀରାଧା ସଂଯୁକ୍ତ ହୋଉଥିଲେ ମଧ୍ୟ (ଦୋଳଗୋବିନ୍ଦ/ମଦନମୋହନ, ଶ୍ରୀଦେବୀ ଓ ଭୂଦେବୀ) ନିତ୍ୟ ଗୋଲକରେ ଦୁହେଁ ଏକ ରୂପରେ ଯୁଗନଦ୍ଧ ଅବସ୍ଥାରେ ବିରାଜମାନ କରିଥାନ୍ତି । ଶ୍ରୀଚୈତନ୍ୟ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ରୂପରେ ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କର ମିଳିତ ତନୁକୁ ଆବିଷ୍କାର କରିଛନ୍ତି । (ରସାନନ୍ଦୋ ରାଧା ସରସ ବପୁରାଲିଙ୍ଗନ ମୁଖୀ) ଶ୍ରୀଚୈତନ୍ୟ ଚରିତାମୃତାନୁସାରେ

'ରାଧାକୃଷ୍ଣ ଐଛେ ସଦା ଏକଇ ସ୍ୱରୂପ' ଏବଂ
'ରାଧାକୃଷ୍ଣାତ୍ମନେ ଦେହୀ ଜଗନ୍ନାଥେତେ ଇତି କଥ୍ୟତେ ।'

ସେଥିପାଇଁ ବ୍ରଜଧାମ ଶ୍ରୀଗୁଣ୍ଡିଚା ମଣ୍ଡପ ରହଣି ସମୟରେ ମହାପ୍ରଭୁଙ୍କର ମାଧୁର୍ଯ୍ୟ ଲୀଳାର ଚରମ ଅଭିବ୍ୟକ୍ତି ନିତ୍ୟ ଗୋଲକ ଗୁଣ୍ଡିଚା ମନ୍ଦିରରେ ଅନୁଷ୍ଠିତ ହୋଇଥାଏ । ଏହିଠାରେ ମଦନମୋହନ ରୂପୀ ଶ୍ରୀକୃଷ୍ଣ ଆହ୍ଲାଦିନୀ ଶକ୍ତି ସଂଯୁକ୍ତ ହୋଇ ଏକକ ବିଗ୍ରହରେ ଆତ୍ମପ୍ରକାଶ କରିଥାନ୍ତି । ସେଥିପାଇଁ ଶ୍ରୀଦେବୀ ଓ ଭୂଦେବୀ ଶ୍ରୀଗୁଣ୍ଡିଚା ଯାତ୍ରା ସମୟରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ସହିତ ନିତ୍ୟଗୋଲକ ଧାମରୂପୀ ଗୁଣ୍ଡିଚା ମନ୍ଦିରକୁ ଯାଇ ନଥାନ୍ତି । ଶ୍ରୀରାଧା ଲିଙ୍ଗିତ ମୂର୍ତ୍ତି ମଦନ ମୋହନ ହିଁ ନିତ୍ୟ ଗୋଲକ ଧାମର ପ୍ରତିନିଧିତ୍ୱ ସଂପାଦନ କରି ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ରାସ ରସିକତାର ପ୍ରମାଣସିଦ୍ଧ ଆଲେଖ୍ୟ ସୃଷ୍ଟି କରିଛନ୍ତି ।

ପି.ଏମ.ବି.–୬୪, ସଂଧ୍ୟା ନିଳୟ
ହାଉସିଂ ବୋର୍ଡ଼ କଲୋନୀ, ବଳିଆପଣ୍ଡା, ପୁରୀ–୧

# ରଥାଶ୍ୱ-ଏକ ତାତ୍ତ୍ୱିକ ଅନୁଧ୍ୟାନ

ଡକ୍ଟର ତୁଳସୀ ଓଝା

(ମହାପ୍ରଭୁ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଶ୍ରୀସୁଭଦ୍ରାଙ୍କ ଚଳମାନ ରଥରେ ଭିନ୍ନ ଭିନ୍ନ ରଂଗରେ ସଜ୍ଜିତ ଚାରୋଟି ଲେଖାଏଁ ଅଶ୍ୱ ସଂଯୋଜିତ ହେବାର ଦେଖାଯାଏ, ଯେଉଁମାନେ ପ୍ରକୃତରେ ରଥକୁ ଟାଣି ନଥାନ୍ତି। ଅଥଚ ରଥଯାତ୍ରାରେ ଏକ ପ୍ରମୁଖ ଭୂମିକା ଗ୍ରହଣ କରିଥାନ୍ତି। ଆଲୋଚନାଟି ତା'ର ଏକ ତାର୍ତ୍ତ୍ୱିକ ପରିପ୍ରକାଶ)



ଅଶ୍ୱ- କାଳୋ ଅଶ୍ୱୋ ବହତି ସପ୍ତରଶ୍ମିଃ
ସହସ୍ରାକ୍ଷୋ ଅଜରୋଭୂରି ରେତାଃ
ତମା ରୋହନ୍ତି କବୟୋ ବିପଶ୍ଚିତ
ସ୍ତସ୍ୟ ଚକ୍ରା ଭୁବନାନି ବିଶ୍ୱା।
(ଅ.ବେ. ସୂକ୍ତ ୫୩)

ଅର୍ଥାତ୍ କାଳରୂପୀ ମହାବଳୀ ଘୋଟକ ଦ୍ରୁତ ବେଗରେ ଧାଇଁଛି। ସେ ବ୍ରହ୍ମାଣ୍ଡକୁ ଟାଣି ନେଉଛି। ବିଶ୍ୱର ସପ୍ତଲୋକ, ସପ୍ତଭୂମି, ପ୍ରାଣୀ ମଧ୍ୟରେ ଥିବା ସପ୍ତପ୍ରାଣ, ସପ୍ତଜ୍ଞାନ, ସପ୍ତଧାତୁ ଏଗୁଡ଼ିକ କାଳରୂପକ ମହାଶକ୍ତିସଂପନ୍ନ ଅଶ୍ୱ ସହିତ ସଂଯୁକ୍ତ ହୋଇ ଚକ୍ର ସଦୃଶ ମଣ୍ଡଳାକାରରେ ଘୂରୁଛନ୍ତି। କାଳଅଶ୍ୱ ଅତ୍ୟନ୍ତ ବଳବାନ୍, ପରାକ୍ରମୀ ଓ ନିରପେକ୍ଷ। ସେ ଅସଂଖ୍ୟ ଚରାଚର ଜଗତକୁ ସମାନ ଦୃଷ୍ଟିରେ ଦେଖିଚାଲିଛି। ସେ କେଉଁ ମୁହୂର୍ତ୍ତରୁ କେଉଁ ବିନ୍ଦୁରୁ ଯାତ୍ରା ଆରମ୍ଭ କରିଛି, ତାହା ଅଜ୍ଞାତ। ତାହାର ଆୟୁ ନିର୍ଦ୍ଧାରିତ ହୋଇନାହିଁ। ସେ କେବେ ହେଁ ଜରାଜୀର୍ଣ୍ଣ ହେଉନାହିଁ। ବର୍ତ୍ତମାନ ସୁଦ୍ଧା ସେ ସେହି ବେଗ ଓ ପରାକ୍ରମରେ ଗତି କରୁଅଛି। କେତେ ସୌର ମଣ୍ଡଳ କାଳଚକ୍ରରେ ଲୀନ ହେଲେଣି, ପରନ୍ତୁ କାଳର ଲୟ ନାହିଁ। ଅଗଣିତ ପ୍ରାଣୀ କାଳ ଅଶ୍ୱର ପାଦରେ ଦଳିତ ଓ ମର୍ଦ୍ଦିତ ହେଉଛନ୍ତି। ଏହା ସହିତ କେହି କେହି ମାନବ ପୁତ୍ର କାଳ ଅଶ୍ୱରେ ଆରୋହୀ ହୋଇ ନିଜ ନିଜ ଲକ୍ଷ୍ୟ ପଥରେ ଆନନ୍ଦ ପୂର୍ବକ ଯାତ୍ରା କରୁଛନ୍ତି। ସେମାନେ କାଳର ସତ୍ୟ ରୂପକୁ ଅବଲୋକନ କରି କ୍ରାନ୍ତିଦର୍ଶୀ ହେଉଛନ୍ତି। ଭୂତ ଭବିଷ୍ୟତ ବିଚାର କରି ଯାହା ବର୍ତ୍ତମାନ ନିମନ୍ତେ ଉପଯୁକ୍ତ, ତାହାର ସଂପାଦନ ପାଇଁ ତତ୍ପର ହେଉଛନ୍ତି। କାଳର ମହତ୍ତ୍ୱ ବୁଝୁ ନଥିବା ସଂକୀର୍ଣ୍ଣମନା, ଚଞ୍ଚଳଚିତ୍ତ ଲୋକେ କାଳରେ ପେଶି ହୋଇ ମରୁଛନ୍ତି। ଜ୍ଞାନୀମାନେ କାଳକୁ ଅତିକ୍ରମ କରନ୍ତି, ଅଜ୍ଞାନୀମାନଙ୍କୁ କାଳ ଅତିକ୍ରମ କରେ ।

ବେଦର ଏହି ଅବତାରଣାରୁ ଅଶ୍ୱତତ୍ତ୍ୱର ଯେଉଁ ବ୍ୟାଖ୍ୟା ଦେଖାଯାଏ, କ୍ରମଶଃ ତାହା ଭାରତୀୟ ସଂସ୍କୃତିରେ ଏକ ଅନନ୍ୟ ସ୍ଥାନ ଗ୍ରହଣ କରିଛି। ଅଶ୍ୱ ଏକ ସାଧାରଣ ଚତୁଷ୍ପଦ ପ୍ରାଣୀ। ପୁରାଣର ବର୍ଣ୍ଣନା ଅନୁଯାୟୀ ମହର୍ଷି କାଶ୍ୟପ ଓ କାଷ୍ଠାଙ୍କଠାରୁ ଏହି ପ୍ରାଣୀ ଜନ୍ମଲାଭ କରିଥିଲା। ଏହି ଚତୁଷ୍ପଦ ପ୍ରାଣୀଟି କେବେ ଓ କିପରି ଭାରତୀୟ ଶିଳ୍ପକଳା, ସଂସ୍କୃତି, ସାମାଜିକ ତଥା ଧାର୍ମିକ



ଜୀବନଚର୍ଯ୍ୟାରେ ଏକ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଗ୍ରହଣ କରିଥିଲା, ତାହା ଅନୁସନ୍ଧାନ ସାପେକ୍ଷ । ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ରଥରେ ସଂଯୁକ୍ତ ବିଡ଼ାଳ, ଗଜ, ସିଂହ, ଶୁକପକ୍ଷୀ, ହଂସପକ୍ଷୀ, ଗାଭୀ ଇତ୍ୟାଦି ଯେପରି ତାତ୍ତ୍ୱିକ ଦୃଷ୍ଟିରୁ ମହତ୍ତ୍ୱପୂର୍ଣ୍ଣ, ଠିକ୍ ସେହିପରି ଘୋଷଯାତ୍ରା ନିମିତ୍ତ ପ୍ରସ୍ତୁତ ତିନି ରଥରେ ସଂଯୁକ୍ତ ଧବଳ, କୃଷ୍ଣ ଓ ଲୋହିତ ବର୍ଣ୍ଣର ଦ୍ୱାଦଶ ଅଶ୍ୱର ସଂଯୁକ୍ତି ମଧ୍ୟ ଅତ୍ୟନ୍ତ ତାତ୍ତ୍ୱିକ ।

ଶିଳ୍ପଶାସ୍ତ୍ରରେ ଉଲ୍ଲେଖ ରହିଛି –

ଅଶ୍ୱଯୁକ୍ତ ସଦାକ୍ଷେତ୍ର ଯଦି ସ୍ୟାତ୍ ପଂକ୍ତି ଭାବତଃ ।
ବାଜି ଝଂପା ଚ ତଦାଗଃ ଶିଳ୍ପ ବିଦ୍ୟାନୁ ସାରତଃ ।।

(ଶିଳ୍ପପ୍ରକାଶ)

ଅର୍ଥାତ୍ ଯେଉଁ ସ୍ଥାନରେ ଏକ ଧାଡ଼ିରେ ଅଶ୍ୱମାନେ ଥିବାର ଦେଖାଯାଏ, ସେ ସ୍ଥାନକୁ ଶିଳ୍ପ ବିଦ୍ୟାରେ ବାଜିଝଂପା କୁହାଯାଏ । ପ୍ରାୟ ପ୍ରତ୍ୟେକ ମନ୍ଦିରର ଗଢ଼ଣ କାଳରେ ଏହି ବାଜି ଝଂପା ଦେଖାଯାଏ । ସୂର୍ଯ୍ୟଙ୍କ ନିମିତ୍ତ ନିର୍ମିତ ରଥାକୃତି କୋଣାର୍କ ମନ୍ଦିରକୁ ସାତୋଟି ଅଶ୍ୱ ଟାଣି ନେଉଥିବାର ଦୃଶ୍ୟ ଚିତ୍ରିତ । ଧାର୍ମିକ ପରଂପରାରେ ଅଶ୍ୱ ଏକ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଗ୍ରହଣ କରିଥାଏ । କଥିତ ଅଛି, ସମୁଦ୍ର ମନ୍ଥନ ସମୟରେ ଉଜ୍ଜ୍ୱଳବର୍ଣ୍ଣ ଓ ପକ୍ଷ ବିଶିଷ୍ଟ ଏକ ଅଶ୍ୱ ସମୁଦ୍ର ମଧ୍ୟରୁ ବହିର୍ଗତ ହୋଇଥିଲା, ଯାହାର ନାମ ଥିଲା ଉଚ୍ଚୈଶ୍ରବା ଅଶ୍ୱ । ଏହି ଶ୍ୱେତ ଅଶ୍ୱ ଅମୃତ ପାନ କରିଥାଏ । ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଶ୍ରୀମନ୍ଦିରର ଦକ୍ଷିଣ ଦ୍ୱାରର ନାମ ହସ୍ତୀଦ୍ୱାର ଅଟେ । ଏହାର ଅନ୍ୟନାମ କାମ ଦ୍ୱାର । ସାଧାରଣତଃ ଗଜପତି ମହାରାଜା ଓ ତାଙ୍କ ପରିବାରର ସଦସ୍ୟମାନେ ଏହି ଦ୍ୱାର ଦେଇ ଶ୍ରୀମନ୍ଦିର ମଧ୍ୟକୁ ପ୍ରବେଶ କରନ୍ତି ।

'ଅସଂଶୟଂ ବାଜି ମେଧଃ ପାବୟେତ୍ ପୃଥିବୀମପି ।

(ମ.ଭା, ଅଶ୍ୱମେଧିକ ପର୍ବ)

ପ୍ରାଚୀନ କାଳରେ ବିଶ୍ୱାସ ରହିଥିଲା ରାଜା ଯଦି ଅଶ୍ୱମେଧ ଯଜ୍ଞ କରେ, ତା'ହେଲେ ସେ ଚକ୍ରବର୍ତ୍ତୀ ପଦଲାଭ କରିବା ସହିତ ପିତୃ ପୁରୁଷଙ୍କୁ ଉଦ୍ଧାର କରିବାକୁ ସକ୍ଷମ ହୁଏ । ଏ ସଂପର୍କରେ ସାରଳା ମହାଭାରତରେ ବର୍ଣ୍ଣନା କରାଯାଇଛି । ବ୍ୟାସଙ୍କର ନିର୍ଦ୍ଦେଶରେ ଯେତେବେଳେ ଯୁଧିଷ୍ଠିର ଅଶ୍ୱମେଧ ଯଜ୍ଞ କରିବାକୁ ଇଚ୍ଛା ପ୍ରକାଶ କଲେ ପ୍ରଥମେ ସେ ଏହି ଯଜ୍ଞ ନିମିତ୍ତ ଅଶ୍ୱିନୀ କୁମାରଙ୍କଠାରୁ କୁବଳୟ ନାମକ ଏକ ଅଶ୍ୱ ପ୍ରାପ୍ତ ହୋଇଥିଲେ –

ଯୁଧିଷ୍ଠି ବୋଇଲେ ଶୁଣ ଅଶ୍ୱିନୀ କୁମାର
କୁବଳୟ ଅଶ୍ୱ ଦିଅ ଯେ ଅଶ୍ୱରେ ସାର
ଏହା ଶୁଣିଣ କୁମାର ପ୍ରସନ୍ନ ହୋଇଲେ
ଅନେକ ବୁଝାଇ ତାଙ୍କୁ କୁବଳୟ ଦେଲେ ।

ଏହି ଅଶ୍ୱକୁ ମଧ୍ୟ ବ୍ୟାସ ବେଦ ଭାବରେ ପରିଗଣିତ କରିଛନ୍ତି ।

ଏ ଅଶ୍ୱ ତୁଲେ କାହାକୁ ବରଗିବୁ ତୁହି
ପ୍ରମାଣି ଥିବୁ ଏ ବେଦ ଅଶ୍ୱ ଗୋଟାକୁହିଁ ।

ପୁନଶ୍ଚ କୁହାଯାଇଛି – ସ୍ୱର୍ଗର ଅଶ୍ୱ ଯେ ଭୂତ ଭବିଷ୍ୟତଜ୍ଞାତା

ଜାଣଇ ଅନନ୍ତ କୋଟି ଯୁଗର ବାରତା
ସେ ଅଶ୍ୱ ଯାଇଁ ପଶିଲା ପଦ୍ମଦଳ ଦେଶେ
ଚନ୍ଦ୍ର କିରଣ ପରାୟେ ପ୍ରାଣେ ପ୍ରାଣେ ପଶେ ।

ଏହି ଅଶ୍ୱକୁ ମଗଧର ଅଧିପତିଙ୍କର ସେନାପତି ବାନ୍ଧି ନେଇ ରାଜାଙ୍କ ସମ୍ମୁଖରେ ଉପସ୍ଥିତ କରିବାରୁ ସେ ଅଶ୍ୱ ଯେଉଁପରି ମାନବୋଚିତ ବ୍ୟବହାର କଲା, ତା'ର ବର୍ଣ୍ଣନା ମଧ୍ୟ ବଡ଼ ବିଚିତ୍ର –

ରାଜାଙ୍କୁ ଦେଖି ହସିଲା କୁବଳୟ ହୟ
ତା' ଦେଖି ଆଶ୍ଚର୍ଯ୍ୟ ହେଲା ମହା ଦେବରାୟ ।
ସନ୍ନିଧେ ଯାଇ କହଇ ତାକୁ ମହାରାଜ
ଭୋ ଅଶ୍ୱତୁ ପଶୁ ହୋଇ ହସୁକି ଆଶ୍ଚର୍ଯ୍ୟ
ଅଶ୍ୱ ବୋଇଲା ମୁଁ ଅଟେ ଆକାଶର ହୟ
କୁବଳୟ ନାମ ମୋର ମୋତେ ଧନଞ୍ଜୟ
ଆଣି ଅଛି ଅଶ୍ୱମେଧ କରିବେ ଯୁଧେଷ୍ଠି
ରାଜା ବରିବେ ଧଇଲେ ହୋଇବ ଅରିଷ୍ଟ ।

(ଅଶ୍ୱମେଧ ପର୍ବ. ସା. ମ)



ଏହିପରି ଏକ ଅଶ୍ୱମେଧ ଯଜ୍ଞର ବିବରଣୀ ମଧ୍ୟ ମହାଭାରତର ବନପର୍ବରେ ବର୍ଣ୍ଣିତ। ମହାରାଜ ସଗରଙ୍କର ଅଶ୍ୱମେଧ ଯଜ୍ଞ ହେତୁ ଯେଉଁ ଅଘଟଣ ଘଟିଥିଲା, ତାହାର ଫଳସ୍ୱରୂପ ଶୁଷ୍କ ସାଗରକୁ ପରିପୂର୍ଣ୍ଣ କରିବା ନିମିତ୍ତ ଦେବୀ ଗଂଗାଙ୍କର ଧରାବତରଣ ସଂଭବ ହୋଇଥିଲା। ରାମଚନ୍ଦ୍ର ମଧ୍ୟ ଅଶ୍ୱମେଧ ଯଜ୍ଞ କରିଥିଲେ ।

କାଶୀର ଗଂଗାତୀର୍ଥସ୍ଥ ଏକ ଘାଟର ନାମ ଦଶାଶ୍ୱ ମେଧ ଘାଟ। ସ୍କନ୍ଦପୁରାଣର କାଶୀଖଣ୍ଡର ବର୍ଣ୍ଣନା ଅନୁଯାୟୀ ଏଠାରେ ବ୍ରହ୍ମା ରାଜର୍ଷି ଦିବୋଦାସଙ୍କ ସହାୟତାରେ ଦଶଗୋଟି ଅଶ୍ୱମେଧ ଯଜ୍ଞ କରାଇଲେ। ପ୍ରଥମେ ଏହି ଘାଟ ରୁଦ୍ର ସରୋବର ନାମରେ ପ୍ରସିଦ୍ଧ ଥିଲା। ବ୍ରହ୍ମା ଏଠାରେ ଯଜ୍ଞ କରିବା ସହିତ ଦଶାଶ୍ୱମେଧେଶ୍ୱର ନାମକ ଶିବଲିଙ୍ଗ ପ୍ରତିଷ୍ଠା କରିଥିଲେ। ତେଣୁ ପାପନାଶକ ଭାବରେ ଏହି ତୀର୍ଥରେ ସ୍ନାନ ଅତ୍ୟନ୍ତ ମହାର୍ଘ। କୁବଳୟା ଅଶ୍ୱ ସଂପର୍କରେ ବାମନ ପୁରାଣରେ ମଧ୍ୟ ଏକ କଥା ବର୍ଣ୍ଣିତ। ଶରଜିତ୍ ନାମକ ଜଣେ ରାଜାଙ୍କର ପୁତ୍ରର ନାମ ଥିଲା ଋତୁଧ୍ୱଜ। କୁବଳୟ ନାମକ ଏକ ଦ୍ରୁତଗାମୀ ଅଶ୍ୱ ସାହାଯ୍ୟରେ ସେ ତିନିପୁର ଗମନ କରି ପାରୁଥିବାରୁ ତାଙ୍କ ନାମ କୁବଳୟାଶ୍ୱ ମଧ୍ୟ ହୋଇଥିଲା। ନାଗକନ୍ୟା ମଦାଳସା ତାଙ୍କର ପତ୍ନୀ ଥିଲେ।

ଏତ ଗଲା କୁବଳୟାଶ୍ୱ ଓ ଅଶ୍ୱମେଧ ଯଜ୍ଞର କଥା। ସ୍ୱୟଂ ପରମାତ୍ମା ନାରାୟଣ ମଧ୍ୟ ଏକଦା ଏକ ହୟ ରୂପ ଧାରଣ କରିଥିଲେ। ଯାହାକୁ ଶ୍ରୀବିଷ୍ଣୁଙ୍କର ଚବିଶ ଅବତାର ମଧ୍ୟରୁ ଏକ ଅବତାର ଭାବରେ ଗ୍ରହଣ କରାଯାଇଥାଏ। ହୟଗ୍ରୀବ ଏକଦା ପଦ୍ମଯୋନି ବ୍ରହ୍ମା ସୃଷ୍ଟି ରଚନା ନିମିତ୍ତ ପ୍ରବୃତ୍ତ ହେବା ସମୟରେ ଶ୍ରୀବିଷ୍ଣୁଙ୍କର ରଜଗୁଣ ଓ ତମୋଗୁଣ ସ୍ୱରୂପ ସ୍ୱେଦ ବିନ୍ଦୁରୁ ଉତ୍ପନ୍ନ ଦୁଇ ଅସୁର ମଧୁ ଓ କୈଟଭ, ବ୍ରହ୍ମାଙ୍କ ହସ୍ତରେ ଉଜ୍ଜ୍ୱଳ ଆଭା ବିକିରଣ କରୁଥିବା ଚାରି ବେଦକୁ ଦେଖି ତା' ପ୍ରତି ଆକୃଷ୍ଟ ହୋଇ ତାକୁ ଚୋରାଇ ନେଇ ସମୁଦ୍ର ମଧ୍ୟ ଦେଇ ରସାତଳକୁ ଚାଲିଗଲେ। ବେଦ ଅପହୃତ ହୋଇଯିବାରୁ ବ୍ରହ୍ମା ବ୍ୟଥିତ ହୋଇ ପଡ଼ିଲେ। ବେଦରୁ ବଂଚିତ ହୋଇ ସେ କୌଣସି କର୍ମ କରିବାକୁ ସମର୍ଥ ହେଲେ ନାହିଁ। ଫଳରେ ସୃଷ୍ଟି କର୍ମରେ ବ୍ୟାଘାତ ହେବାରୁ ବ୍ରହ୍ମା କାତର ହୋଇ ଶ୍ରୀବିଷ୍ଣୁଙ୍କ ବେଦ ଉଦ୍ଧାର କରିବା ପାଇଁ ପ୍ରାର୍ଥନା କଲେ। ବ୍ରହ୍ମାଙ୍କ ପ୍ରାର୍ଥନାରେ ଶ୍ରୀବିଷ୍ଣୁ ଯୋଗନିଦ୍ରା ପରିତ୍ୟାଗ କରି ବେଦକୁ ରକ୍ଷା କରିବା ନିମିତ୍ତ ଏକ ଅକଳ୍ପନୀୟ ରୂପ ଧାରଣ କଲେ। ତାଙ୍କ ଶରୀରର ଅର୍ଦ୍ଧାଂଶ ଥିଲା ଏକ ତେଜସ୍ୱିୟ ମନୁଷ୍ୟର ଶରୀର ଏବଂ ଗ୍ରୀବାଠାରୁ ଊର୍ଦ୍ଧ୍ୱାଂଶଟି ଥିଲା ଏକ ଅଶ୍ୱର। ସୁନ୍ଦର ନାସିକା ଯୁକ୍ତ ତାଙ୍କର ଏହି ଶୁଦ୍ଧ ମୁଖ ସଂପୂର୍ଣ୍ଣ ବେଦର ଆଳୟ ଥିଲା। ନକ୍ଷତ୍ର ଓ ତାରାଯୁକ୍ତ ସ୍ୱର୍ଗଲୋକ ତାଙ୍କର ଶିର ଥିଲା। ସେଥିରେ ସୂର୍ଯ୍ୟ କିରଣ ସଦୃଶ ଉଜ୍ଜ୍ୱଳ ଦୀର୍ଘ କେଶ ଗୁଚ୍ଛ ରହିଥିଲା। ଆକାଶ ଏବଂ ପାତାଳ ତାଙ୍କର କର୍ଣ୍ଣ, ସମସ୍ତ ଭୂତକୁ ଧାରଣ କରୁଥିବା ପୃଥିବୀ ତାଙ୍କର ଲଲାଟ, ଗଂଗା ଓ ସରସ୍ୱତୀ ତାଙ୍କ ଦୁଇ ନିତମ୍ବ, ଦୁଇ ସମୁଦ୍ର ତାଙ୍କର ଦୁଇଭ୍ରୁ ହୋଇଥିବା ବେଳେ ଚନ୍ଦ୍ରମା ଓ ସୂର୍ଯ୍ୟ ତାଙ୍କର ଦୁଇ ନେତ୍ର, ଓଁ କାର ତାଙ୍କର ଆଭୂଷଣ, ସଂଧ୍ୟା ନାସିକା ଓ ବିଦ୍ୟୁତ୍ ତାଙ୍କର ଜିହ୍ୱା ହୋଇଥିଲା। ସୋମପାନର ଅଧିକାରୀ ହୋଇଥିବା ପିତର ତାଙ୍କର ଦନ୍ତ, ଗୋଲକ ଓ ବ୍ରହ୍ମ ଲୋକ ତାଙ୍କର ଓଷ୍ଠ ହୋଇଥିଲା। ତମୋମୟୀ କାଳରାତ୍ରୀ ତାଙ୍କର ଗ୍ରୀବା ହୋଇଥିଲା। ଏହି ପ୍ରକାର ଅନେକ ମୂର୍ତ୍ତିରେ ଆବୃତ୍ତ ହୋଇ ଶ୍ୱେତବର୍ଣ୍ଣ, ନୀଳାମ୍ବର ପରିଶୋଭିତ ଅଷ୍ଟବାହୁ ବିଶିଷ୍ଟ ହୋଇ ଶ୍ରୀବିଷ୍ଣୁ ଆବିର୍ଭୂତ ହେଲେ। ଚତୁର୍ଭୁଜରେ ସେ ଶଙ୍ଖ ଚକ୍ର, ଗଦା ପଦ୍ମ ଧାରଣ କଲାବେଳେ ଅନ୍ୟ ଚାରି ବାହୁରେ ସେ ଉଦ୍ଧାର କରିଥିବା ବେଦକୁ ଧାରଣ କରିଥିଲେ।

ଶ୍ରୀହରି ସମସ୍ତ ଦେବତାଙ୍କ ସମ୍ମୁଖରୁ ଅନ୍ତର୍ହିତ ହୋଇ ରସାତଳରେ ପହଂଚିଲେ। ବେଦକୁ ଉଦ୍ଧାର କରିବା ସହିତ ଦୁଇଦୁଷ୍ଟ ଦାନବଙ୍କର ବଧ ମଧ୍ୟ କଲେ।

ଅର୍ଥାତ୍ ଶ୍ରୀହରି ଏହି ପ୍ରକାର ହୟଗ୍ରୀବ ରୂପଧାରଣ କରି ସେହି ଦୁଇ ଦାନବଙ୍କର ବଧ କରିଥିଲେ – ଏହାଦ୍ୱାରା ସେ ପୁନଶ୍ଚ ପ୍ରବୃତ୍ତି ଧର୍ମର ପ୍ରଚାର କରିବା ନିମିତ୍ତ ଏହି ଶରୀରକୁ ପ୍ରକଟ କରିଥିଲେ। ଏଠାରେ ଉଲ୍ଲେଖ କରାଯାଇପାରେ ଯେ ତପସ୍ୟା ଦ୍ୱାରା ହୟଗ୍ରୀବଙ୍କର ଆରାଧନା କରି ପାଂଚାଳ ଦେଶୀୟ ଗାଲବ ମୁନି ବେଦର କ୍ରମ ବିଭାଗ କରିବାକୁ ସମର୍ଥ ହୋଇଥିଲେ। କାରଣ ସ୍ୱୟଂ ନାରାୟଣ ହିଁ ବେଦର ସ୍ୱରୂପ



ଅଟନ୍ତି । ଯୋଗ ସାଂଖ୍ୟ, ବ୍ରହ୍ମଶ୍ରେଷ୍ଠ ହବିଷ୍ୟ ଏବଂ ବିଭୁ ସେ ହିଁ ଅଟନ୍ତି । ନାରାୟଣପରା ବେଦା ଯଜ୍ଞ ନାରାୟଣାତ୍ମକାଃ । ଏହି ହେତୁ ହୟଗ୍ରୀବ ସମସ୍ତ ବେଦର ଜ୍ଞାତା ଅଟନ୍ତି । ତେଣୁ ଭାଗବତରେ ଭାଗବତକୁ ହୟଶୀର୍ଷ ମଧ୍ୟ କୁହାଯାଇଛି । ସେ ଯେତେବେଳେ ନିଃଶ୍ୱାସ ଛାଡ଼ନ୍ତି ସେଥିରୁ ବେଦ ଧ୍ୱନି ନିର୍ଗତ ହୁଏ । ପଶୁର ପ୍ରବୃତ୍ତି ଓ ସଂସ୍କୃତିର ସୁରକ୍ଷା ହୟଗ୍ରୀବ ରୂପର ବିଶେଷତ୍ୱ । ଏହି ରୂପରେ ମଧ୍ୟ ମହାମାୟାଙ୍କ ଅନୁରୋଧରେ ଶ୍ରୀବିଷ୍ଣୁ ହୟଗ୍ରୀବ ନାମକ ରାକ୍ଷସକୁ ବଧ କରିଥିବାର ସୂଚନା ଦେବୀ ଭାଗବତରେ ବର୍ଣ୍ଣିତ । ଏଥିରୁ ସ୍ପଷ୍ଟ ସୂଚନା ମିଳେ ମନୁଷ୍ୟ ସର୍ବଦା ଅଧାପଶୁ ଓ ଅଧା ମନୁଷ୍ୟ । ବେଦ ଅଧ୍ୟୟନ କରି ହିଁ ସେ ପଶୁତ୍ୱରୁ ମୁକ୍ତି ପାଇଥାଏ । ପ୍ରତୀକାତ୍ମକ ଭାବରେ ହନୁମାନଙ୍କର ପଂଚମୁଖ ମଧ୍ୟରୁ ଏକ ମୁଖ ହୟଗ୍ରୀବ ବା ଅଶ୍ୱମୁଖ ଅଟେ । ଏପରିକି ତ୍ରିପୁର ବିଜୟକାଳରେ ବିଶ୍ୱକର୍ମା ପୃଥିବୀ, ମନ୍ଦରପର୍ବତ, ଦିଗବିଦିଗ, ନକ୍ଷତ୍ର ମଣ୍ଡଳ, ସିନ୍ଧୁ ଗଂଗା, ସରସ୍ୱତୀ, ଦିବାରାତ୍ର, ଶୁକ୍ଳ ପକ୍ଷ, କୃଷ୍ଣ ପକ୍ଷ, ଚନ୍ଦ୍ର ସୂର୍ଯ୍ୟ, ଆଦିଙ୍କୁ ନେଇ ଯେଉଁ ଦିବ୍ୟ ରଥ ନିର୍ମାଣ କରିଥିଲେ ସେଥିରେ ଇନ୍ଦ୍ର, ବରୁଣ, ଯମ ଓ କୁବେର ଏହି ଚାରି ଲୋକପାଳ ଅଶ୍ୱର ଭୂମିକା ନିର୍ବାହ କରିଥିଲେ ଏବଂ ଯେତେବେଳେ ବ୍ରହ୍ମା ବିଷ୍ଣୁ ରୁଦ୍ର, ଚନ୍ଦ୍ରମା, ଅଗ୍ନି ଆଦିଙ୍କର ଭାର ସହ୍ୟ କରି ନପାରି ରଥ ଶିଥିଳ ହୋଇପଡ଼ିଲା ସ୍ୱୟଂ ବିଷ୍ଣୁ ବୃଷଭ ରୂପ ଧାରଣ କରି ରଥକୁ ଉପରକୁ ଉଠାଇଲେ ଏବଂ ଶିବ ଏକ ପାଦ ବୃଷଭ ଉପରେ ଓ ଏକପାଦ ଅଶ୍ୱ ଉପରେ ଭରା ଦେଇ ଦଣ୍ଡାୟମାନ ହେଲେ । ଏହି ସମୟରେ ଅଶ୍ୱକୁ ଅଧିକ ଶକ୍ତିଶାଳୀ କରିବା ପାଇଁ ସେ ଅଶ୍ୱର ସ୍ତନ କର୍ତ୍ତନ କରିଥିଲେ । ଫଳରେ ଅଶ୍ୱୀ ଅଶ୍ୱ ସଦୃଶ ଶକ୍ତିଶାଳୀ ହୋଇ ରହିଥିଲା ଏବଂ ଅଶ୍ୱ ଏକ ସ୍ତନ୍ୟପ୍ରାୟୀ ପଶୁ ହେଲେ ମଧ୍ୟ ଏହାର ସ୍ତନ ନାହିଁ । ଏହା ଅଶ୍ୱର ଏକ ବୈଚିତ୍ର୍ୟ ।

ନିବାଚ କବଚକୁ ବଧ କରିବା ନିମିତ୍ତ ଇନ୍ଦ୍ର ଅର୍ଜୁନଙ୍କୁ ସହସ୍ର ଅଶ୍ୱଯୁକ୍ତ ଏକ ରଥ ପ୍ରଦାନ କରିଥିଲେ, ଯେଉଁ ଅଶ୍ୱମାନଙ୍କର ରଂଗ ସବୁଜ ଥିଲା ଏବଂ ସେମାନଙ୍କ ରୋମାବଳୀ ମୟୂର ସମାନ କାନ୍ତିମାନ ଥିଲା । ଏମାନେ ପବନ ବେଗରେ ଯାତ୍ରା କରିପାରୁଥିଲେ ଏବଂ ଆକାଶରୁ ରସାତଳ ପର୍ଯ୍ୟନ୍ତ ଏମାନଙ୍କର ଗତିଥିଲା । ମହାସାଗରର ଜଳରାଶି ମଧ୍ୟରେ ଏମାନେ ସହଜରେ ପ୍ରବେଶ କରି ପାରିଥିଲେ । ଓଡ଼ିଶାର ଜନ ଚେତନାରେ ବାସେଲୀ ପୂଜା ନାମକ ଏକ ପରଂପରା ରହିଛି । ଏହି ବାସେଲୀ ହେଉଛନ୍ତି କୈବର୍ତ୍ତ ସଂପ୍ରଦାୟର ଇଷ୍ଟଦେବୀ । ଏହାଙ୍କୁ ନେଇ କୈବର୍ତ୍ତ ସଂପ୍ରଦାୟ ମଧ୍ୟରେ ଘୋଡ଼ାନାଚ ଏକ ଲୋକପ୍ରିୟ ପର୍ବ । ଏହି ଘୋଡ଼ାର ଜନ୍ମ କାହାଣୀ ବଡ଼ ବିଚିତ୍ର । କୈବର୍ତ୍ତ ପୁରାଣ ନାମକ ଏକ ଉପପୁରାଣରେ ଏହାର ବିଶଦ ବର୍ଣ୍ଣନା ରହିଛି । ଏହି ପୁରାଣର ବର୍ଣ୍ଣନା ଅନୁଯାୟୀ ମହାପ୍ରଳୟ କାଳରେ ବଟଶାୟୀ ବିଷ୍ଣୁ ଏହି ଘୋଡ଼ାର ଜନ୍ମଦାତା ଅଟନ୍ତି ।

ସେ ବଟର ଚୂଳଭାଙ୍ଗି ହସ୍ତରେ ଧରିଲି
ଅଶ୍ୱ ହୁଅ ବୋଲିକରି ଆଜ୍ଞା ତାକୁ ଦେଲି
ଆଜ୍ଞା ପାଇଣ ସେ ବଟ ଅଶ୍ୱ ହୋଇଗଲା
ସେହି ଅଶ୍ୱ ମୋହଠାରୁ ଦାସ ରାଜା ନେଲା
ଆଜ୍ଞା ଦେଲି ଦାସ ରାଜା ସିଂହଳକୁ ଗଲା
ସେହି ଅଶ୍ୱକୁ ନେଇଣ ବାହନ କରିଲା ।
(କୈବର୍ତ୍ତ ପୁରାଣ)

ଲକ୍ଷେ ସମ୍ୱତ୍ସର ପରେ ଚୈତ୍ର ପୂର୍ଣ୍ଣିମା ଦିନ ସେହି ଅଶ୍ୱ ପ୍ରାଣତ୍ୟାଗ କଲା ଏବଂ ପୁନଶ୍ଚ ଲକ୍ଷ୍ମୀ ସ୍ୱରୂପିଣୀ ହୋଇ ସେହି ଅଶ୍ୱ ପୁନର୍ବାର ଜନ୍ମଲାଭ କଲା । ମହାବିଷ୍ଣୁଙ୍କ ଆଦେଶରେ ତା'ର ନାମ ହେଲା ଅଶ୍ୱିନୀ ବାସେଲୀ, କଳ୍ପବଟର ନନ୍ଦିନୀ ଭାବରେ ସେହି ଅଶ୍ୱମୁଖୀ ଦେବୀ ଅମ୍ବିକା, କାମାକ୍ଷୀ, ହିଙ୍ଗୁଳାଇ, ନାରାୟଣୀ, ଚାଚକାଇ, ଦୁର୍ଗା ଆଦି ନାମ ଧାରଣ କରି ପୂଜିତ ହେବାକୁ ଲାଗିଲେ । ମହାପ୍ରଭୁଙ୍କର କର୍ଣ୍ଣ ମୂଳରୁ ଜାତ କୈବର୍ତ୍ତ ସଂପ୍ରଦାୟର ଆଦି ପୁରୁଷ ଦାସ ରାଜାଙ୍କୁ ଏହି ଅଶ୍ୱମୁଖୀ ଦେବୀଙ୍କୁ ଆରାଧନା କରିବାକୁ ସେ ଆଦେଶ ଦେଇଥିଲେ । ସେବେଠାରୁ ଚୈତ୍ର ମାସରେ ଏହି ଅଶ୍ୱମୁଖୀ ବାସେଲୀ ପୂଜା ଅନୁଷ୍ଠିତ ହୋଇ ଲୋକ ସମାଜରେ ପ୍ରଭୂତ ଆଦର ଲାଭ କରିଛି ।

ସୂର୍ଯ୍ୟ ଓ ସଂଜ୍ଞାଙ୍କ ପୁତ୍ର ଅଶ୍ୱିନୀକୁମାର ମଧ୍ୟ ହୟବଦନ ଅଟନ୍ତି । ଏମାନେ ଯମଜ ତଥା ପରମ ସୌନ୍ଦର୍ଯ୍ୟର ଅଧିକାରୀ । ଚିକିତ୍ସା ବିଦ୍ୟାରେ ଅଦ୍ୱିତୀୟ ଅଟନ୍ତି । ସଂଜ୍ଞା ଅଶ୍ୱିନୀ ରୂପ ହୋଇ ଉତ୍ତର କୁରୁରେ ଭ୍ରମଣ କଲାବେଳେ ସୂର୍ଯ୍ୟ ଦେବ



ମଧ୍ୟ ଅନୁରୂପ ରୂପ ଧାରଣ କରି ସଂଜ୍ଞାଙ୍କ ସହିତ ମିଳିତ ହେବାରୁ ଅଶ୍ୱିନୀ କୁମାର ଦ୍ୱୟ ଅଶ୍ୱମୁଖ ହୋଇଥିବାର ଜଣାଯାଏ । କିନ୍ତୁ ନିରୁକ୍ତକାର ଯାସ୍କ ଦୁଇ ଭ୍ରାତାଙ୍କୁ ଇନ୍ଦ୍ର ଓ ସୂର୍ଯ୍ୟ ଭାବରେ ବର୍ଣ୍ଣନା କଲା ବେଳେ ବେଦ ଏମାନଙ୍କୁ ପୃଥିବୀ ଓ ସ୍ୱର୍ଗ, ଦିବା ଓ ରାତ୍ରୀ, ସୂର୍ଯ୍ୟ ଓ ଚନ୍ଦ୍ର, ବିବସ୍ୱାନ ଓ କାରୁଣ୍ୟର ଯମଜପୁତ୍ର, ଆକାଶର ପୁତ୍ର ସିନ୍ଧୁଗର୍ଭ ସଂଭୂତ, ଦକ୍ଷ ସଂଭୂତ, ସ୍ୱୟାତ୍ମଜାର ସ୍ୱାମୀ ବୋଲି ଆଖ୍ୟାୟିତ କରିଛନ୍ତି । ଏମାନେ ଏକ ସୁବର୍ଣ୍ଣ ରଥରେ ଦିନରେ ତିନିଥର ଓ ରାତ୍ରରେ ତିନିଥର ଜଗତ ଭ୍ରମଣ କରନ୍ତି । ପ୍ରତୀକାତ୍ମକ ଭାବରେ ବ୍ୟାଖ୍ୟା କଲେ ଏହିପରି ହେବ ସୂର୍ଯ୍ୟଙ୍କର ସପ୍ତରଶ୍ମୀକୁ ସପ୍ତାହର ସାତ ଦିନ, ସପ୍ତଅଶ୍ୱ ଭାବରେ ପରିକଳ୍ପନା କରାଯାଇଥାଏ । ସୂର୍ଯ୍ୟଙ୍କ କିରଣ ନେଇ ଚନ୍ଦ୍ର ରାତ୍ର କାଳରେ ବନସ୍ପତିର ପରିପାଳନ କରନ୍ତି । ଅଶ୍ୱିନୀ କୁମାର ସୂର୍ଯ୍ୟଙ୍କ ପୁତ୍ର ଭାବରେ ଦିବସକୁ ପାଳନ କରିବା ସହିତ ରାତ୍ରକାଳରେ ଔଷଧ ବୃକ୍ଷର ପାଳନ କରନ୍ତି ତେଣୁ ସେ ଯମଜ ଅଶ୍ୱମୁଖ । ଅମୃତ କଳସଧାରୀ ।

ବିଭିନ୍ନ କଥା ଓ କାହାଣୀମାନଙ୍କରେ ପକ୍ଷୀରାଜ ଘୋଡ଼ା ସଂପର୍କରେ ବହୁ ରୋଚକ କାହାଣୀମାନ ରହିଛି । ପୁରାଣର ବର୍ଣ୍ଣନା ଅନୁଯାୟୀ ଯେଉଁ ରାଜାର ଯେତେବେଶୀ ଅଶ୍ୱାରୋହୀ ସୈନ୍ୟ ଥିଲେ ସେ ସେତିକି ପ୍ରଭାବଶାଳୀ ଥିଲା । ଉତ୍ତମ ଅଶ୍ୱର ସର୍ବଦା ଆଦର ରହିଥିଲା । କାନ୍ୟକୁବ୍ଜ ସଂପ୍ରତି ଆରବ ଦେଶର ଅଶ୍ୱ ସର୍ବଶ୍ରେଷ୍ଠ । ପୁରାଣରେ ଏହାର ପ୍ରସିଦ୍ଧି ରହିଛି । ଏହି ସଂପର୍କରେ ଏକ କାହାଣୀ ମହାଭାରତରେ ବର୍ଣ୍ଣିତ । ମୁନି ଗାଲବଙ୍କର ଯେତେବେଳେ ଶିକ୍ଷା ଗ୍ରହଣ ଶେଷ ହେଲା ସେ ଗୁରୁ ବିଶ୍ୱାମିତ୍ରଙ୍କୁ ଗୁରୁ ଦକ୍ଷିଣା ମାଗିବାକୁ ଅନୁରୋଧ କରିବାରୁ ବିଶ୍ୱାମିତ୍ର ତାଙ୍କୁ ଆଠ ଶହ ଶ୍ୱେତ ବର୍ଣ୍ଣର ଉତ୍ତମ ଅଶ୍ୱ, ଯାହାର ଗୋଟିଏ କର୍ଣ୍ଣ କୃଷ୍ଣବର୍ଣ୍ଣ ମାଗିଥିଲେ । କଥିତ ଅଛି, ଏହିସବୁ ଦୁର୍ଲଭ ଅଶ୍ୱ ମହର୍ଷି ଋଚିକଙ୍କର ଥିଲା । ଏହା ସେ ବରୁଣଙ୍କଠାରୁ ପ୍ରାପ୍ତ ହୋଇଥିଲେ । ନୈଷଧରାଜ ନଳଙ୍କଠାରୁ ଋତୁପର୍ଣ୍ଣଙ୍କର ଅଶ୍ୱଚାଳନା ଶିକ୍ଷା ଅଶ୍ୱ ଓ ଅଶ୍ୱଚାଳକର ମହତ୍ତ୍ୱ ପ୍ରତିପାଦନ କରେ ।

ମହାଭାରତ ଓ ବୃହତ୍ ସଂହିତା ଆଦିରେ ଉତ୍ତମ ଗୁଣଯୁକ୍ତ ଅଶ୍ୱମାନଙ୍କର ବିଶେଷ ବର୍ଣ୍ଣନା ରହିଛି । ସୋମେଶ୍ୱର ଦେବ କୃତ ମାନସୋଲ୍ଲାସ ଗ୍ରନ୍ଥରେ ରାଜାମାନଙ୍କର ଯାତ୍ରା–(ଯୁଦ୍ଧଯାତ୍ରା, ଉତ୍ସବଯାତ୍ରା, ଘୋଷଯାତ୍ରା ଆଦି) ନିମିତ୍ତ ଯେଉଁ ବିଭିନ୍ନ ପ୍ରକାର ଯାନର ବ୍ୟବସ୍ଥା ରହିଛି ତନ୍ମଧ୍ୟରୁ ଅଶ୍ୱତରୀଯାନ ଓ ହୟଯାନ ପ୍ରଧାନ ଅଟେ । ଏଥି ନିମିତ୍ତ ବିଶେଷ ଲକ୍ଷଣଯୁକ୍ତ ଅଶ୍ୱର ଆବଶ୍ୟକତା ପଡ଼ିଥାଏ ।

ଶକ୍ତିସଂପନ୍ନ, ଦୃଢ଼ ନିଶ୍ଚୟ, ଭୟହୀନ ସୁନ୍ଦର ଚାଲି ସଂପନ୍ନ ଅଶ୍ୱ ରାଜାଙ୍କ ନିମିତ୍ତ ଉତ୍ତମ ଯାନ ଅଟେ । ଏହାକୁ ଚନ୍ଦନ ପୁଷ୍ପାଦିରେ ସଜ୍ଜିତ କରି ରାଜାଙ୍କ ଉପଯୋଗ ନିମିତ୍ତ ପ୍ରସ୍ତୁତ କରାଯାଇଥାଏ । ଏହାକୁ ଅଶ୍ୱତରୀ ଯାନ କହନ୍ତି । ଯେଉଁ ଅଶ୍ୱ ମୟୂର, ହଂସ, ତିତିରି ସଦୃଶ ଗତି କରେ, ସେହି ଅଶ୍ୱକୁ ହୟଯାନ କୁହାଯାଏ । ଯେଉଁ ଅଶ୍ୱଟି କ୍ଷିପ୍ର ଗତିରେ ଦୌଡ଼ିବା ସମୟରେ ତା'ର ଗ୍ରୀବା ଲମ୍ବିଯାଏ ଓ ପୁଚ୍ଛ ବିସ୍ତୃତ ହୋଇଯାଏ ତାକୁ ମୟୂରଗତି ସଂପନ୍ନ ଅଶ୍ୱ କୁହାଯାଏ । ଯେଉଁ ଅଶ୍ୱ ଦ୍ରୁତ ଗତିରେ ଧାବିତ ହେଲେ ମଧ୍ୟ ତାର ପୁଚ୍ଛ ଆଦୌ ସଂଚାଳିତ ହୁଏ ନାହିଁ ତାକୁ ତୈତରୀୟ ଗତି ସଂପନ୍ନ ଅଶ୍ୱ କୁହାଯାଏ । ଯେତେବେଳେ ତା'ର ମୁଣ୍ଡଟି କେବଳ ଗତି କରୁଥିବା ପରି ପ୍ରତୀୟମାନ ହୁଏ, ତା'ର ଗତିକୁ ମରାଳ ଗତି କୁହାଯାଏ । ଯେତେବେଳେ ଅଶ୍ୱଟି ତା'ର ଚାରିଗୋଡ଼ ବ୍ୟବହାର କରି ଦୌଡ଼େ ତା'ର ଗତିକୁ ଚତୁଷ୍କ ଗତି କୁହାଯାଏ । ଏହିପରି ବିଭିନ୍ନ ଗତି କରୁଥିବା ଅଶ୍ୱକୁ ଆବଶ୍ୟକତା ଅନୁଯାୟୀ ରାଜାଙ୍କର ଯାନ ଭାବରେ ବ୍ୟବହାର କରାଯାଏ । ଅଶ୍ୱ ଆରୋହଣ ସର୍ବଦା ଏକ ମର୍ଯ୍ୟାଦାର ପ୍ରତୀକ ଭାବରେ ଗଣାଯାଏ । ତେଣୁ ଧନର ଅଧିପତି କୁବେରଙ୍କର ଯେଉଁ ଦିକ୍‌ପାଳ ମୂର୍ତ୍ତି ରହିଛି, ସେଥିରେ ସେ କେତେକ ସ୍ଥାନରେ ଅଶ୍ୱାରୋହଣ କରିଥିବାର ଦେଖାଯାଏ । ଅଶ୍ୱର ପ୍ରଭୁ ଭକ୍ତି ଭୁବନ ବିଖ୍ୟାତ । ରାଣା ପ୍ରତାପ ଓ ତାଙ୍କର ଅଶ୍ୱଚେତକର ପ୍ରଭୁ ଭକ୍ତି ଭୁବନ ବିଖ୍ୟାତ ।

ମହାଭାରତ, ହରିବଂଶ, ଦେବୀ ଭାଗବତ ଆଦିର ବର୍ଣ୍ଣନା ଅନୁସାରେ ମାହିଷ୍ମତୀ ପୁରରେ ରାଜତ୍ୱ କରୁଥିବା ହୈହୟ ବଂଶ ସ୍ୱୟଂ ବିଷ୍ଣୁଙ୍କଠାରୁ ଜାତ ହୋଇଥିଲା । ଥରେ ସୂର୍ଯ୍ୟଙ୍କ ପୁତ୍ର ରେବନ୍ତ ଇନ୍ଦ୍ରଙ୍କର ଉଚ୍ଚୈଶ୍ରବା ଅଶ୍ୱ ଆରୋହଣ କରି ବୈକୁଣ୍ଠକୁ ଆସୁଥିଲେ । ଲକ୍ଷ୍ମୀ ସେ ଅଶ୍ୱକୁ ଦେଖି ଏତେ ତନ୍ମୟ

ହୋଇଗଲେ ଯେ ବିଷ୍ଣୁଙ୍କ କଥାର ଉତ୍ତର ଦେଲେ ନାହିଁ। ଏଥିରେ ବିଷ୍ଣୁ କ୍ରୋଧିତ ହୋଇ ଲକ୍ଷ୍ମୀଙ୍କୁ ମର୍ତ୍ତ୍ୟବାସ ନିମିତ୍ତ ଅଭିଶାପ ଦେଇଦେଲେ। ଲକ୍ଷ୍ମୀ ସେହି ଶାପ ଫଳରେ ଏକ ଘୋଟକୀ ହୋଇ ପୃଥିବୀରେ ବିଚରଣ କଲେ। ମହାଦେବ ଲକ୍ଷ୍ମୀଙ୍କର ଏ ଦୁରାବସ୍ଥା ଦେଖି – ଏଥିରୁ ମୁକ୍ତି ଦେବା ପାଇଁ ବିଷ୍ଣୁଙ୍କୁ ପ୍ରାର୍ଥନା କଲେ। ବିଷ୍ଣୁ ଏଥିରେ ସ୍ୱୀକୃତ ହେଲେ । ଏହି ସମୟରେ ଦେବଯାନୀଙ୍କର ଗର୍ଭଜାତ ପୁତ୍ର ତୁର୍ବସୁ ନାରାୟଣଙ୍କ ସଦୃଶ ଏକ ପୁତ୍ର ପ୍ରାପ୍ତି ନିମିତ୍ତ ବିଷ୍ଣୁଙ୍କୁ ତପସ୍ୟା କରୁଥିଲେ। ତୁର୍ବସୁଙ୍କର ଅଭୀଷ୍ଟ ପୂରଣ ଉଦ୍ଦେଶ୍ୟରେ ସ୍ୱୟଂ ବିଷ୍ଣୁ ଏକ ଅଶ୍ୱରୂପ ଧାରଣ କରି ଅଶ୍ୱିନୀ ରୂପିଣୀ ଲକ୍ଷ୍ମୀଙ୍କ ସହିତ ମିଳିତ ହେଲେ। ଏହି ସଂଗମରୁ ଯେଉଁ ସନ୍ତାନ ଜନ୍ମନେଲା ବିଷ୍ଣୁ ତାକୁ ତୁର୍ବସୁଙ୍କୁ ଦାନ କଲେ। ହୟା ଓ ହୟଙ୍କ ସଂଗମରୁ ଜାତ ହୋଇଥିବାରୁ ଏହି ସନ୍ତାନର ନାମ ହେଲା ହୈହୟ। ତାଙ୍କ ନାମ ଅନୁସାରେ ଏହି ରାଜବଂଶର ନାମ ହେଲା ହୈହୟ।

ମହାଭାରତର ବର୍ଣ୍ଣନା ଅନୁଯାୟୀ ଋଷି ଉର୍ବ କଠୋର ତପସ୍ୟା କରି ବ୍ରହ୍ମାଙ୍କ ସଦୃଶ ଗୁଣ ଓ ତେଜ ଯୁକ୍ତ ହୋଇଥିଲେ। ଏହି ସମୟରେ ହୁତାସନ ତାଙ୍କ ଉରୁରେ ପ୍ରବେଶ କରି ସେ ମଧ୍ୟ ତପସ୍ୟାରେ ନିମ୍ନ ରହିଲେ। ହଠାତ୍ ଦିନେ ଉର୍ବଙ୍କର ଉରୁ ଭେଦ କରି ଏକ ଅନଳ ଉତ୍ଥିତ ହେଲା। ବ୍ରହ୍ମା ସେହି ଅନଳକୁ ସମୁଦ୍ର ମଧ୍ୟକୁ ନିକ୍ଷେପ କରିବାରୁ ସେହି ଅନଳ ହୟଶିର ରୂପରେ ଆବିର୍ଭୂତ ହୋଇଥିଲା। ଏହାକୁ ବଡ଼ବାଗ୍ନି ମଧ୍ୟ କୁହାଯାଏ। ଅଗ୍ନି ବିଷ୍ଣୁଙ୍କର ଆଦ୍ୟରୂପ ବୋଲି ବେଦରେ ବର୍ଣ୍ଣିତ।

ଯେପରି ଭାବରେ ସ୍ୱୟଂ ବିଷ୍ଣୁ ବିଭିନ୍ନ ସମୟରେ ହୟ ରୂପ ଧାରଣ କରିଛନ୍ତି, ସେହିପରି କଳ୍କୀ ଅବତାର ସଂପର୍କରେ ଯେଉଁ ବର୍ଣ୍ଣନା ରହିଛି ସେଥିରେ ଶ୍ରୀବିଷ୍ଣୁ ଏକ ଅଶ୍ୱ ଉପରେ ଆରୋହଣ କରି ମ୍ଳେଚ୍ଛ ନିଧନ ନିମିତ୍ତ ଖଡ଼୍ଗ ଧାରଣ କରି ବହିର୍ଗତ ହେବେ।

ଏହିପରି ଭାବରେ ଶ୍ରୀବିଷ୍ଣୁ ତଥା ଦେବପୁରାଣ ଆଦିରେ ଦେବଦାନବ ଆଦିଙ୍କୁ ସଂଯୁକ୍ତ କରି ବହୁ ଅଶ୍ୱ ଚରିତ୍ରର ବର୍ଣ୍ଣନା ରହିଛି। ବେଦପୁରାଣ ବ୍ୟତୀତ ବୌଦ୍ଧ ତଥା ଜୈନ ଧର୍ମଗ୍ରନ୍ଥମାନଙ୍କରେ ମଧ୍ୟ ବୁଦ୍ଧ ତଥା ପାର୍ଶ୍ୱନାଥ ଆଦିଙ୍କୁ ଅଶ୍ୱ ସହିତ ସଂଯୁକ୍ତ କରି ଅନେକ ଉପକଥା ଦେଖାଯାଏ।

ମହାଭାରତର ଅନୁଶାସନ ପର୍ବରେ ଅଶ୍ୱକୁ ଏକ ପବିତ୍ର ପ୍ରାଣୀ ଭାବରେ ଗ୍ରହଣ କରାଯାଇ ଏହାକୁ ଦାନ କରିବାର ବିଧି ମଧ୍ୟ ରହିଛି, ଯାହାକୁ ହେମ ଅଶ୍ୱଦାନ ବିଧି କହନ୍ତି। ଏହାଦ୍ୱାରା ଯଜ୍ଞ କର୍ତ୍ତା ବହୁ ପୁଣ୍ୟ ଅର୍ଜନ କରିଥାନ୍ତି। ପୁରାଣର ବର୍ଣ୍ଣନା ଅନୁଯାୟୀ ସପ୍ତାଶ୍ୱ ଆରୋହଣ କରୁଥିବା ସପ୍ତ ରଶ୍ମୀଯୁକ୍ତ ସୂର୍ଯ୍ୟଙ୍କୁ ବନ୍ଦନା କରି ହିରଣ୍ୟ ଅଶ୍ୱ ଦାନ କଲେ ଦାତା ସମସ୍ତ ପ୍ରକାର ପାପରୁ ମୁକ୍ତ ହୋଇ ବିଷ୍ଣୁ ଲୋକ ପ୍ରାପ୍ତ ହୁଏ। ଏପରିକି ଦରିଦ୍ର ବ୍ୟକ୍ତି ଯାହା ପାଖରେ ହିରଣ୍ୟ ଅଶ୍ୱ ଦାନ କରବାର କ୍ଷମତା ନଥାଏ, ସେ ମଧ୍ୟ ହିରଣ୍ୟଅଶ୍ୱ ଦାନ ମାତ୍ର ଦର୍ଶନ ଓ ଶ୍ରବଣ କଲେ ସମସ୍ତ ପାପରୁ ମୁକ୍ତି ପାଏ।

ବେଦ ପୁରାଣ ଆଦିରେ ଅଶ୍ୱର ବହୁବିଧ ବର୍ଣ୍ଣନା ରହିଥିଲେ ମଧ୍ୟ ମହାପ୍ରଭୁ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ରଥରେ ସଂଯୁକ୍ତ ଅଶ୍ୱ ଅତ୍ୟନ୍ତ ତାର୍କିକ, କାରଣ ଏହି ରଥମାନଙ୍କରେ ସଂଯୁକ୍ତ ଅଶ୍ୱମାନେ ପ୍ରକୃତରେ ରଥକୁ ଟାଣନ୍ତି ନାହିଁ। ଭକ୍ତମାନେ ରଥକୁ ଟାଣନ୍ତି, ହେଲେ ବି ଏହି ଅଶ୍ୱମାନେ ବିଧିବିଧାନ ଅନୁଯାୟୀ ରଥରେ ସଂଯୁକ୍ତ ହୋଇଥାନ୍ତି। ଅଶ୍ୱକୁ ପରିଚାଳିତ କରିବା ପାଇଁ ତିନି ରଥରେ ତିନି ଜଣ ସାରଥୀ ତଥା ତିନିଜଣ ବାହକ (ଡାହୁକ) ନିଯୁକ୍ତ ହୋଇଥାନ୍ତି। ଏହି ଅଶ୍ୱମାନଙ୍କର ବୈଚିତ୍ର୍ୟ ହେଲା ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ରଥରେ ସଂଯୁକ୍ତ ଚାରି ଅଶ୍ୱ (ଶଙ୍ଖ, ବଳାହଂକ ଶ୍ୱେତ ଓ ହରିତାଶ୍ୱ)ଙ୍କର ବର୍ଣ୍ଣ ଶୁକ୍ଳ। ବଳଭଦ୍ରଙ୍କ ରଥରେ ସଂଯୁକ୍ତ ଅଶ୍ୱ (ତୀବ୍ର, ଘୋର, ଦୀର୍ଘଶ୍ରମ, ସ୍ୱର୍ଣ୍ଣନାଭ)ଙ୍କର ବର୍ଣ୍ଣ କୃଷ୍ଣ। ଦେବୀ ସୁଭଦ୍ରାଙ୍କ ରଥରେ ସଂଯୁକ୍ତ ଅଶ୍ୱ (ରୋଚିକା, ମୋଚିକା, ଜିତା ଓ ଅପରାଜିତା) ରକ୍ତ ବର୍ଣ୍ଣର ଅଟନ୍ତି। ବେଦରେ ଅଶ୍ୱକୁ କାଳ ରୂପରେ ବର୍ଣ୍ଣନା କରାଯାଇଛି। କୁହାଯାଏ କାଳର ପ୍ରତୀକ ଭାବରେ ଶ୍ୱେତ, କୃଷ୍ଣ ଓ ଲୋହିତ ଅଶ୍ୱର ସଂଯୋଜନା କରାଯାଇଛି। ସୃଷ୍ଟି, ସ୍ଥିତି ଓ ପ୍ରଳୟ ରୂପୀ, ସୁଭଦ୍ରା, ଜଗନ୍ନାଥ ଓ ବଳରାମ। ମହାକାଳ, ମହାକାଳୀ ରୂପରେ ସ୍ଥିତିଙ୍କର ଦୁଇ ପାର୍ଶ୍ୱରେ ଅବତୀର୍ଣ୍ଣ। କାଳ ପ୍ରଥମେ କୃଷ୍ଣବର୍ଣ୍ଣ, ତା'ପରେ



ଶ୍ୱେତବର୍ଣ୍ଣ, ଓ ତା'ପରେ ଲୋହିତ ବର୍ଣ୍ଣ। ଅନ୍ଧକାର, ତା'ପରେ ଆଲୋକ, ତା'ପରେ ଲୋହିତ ସୂର୍ଯ୍ୟାସ୍ତ ପୁନଶ୍ଚ ଅନ୍ତଃ। ଧର୍ମ, ଜ୍ଞାନ, ବୈରାଗ୍ୟ, ଐଶ୍ୱର୍ଯ୍ୟ ଏହି ଚାରି କଲ୍ୟାଣକାରୀ ଗୁଣର ପ୍ରତୀକ ମଧ୍ୟ ଅଶ୍ୱ। ଏହା ଶ୍ରୀବିଷ୍ଣୁଙ୍କର ଐଶ୍ୱର୍ଯ୍ୟ, ବାୟୁ ଶରୀରକୁ ଚଂଚଳ କରାଏ, ବହନ କରି ନିଏ। ପ୍ରାଣ ବା ପ୍ରାଣୀକୁ ଅନୁପ୍ରାଣିତ କରୁଥିବାରୁ ଏହାର ନାମ ପ୍ରାଣବାୟୁ। ଯେଉଁ ସପ୍ତବାୟୁ ରହିଛି ତାହାହିଁ ବିଷ୍ଣୁଙ୍କର ନିଃଶ୍ୱାସ ଅଟେ। ଚାରି ବେଦ ମଧ୍ୟ ଭଗବାନଙ୍କର ନିଃଶ୍ୱାସରୁ ସଂଭୂତ। ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ନାସିକା ରହିଛି କିନ୍ତୁ ସେଥିରେ ରନ୍ଧ୍ର ନାହିଁ। ବାୟୁ ବେଗରେ ଗତି କରି ପାରୁଥିବା ଏହି ଅଶ୍ୱ ତାଙ୍କ ନିଃଶ୍ୱାସ। ବାୟୁ ସୁପ୍ତ ହେଲେ ପ୍ରାଣର ବିନାଶ ଘଟେ। ଅଶ୍ୱ ଏପରି ଏକ ପ୍ରାଣୀ ଯେ କେବେ ଶୁଏ ନାହିଁ। ଥାଏ ସଦା ଜାଗ୍ରତ କେବଳ ମୃତ୍ୟୁରେ ସେ ଶୁଏ। ସେହିପରି ସୃଷ୍ଟି ପାଳନ କାରି ସଂବର୍ତ୍ତକ ସହିତ ପ୍ରଳୟକାଳୀନ ବଳାହକ ଆଦି ଚାରି ମେଘ ତାଙ୍କର ଶ୍ୱେତ ଅଶ୍ୱ ଭାବରେ ସଂଯୋଜିତ। ସଦା ଜାଗ୍ରତ ପ୍ରଳୟରେ ସୁପ୍ତ।

ସାରଳା ମହାଭାରତରେ ଏହି ଅଶ୍ୱମାନଙ୍କର ବିଶଦ ବିବରଣୀ ଦେଖାଯାଏ। ଯାହାକୁ ଅନୁଧ୍ୟାନ କଲେ ଏହି ସୂକ୍ଷ୍ମତତ୍ତ୍ୱର ବାସ୍ତବ ରୂପଚିତ୍ରକୁ ଅନୁଭବ କରିହୁଏ। ଶ୍ରୀଜଗନ୍ନାଥ, ଶ୍ରୀକୃଷ୍ଣ ଓ ଶ୍ରୀବିଷ୍ଣୁ ଶ୍ରୀନାରାୟଣ ଏକ ଓ ଅଭିନ୍ନ। ସେହିଁ ଗୋଲକବାସୀ, ସେ ହିଁ ବୈକୁଣ୍ଠବାସୀ ତଥା ସେ ହିଁ ଶ୍ରୀକ୍ଷେତ୍ରବାସୀ। ସେ ଯେତେବେଳେ ମର୍ତ୍ତ୍ୟାବରଣ କରନ୍ତି ତାଙ୍କ ସହିତ ତାଙ୍କ ଗୋଲକ ଓ ବୈକୁଣ୍ଠ ମଧ୍ୟ ଧରାବତରଣ କରେ। ଆସେ ତାଙ୍କର ଶଙ୍ଖ, ଚକ୍ର, ଗଦା, ପଦ୍ମ ଓ ଦିବ୍ୟରଥ ନନ୍ଦିଘୋଷ। ପୂର୍ଣ୍ଣ ଭାବରେ ଅଶ୍ୱ ଓ ସାରଥୀ ସଂଯୋଜିତ ହୋଇ ଯେଉଁମାନେ ଆଦୌ ସାଧାରଣ ନୁହଁନ୍ତି। କାରଣ ସ୍ୱୟଂ ବିଷ୍ଣୁ (ଶ୍ରୀଜଗନ୍ନାଥ) ଅଶେଷ ବ୍ରହ୍ମାଣ୍ଡ ଦେବଲୋକ, ନାଗଲୋକ, ନରଲୋକ ଜନଲୋକ ଆଦି ଯାହାଙ୍କର ଲୋମକୂପ ମଧ୍ୟରେ ଅବସ୍ଥାନ କରେ । ସେ ଯେଉଁ ରଥରେ ଅବସ୍ଥାନ କରିବେ ତାକୁତ କାହା ପକ୍ଷରେ ବି ବାହିନେବା ସହଜ ନୁହେଁ।

ମେରୁ ହୁଁ ବଳିଣ ଏହି ନନ୍ଦିଘୋଷ ଗୋଟି।
ଯେ ଅଶ୍ୱ ଚାଳିବେ ତାଙ୍କ ଜୀବନ ଧନ୍ୟଟି।।

ଏହି ଅଶ୍ୱ ଯେ ସାଧାରଣ ନୁହଁନ୍ତି ତାହା ସେମାନଙ୍କର ଜନ୍ମ କୁଣ୍ଡଳୀ ହିଁ ସୂଚାଇ ଥାଏ। ସ୍ୱୟଂ ବ୍ରହ୍ମଦେବ ଅଠାଶୀ ସହସ୍ର ବର୍ଷ ଯଜ୍ଞ କରି ଏହି ଅଶ୍ୱମାନଙ୍କୁ ଜନ୍ମ ଦେଇଥିଲେ।

ପୂର୍ବ ପଶ୍ଚିମ, ଆବର ଉତ୍ତର ଦକ୍ଷିଣ
ଅଗ୍ନି ଈଶ୍ୱାନ ନୈରତ ବାୟବ୍ୟେ ଯେ କୋଣ
ଅଷ୍ଟଭାଗ କରି ଧାତା ଦେଲେକ ଆହୂତି
ତହୁଁ ଅଷ୍ଟ ଅଗ୍ନି ଜାତ ହୋଇଲେ ଝଟତି
ଅଗ୍ନି ଦେବତା ହୋଇଲେ ଅତି ପରାକ୍ରମୀ
କୋଟିଏ ସାବିତ୍ରୀ ମନ୍ତ୍ରେ ଦେଲେ କୋଟିଭାଗ
ତହିଁରୁ ଜନ୍ମ ହୋଇଲେ ଆଠଟି ତୁରଂଗ
ଶଙ୍ଖ ଶ୍ୱେତ ଗୋକ୍ଷୀର ଯେ ଆଉ କାମପାଳ
କାଳୀ ହାରିତାଳ ମହାକୋଳ ବିଦ୍ୟାରୋଳ।
(ଭୀଷ୍ମ ପର୍ବ)

ଏହି ଅଷ୍ଟଅଶ୍ୱଙ୍କୁ ବ୍ରହ୍ମା ଉତ୍ପନ୍ନ କରିଥିଲେ। ସେଥିରୁ ଚାରି ଅଶ୍ୱ ନନ୍ଦିଘୋଷରେ ସଂଯୁକ୍ତ ହୋଇଥିଲେ। ଏହି ଅଶ୍ୱମାନେ ବିଶେଷ ଗୁଣ ସଂପନ୍ନ ଥିବାର ବର୍ଣ୍ଣନା ମଧ୍ୟ ରହିଛି।

ଶଙ୍ଖଶ୍ୱେତ ଗୋକ୍ଷୀର ଯେ ଆଉ କାମପାଳ
ଚାରୋଟି ଅଶ୍ୱ ମିଳିଲେ ଆସି ତତ୍‌କାଳ ।

ଏହି ଚାରି ଅଶ୍ୱ ପ୍ରଳୟ ଜଳରେ ବୁଡ଼ନ୍ତି ନାହିଁ, ଦିବାରାତ୍ର ଜାଣନ୍ତି ନାହିଁ କିମ୍ୱା କାଳର ମଧ୍ୟ ଅନୁଗତ ନୁହଁନ୍ତି। କାରଣ କୋଟିକାଳ ଏମାନଙ୍କ ନିକଟରେ ଗୋଟିଏ ମୁହୂର୍ତ୍ତ ଅଟେ। ଏମାନେ ଅନଳରେ ଦଗ୍ଧ ହୁଅନ୍ତି ନାହିଁ କି ଜଳରେ ମଧ୍ୟ ବୁଡ଼ନ୍ତି ନାହିଁ । ମହା ପ୍ରଳୟରେ ହଂସ ରୂପେ ବିହରନ୍ତି ଏବଂ ସମସ୍ତ ପ୍ରଳୟ କାଳ ଏମାନଙ୍କ ପାଇଁ ଗୋଟିଏ ମାତ୍ର ଦିନ।

ଯଦିଓ ଶିଳ୍ପଶାସ୍ତ୍ରାନୁସାରେ ଏହି ଅଶ୍ୱମାନଙ୍କର ନାମ ଶଙ୍ଖ, ବଳାହକ, ଶ୍ୱେତ, ହରିଦ୍ରାଶ୍ୱ ରହିଛି। ଏହା ବ୍ୟତୀତ ଏହି ଅଶ୍ୱମାନଙ୍କର ରଂଗ ସଂପର୍କରେ ଏକ ବିଶେଷ ସୂଚନା ମହାଭାରତର ଭୀଷ୍ମପର୍ବରୁ ମିଳିଥାଏ, ଯେଉଁଠି କୃଷ୍ଣ ଓ ଅର୍ଜ୍ଜୁନ ଆରୋହଣ କରିଥିବା ରଥର ବର୍ଣ୍ଣନା ରହିଛି।

ଏହି ରଥ ଅଗ୍ନି ସମାନ ଥିଲା। ଏଥିରେ ସୂର୍ଯ୍ୟଙ୍କ ଆକୃତିର ସହସ୍ର ଚକ୍ର ବିଦ୍ୟମାନ ଥିଲା। ଏଥିରେ ସହସ୍ର କ୍ଷୁଦ୍ର



ଘଣ୍ଟି ଝୁଲୁଥିଲା । ବହୁମୂଲ୍ୟ ଜମ୍ବୁନଦ ନାମକ ସୁବର୍ଣ୍ଣରେ ଭୂଷିତ ହେବା କାରଣରୁ ଏହି ରଥ ଅତ୍ୟନ୍ତ ଶୋଭିତ ଥିଲା । ଏହି ଅଶ୍ୱରେ ଶ୍ୱେତ ରଂଗର ଅତି ସୁନ୍ଦର ଘୋଟକ ସଂଯୁକ୍ତ ହୋଇଥିଲେ । ଏହାର ଚକ ମଧ୍ୟ ଅତ୍ୟନ୍ତ ସୁନ୍ଦର ଥିଲା । ସ୍ୱର୍ଗ, ପୃଥିବୀ, ଆକାଶ, ସର୍ବତ୍ର ଏହି ରଥ ଗମନ କରିବାକୁ ସମର୍ଥ ଥିଲା । କୌଣସି କାରଣରୁ ଏହି ରଥର ଏକ ଅଶ୍ୱ ଯଦି ମୃତ୍ୟୁ ବରଣ କରୁଥିଲା ତା' ହେଲେ ଅନ୍ୟ ଏକ ଅଶ୍ୱ ଉତ୍ପନ୍ନ ହୋଇ ତା'ର ସ୍ଥାନ ପୂରଣ କରୁଥିଲା । (ମହାଭାରତ ଯାନ ସଂଧିପର୍ବ)

ସେହିପରି ଯେଉଁ ତାଳଧ୍ୱଜ ଓ ପଦ୍ମଧ୍ୱଜ ରଥ ନନ୍ଦିଘୋଷ ସହିତ ଉତ୍ପନ୍ନ ହୋଇଥିଲେ ତାତ୍ତ୍ୱିକ ଦୃଷ୍ଟି କୋଣରୁ ସେମାନଙ୍କର ସଂଯୋଜନା ମଧ୍ୟ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ।

ବଡ଼ବାଡ଼, ବଡ଼ଠାକୁର ବଳଭଦ୍ରଙ୍କ ରଥରେ କୃଷ୍ଣ ମେଘ ସଦୃଶ ଚାରି ଅଶ୍ୱ ତୀବ୍ର, ଘୋର, ଦୀର୍ଘଶ୍ରମ ଓ ସ୍ୱର୍ଣ୍ଣନାଭ ସଂଯୁକ୍ତ ହୋଇଥାନ୍ତି । ଶଙ୍ଖଧବଳ ତନୁକାନ୍ତି ସଂପନ୍ନ ଶ୍ରୀବଳଭଦ୍ରଙ୍କର କୃଷ୍ଣବର୍ଣ୍ଣ ଅଶ୍ୱ ସଂଯୋଜନା କେତେ ତାତ୍ତ୍ୱିକ ତାହା ଶ୍ରୀବଳଭଦ୍ରଙ୍କ ସ୍ୱରୂପ ତତ୍ତ୍ୱରୁ ପ୍ରମାଣିତ । ସ୍ୱୟଂ ବଳଭଦ୍ର ଶେଷନାଗ ଅଟନ୍ତି । ଯିଏ ସାମାନ୍ୟ ଟିକିଏ ଇତସ୍ତତଃ ହେଲେ ପୃଥିବୀରେ ମହାପ୍ରଳୟ ସୃଷ୍ଟି ହୋଇଥାଏ । ତେଣୁ ତାଙ୍କୁ ମହାକାଳ ମହାରୁଦ୍ର ଭାବରେ ମଧ୍ୟ ଉପସ୍ଥାପିତ କରାଯାଇଥାଏ । କାଳଗର୍ଭରେ ସବୁକିଛି ଲୀନ ହୁଏ ପୁନଶ୍ଚ ସେହି କାଳଗର୍ଭରୁ ସବୁ କିଛି ଜାତ ହୁଏ । ହଳାୟୁଧ ବଳଭଦ୍ର ହିଁ କର୍ଷଣ କରି ଭୂମିକୁ ବୀଜ ଅଂକୁରଣ ନିମିତ୍ତ ଉପଯୋଗୀ କରନ୍ତି । ସୃଷ୍ଟି ହୁଅନ୍ତି ପ୍ରଜାକୁଳ । ସଭ୍ୟତାର ବିକାଶ ଘଟେ । ସୃଷ୍ଟି, ଗୋପାଳନ, ବେପାର ବଣିଜ–ଯୁଦ୍ଧ, ରାଜ୍ୟରକ୍ଷା ଶେଷରେ ଜ୍ଞାନର ବିକାଶ, ଶ୍ରୀକୃଷ୍ଣ ଓ ବଳରାମଙ୍କର ଜୀବନଚିତ୍ର–ଗୋପ–ଗୋପରୁ ମଥୁରା–ମଥୁରାରୁ–ଦ୍ୱାରକା–ଦ୍ୱାରକାରୁ ହସ୍ତୀନା–ହସ୍ତୀନାରୁ କୁରୁକ୍ଷେତ୍ର ଓ କୁରୁକ୍ଷେତ୍ରରେ ଗୀତାର ଉନ୍ମେଷ । ଏହା ଏକ ବିରାଟ ସାଂସ୍କୃତିକ ପ୍ରବର୍ତ୍ତନ, ଶୁଦ୍ର, ବୈଶ୍ୟ, କ୍ଷତ୍ରୀୟ, ବ୍ରାହ୍ମଣ– ଏହି ଚାରି ବର୍ଣ୍ଣର ବିକାଶ ସଂଭବ ହୋଇଥିଲା କୃଷ୍ଣ ବଳରାମଙ୍କ ଜୀବନରେ । ଗୋଗୋଷ୍ଠରେ ବଳରାମଙ୍କ ଜନ୍ମ କୃଷିକାରୀ ଗୋପାଳକ ଗୋପ ଭାବରେ– କ୍ରମଶଃ ସେହିଗୋପ ଗୋପୀମାନେ ବାଣିଜ୍ୟରେ ମଧ୍ୟ ଶ୍ରୀସଂପନ୍ନ ହେଲେ । କ୍ରମଶଃ କ୍ଷତ୍ରୀୟୋଚିତ କର୍ମ କରି ଦ୍ୱାରକା ସ୍ଥାପନା କଲେ ଏବଂ ଶେଷରେ କୁରୁକ୍ଷେତ୍ର ଯୁଦ୍ଧରେ ଏକ ନିର୍ଣ୍ଣୟାତ୍ମକ ଭୂମିକା ଗ୍ରହଣ କରି ଯୋଗ ବଳରେ ବଳରାମ ରସାତଳକୁ ଗମନ କଲେ । ତାଙ୍କର ଏହି ଗତିଥିଲା ଅତ୍ୟନ୍ତ କ୍ଷିପ୍ର ବେଗଶାଳୀ । କଥିତ ଅଛି, ତାଙ୍କର ତାଳଧ୍ୱଜ ରଥ ଇନ୍ଦ୍ରଙ୍କ ପାଖରେ ସୁରକ୍ଷିତ ହୋଇ ରହିଥିଲା ଏବଂ ମେଘ ବାହନ ଇନ୍ଦ୍ରଙ୍କ ସମାନ ଏହି ଅଶ୍ୱ କୃଷ୍ଣ ମେଘର ରୂପଧାରଣ କରି ପୃଥିବୀ ଉପରେ ଅମୃତ ବର୍ଷା କରିଥାନ୍ତି । ରସର ଆକର ପ୍ରଭୁଙ୍କର ଆଳୟ, ସେହିଠାରୁ ରସ ଗ୍ରହଣ କରି ଇନ୍ଦ୍ର ସମଗ୍ର ପୃଥିବୀକୁ ଜଳ ସେଚିତ କରାନ୍ତି ତୀବ୍ର, ଘୋର, ଦୀର୍ଘଶ୍ରମ ଓ ସ୍ୱର୍ଣ୍ଣନାଭ ତାଳଧ୍ୱଜକୁ ବୋହିନେଇ ସମଗ୍ର ପୃଥିବୀ ଉପରେ ଅମୃତ ହିଁ ସିଂଚନ କରିଥାନ୍ତି ।

ମହାନ ଯଜ୍ଞ ଅଗ୍ନିରୁ ଜାତ ଦେବୀ ଅମ୍ବିକାଙ୍କର ପଦ୍ମଧ୍ୱଜ ରଥର ବାହିକା ହେଲେ ରୋଚିକା, ମୋଚିକା, ଜିତା, ଅପରାଜିତା ନାମ୍ନି ଚାରି ଅଶ୍ୱିନୀ, ଯେଉଁମାନଙ୍କର ଶରୀରର ବର୍ଣ୍ଣ ଲୋହିତ । ଉଦୟ ସୂର୍ଯ୍ୟର ବର୍ଣ୍ଣ ବିଭା ନେଇ ଏହି ଚାରି ଅଶ୍ୱିନୀ ବିଦ୍ୟମାନ । ଦେବୀ ସୁଭଦ୍ରା ସ୍ୱୟଂ ମାୟାଶକ୍ତି ।

ଅଣାକାର ବୋଲନ୍ତେ ସେ ମହାଶୂନ୍ୟ କହି
ଉର୍ମଧୁର୍ମ ଜ୍ୟୋତି ଜ୍ୱଳା ତହୁଁ ପ୍ରକାଶଇ
ଓଁ ଆଦି ମାତା ତହୁଁ ହୋଇଲେ ଜନମ
ଅର୍ଦ୍ଧମାତ୍ର ଗର୍ଭୁ ତିନି ବୀଜ ଉତପନ୍ନ ।
ହ୍ଳୀଂ ଶ୍ଳୀଂ କ୍ଳୀଂ ତହୁଁ ତ୍ରୟ ରୂପ ହୋଇ
ବ୍ରହ୍ମାଣ୍ଡ ସର୍ଜନା କଲେ ଜଗତର ସାଇଁ । (କୈବର୍ତ୍ତ୍ୟ ପୁରାଣ)

ଏହି ଦେବୀ ସ୍ୱୟଂ ଭୂଦେବୀ, ସ୍ୱୟଂ ଶ୍ରୀଦେବୀ, ସ୍ୱୟଂ ମହାକାଳୀ, ସ୍ୱୟଂ ବ୍ରହ୍ମାଣୀ । ପରମ କଲ୍ୟାଣକାରିଣୀ କୈବଲ୍ୟ ଦାୟିନୀ ଲୋହିତ ବର୍ଣ୍ଣର ଅଶ୍ୱ ହିଁ ଆଦି ସୃଷ୍ଟିଙ୍କର ପରମ ସଂକେତ । ଉଷା ଆଗମନ କାଳର ପ୍ରଥମ ରଶ୍ମୀ ଲୋହିତ ବର୍ଣ୍ଣ । କୃଷ୍ଣ ବର୍ଣ୍ଣ ବଳଭଦ୍ରଙ୍କର ଅଶ୍ୱ ଯାତ୍ରା ପରେ ସମସ୍ତ ଅନ୍ଧକାରକୁ ବିନାଶ କରି ରୋଚିକା, ମୋଚିକା, ଜିତା, ଅପରାଜିତାଙ୍କର ଆଗମନ ହୁଏ ଏବଂ ତତ୍ ପରେ ସଂପୂର୍ଣ୍ଣ ଆଲୋକର ଜ୍ଞାତା ବେଦବିତ୍ ଶ୍ରୀଜଗନ୍ନାଥଙ୍କର ଶ୍ୱେତ ଅଶ୍ୱର ଆଗମନ ହୁଏ । ସଂପୂର୍ଣ୍ଣ ଭୂଲୋକରେ ବେଦବାଣୀ ରୂପକ ଜ୍ଞାନର ବିଚ୍ଛୁରଣ ହୁଏ । ଦେବୀ ସୁଭଦ୍ରା ସ୍ୱୟଂ ଯୋଗନିଦ୍ରା– ସର୍ବଦା ସେ

ନାରାୟଣଙ୍କ ସହିତ ରହିଥାନ୍ତି । ଯେତେବେଳେ ପ୍ରଭୁଙ୍କର ନିଦ୍ରା ଶେଷହୁଏ, ସେତେବେଳେ ସେ ଜାଗ୍ରତ ହୁଅନ୍ତି, ସେତେବେଳେ ହିଁ ତାଙ୍କ ନାଭି ପଦ୍ମରୁ ରକ୍ତ କମଳ ବିକଶିତ ହୁଏ । ବ୍ରହ୍ମାଙ୍କର ଦୃଷ୍ଟି ଉନ୍ମୋଚିତ ହୁଏ । ବ୍ରହ୍ମ ସ୍ୱରୂପିଣୀ ବ୍ରହ୍ମା ପଦ୍ମଧ୍ୱଜରେ ବିଜେ କରି ଅରୁଣବର୍ଣ୍ଣ ଅଶ୍ୱ ଦ୍ୱାରା ବାହିତ ହେବା ଏହି ତତ୍ତ୍ୱକୁ ବ୍ୟାଖ୍ୟା କରିଥାଏ । ଅଶ୍ୱ ଓ ଅଶ୍ୱିନୀଙ୍କର ଶକ୍ତି ସର୍ବଦା ସମାନ । ସମାନ ତେଜ ଓ ବୀର୍ଯ୍ୟସଂପନ୍ନ । ଯେତିକି ଶକ୍ତି ଜଗନ୍ନାଥଙ୍କ ପାଖରେ ରହିଛି, ସେତିକି ରହିଛି ଯୋଗମାୟାଙ୍କ ପାଖରେ । ତେଣୁ ଯେତିକି ଶକ୍ତି ଜଗନ୍ନାଥ ଓ ବଳଭଦ୍ରଙ୍କ ଅଶ୍ୱମାନଙ୍କ ପାଖରେ ରହିଛି, ସେତିକି ରହିଛି ସୁଭଦ୍ରାଙ୍କ ଅଶ୍ୱିନୀ ରୋଚିକା, ମୋଚିକା, ଜିତା ଓ ଅପରାଜିତାଙ୍କ ପାଖରେ । ସଦା ଜାଗ୍ରତ ସ୍ୱୟଂ ଯୋଗମାୟାଙ୍କର ଅଂଶ ବିଶେଷ । ସୃଷ୍ଟିର ବିନାଶ ହେଲେ ମଧ୍ୟ ପ୍ରକୃତିର ବିନାଶ ହୁଏ ନାହିଁ । ଉଚ୍ଚୈଶ୍ରବାଠାରୁ ବଡ଼ବାଗ୍ନି ରୂପରେ କେଉଁଠି ନା କେଉଁଠି ସେ ସଂରକ୍ଷିତ ହୋଇ ରହିଥାଏ ।

ନରେନ୍ଦ୍ରକୋଣ, ପୁରୀ

# ହୀନ ଅକିଂଚନ, ଅଭାଗା ମୁଁ ସତେ

**ସୂର୍ଯ୍ୟ ମିଶ୍ର**

ହୀନ ଅକିଂଚନ, ଅଭାଗା ମୁଁ ସତେ
ମନେ ମନେ ଏଠି ଭାଳେ,
ଜୀବନ ଯାତନା ଯମପୁରୀ ତୁଲ
ଭିଡି ଧରିଅଛି କାଳେ ।
କାମନା–କାବେରୀ ଗଭୀର ଜଳରେ
ସୁଖଭୋଗ–ନାଆ ମେଲେ,
ଶରୀର, ଶକତି, ସପନ ସାଉଁଟେ
ନିର୍ବାଣ କଥା ଭୁଲେ ।
ଲୋଭର ଅନଳ ଜଳେ ଅବିରଳ
ପାଶବତା ପରି ବ୍ୟାପେ,
ଜୀବନ–ପଥରେ ହଜାର ପଥର
ଆୟୁ ବିଫଳତା ମାପେ ।
ଲୁହ ଢ଼ଳଢ଼ଳ ହସ ଖଳଖଳ
ଜାଣେନା ସୁଖ କି ଦୁଃଖ,
ଯଶ–ବର୍ଣ୍ଣର ଫୁଲ ଫୁଟେ କିନ୍ତୁ
ବାସନା ଯେ ନିରର୍ଥକ ।
ଅନ୍ଧ ଆଖିରୁ ସବୁ ଅନୁରାଗ
କ୍ଷଣେ କ୍ଷଣେ ଯାଏ ଲିଭି,
ପୁତ୍ରକଳତ୍ର କଳହ କୁକର୍ମେ
ପୌରୁଷ ଯାଏ ଡୁବି ।
ସଂଘାତ ମୋତେ ଶାଳୀନ କରିନି
ବିଷାଦରେ ବିପୁଳ,
ବ୍ୟଥାବିଦଳିତ ହୃଦୟ ପିଉଛି
ଅବିରତ ଗରଳ ।
ସତ୍ୟ ସୁନ୍ଦର ଶିବ ସଂଧାନେ
ଧ୍ୟାନ କେବେ ଦେଇନାହିଁ,
ମଣିଷରୂପୀ ମୁଁ ଅରଣା ମଇଁଷି
ସଂଭୋଗ ପାଇଁ ବାଇ ।
ଗୋଲକ ଆଖିର, ମଂଦ ହସର
ଅର୍ଥ ମୋ ଲାଗି ବୃଥା,
ଆତ୍ମା–ଭଗତି–ଶାଶ୍ୱତ–ମୂଳ
ମୋ ନିକଟେ ମିଛ କଥା ।
ସେଥିପାଇଁ ଆଜି ଅର୍ଗଳ ପାଶେ
ଠିଆ ମୁହିଁ ଉପେକ୍ଷିତ,
ସଂସାର ସାରା ଏଠି ଅବନତ
ମୁଁ କେବଳ ଅଯାଚିତ ।
ଅକିଂଚନର ନାହିଁ ପ୍ରାର୍ଥନା
ଭକ୍ତି, ଆବେଗ ସତ,
ତଥାପି ତୁମର ଭାବନା କାହିଁକି
ଆଜି କରେ ବିଚଳିତ ।
ଭାବର ଠାକୁର ଭାବନାକୁ ମୋର
ଭାବରେ ସମାଧି ଦିଅ,
ଆଜିର ଦିନରେ ପାଶେ କର ଲୀନ
ମଣି ଅମୃତ–ପୁଅ ।

ତେଲାଙ୍ଗ ଷ୍ଟେସନ ବଜାର
ବେରବୋଇ, ପୁରୀ–୭୫୨୦୧୬



# ଶ୍ରୀଜଗନ୍ନାଥ : ବହୁତାର ଦିବ୍ୟସ୍ୱରୂପ

ଆର୍. ବାଲ୍‌କ୍ରିଷ୍ଣନ୍

ଜଗନ୍ନାଥ : ବହୁତାର ଦିବ୍ୟ ସ୍ୱରୂପ । ଏ ବିଷୟଟିକୁ ମୁଁ କାହିଁକି ବାଛିଲି ? ଜଣେ ବ୍ୟକ୍ତି ଭାବରେ ମୁଁ ବହୁତାର ସମର୍ଥକ । ମୁଁ ପ୍ରକୃତିର ଓ ମାନବଜାତିର ବହୁତାସଂପନ୍ନ ସ୍ୱରୂପରେ ବିଶ୍ୱାସ କରେ । ବିଶ୍ୱାସ କରେ ଆମର ସଂସ୍କୃତି, ଭାଷା ଓ ଚିନ୍ତାଧାରାର ବହୁତାରେ ।



ଦୀର୍ଘ ୩୩ ବର୍ଷ ତଳେ ମୁଁ ଯେତେବେଳେ ଓଡ଼ିଶାକୁ ପ୍ରଥମ କରି ଆସିଲି, ସେତେବେଳେ ଓଡ଼ିଆ ସଂସ୍କୃତି ବାବଦରେ ମୋତେ କିଛି ଜଣା ନଥିଲା । ଯଦିଓ ଜଗନ୍ନାଥନ୍ ନାଆଁଟି ଆମ ଆଡେ ବେଶ୍ ଜଣାଶୁଣା, ସେପର୍ଯ୍ୟନ୍ତ ମୁଁ ଗୋଟିଏ ହେଲେ ଜଗନ୍ନାଥ ମନ୍ଦିର ଦେଖିନଥିଲି । ତେବେ କାଳକ୍ରମେ ମୋର ହୃଦ୍‌ବୋଧ ହେବାରେ ଲାଗିଲା ଯେ ପ୍ରଭୁ ଶ୍ରୀଜଗନ୍ନାଥ ବହୁତାର, ସାମଗ୍ରିକତାର ଓ ବିବିଧତାର ଏକ ପ୍ରତିଭୂ । ଅଶୀ ଦଶକରେ ଆଦିବାସୀ ଅଧ୍ୟୁଷିତ କୋରାପୁଟ ସହ ମୋର ପରିଚିତି ମୋ ମନରେ ଏହି ବହୁତାର ଅବବୋଧକୁ ଦୃଢ଼ୀଭୂତ କରିଦେଇଥିଲା ।

ଓଡ଼ିଶାର ଏହି ପ୍ରମୁଖ ଦେବତାଙ୍କର ବିଶେଷତ୍ୱ ହେଉଛି, ସେ ଦାରୁ ରୂପରେ ନିଜର ବଡଭାଇ ଓ ସାନଭଉଣୀଙ୍କ ସହିତ ତ୍ରିମୂର୍ତ୍ତି ଭାବରେ ପୂଜା ପାଆନ୍ତି ଏବଂ ସେ ତିହ୍ନିଙ୍କର ରଙ୍ଗ ମଧ୍ୟ ଭିନ୍ନଭିନ୍ନ । ଏ ଭାବଧାରା ମୋ'ପାଇଁ ନୂଆ ଥିଲା । ସେଯାଏଁ ଦେବତା କହିଲେ ମୁଁ ବୁଝୁଥିଲି ମୁଖ୍ୟତଃ ବ୍ରୋଞ୍ଜ, ଗ୍ରାନାଇଟ୍ ବା ସେମିତି କିଛି ଧାତୁ ବା ପଥରରେ ଗଢା ମୂର୍ତ୍ତିମାନଙ୍କୁ ।

ଯେତେବେଳେ ମୁଁ ଶ୍ରୀମନ୍ଦିରର ସ୍ୱଳ୍ପାଲୋକିତ ଗର୍ଭଗୃହରେ ଠିଆ ହେଲି, ମୁଁ ବିହ୍ୱଳ ହୋଇଉଠିଲି । ଏହା କୌଣସି ଧାର୍ମିକ ସମ୍ପୃକ୍ତି ଯୋଗୁଁ ନୁହେଁ । ମୁହୂର୍ତ୍ତକ ପାଇଁ ମୋର ମନେହେଲା, ସତେଯେମିତି ମୁଁ କେଉଁ ଏକ ଅଦ୍ଭୁତ, 'ଆଦିମ ପରିବେଷ୍ଟନୀ'ର ଅଙ୍ଗୀଭୂତ, ଯେମିତି ଏକ ଅଦୃଶ୍ୟ ନାହିନାଡ ଦ୍ୱାରା ମୁଁ କାହିଁ କେତେ ପୁରୁଷର ସେଇ ଗୋଟିଏ ଜରାୟୁ ସହ ଯୋଡି ହୋଇଯାଉଛି ।

ଆଜି, ଅନ୍ୟାନ୍ୟ ଦେବଦେବୀଙ୍କ ସହ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ତ୍ରିମୂର୍ତ୍ତି ମୋ ଘରେ ପ୍ରମୁଖ ଦେବତା ଭାବରେ ଉପାସିତ ହେଉଛନ୍ତି ।

ଆଜି କିନ୍ତୁ ମୁଁ ମୋ' ନିଜକୁ ଗୋଟିଏ ପ୍ରଶ୍ନ ପଚାରୁଛି: ଏପରି ଗୋଟିଏ ବିଷୟରେ କିଛି କହିବା ପାଇଁ ମୁଁ କେତେଦୂର ଯୋଗ୍ୟ ? ମୋର ଯେତିକି ଅଧ୍ୟୟନ ବା ଅନୁଧ୍ୟାନ ଅଛି, ସେତିକିରେ ଯେ ମୁଁ ଏଥିପାଇଁ ଯୋଗ୍ୟ, ସେ ବାବଦରେ ମୁଁ ନିଶ୍ଚିତ ନୁହେଁ । ତେବେ, ଜଗନ୍ନାଥ ଯେ ବହୁତାର ଏକ ଦିବ୍ୟସ୍ୱରୂପ– ଏ ଭାବଧାରାରେ ତାଙ୍କୁ ଦେଖିଲାବେଳେ ମୁଁ ଏପରି ଉତ୍ସାହିତ ଅନୁଭବ କରୁଛି ଯେ ଅଟକିଯିବାକୁ ମୋ' ମନ ଚାହୁଁନାହିଁ । ଆଜି, ଜୀବନର ଏଇ ମୋଡରେ ଠିଆହୋଇ ମୁଁ ଯେତେବେଳେ ପଛକୁ ଚାହୁଁଛି– ଦେଖୁଛି, ଏ ରାଜ୍ୟର



କେତେ କୋଣ, ଅନୁକୋଣ ମୁଁ ବୁଲିଛି, କେତେ ପାହାଡ ଚଢିଛି ଏବଂ ଏ ସଂସ୍କୃତିର କେତେ ରହସ୍ୟ ଉଦ୍‌ଘାଟନ କରିବାରେ ମୁଁ ଆଗ୍ରହୀ ହୋଇଛି । ସୂର୍ଯ୍ୟ–ଉପାସନାର ଉଦ୍ଭବ ଓ ବିକାଶର ଅଧ୍ୟୟନ ଓ ଅନୁସନ୍ଧାନ ମୋତେ ନେଇ ପହଞ୍ଚାଇ ଦେଇଛି କୋଣାର୍କର ଅଜ୍ଞାତ ଅଧ୍ୟାୟ ପାଖରେ, କଳିଙ୍ଗ ଓ ଇଣ୍ଡୋନେସିଆ ମଧ୍ୟରେ ଥିବା ପ୍ରାଚୀନ ସମ୍ପର୍କର ଅଧ୍ୟୟନ ଓ ଅନୁଧ୍ୟାନ, ମୋ' ଆଗରେ ଖୋଲିଦେଇଛି ନୂତନ ଅବବୋଧର ବାତାୟନ ।

ପ୍ରାଚୀ ଉପତ୍ୟକାର ଚଉରାଶି ଗ୍ରାମରେ ଥିବା ୮୪ଟି କୂଅର ଆବିଷ୍କାର ହେଉ ବା ଓଡ଼ିଆ ଜନଜୀବନର ଆଧାର ଭାବରେ ଥିବା ଆଦିବାସୀ ଉତ୍ସର ସନ୍ଧାନ ହେଉ, କିମ୍ବା ସ୍ଥାନ ନାମକୁ ନେଇ ଓଡ଼ିଶାର ବହୁସ୍ତରୀୟ ଭିତ୍ତିର ଅନ୍ୱେଷଣ– ସବୁବେଳେ ମୁଁ ଅନୁଭବ କରିଛି, ଓଡ଼ିଶାରେ ଏହି ରହଣିକାଳ ମୋତେ ଯୋଗାଇଦେଇଛି ଅସରନ୍ତି ଉତ୍ସାହ ଓ ତଥ୍ୟ ଅନ୍ୱେଷଣର ଅନେକ ବିରଳ ସୁଯୋଗ ।

ମୁଁ ଭାଗ୍ୟବାନ ଯେ ୨୦୦୧ରୁ ୨୦୦୪ ପର୍ଯ୍ୟନ୍ତ ମୁଁ ଓଡ଼ିଶାର ସଂସ୍କୃତି ସଚିବ ଥିଲି । ମୋ' ଦୃଷ୍ଟିରେ ଅଦ୍ୟାବଧି ଏହା ମୋ ପାଇଁ ଓଡ଼ିଶା ସରକାରର ସବୁଠୁ ସମ୍ମାନଜନକ ଏବଂ 'ସର୍ବୋଚ୍ଚ' ପଦବୀ । ମୁଁ ବିଶ୍ୱାସ କରେ ଯେ ଏହି ସୁଯୋଗର ଅଧିକାରୀ ହେବାପାଇଁ ମୋତେ କଠିନ ପରିଶ୍ରମ କରିବାକୁ ପଡିଛି ।

ଏବେ ଭାବିଲେ ମୁଁ ଆତ୍ମପ୍ରସାଦ ଅନୁଭବ କରେ ଯେ ଓଡ଼ିଶା ସମ୍ପର୍କରେ ମନେରଖିଲା ପରି କିଛି ଉଦ୍ୟମର ମୁଁ ଅଂଶୀଦାର ହୋଇପାରିଥିଲି । ସମଗ୍ର ଭାରତରେ ପ୍ରଥମ ଥିଲା 'କଲ୍‌ଚରାଲ ଆଟ୍‌ଲାସ୍ ଅଫ୍ ଓଡ଼ିଶା'ର ପ୍ରକାଶନ । ପ୍ରଫେସର କରୁଣାସାଗର ବେହେରା ଓ ଅନ୍ୟମାନଙ୍କ ସହଯୋଗରେ ଶ୍ରୀଜଗନ୍ନାଥ ମନ୍ଦିର ସମ୍ପର୍କରେ ପ୍ରକାଶ ପାଇଥିଲା 'ଚାର୍ଲସ ଗ୍ରୋମ୍‌ସ୍ ରିପୋର୍ଟ' (୧୮୦୫) ଓ 'ଜର୍ଜ ୱେବ୍‌ସ ରିପୋର୍ଟ' (୧୮୦୭) ସମେତ ୨୦୧୫ ନବକଳେବରର ସଫଳ ପରିଚାଳନା ସମ୍ପର୍କରେ ପ୍ରାମାଣିକ ପୁସ୍ତକ । ଓଡ଼ିଶା ସମ୍ପର୍କରେ ମୁଁ ଲେଖିଥିବା ବହୁ ଗବେଷଣା ନିବନ୍ଧ ମଧ୍ୟ ବିଭିନ୍ନ ଜାତୀୟ ଓ ଅନ୍ତର୍ଜାତୀୟ ଜର୍ଣ୍ଣାଲରେ ପ୍ରକାଶ ପାଇଛି । ଏସବୁ ଉଣାଅଧିକେ ଆଜିର ବିଷୟକୁ ନେଇ କିଛି କହିପାରିବା ପାଇଁ ମୋ ମନରେ ବିଶ୍ୱାସ ଓ ଆଗ୍ରହ ସୃଷ୍ଟି କରିଛି ।

ମୋର ଅନୁରୋଧ, ମୁଁ ଯାହା କହିବି, ତାକୁ ଆପଣମାନେ ଅଧ୍ୟୟନ ପ୍ରସୂତ ଏବଂ ଜଣେ ସାମୟିକ ଗବେଷକର ବକ୍ତବ୍ୟ ଭାବରେ ଗ୍ରହଣ କରିବେ ଏବଂ ସେ ସମ୍ପର୍କରେ ମୋତେ ଯଥୋଚିତ ମତାମତ, ପରାମର୍ଶ ଦେବେ । ମୁଁ ତାହାକୁ ମୁକ୍ତ ମନରେ ଓ ବିନମ୍ର ଭାବରେ ଗ୍ରହଣ କରିବି ବୋଲି ମଧ୍ୟ ଆପଣମାନଙ୍କୁ ପ୍ରତିଶ୍ରୁତି ଦେଉଛି ।

### ସୁଦୂର ଅତୀତର ଅବଲୋକନ

ଯେତେବେଳେ କୌଣସି ଉଲ୍ଲେଖନୀୟ ତଥ୍ୟ ପ୍ରମାଣ ନଥାଏ, ସେତେବେଳେ ସୁଦୂର ଅତୀତର ଅବଲୋକନ ଏକ ଅଲଙ୍ଘ୍ୟ ଆହ୍ୱାନ ପରି ମନେହୁଏ । ସାଧାରଣତଃ ଆମେ ତାହାକୁ ନେଇ ଆଲୋଚନା କଲାବେଳେ 'ଅନେକ ଦିନ ତଳର କଥା' ପରି ଚିରାଚରିତ ଉପକ୍ରମରୁ ଆରମ୍ଭ କରିଥାଉ । ପ୍ରକୃତରେ ତାହା 'କେତେଦିନ ତଳର କଥା' ସେ କଥା ଆମକୁ ଜଣା ନଥାଏ । ଦୂର ଅତୀତର ସେହି ଅନିର୍ଦ୍ଦିଷ୍ଟ, ଅଜ୍ଞାତ ଅବସ୍ଥିତି ସମକାଳୀନ ବା ନିକଟ ଅତୀତର ଜ୍ଞାତ ସ୍ଥିତିରେ ଆସି ମିଶି ଯାଇଥାଏ ।

ଜଗନ୍ନାଥ ସଂସ୍କୃତିର ଉଦ୍ଭବ ଓ ବିକାଶକୁ ନେଇ ଅନେକଗୁଡିଏ ଦାବି, ଅନୁମାନ ଓ ତତ୍ତ୍ୱର ଅବତାରଣା କରାଯାଇଛି । ତାହା ହିଁ ତା'ର ପ୍ରାଚୀନତା ତଥା ପ୍ରକୃତିଗତ ବହୁତାର ପ୍ରମାଣ । ଆମେ ଗୋଟିଏ କଥା ସ୍ମରଣ ରଖିବା ଆବଶ୍ୟକ ଯେ ଅତୀତର ପୁନର୍ଗଠନ କାଳରେ କୌଣସି ନିର୍ଦ୍ଦିଷ୍ଟ ଉଦ୍ଭବ କାଳ ଅପେକ୍ଷା ସମୟ ସ୍ରୋତରେ ଏହାର ଅବିଚ୍ଛିନ୍ନ ପ୍ରବହମାନତାର ପ୍ରମାଣ ହିଁ ଅଧିକ ପ୍ରାସଙ୍ଗିକ ଓ ଗୁରୁତ୍ୱପୂର୍ଣ୍ଣ ।

### ଉପସ୍ଥିତ ଅନୁମାନ

ଜଗନ୍ନାଥ ସଂସ୍କୃତିର ଉଦ୍ଭବ ଓ ବିକାଶ ସମ୍ପର୍କରେ ଅନେକଗୁଡିଏ ଅନୁମାନ ରହିଛି । ଆଲେକ୍‌ଜାଣ୍ଡର କନିଙ୍ଗହାମ୍, ଡବ୍ଲୁ ଡବ୍ଲୁ ହଣ୍ଟର, ରାଜେନ୍ଦ୍ରଲାଲ ମିତ୍ର ଓ ହରେକୃଷ୍ଣ ମହତାବ ପ୍ରମୁଖ ଜଗନ୍ନାଥଙ୍କ ବୌଦ୍ଧ ଭିତ୍ତିର ସମର୍ଥକ । ନୀଳକଂଠ ଦାସ,



କେଦାରନାଥ ମହାପାତ୍ର ଓ ବିନାୟକ ମିଶ୍ର ତାଙ୍କର ଜୈନ ସମ୍ପୃକ୍ତିର ପକ୍ଷଧର । ବେଣୀମାଧବ ପାଢ଼ୀ, ଏ. ଷ୍ଟର୍ଲିଙ୍ଗ୍, ସତ୍ୟନାରାୟଣ ରାଜଗୁରୁ, ଏ. ଏସ୍‌ମାନ୍ ଜଗନ୍ନାଥ ଉପାସନାର ଉଦ୍ଭବ ଆଦିବାସୀ–ଶବର ସଂସ୍କୃତିରୁ ବୋଲି ମତ ଦେଇଛନ୍ତି । ଆଶୁତୋଷ ପ୍ରସାଦ ପଟ୍ଟନାୟକଙ୍କ ମତରେ ସୁପ୍ରାଚୀନ ସୁମେରୀୟ ସଭ୍ୟତାରୁ ଏହା ବିବର୍ତ୍ତିତ ଓ ବିକଶିତ ହୋଇଛି । ଏସବୁ ଅନେକ ସମ୍ଭାବନାର ବ୍ୟାପକ ଧାରଣା ଦିଏ ।

ଏହା ବ୍ୟତୀତ, କାହ୍ନୁଚରଣ ମିଶ୍ର, ସୂର୍ଯ୍ୟନାରାୟଣ ଦାଶ, ଶୁଭକାନ୍ତ ବେହେରା, ଏ. ଏସ୍‌ମାନ, ହରମାନ କୁଲକେ, ଗୟାଚରଣ ତ୍ରିପାଠୀ, ରୋଲାଣ୍ଡ ହାର୍ଡେନ୍‌ବର୍ଗ ପ୍ରମୁଖ ମଧ୍ୟ ଶ୍ରୀଜଗନ୍ନାଥଙ୍କ ଉପାସନାକୁ ନେଇ ଥିବା ସ୍ଥାନୀୟ ପରମ୍ପରା ଆଧାରରେ ଓଡ଼ିଆ ଆତ୍ମପରିଚିତିର ଆଲୋଚନା କରିଛନ୍ତି ।

ଏ ପ୍ରସଙ୍ଗରେ ମୁଁ ଶୁଭକାନ୍ତ ବେହେରାଙ୍କୁ ସ୍ୱତନ୍ତ୍ର ଭାବରେ ଉଲ୍ଲେଖ କରିବାକୁ ଚାହେଁ । ଓଡ଼ିଆ ସାହିତ୍ୟ ଏବଂ ଅନ୍ୟାନ୍ୟ ଆନୁଷଙ୍ଗିକ ତଥ୍ୟ ଆଧାରରେ ସେ ଶ୍ରୀଜଗନ୍ନାଥ କୈନ୍ଦ୍ରିକ ଆତ୍ମପରିଚିତିର ନିର୍ମାଣ ପ୍ରସଙ୍ଗ ଆଲୋଚନା କରିଛନ୍ତି । ୧୮୬୬ର ନଅଙ୍କ ଦୁର୍ଭିକ୍ଷ ବର୍ଷଠାରୁ ଆରମ୍ଭ କରି ୧୯୩୬ରେ ଭାଷାଭିତ୍ତିରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ସମୟ ତାଙ୍କ ଆଲୋଚନାର ଆଧାର ।

ତେବେ, ମୋର ଆଲୋଚ୍ୟ ପ୍ରସଙ୍ଗରେ, ଜଣେ ସୌଖୀନ୍ ଗବେଷକ ଭାବରେ ମୁଁ କୌଣସି ନିର୍ଦ୍ଦିଷ୍ଟ କାଳଖଣ୍ଡ ମଧ୍ୟରେ ନିଜକୁ ସୀମିତ ନରଖି ସ୍ୱାଧୀନ ଭାବରେ ଅତୀତ ଓ ବର୍ତ୍ତମାନ ଭିତରେ ଆତଯାତ ହେବାକୁ ପସନ୍ଦ କରିବି ।

**'ବହୁତା' କଥାଟି କ'ଣ ?**

ଏଇ ପ୍ରଶ୍ନରୁ ଆଲୋଚନା ଆରମ୍ଭ କରାଯାଉ ଯେ 'ବହୁତା କଥାଟି କ'ଣ ?' ବହୁତା ହେଉଛି– କୌଣସି ନିର୍ଦ୍ଦିଷ୍ଟ ପଦ୍ଧତି ବା ଧାରାର ଅବଲମ୍ବନ ନକରି, ବିବିଧ ଦୃଷ୍ଟିକୋଣ ବା ମତ ପ୍ରତି ଧ୍ୟାନ ଦେବା । ଗୋଟିଏ ବିବିଧତାସମ୍ପନ୍ନ ସମାଜ ସମ୍ପର୍କରେ କୁହାଯାଇଛି ଯେ ସେଥିରେ ଭିନ୍ନ ଭିନ୍ନ ଜାତି, ଧର୍ମ ବା ଗୋଷ୍ଠୀର ସଂସ୍କୃତି ଓ ସ୍ୱାତନ୍ତ୍ର୍ୟ ଥାଏ ଏବଂ ସେ ସମସ୍ତଙ୍କୁ ନେଇ ସେହି ସଭ୍ୟତା ସଂଗଠିତ ହୋଇଥାଏ ।

ରାଜନୈତିକ ତତ୍ତ୍ୱରେ ମଧ୍ୟ ଏହାକୁ ଏକ 'ବାଦ' (ଇଜମ୍) ଭାବରେ ଗ୍ରହଣ କରାଯାଏ । ଏହି ମତବାଦ ବିଶ୍ୱାସ କରେ ଯେ ସମାଜରେ ପରସ୍ପର ବିରୋଧୀ ଓ ବିବିଧ ଶକ୍ତିକେନ୍ଦ୍ର ରହିପାରିବ । ମୂଲ୍ୟବୋଧ କ୍ଷେତ୍ରରେ ମଧ୍ୟ ଏହି ବହୁତା ଗୃହୀତ । 'ବହୁତା' ହେଉଛି ସେହି ଭାବଧାରା– ଯେଉଁଥିରେ ପାରସ୍ପରିକ ବିରୋଧ ଥିଲେ ବି ଭିନ୍ନ ଭିନ୍ନ ମୂଲ୍ୟବୋଧକୁ ଠିକ୍ ବୋଲି ଗ୍ରହଣ କରାଯାଏ ଏବଂ ସର୍ବୋପରି ଧାର୍ମିକ ବହୁତାରେ ଧର୍ମର ଭିନ୍ନ ଭିନ୍ନ ପଥକୁ ଯଥାର୍ଥ ଭାବରେ ଗ୍ରହଣ କରାଯାଏ ଏବଂ ଭିନ୍ନ ଭିନ୍ନ ଧର୍ମର ଏକତ୍ର ସହାବସ୍ଥାନକୁ ଗୁରୁତ୍ୱ ଦିଆଯାଏ ।

**ବହୁତା ଓ ଶ୍ରୀଜଗନ୍ନାଥ ସଂସ୍କୃତି**

ମୋର ଧାରଣା, 'ବହୁତା' ଓଡ଼ିଶାର ଏକ ମୌଳିକ ବିଶେଷତ୍ୱ । ସୁପ୍ରାଚୀନ କାଳରୁ ଏହି ଭୂଖଣ୍ଡ କଳିଙ୍ଗ, ଓଡ୍ର, ଉତ୍କଳ ଆଦି ନାମରେ ପରିଚିତ ହୋଇଆସିଛି । ଏଠାରେ 'ବହୁତା' ଏକ ଦାର୍ଶନିକ ଭାବଧାରା– ଯାହା ଓଡ଼ିଶାର ଜନଜୀବନରେ ପରିସ୍ଫୁଟ ହୋଇଆସିଛି । ମନେହୁଏ, ଏହି ବହୁତା ହେଉଛି ଓଡ଼ିଶାର ଆତ୍ମାର ଭାଷା । ଜଗନ୍ନାଥ ସଂସ୍କୃତି ହିଁ ସାମଗ୍ରିକ ଭାବରେ ଓଡ଼ିଶାର ଏହି ସାମାଜିକ, ସାଂସ୍କୃତିକ, ଧାର୍ମିକ, ରାଜନୈତିକ ତଥା ଭାଷା ଓ ସାହିତ୍ୟ କ୍ଷେତ୍ରରେ ଥିବା ବହୁତାର ପ୍ରତିନିଧିତ୍ୱ କରେ ।

ଯାହା ଆଗରୁ କହିଛି, ଜଗନ୍ନାଥ ସଂସ୍କୃତିର ଉଦ୍ଭବ ଓ ବିକାଶ ସମ୍ପର୍କରେ ପୂର୍ବରୁ ଅନେକ ଗବେଷଣା ହୋଇଛି ଏବଂ ଏହି ସଂସ୍କୃତି କିପରି ଅନ୍ୟାନ୍ୟ ଅନେକ ସଂସ୍କୃତି ସହ ସମ୍ପର୍କିତ ସେ ବାବଦରେ ମଧ୍ୟ ଅନେକ କିଛି ଲେଖାଯାଇଛି ।

ଓଡ଼ିଶାରେ ଅଶୋକଙ୍କ କାଳରୁ ବୌଦ୍ଧଧର୍ମରେ ଅନେକ ବିକାଶ ସାଧିତ ହୋଇଛି । ସେତେବେଳେ କଳିଙ୍ଗର ଅନେକ ଜନପଦରୁ ଏହି ମୌର୍ଯ୍ୟ ଶାସକଙ୍କ ଆକ୍ରମଣକୁ ପ୍ରବଳ ପ୍ରତିରୋଧ କରାଯାଇଥିଲା । ଏଥିରୁ ସୂଚିତ ହୁଏ ଯେ ସେତେବେଳେ କଳିଙ୍ଗର ସମାଜ ଅଣ–ବୌଦ୍ଧ ଥିଲା ।



ତେବେ କଳିଙ୍ଗ ଓ ଓଡ୍ର ସମ୍ପର୍କରେ ଆର୍ଯ୍ୟମାନଙ୍କର ଧାରଣା ଅନୁଦାର । ବୌଦ୍ଧାୟନ ତାଙ୍କ ଧର୍ମସୂତ୍ରରେ କହିଛନ୍ତି ଯେ କଳିଙ୍ଗକୁ ଗମନ ପାପ । କେହି ଯଦି କଳିଙ୍ଗକୁ ଯାଏ, ତେବେ ପାପର କ୍ଷାଳନ ପାଇଁ ସେ ପ୍ରାୟଶ୍ଚିତ କରିବା ଦରକାର । ମାନବ ଧର୍ମଶାସ୍ତ୍ର ଓଡ୍ରମାନଙ୍କୁ ଆର୍ଯ୍ୟଙ୍କର ଅନ୍ତର୍ଭୁକ୍ତ କରିନାହିଁ । କାରଣ ପୌଣ୍ଡ୍ରକ, ଦ୍ରାବିଡ, କାମ୍ବୋଜ, ଯବନ, ଶକ, ପାରଡ, ପହ୍ଲବ, ସିନା, କିରାତ, ଡରଡ଼ ଓ ଖାସଙ୍କ ମଧ୍ୟରେ ସେମାନେ ପରିଗଣିତ । (ଧର୍ମସୂତ୍ର–୧୪)

କଳିଙ୍ଗର ଲୋକେ କ୍ଷତ୍ରିୟଙ୍କ ମଧ୍ୟରେ ପରିଗଣିତ ହେଲେ ମଧ୍ୟ, 'ମହାଭାରତ'ରେ ସେମାନଙ୍କୁ ଶୂଦ୍ରସ୍ତରକୁ ଖସାଇ ଦିଆଯାଇଛି ଏବଂ ସେମାନେ 'ଦୁର୍ଦ୍ଧର୍ମ' ବା 'ଧର୍ମହୀନ' ଭାବରେ ପରିଗଣିତ ହୋଇଛନ୍ତି । ଏହା ମଧ୍ୟ ସ୍ୱାଭାବିକ । କାରଣ କୁରୁକ୍ଷେତ୍ର ଯୁଦ୍ଧରେ କଳିଙ୍ଗର ରାଜା କୌରବଙ୍କର ସମର୍ଥକ ଥିଲେ । (ମାନବ ଧର୍ମସୂତ୍ର–୪୪)

ବରାହମିହିରଙ୍କ 'ବୃହତ୍ ସଂହିତା' ଏକ ଖଗୋଳ ଶାସ୍ତ୍ର । ସେଥିରେ ଥିବା ବର୍ଣ୍ଣନା ଅନୁସାରେ, ଉଡ୍ର ଓ କଳିଙ୍ଗ ଦେଶ ସୂର୍ଯ୍ୟଦେବତାଙ୍କର ପ୍ରତ୍ୟକ୍ଷ ନିୟନ୍ତ୍ରଣାଧୀନ ଥିଲା । (ମହତାବ, ଓଡ଼ିଶାର ଇତିହାସ–୧୦) ଏ ପ୍ରସଙ୍ଗରେ ଉଲ୍ଲେଖନୀୟ ଯେ ବୈଦିକ ମନ୍ତ୍ରଗୁଡିକରେ ସୂର୍ଯ୍ୟ ଯଦିଓ ପ୍ରାଣ–ସ୍ପନ୍ଦିନୀ ଶକ୍ତିର ଉତ୍ସ, ପ୍ରମୁଖ ଦେବତା ଭାବରେ ତାଙ୍କର ଉପାସନା ବୈଦିକଧାରାର ରୁଢ଼ିବାଦୀ ବିଦ୍ୱାନମାନଙ୍କ ଦ୍ୱାରା ଆଦରରେ ଗୃହୀତ ହୋଇନଥିଲା ।

ବୈଦିକ ସୂର୍ଯ୍ୟଦେବତା ହେଉଛନ୍ତି ପୁସାନ୍ ଏବଂ ତାଙ୍କର ସ୍ୱତନ୍ତ୍ର ପୂଜକ ଭାରଦ୍ୱାଜ ଭାବରେ ପରିଚିତ ଥିଲେ । ସେମାନେ ସୂର୍ଯ୍ୟଙ୍କୁ ପରମସତ୍ତା ରୂପେ ଗ୍ରହଣ କରୁଥିଲେ ଏବଂ ସେହି ଭାବଧାରାକୁ ଗୌତମ ବିରୋଧ କରିଥିଲେ । ଭାରଦ୍ୱାଜମାନଙ୍କୁ ସୁହ୍ମ, ଡରଡ଼ ଓ ବର୍ବରମାନଙ୍କ ଭଳି ଆର୍ଯ୍ୟେତର ଗୋଷ୍ଠୀର ଅନ୍ତର୍ଭୁକ୍ତ କରାଯାଇଥିଲା । (ଦ୍ରଷ୍ଟବ୍ୟ: ଭି.ସି.ଶ୍ରୀବାସ୍ତବ, ସନ୍ ଓ୍ୱରସିପ୍ ଇନ୍ ଆନ୍‌ସିଏଣ୍ଟ ଇଣ୍ଡିଆ, ଆହ୍ଲାବାଦ : ଇଣ୍ଡୋଲଜିକାଲ ପବ୍ଲିକେଶନ୍‌ସ, ୧୯୭୭, ପୃ.୧୧୨) ଏସବୁ ଦୃଷ୍ଟିରୁ ଅଶୋକଙ୍କ ପୂର୍ବରୁ କଳିଙ୍ଗରେ ଯେ ବୈଦିକ ଆର୍ଯ୍ୟଧାରାର କୌଣସି ନିର୍ଦ୍ଦିଷ୍ଟ ବିଶ୍ୱାସ ପ୍ରତିଷ୍ଠିତ ଥିଲା, ସେ ସମ୍ଭାବନାକୁ ମୁଁ ନିର୍ଦ୍ଦିଷ୍ଟ ଭାବରେ ଅସ୍ୱୀକାର କରୁଛି ।

ଆଜି ମଧ୍ୟ ଓଡ଼ିଶାରେ ଆଦିବାସୀଙ୍କ ସଂଖ୍ୟା ମୋଟ ଜନସଂଖ୍ୟାର ୨୨.୧ ଭାଗ । ସାରା ଭାରତବର୍ଷର ପ୍ରାୟ ୧୦ ପ୍ରତିଶତ ଆଦିବାସୀ ଓଡ଼ିଶାରେ ହିଁ ବସବାସ କରନ୍ତି । ଏଥିରୁ ଆମେ ସହଜରେ ଓଡ଼ିଶାର ଜନସଂଖ୍ୟାର ସ୍ୱରୂପ କଳନା କରିପାରିବା । ଏହି ଆଧାରରେ ଆମେ କହିପାରିବା ଯେ କଳିଙ୍ଗର ଆଧ୍ୟାତ୍ମିକତା ଓ ଧାର୍ମିକ ବିଶ୍ୱାସଧାରା ତାହାର ବିବିଧତା ଓ ବୈଚିତ୍ର୍ୟସମ୍ପନ୍ନ ଆଦିବାସୀ ସଂସ୍କୃତି ଉପରେ ମୂଳତଃ ପ୍ରତିଷ୍ଠିତ ହୋଇଥିବା ସମ୍ଭବ ।

ଏହି ପୃଷ୍ଠଭୂମିରେ, ମୁଁ ନିର୍ଦ୍ଦିଷ୍ଟ ଭାବରେ କେତୋଟି ମୌଳିକ ଦିଗ ପ୍ରତି ଦୃଷ୍ଟି ଆକର୍ଷଣ କରିବାକୁ ଚାହେଁ– ଯାହା ଜଗନ୍ନାଥ ସଂସ୍କୃତିର ବହୁତାସୂଚକ । ଗୋଟିଏ ସମୟରେ ଜଗନ୍ନାଥ ଓଡ଼ିଶାର ରାଷ୍ଟ୍ରଦେବତା ଭାବରେ ଅଧିଷ୍ଠିତ ହୋଇଥିଲେ । ଓଡ଼ିଆ ଭାଷାର ଜଗନ୍ନାଥ ସଂସ୍କୃତି ସହ ଘନିଷ୍ଠ ସମ୍ପର୍କ ଥିଲା ଏବଂ ଏହି ସମ୍ପର୍କ ମାଧ୍ୟମରେ ଓଡ଼ିଶାର ସାମାଜିକ ଡାଞ୍ଚାରେ ବହୁତାର ଭାବଧାରା ପ୍ରତିଷ୍ଠିତ ହୋଇଥିଲା ।

ଏହାଛଡା ମୁଁ ସୌର–ଉପାସନା ସହିତ ଶ୍ରୀଜଗନ୍ନାଥ ସଂସ୍କୃତିର ଘନିଷ୍ଠ ଓ ମୂଳଭୂତ ସମ୍ପର୍କର ଅବତାରଣା କରିବାକୁ ଚାହେଁ– ଏବଂ ଏ ବାବଦରେ ଗୋଟିଏ ଚତୁର୍ମୁଖୀ ପ୍ରତୀକତାର ଉପସ୍ଥାପନା ମଧ୍ୟ ଇଚ୍ଛା କରେ । ସେହି ଚାରି ପ୍ରତୀକ ହେଉଛନ୍ତି 'ପ୍ରଭୁ–ରାଜା–ସୂର୍ଯ୍ୟ–ସିଂହ' ।

**ଜଗନ୍ନାଥଙ୍କର ଅନନ୍ୟତା– 'ମଣିମା'**

ଜଗନ୍ନାଥ ଦର୍ଶନ ବହୁତା ଆଧାରିତ ହେଲେ ହେଁ ଏକ ସମନ୍ୱୟୀ ଦର୍ଶନ । ତୁଳନା ମାଧ୍ୟମରେ ହିଁ ଆମେ ଏହି ଭାବଧାରାକୁ ବୁଝିପାରିବା । ଉଦାହରଣ ସ୍ୱରୂପ, ପ୍ରଭୁ ମୁରୁଗାନ ହେଉଛନ୍ତି ତାମିଲମାନଙ୍କର ଦେବତା, ସେହିପରି ଆନ୍ଧ୍ର ପ୍ରଦେଶରେ ତିରୁମାଲାର ପ୍ରଭୁ ବାଲାଜୀ ପ୍ରମୁଖ ଦେବତା ଏବଂ ବନାରସରେ କାଶୀ ବିଶ୍ୱନାଥ ହିଁ ମୁଖ୍ୟ ଉପାସ୍ୟ । ଏହିପରି



ଅନେକ ଦୃଷ୍ଟାନ୍ତ ଦିଆଯାଇପାରିବ । ଜଗନ୍ନାଥ କିନ୍ତୁ ଏହିସବୁ ଦୃଷ୍ଟାନ୍ତଠାରୁ ଉଲ୍ଲେଖନୀୟ ଭାବରେ ଭିନ୍ନ । ସେ ପ୍ରକୃତ ଅର୍ଥରେ ଓ ପ୍ରମୁଖ ଭାବରେ ରାଷ୍ଟ୍ରଦେବତା ରୂପେ ଗୃହୀତ । ଅନ୍ୟ ଦୃଷ୍ଟାନ୍ତଗୁଡ଼ିକରେ ଏପରି ସାର୍ବଭୌମ ପରିଚିତିର ବିଶେଷତ୍ୱ ଅନୁପସ୍ଥିତ ।

ଜଗନ୍ନାଥଙ୍କ କ୍ଷେତ୍ରରେ ପ୍ରଭୁ–ରାଜା ସମ୍ପର୍କ ଅତ୍ୟନ୍ତ ସ୍ୱଷ୍ଟ ଓ ଉତ୍ତରିତ ଏବଂ ଏହା ଶତାବ୍ଦୀ ଶତାବ୍ଦୀ ଧରି ବିକଶିତ । ସାରା ଦେଶରେ ଅନ୍ୟ କୌଣସି ସ୍ଥାନରେ, କୌଣସି ବି ଦେବତାଙ୍କର ଏପରି ବ୍ୟକ୍ତିତ୍ୱସମ୍ପନ୍ନ ରାଷ୍ଟ୍ରୀୟ–ସ୍ୱୀକୃତି ଲକ୍ଷ୍ୟ କରାଯାଏ ନାହିଁ ।

ଦ୍ରକ୍ଷରାମ ଶିଳାଲେଖରେ (୧୨୧୬ ଖ୍ରୀଷ୍ଟାବ୍ଦ) ତୃତୀୟ ଅନଙ୍ଗ ଭୀମଦେବଙ୍କୁ ପୁରୁଷୋତ୍ତମ, ରୁଦ୍ର ଓ ଦୁର୍ଗା– ଏହି ତ୍ରିମୂର୍ତ୍ତିଙ୍କର 'ରାଉତ' ଓ 'ପୁତ୍ର' ଭାବରେ ପ୍ରଶସ୍ତି କରାଯାଇଛି । ତୃତୀୟ ଅନଙ୍ଗଭୀମଦେବ ପୁରୁଷୋତ୍ତମ (ଜଗନ୍ନାଥ)ଙ୍କୁ ରାଷ୍ଟ୍ରଦେବତା ଭାବରେ ସ୍ୱୀକାର କରିଛନ୍ତି । (କୁଲ୍‌କେ, କିଙ୍ଗ୍‌ସ ଆଣ୍ଡ କଲ୍‌ଟସ୍, ପୃ. ୨୩) । ଲିଙ୍ଗରାଜ ମନ୍ଦିରର ଏକ ଶିଳାଲେଖ ଅନୁସାରେ, ସେ ନିଜକୁ ପୁରୀର ପୁରୁଷୋତ୍ତମ ପ୍ରଭୁଙ୍କର ଦାସ ବୋଲି ଅଭିହିତ କରିଛନ୍ତି ଏବଂ ତାଙ୍କୁ ହିଁ ଗଙ୍ଗବଂଶର ପ୍ରକୃତ ରାଜା ଭାବରେ ସମ୍ମାନ ନିବେଦନ କରିଛନ୍ତି । (ଇ.ଆଇ. ୩୩, ପୃ.୧୨୮–୨୯, (୧୯୫୯–୬୦)

ମାଦଳାପାଞ୍ଜିର ରାଜଭୋଗ ଇତିହାସରେ ଜଗନ୍ନାଥଙ୍କୁ 'ଓଡ଼ିଶା ରାଜ୍ୟର ପ୍ରଭୁ' ବୋଲି ଉଲ୍ଲେଖ କରାଯାଇଛି । ପୁରୁଷୋତ୍ତମ ଦାସଙ୍କ 'କାଞ୍ଚିକାବେରୀ' କାବ୍ୟରେ ପ୍ରଭୁ ଜଗନ୍ନାଥଙ୍କୁ ଓଡ଼ିଶାର ରାଜା କୁହାଯାଇଛି । ସେଥିରେ ଶ୍ରୀଜଗନ୍ନାଥ ସ୍ୱୟଂ ଓଡ଼ିଶା ପକ୍ଷରୁ ଯୁଦ୍ଧରେ ଅବତୀର୍ଣ୍ଣ ହୋଇଛନ୍ତି । ବାସ୍ତବ ଚିତ୍ର ମଧ୍ୟ ଏହି କାବ୍ୟିକ ଉପସ୍ଥାପନାଠାରୁ ଭିନ୍ନ ନୁହେଁ । ସୂର୍ଯ୍ୟବଂଶୀ ରାଜା କପିଳେନ୍ଦ୍ର ଦେବ ତାଙ୍କୁ 'ଜଗନ୍ନାଥଙ୍କ ରାଉତ' ଡାକିବାକୁ ତାଙ୍କର ସଭାକବି ଓ ଆଚାର୍ଯ୍ୟମାନଙ୍କୁ କହିଥିଲେ । ଗୋଟିଏ ଶିଳାଲେଖରେ ଉଲ୍ଲେଖ ମଧ୍ୟ ଅଛି ଯେ ନିଜର ବିଦ୍ରୋହୀ ସେନାପତିମାନଙ୍କ ବିରୋଧରେ କାର୍ଯ୍ୟାନୁଷ୍ଠାନ କରିବା ପାଇଁ ସେ ଜଗନ୍ନାଥଙ୍କ ପରାମର୍ଶ ଲୋଡ଼ିଥିଲେ । ନିଜକୁ ସେ ଜଗନ୍ନାଥଙ୍କ 'ସେବକ' ବୋଲି କହୁଥିଲେ ।

ଅତୀତର ଏହି ଧାରାର କ୍ରମାଗତ ପୁନରାବୃତ୍ତି ଘଟିଛି ଏବଂ ଏହି ଭାବଧାରା ବର୍ତ୍ତମାନ ମଧ୍ୟ ସଂଜୀବିତ । କଳାପାହାଡ଼ ଶ୍ରୀବିଗ୍ରହଙ୍କୁ ନେଇଯାଇ ଗଙ୍ଗାତଟରେ ନିଆଁରେ ପୋଡିଦେବାର ୨୦ବର୍ଷ ପରେ, ରାଜା ରାମଚନ୍ଦ୍ର ଦେବ ଶ୍ରୀବିଗ୍ରହମାନଙ୍କର ନବକଳେବର କରାଇବା ସହିତ ସେମାନଙ୍କୁ ରତ୍ନସିଂହାସନରେ ପୁନଃପ୍ରତିଷ୍ଠିତ କରାଇଥିଲେ । ସେହି କାରଣରୁ ତାଙ୍କୁ 'ଦିତି ଇନ୍ଦ୍ରଦ୍ୟୁମ୍ନ' ଉପାଧିରେ ଭୂଷିତ କରାଯାଇଥିଲା । (ହର୍‌ମାନ୍ କୁଲ୍‌କେ, ଜଗନ୍ନାଥ ରି–ଭିଜିଟେଡ୍, ପୃ–୨୧୬)

୧୭୬୬–୮୮ ଖ୍ରୀଷ୍ଟାବ୍ଦରେ ଯେତେବେଳେ ମରାଠା ଶାସକ ଜାନୁଜୀ ଭୋଁସଲା ଓଡ଼ିଶାର ଶାସନଭାର ଛାଡ଼ିବା ପାଇଁ ଇଷ୍ଟଇଣ୍ଡିଆ କମ୍ପାନୀ ପାଖରେ ତେର ଦଫା ସମ୍ବଳିତ ଦାବି ରଖିଲେ, ସେତେବେଳେ ସେ ଜଗନ୍ନାଥଙ୍କୁ ପ୍ରଥମରେ ରଖିଥିଲେ । ସେହିପରି ଇଷ୍ଟଇଣ୍ଡିଆ କମ୍ପାନୀର ରାଜନୈତିକ କାର୍ଯ୍ୟସୂଚୀରେ ମଧ୍ୟ ଜଗନ୍ନାଥ ମନ୍ଦିରକୁ ଯଥୋଚିତ ଗୁରୁତ୍ୱ ଦିଆଯାଇଥିଲା । ବହୁ ବର୍ଷ ପରେ ଡବ୍ଲୁ–ଡବ୍ଲୁ ହଣ୍ଟର ଏ ସମ୍ପର୍କରେ କହିଛନ୍ତି ଯେ ମରାଠାଙ୍କ ବିରୋଧରେ କମ୍ପାନୀର ଯୁଦ୍ଧ ପ୍ରସ୍ତୁତିରେ ମଧ୍ୟ କମ୍ପାନୀ ଜଗନ୍ନାଥଙ୍କ ସମ୍ପର୍କରେ ନିଜର ସଚେତନତା ଓ ଅବବୋଧ ସୂଚାଇ ଥିଲା । ସେ ଲେଖିଛନ୍ତି, 'ଦ ପଜେସନ୍ ଅଫ୍ ଦି ଗଡ୍ ହାଡ୍ ଅଲଓ୍ୱେଜ୍ ଗିଭନ୍ ଦ ଡୋମିନିଅନ୍ ଅଫ୍ ଓଡ଼ିଶା' ।

ଇଂରେଜ ଶାସନକାଳରେ ଓ୍ୱେଲ୍‌ସେଲି ଥିଲେ ଗଭର୍ଣ୍ଣର ଜେନେରାଲ୍ । ସେ ଥିଲେ ଖ୍ରୀଷ୍ଟିଆନ୍ । ସେତେବେଳେ ଲେଫ୍‌ଟନାଣ୍ଟ କଲୋନେଲ୍ କାମ୍ପବେଲ୍‌ଙ୍କୁ ସେ ଯେଉଁ ଚିଠି ଲେଖିଥିଲେ ତାହା ଖୁବ୍ ପ୍ରସିଦ୍ଧ । କାରଣ, ସେଥିରେ ସେ ଜଗନ୍ନାଥ ମନ୍ଦିର ପରି ଏକ ହିନ୍ଦୁ ମନ୍ଦିର ବାବଦରେ ତାଙ୍କ ନୀତିର ଉଲ୍ଲେଖ କରିଥିଲେ । ଏପରିକି ଯେତେବେଳେ ବ୍ରିଟିଶ ସେନା ପୁରୀରେ ପ୍ରବେଶ କଲେ, ସେତେବେଳେ ଶ୍ରୀମନ୍ଦିରର ପୂଜକବର୍ଗ ତାଙ୍କୁ ସ୍ୱାଗତ କରିଥିଲେ ଏବଂ ଇଂରେଜ ସରକାର



ମନ୍ଦିରର ଅଭିଭାବକ ହୁଅନ୍ତୁ– ଏହା ଜଗନ୍ନାଥ ନିଷ୍ପତ୍ତି କରିଛନ୍ତି ବୋଲି କହିଥିଲେ । ଅବଶ୍ୟ ମେଲଭିଲ୍ ପ୍ରକାଶ କରିବାକୁ କୁଣ୍ଠା କରି ନଥିଲେ ଯେ ଓଡ଼ିଶାର ଗଡଜାତ ରାଜାମାନଙ୍କର ଆସ୍ଥା ଜିଣିବା ପାଇଁ ଏହି 'ଶ୍ରୀଜଗନ୍ନାଥଙ୍କ ନିଷ୍ପତ୍ତି' ଥିଲା ଏକ ସୁଚତୁର କୌଶଳ ।

ଖୋରଧାର ରାଜା ମୁକୁନ୍ଦଦେବ (୧୭୯୮–୧୮୧୭) ଯେତେବେଳେ ୧୮୦୫ରେ କଟକରେ ବନ୍ଦୀ ହେଲେ, ସେତେବେଳେ ସେ ଗୋଟିଏ ଭଜନ (ଆହେ ନୀଳାଦ୍ରି ବିହାରି !) ଲେଖି 'ଭଣ୍ଡାରରୁ ଖଣ୍ଡା ବାହାର କରିଣ ଓଡ଼ିଶା ଶତ୍ରୁ ନିବାର' ବୋଲି ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ନିବେଦନ କରିଥିଲେ ।

ପୁରୀ ପ୍ରସଙ୍ଗରେ କର୍ଣ୍ଣୱାଲିସ୍ ମଧ୍ୟ ଖୁବ୍ ସତର୍କତା ଅବଲମ୍ବନ କରିଥିଲେ । ଜଗନ୍ନାଥଙ୍କ ବ୍ୟତୀତ ଅନ୍ୟ କୌଣସି ଭାରତୀୟ ଦେବତାଙ୍କ ବାବଦରେ ଇଂରେଜ ସରକାର ଏତେ ସତର୍କତା ଅବଲମ୍ବନ କରିନାହାନ୍ତି । ଅନ୍ୟ କୌଣସି ଭାରତୀୟ ଦେବତାଙ୍କ ପାଇଁ ମଧ୍ୟ ଲଣ୍ଡନର ରାଜରାସ୍ତାରେ ବିକ୍ଷୋଭ ପଟୁଆର ହୋଇନାହିଁ କି କୂଟନୀତିର ଖେଳ ଖେଳିବାକୁ ପଡିନାହିଁ ।

ଗଗନେନ୍ଦ୍ର ନାଥ ଦାଶଙ୍କ ଅନୁସାରେ, ଶ୍ରୀଜଗନ୍ନାଥ ହିଁ 'ରାଷ୍ଟ୍ରଦେବତା' ଭାବରେ ସବୁବେଳେ ବିବିଧତାଭରା ଓଡ଼ିଶା ସାମ୍ରାଜ୍ୟକୁ ଗୋଟିଏ ସୂତ୍ରରେ ବାନ୍ଧି ରଖିଆସିଛନ୍ତି । ପରବର୍ତ୍ତୀ କାଳରେ, ପାଇକ ବିଦ୍ରୋହ ସମୟରେ ସେ ହୋଇଛନ୍ତି ଓଡ଼ିଆ ଜାତୀୟତାର ପ୍ରତିଭୂ । ପୁଣି ଊନବିଂଶ ଶତାବ୍ଦୀର ଅବଶିଷ୍ଟ ସମୟରେ ଏବଂ ପରବର୍ତ୍ତୀ କାଳରେ ସେ ହୋଇଛନ୍ତି ଓଡ଼ିଶାର ରାଜନୈତିକ ବିକାଶର କେନ୍ଦ୍ର ।

୧୮୮୬–୮୭ ଖ୍ରୀଷ୍ଟାବ୍ଦର ପୁରୀ ମନ୍ଦିର ମାମଲା ଏ କ୍ଷେତ୍ରରେ ପ୍ରମୁଖ ଓ ପ୍ରସିଦ୍ଧ । ଓଡ଼ିଆ ଜାତୀୟତା ଓ ଶ୍ରୀଜଗନ୍ନାଥଙ୍କ ମଧ୍ୟରେ ବନ୍ଧନ ଏହାକୁ ନେଇ ସୁଦୃଢ ହୋଇଛି । ଏ ବାବଦରେ ସବୁଠୁ ଉଲ୍ଲେଖନୀୟ ବିଷୟ ହେଉଛି ଉତ୍କଳଗୌରବ ମଧୁସୂଦନ ଦାସ ଏହି ମାମଲା ଲଢିବା ଓ ସେଥିରେ ବିଜୟ ଲାଭ କରିବା । ସେ ଜନ୍ମତଃ ଖ୍ରୀଷ୍ଟିଆନ୍ ହୋଇନଥିଲେ ମଧ୍ୟ ପରେ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ ଏବଂ ଦୁଇଦୁଇ ଥର ସର୍ବଭାରତୀୟ ଖ୍ରୀଷ୍ଟିଆନ୍ ଆସୋସିଏସନ୍‌ର ସଭାପତି ନିର୍ବାଚିତ ହୋଇଥିଲେ । ତଥାପି ସେ ରାଣୀ ସୂର୍ଯ୍ୟମଣି ପାଟମହାଦେଈଙ୍କୁ କେବଳ ଆଇନଗତ ପରାମର୍ଶ ଦେଇ ନଥିଲେ, କଲିକତା ହାଇକୋର୍ଟରେ ମାମଲା ମଧ୍ୟ ଲଢିଥିଲେ । ପୁଣି ପ୍ରତିବାଦ ସଭାରେ ଯୋଗଦେବା ସହିତ 'ଉତ୍କଳ ଦୀପିକା'ରେ ଲେଖା ମଧ୍ୟ ଲେଖିଥିଲେ । ୧୯୨୮ରେ ସେ ଯେଉଁ ଆବେଗପୂର୍ଣ୍ଣ ଆହ୍ୱାନ ଦେଇଥିଲେ, ତାହା ଥିଲା ଜଗନ୍ନାଥଙ୍କ ନାମରେ । ସେ କହିଥିଲେ–

ଜଗନ୍ନାଥଙ୍କୁ ବଞ୍ଚାନ୍ତୁ । ଅନ୍ଧକାର ନିଶ୍ଚୟ ଦୂରୀଭୂତ ହେବ ଏବଂ ଏ ଜାତିର ବିକାଶର ରାସ୍ତା ଫିଟିବ । ମହାବାହୁଙ୍କ ହସ୍ତରେ ସୁଦର୍ଶନ ଚକ୍ର ବିରାଜମାନ । ଉତ୍କଳ ଜନନୀ ତା'ର ପୁରୁଣା ଅବୟବ ଫେରିପାଇବ ଏବଂ ଶତ୍ରୁମାନେ ଭୟଭୀତ ହୋଇ ଅପସରି ଯିବେ ।

ସେ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ । କିନ୍ତୁ ସେ ବିଶ୍ୱାସ ଏଥିରେ ବାଧକ ହୋଇନାହିଁ । ଶ୍ରୀଜଗନ୍ନାଥ ହୋଇଛନ୍ତି ଓଡ଼ିଆ ଜାତୀୟତାର ପ୍ରତିଭୂ, ସବୁ ଧାର୍ମିକ ସୀମା, ସରହଦର ଊର୍ଦ୍ଧ୍ୱରେ ଏକ ସମନ୍ୱୟର ଆଧାର ।

ଗୋପବନ୍ଧୁ ଦାସ ଆଉ ଏକ ଦୃଷ୍ଟାନ୍ତ । ବିହାର, ବଙ୍ଗଳା ଓ ମାଡ୍ରାସ ପ୍ରେସିଡେନ୍‌ସୀର ଓଡ଼ିଆ ଭାଷାଭାଷୀମାନଙ୍କୁ ଉଦ୍‌ବୋଧନ ଦେଇ ସେ ଓଡ଼ିଆ ଭାବବନ୍ଧନର ଯେଉଁ ଜାଗରଣ କରିଥିଲେ, ତାହା ମଧ୍ୟ ଶ୍ରୀଜଗନ୍ନାଥଙ୍କ ନାମରେ । ସେ କହିଥିଲେ– ଆସ, ଆମେ ଓଡ଼ିଶାର ମହାସ୍ରୋତରେ ମିଶିଯିବା । ସେହି ବଡଦାଣ୍ଡର ପଥିକ ହୋଇ ଆମେ ପ୍ରଭୁ ଶ୍ରୀଜଗନ୍ନାଥଙ୍କର କଳାଶ୍ରୀମୁଖ ଦର୍ଶନ କରିବା ।

ଏହିପରି ଭାବରେ ଶ୍ରୀଜଗନ୍ନାଥଙ୍କୁ ନେଇ ଗଢିଉଠିଛି ଓଡ଼ିଆ ଏକତା ଏବଂ ସମୟର ଆବଶ୍ୟକତାକୁ ନେଇ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ଉଦ୍ୟମ ଦାନା ବାନ୍ଧିଛି । ଯେତେବେଳେ ପାରଳା ଗଜପତି ନବଗଠିତ ଓଡ଼ିଶା ପ୍ରଦେଶର ପ୍ରଥମ ପ୍ରଧାନମନ୍ତ୍ରୀ ଭାବରେ ଦାୟିତ୍ୱ ନେଲେ, ସେତେବେଳେ



ସେ ସିଧା ପୁରୀ ଯାଇ ଶ୍ରୀଜଗନ୍ନାଥଙ୍କର କରୁଣାଭିକ୍ଷା କରିଥିଲେ । ଆଜି ବି ଏ ମାନସିକତା ଅବ୍ୟାହତ ଅଛି । ସେଥିପାଇଁ ବିଜୁ ପଟ୍ଟନାୟକ ଏକଦା କହିଥିଲେ, 'ଆଉ କେହି ନେତା ନାହାନ୍ତି, ଶ୍ରୀଜଗନ୍ନାଥ ହିଁ ଏକମାତ୍ର ନେତା ।'

ପ୍ରକୃତପକ୍ଷେ, ପ୍ରଭୁ–ରାଜାର ଭାବବନ୍ଧନ ମାଧ୍ୟମରେ ଓଡ଼ିଶା ପାଇଛି ସଂକୀର୍ଣ୍ଣ ରାଜନୀତି ଓ ଆଞ୍ଚଳିକତାର ଊର୍ଦ୍ଧ୍ୱରେ ଏକ ମହାବିଗ୍ରହ । ଏକ ମହାନେତା ।

ଏହି ଭାବଧାରା ହିଁ ଅତ୍ୟନ୍ତ ନାଟକୀୟ ଭାବରେ କାଳଜୟୀ ହୋଇଯାଇଛି କାଞ୍ଚିବିଜୟ କିମ୍ବଦନ୍ତୀ ମାଧ୍ୟମରେ, ଯାହା ଆପଣମାନେ ସମସ୍ତେ ଜାଣନ୍ତି । ଏହି ପାରସ୍ପରିକ ଭାବ ବନ୍ଧନରେ ଓଡ଼ିଶାର ପ୍ରଭୁ–ଶାସିତ ସାମ୍ରାଜ୍ୟରେ ଶ୍ରୀଜଗନ୍ନାଥ ଗ୍ରହଣ କରିଛନ୍ତି ଏକ ରାଜନୈତିକ ଭୂମିକା ଏବଂ ଏହା ଏଯାଏଁ ଗଡ଼ି ଆସିଛି ।

**ଓଡ଼ିଆ ଭାଷା ଓ ଶ୍ରୀଜଗନ୍ନାଥ**

ସାରା ଭାରତବର୍ଷରେ ଓଡ଼ିଶା ଭାଷାଭିତ୍ତିରେ ଗଠିତ ପ୍ରଥମ ରାଜ୍ୟ । ସେଇଥିପାଇଁ ଅପ୍ରେଲ ୧ ତାରିଖ ଗୋଟିଏ ସ୍ମରଣୀୟ ଦିନ । ଆସନ୍ତୁ, ଏହି ଗୌରବମୟ ସ୍ମୃତିକୁ ଜଗନ୍ନାଥ ସଂସ୍କୃତି ତଥା ତା'ର ଧର୍ମନିରପେକ୍ଷ ଭିତ୍ତିର ଆଧାରରେ ପୁନର୍ଗଠିତ କରିବା ।

ଓଡ଼ିଶାରେ ୬୩ଟି ଜନଜାତି ବାସ କରନ୍ତି । ସେମାନଙ୍କର ଭାଷା, ଭିନ୍ନ ଭିନ୍ନ ଭାଷା–ପରିବାରର ଅନ୍ତର୍ଭୁକ୍ତ । ସେହିସବୁ ଭାଷା–ପରିବାର ମଧ୍ୟରେ ଅଛି ଅଷ୍ଟ୍ରୋ–ଏସିଆଟିକ୍ ପରିବାର– ଯାହା ମଧ୍ୟରେ ଉତ୍ତର ଓ ଦକ୍ଷିଣ ମୁଣ୍ଡାରି ଉପଗୋଷ୍ଠୀର ଭାଷା ସମେତ ରହିଛି ଦ୍ରାବିଡ଼ ଓ ଦେଶିଆ ଭାଷା । ସେହିପରି ଭାରତୀୟ ଆର୍ଯ୍ୟଭାଷା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ରାଜନୈତିକ ପରିଚିତି ଓ କ୍ଷେତ୍ରୀୟ ସଂହତିର କାରଣ ହୋଇଛି । ରାଜନୈତିକ ପରିଚିତି ଅପେକ୍ଷା ଏହି ଭାଷାଭିତ୍ତିକ ପରିଚିତି ଅଧିକ ଗୁରୁତ୍ୱପୂର୍ଣ୍ଣ ଏବଂ ଏହା ଜାତି, ଧର୍ମ ବା ଅନ୍ୟାନ୍ୟ ପରିଚିତି ଅପେକ୍ଷା ଅଧିକ ବ୍ୟାପକ ।

ଏହି ଦୃଷ୍ଟିରୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ହିଁ ଓଡ଼ିଶାର ଆଞ୍ଚଳିକ ଅସ୍ତିତ୍ୱର ଗୁରୁତ୍ୱପୂର୍ଣ୍ଣ ବିଭାବ ହୋଇ ରହିଆସିଛି । କଳିଙ୍ଗ, ଓଡ୍ର ଓ ଉତ୍କଳ ଆଦି ପରିଚିତି– ପରସ୍ପରର ସମ୍ବନ୍ଧିତ । ଏହା ଉକ୍ତ ଭୂଖଣ୍ଡ ବାହାରେ ମଧ୍ୟ ସୁବିଦିତ । ଏଣୁ ଗୋଟିଏ ସଂଯୋଗ ସୂତ୍ରରେ ତାହାକୁ ବାନ୍ଧି ରଖିବା ଏବଂ ତାହାକୁ ଗୋଟିଏ ନିର୍ଦ୍ଦିଷ୍ଟ ପରିଚିତି ଦେବା ଏକ ଐତିହାସିକ ଆବଶ୍ୟକତା । ଏପରି ସ୍ଥିତିରେ ପରିଚିତିର ବନ୍ଧନ ପାଇଁ ଏକ ସୂତ୍ରର ନିର୍ମାଣ ପ୍ରୟୋଜନ । ସେହି ସୂତ୍ରଟି ପୁଣି ସ୍ଥାୟୀ ଓ ସର୍ବଗ୍ରାହ୍ୟ ହେବା ପ୍ରୟୋଜନ । ଆଜିର ସ୍ଥିତିରେ ଓଡ଼ିଆ ଭାଷାକୁ ସେହି ସୂତ୍ର ଭାବେ ଉପଯୋଗ କରାଯିବା ଆବଶ୍ୟକ ।

ଇତିହାସର ଏକ ଗୁରୁତ୍ୱପୂର୍ଣ୍ଣ ସମୟରେ ଜଗନ୍ନାଥ ସଂସ୍କୃତି ଓ ଓଡ଼ିଆ ଭାଷା ବହୁ ଭାବରେ ପରସ୍ପରର ପରିପୂରକ ହୋଇଥିଲେ । ଆଦିକବି ସାରଳା ଦାସ ଓ ପଞ୍ଚସଖା କବିମାନଙ୍କର ଆବିର୍ଭାବ ଓଡ଼ିଶାର ସାହିତ୍ୟିକ ଦିଗନ୍ତକୁ ନୂତନତାର ଦୀପ୍ତିରେ ଭାସ୍ୱର କରିଥିଲା । ତାହା ପୂର୍ବରୁ ଅବଶ୍ୟ ଜଗନ୍ନାଥ ଓ ଜଗନ୍ନାଥ କୈନ୍ଦ୍ରିକ ସଂସ୍କୃତିର ଉଲ୍ଲେଖ ଥିଲା, କିନ୍ତୁ ସେଥିରେ କ୍ଷେତ୍ରଭିତ୍ତିକ ଓ ରାଜନୈତିକ ଉପାଦାନ ନଥିଲା ।

ବ୍ୟାସଦେବଙ୍କ ମହାଭାରତର ସବୁ ମୁଖ୍ୟ ଚରିତ୍ରଙ୍କୁ ସାରଳା ଦାସ ଓଡ଼ିଶା ଭୂଇଁକୁ ଆଣିଛନ୍ତି । ପଞ୍ଚସଖା କବିମାନେ ସାହିତ୍ୟରେ ସମ୍ପୂର୍ଣ୍ଣ ଭିନ୍ନ ଓ ସ୍ଥାନୀୟ ସ୍ୱାଦ ପରିବେଷଣ କରିଛନ୍ତି । ଶୁଭକାନ୍ତ ବେହେରାଙ୍କ ଅନୁସାରେ, ସାରଳା ଦାସ ଇନ୍ଦ୍ରଦ୍ୟୁମ୍ନ ଉପାଖ୍ୟାନର ପୁନର୍ନିର୍ମାଣ କରିବା ସହିତ ଶ୍ରୀଜଗନ୍ନାଥଙ୍କୁ ସମ୍ପୂର୍ଣ୍ଣ ଭାବରେ ଏକ ଓଡ଼ିଆ ଦେବତାରେ ପରିଣତ କରିଦେଇଛନ୍ତି । (ଶୁଭକାନ୍ତ ବେହେରା, ପୃ–୨୪)

କମ୍ପାନୀ ସରକାର ସମୟରେ ପ୍ରଶାସନ ସମ୍ବଲପୁର ଅଞ୍ଚଳରେ ଓଡ଼ିଆ ବଦଳରେ ହିନ୍ଦୀର ପ୍ରଚଳନ ଆରମ୍ଭ କରିଥିଲା । ଏହି ନିଷ୍ପତ୍ତି ପଛରେ ଯେଉଁ ଗୁରୁତ୍ୱପୂର୍ଣ୍ଣ କାରଣ ଥିଲା, ତାହା ହେଉଛି, ବିଦେଶୀ ଶାସକମାନେ ଉପଲବ୍ଧି କରିଥିଲେ ଯେ ମହାପ୍ରସାଦକୁ ନେଇ ଓଡ଼ିଆ ଭାଷାଭାଷୀଙ୍କ ମଧ୍ୟରେ ଗଢ଼ା ହୋଇଥିବା ଭାଇ–ଭାବ ଔପନିବେଶିକ ଶାସନର ପ୍ରାଧାନ୍ୟର ଅନୁକୂଳ ନୁହେଁ ।



ସେ ଯାହା ହେଉନା କାହିଁକି, ବୈଦେଶିକ ଶାସକମାନଙ୍କ ଦୁଶ୍ଚିନ୍ତାର କାରଣ ଥିଲା ଓଡ଼ିଆ ଭାଷାଭାଷୀ କର୍ମଚାରୀମାନଙ୍କ ମଧ୍ୟରେ ମହାପ୍ରସାଦ ଆଦାନପ୍ରଦାନ ମାଧ୍ୟମରେ ଗଢ଼ିଉଠିଥିବା ଏକତା । ସେଥିପାଇଁ ସେମାନେ କେନ୍ଦ୍ରୀୟ ପ୍ରଦେଶରୁ ଅନେକ ହିନ୍ଦୀଭାଷୀ ଅଣଓଡ଼ିଆ କର୍ମଚାରୀଙ୍କୁ ଆଣି ଏଠାରେ ନିଯୁକ୍ତ କରିବାକୁ ଉଦ୍ୟମ କରିଥିଲେ ।

ସେହି ବିଚାର ମଧ୍ୟ ସେମାନଙ୍କୁ ସରକାରୀ ଭାଷା ନୀତିରେ ପରିବର୍ତ୍ତନ ନିମନ୍ତେ ପ୍ରୋତ୍ସାହିତ କରିଥିଲା । କିନ୍ତୁ ତାହାର ପ୍ରତିଫଳ ରୂପେ ଗଢ଼ି ଉଠିଲା 'ଭାଷା–ଆନ୍ଦୋଳନ' । ଏହା ମଧ୍ୟ ଜଗନ୍ନାଥକୈନ୍ଦ୍ରିକ ଓଡ଼ିଆ ଚେତନାକୁ ଅଧିକ ପୁଷ୍ଟ କଲା । ତାହାର ଆଧାର ଥିଲା ସେହି ମହାପ୍ରସାଦ । ତାହା ପୁନଶ୍ଚ ଜଗନ୍ନାଥ ସଂସ୍କୃତିର ଧର୍ମନିରପେକ୍ଷ ଓ ବହୁବାଦୀ ପ୍ରକୃତିକୁ ପ୍ରମାଣିତ କଲା ।

## ସୌର ଉପାସନା ଓ ଜଗନ୍ନାଥ ସଂସ୍କୃତି

କୋଣାର୍କର ସୂର୍ଯ୍ୟ ମନ୍ଦିର ଓଡ଼ିଶାର ସବୁଠୁ ମହତ୍ତ୍ୱପୂର୍ଣ୍ଣ କୀର୍ତ୍ତି । ସେହି ମନ୍ଦିର ଗାତ୍ରରେ ଖୋଦିତ ରୁଦ୍ର (ଶିବ), ଦୁର୍ଗା ଓ ଜଗନ୍ନାଥଙ୍କ ତ୍ରିମୂର୍ତ୍ତି ସୌର ଉପାସନା ସହିତ ଶ୍ରୀଜଗନ୍ନାଥଙ୍କର ଘନିଷ୍ଠ ସମ୍ପର୍କ ପ୍ରତିପାଦିତ କରେ । ଏ ପ୍ରସଙ୍ଗରେ ସ୍ମରଣଯୋଗ୍ୟ ଯେ ବରାହମିହିରଙ୍କ ପ୍ରସିଦ୍ଧ ଖଗୋଳଶାସ୍ତ୍ର 'ବୃହତ୍ ସଂହିତା'ରେ ଉଡ୍ର ଓ କଳିଙ୍ଗ ଦେଶ ସୂର୍ଯ୍ୟଦେବଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଅଛି ବୋଲି କୁହାଯାଇଛି । ବରାହମିହିରଙ୍କର ସମୟ ଷଷ୍ଠ ଶତାବ୍ଦୀ ଏବଂ ସେ ଜଣେ ସୌର ଉପାସକ ଥିଲେ । ତାଙ୍କର ପିତାଙ୍କ ନାମ ଆଦିତ୍ୟ ଦାସ । 'ପଞ୍ଚସିଦ୍ଧାନ୍ତିକା' ତାଙ୍କର ଅନ୍ୟ ଏକ କୃତି– ଯେଉଁଥିରେ ପାଞ୍ଚଟି ଖଗୋଳୀୟ ସିଦ୍ଧାନ୍ତ ସଂକଳିତ ହୋଇଛି । 'ସୂର୍ଯ୍ୟସିଦ୍ଧାନ୍ତ' ତାହାର ଅନ୍ତର୍ଭୁକ୍ତ । କୋଣାର୍କର ବର୍ତ୍ତମାନର ସୂର୍ଯ୍ୟମନ୍ଦିର ପୂର୍ବ ଗଙ୍ଗ ରାଜବଂଶର ପ୍ରଥମ ନରସିଂହ ଦେବଙ୍କ ଦ୍ୱାରା ତ୍ରୟୋଦଶ ଶତାବ୍ଦୀରେ ନିର୍ମିତ ହୋଇଥିଲା । ଅର୍ଥାତ୍ ଏହି ମନ୍ଦିର ନିର୍ମାଣ ହେବାର ସାତଶହ ବର୍ଷ ପୂର୍ବରୁ ବରାହମିହିର କହିଥିଲେ ଯେ କଳିଙ୍ଗ ସୂର୍ଯ୍ୟଦେବଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଅଛି । ଏହା ସୂଚାଏ ଯେ ଏହି ସୂର୍ଯ୍ୟମନ୍ଦିର ହେଉଛି କଳିଙ୍ଗରେ ସୌର ସଂସ୍କୃତିର ଚୂଡ଼ାନ୍ତ ପରିପ୍ରକାଶ । ଏହା ସୌର ସଂସ୍କୃତିର ଆରମ୍ଭ ନୁହେଁ । ଏହି ପରିପ୍ରେକ୍ଷୀରେ ଆମେ କୋଣାର୍କ ପରିସରରେ ଥିବା ପ୍ରାଚୀନ ଇଟା ମନ୍ଦିରର ଉଦାହରଣ ଦେଇପାରିବା । ଏହା ସୂଚାଏ ଯେ ସେଠାରେ ସୂର୍ଯ୍ୟ ପୂଜାର ପରମ୍ପରା ପୂର୍ବରୁ ରହିଆସିଥିଲା । ଏହା ବ୍ୟତୀତ କୋଣାର୍କ ସୂର୍ଯ୍ୟମନ୍ଦିରର ନିର୍ମାଣ ଶୈଳୀରୁ ଜଣାଯାଏ ଯେ ଏହାକୁ ଏକ ଚଳମାନ ରଥ ତୁଲ୍ୟ ନିର୍ମାଣ କରାଯାଇଛି । ଏହି ରଥର ୨୪ଟି ଚକ ଓ ସାତଟି ଘୋଡ଼ା । ଏହା ମଧ୍ୟ ପ୍ରତୀକାତ୍ମକ ଭାବରେ ସୌର ଉପାସନା ସହିତ ଶ୍ରୀଜଗନ୍ନାଥ ସଂସ୍କୃତିର ସଂପୃକ୍ତି ସୂଚାଏ । ଏଠାରେ ସୂଚିତ କରିବା ଅନାବଶ୍ୟକ ଯେ ଶ୍ରୀଜଗନ୍ନାଥ ସଂସ୍କୃତିର ସବୁଠୁ ପ୍ରସିଦ୍ଧ ପ୍ରତୀକମାନ ହେଉଛି ତିନି ଠାକୁରଙ୍କ ତିନି ରଥ ।

ଏ ପ୍ରସଙ୍ଗରେ ମୁଁ କହିବାକୁ ଚାହେଁ ଯେ ଓଡ଼ିଶାରେ ସୌର ଉପାସନାର ଐତିହ୍ୟ ସମ୍ପର୍କରେ ଅଧ୍ୟୟନ କଲାବେଳେ ଆଦିବାସୀ ସଂସ୍କୃତିର ସୂର୍ଯ୍ୟ ପୂଜାକୁ ବାଦ୍ ଦେଇ ହେବ ନାହିଁ । କାରଣ ତାହା ମୂଳଭୂତ ଓ ସୁପ୍ରାଚୀନ । ଏ ବାବଦରେ ମୁଁ ସ୍ମରଣ କରିବି ୨୦୦୨ ମସିହାରେ ଏଇ ଭୁବନେଶ୍ୱରରେ ମୁଁ ଦେଇଥିବା ଆଲିସ୍ ବୋନର୍ ସ୍ମାରକୀ ରାଷ୍ଟ୍ରୀୟ ବକ୍ତୃତା କାର୍ଯ୍ୟକ୍ରମକୁ । ସେହି ବକ୍ତୃତାରେ ସୂର୍ଯ୍ୟ ପୂଜାର ଆଦି ଉତ୍ସ ଭାବରେ ମୁଁ ଆଦିବାସୀ ସଂସ୍କୃତିର ବିଶଦ ଆଲୋଚନା କରିଥିଲି ।

ସିଙ୍ଗି ଆର୍କେ ହେଉଛନ୍ତି କୋରାପୁଟର ବଣ୍ଡାମାନଙ୍କର ସୂର୍ଯ୍ୟଦେବତା । ଶବରମାନଙ୍କ ପରି ସେମାନେ ଗୋଟିଏ ଅଷ୍ଟ୍ରୋ–ଏସିଆଟିକ୍ ଭାଷା କହନ୍ତି । ସିଙ୍ଗ ବଙ୍ଗା ହେଉଛନ୍ତି ମୁଣ୍ଡାମାନଙ୍କର ସୂର୍ଯ୍ୟଦେବତା । ସେମାନେ ମଧ୍ୟ ଅଷ୍ଟ୍ରୋ ଏସିଆଟିକ୍ ଭାଷା କହନ୍ତି । ମୁଣ୍ଡାରି ଭାଷାରେ ସିଙ୍ଗ ବା ସିଙ୍ଗିର ଅର୍ଥ 'ସୂର୍ଯ୍ୟ' । ସେଇଥିପାଇଁ ମୁଣ୍ଡାମାନଙ୍କର ଆଦିଭୂମି ହେଉଛି ସିଂହଭୂମ୍ ବା ସିଂଭୂମ୍ । ସୂର୍ଯ୍ୟଙ୍କର ଗୋଟିଏ ନାମ 'ଅର୍କ' ବୋଲି ବୈଦିକ ରଚନାମାନଙ୍କରେ ଉଲ୍ଲେଖ ଅଛି । 'କୋଣାର୍କ' ନାମଟି ସେଇ ଦୃଷ୍ଟିରୁ ସୂର୍ଯ୍ୟଙ୍କ ସହିତ ସମ୍ପର୍କିତ ।



ଯଦି ଅଶୋକଙ୍କ ପରେ ଓଡ଼ିଶାରେ ବୌଦ୍ଧ ଧର୍ମର ଅଭ୍ୟୁଦୟ ଘଟିଛି, ତେବେ ତା'ପୂର୍ବରୁ ପ୍ରାଚୀନ କଳିଙ୍ଗରେ କେଉଁ ଧର୍ମଧାରା ବା ଲୋକବିଶ୍ୱାସ ପ୍ରମୁଖ ଥିଲା ? ଜନଜାତି ମଧ୍ୟରେ ପ୍ରଚଳିତ ସୂର୍ଯ୍ୟ ପୂଜାର ବିଚାରରୁ, ପ୍ରାଚୀନ କଳିଙ୍ଗରେ ଯେ ସୂର୍ଯ୍ୟ ପୂଜାର ପରମ୍ପରା ପ୍ରତିଷ୍ଠିତ ଥିଲା, ଏ ସମ୍ଭାବନାକୁ ଅସ୍ୱୀକାର କରାଯାଇ ନପାରେ ।

ଯଦି ଆମେ ଜଗନ୍ନାଥଙ୍କ ଉପାସନାର ଆଦି ଉତ୍ସକୁ ବିଚାରକୁ ନେବା, ତେବେ ଦାରୁବିଗ୍ରହ ଉପାସନା ଧାରାର ଆଦିବାସୀ ଉତ୍ସ ସମ୍ପର୍କରେ ଅନେକ ସୂତ୍ର ପାଇପାରିବା । ବୃକ୍ଷ ଉପାସନା ହେଉଛି ଉପାସନାର ଏକ ଆଦିମ ଧାରା । ପ୍ରସ୍ତର ମୂର୍ତ୍ତି, ଧାତୁମୂର୍ତ୍ତି ବା ଦେବତାମାନଙ୍କର ମାନବ ବା ପଶୁ ରୂପ ହେଉଛି ପରବର୍ତ୍ତୀ କାଳର ବିକାଶ ପର୍ବ । ଏଣୁ ଶିଳ୍ପଶାସ୍ତ୍ର ଅନୁସାରେ ଧାତୁ ବା ପ୍ରସ୍ତରମୂର୍ତ୍ତି ପରେ ଯେ ଦାରୁ ମୂର୍ତ୍ତି ନିର୍ମାଣ ହୋଇଛି, ଏ ସମ୍ଭାବନା କ୍ଷୀଣ ।

ଶ୍ରୀଜଗନ୍ନାଥଙ୍କର ବହୁତାସମ୍ପନ୍ନ ଭିତ୍ତିରେ ଥିବା ଆଦିବାସୀ ଉତ୍ସ ତଥା ଆଦିବାସୀ ସଂସ୍କୃତିର ସୂର୍ଯ୍ୟପୂଜା ସମ୍ପର୍କରେ ମୁଁ ଆଉ ଗୋଟିଏ ଉଦାହରଣ ଦେବାକୁ ଚାହେଁ । ସୂର୍ଯ୍ୟ ପୂଜାର ଉତ୍ସ ତଥା କୋଣାର୍କର ଅର୍କଦେବତା ସୂର୍ଯ୍ୟ ପାରମ୍ପରିକ ଭାବରେ ପୌରାଣିକ ଉପାଖ୍ୟାନର ଶାମ୍ବଙ୍କ ସହ ସଂପୃକ୍ତ । ଏ ପ୍ରସଙ୍ଗରେ ଉଲ୍ଲେଖନୀୟ ଯେ ବୈଦିକ ରଚନାରେ ଥିବା ସୂର୍ଯ୍ୟଙ୍କର ବାରଟି ନାମ ମଧ୍ୟରୁ ଅର୍କ ଅନ୍ୟତମ ।

ତେବେ ଏହା କ'ଣ କୋଣାର୍କର ସୂର୍ଯ୍ୟଦେବତାଙ୍କର ସମ୍ପୂର୍ଣ୍ଣ ବୈଦିକ ଉତ୍ସକୁ ସୂଚିତ କରୁଛି ? ଏହା ସଂଶୟାଛନ୍ନ । କାରଣ ସୂର୍ଯ୍ୟଙ୍କୁ ଜଣେ ପ୍ରମୁଖ ଦେବତା ଭାବରେ କେବେ ବି ଆର୍ଯ୍ୟ ଧାରାରେ ଗ୍ରହଣ କରାଯାଇ ନଥିଲା ।

ଏବେ ମୁଁ ଶ୍ରୀଜଗନ୍ନାଥଙ୍କ ସଂସ୍କୃତି ଓ ସୂର୍ଯ୍ୟପୂଜାର ପରମ୍ପରା ମଧ୍ୟରେ ଥିବା ସମ୍ଭାବ୍ୟ ସମ୍ପର୍କକୁ ଆସୁଛି । କାହିଁ କେଉଁ ଅନାଦି କାଳରୁ ସୂର୍ଯ୍ୟ ପୂଜାର ପରମ୍ପରା ରହିଆସିଛି । ସେ ଦୃଷ୍ଟିରୁ ଶ୍ରୀଜଗନ୍ନାଥଙ୍କ ଉପାସନା ଧାରାରେ ଆଦିବାସୀ ବା ମିଶ୍ରିତ ଆଦିବାସୀ ପରମ୍ପରା ପାଇହୁଏ ।

## ପ୍ରଭୁ–ରାଜା, ସୂର୍ଯ୍ୟ–ସିଂହ ପ୍ରତୀକାତ୍ମକତା ଓ ନୃସିଂହ–ଜଗନ୍ନାଥ

ଏବେ ମୁଁ ଜଗନ୍ନାଥ ସଂସ୍କୃତି ଓ ସୂର୍ଯ୍ୟପୂଜା ମଧ୍ୟରେ ଥିବା ଘନିଷ୍ଠ ଓ ମୂଳଭୂତ ସମ୍ପର୍କର ସମ୍ଭାବନା କଥା କହୁଛି । ଏ ପ୍ରସଙ୍ଗରେ ମୁଁ ଆପଣମାନଙ୍କର ବିବେଚନା ପାଇଁ ଏକ ଚତୁରସ୍ର ଶୃଙ୍ଖଳାର ଅବତାରଣା କରୁଛି । ସେହି ଚତୁରସ୍ର ଶୃଙ୍ଖଳା ହେଉଛି 'ପ୍ରଭୁ–ରାଜା–ସୂର୍ଯ୍ୟ–ସିଂହ ପ୍ରତୀକାତ୍ମକତା ।

ପୃଥିବୀର ପ୍ରାଚୀନ ସଂସ୍କୃତିରେ ସୂର୍ଯ୍ୟ ଓ ସିଂହଙ୍କୁ ଏକ ଏକ ପ୍ରତୀକ ଚିହ୍ନ ବା 'ମୋଟିଫ୍' ରୂପେ ଗ୍ରହଣ କରାହୋଇଛି । ଏହାର ଭିତ୍ତି ମୁଖ୍ୟତଃ ଖଗୋଳୀୟ ବା ଜ୍ୟୋତିଷଶାସ୍ତ୍ରୀୟ । ସିଂହ ରାଶିରେ ସୂର୍ଯ୍ୟଙ୍କର ସଙ୍କେତ ଚିହ୍ନ ବେବିଲୋନୀୟ ଜ୍ୟୋତିଷଗ୍ରନ୍ଥ ତଥା ପ୍ରାଚ୍ୟ ପରମ୍ପରାରେ ପରିଲକ୍ଷିତ ହୁଏ ।

ପାରସ୍ୟର ପ୍ରାଚୀନ ପରମ୍ପରାରେ ମଧ୍ୟ ଏହା ଲକ୍ଷ୍ୟ କରାହୋଇଛି । ଏହି ପ୍ରତୀକାତ୍ମକର ଭିତ୍ତି ଏତେ ଦୃଢ଼ ଯେ ୧୯୭୯ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଇରାନ୍‌ର ଜାତୀୟ ପତାକାରେ ସୂର୍ଯ୍ୟ ଓ ସିଂହ ଦୁଇ ମୁଖ୍ୟ ସଙ୍କେତ ରୂପେ ସ୍ଥାନ ପାଇଥିଲେ । ଶାହ ଶାସନର ଅନ୍ତ ପର୍ଯ୍ୟନ୍ତ ଏହା ଅବ୍ୟାହତ ଥିଲା ।

ସୂର୍ଯ୍ୟ ପୂଜାର ପରମ୍ପରା ବା ସଂସ୍କୃତି ସମ୍ପର୍କରେ ଆଉ ଗୋଟିଏ ଦୃଷ୍ଟାନ୍ତ ମୁଁ ଏଠି ଦେବାକୁ ଚାହେଁ ଏବଂ ଜଗନ୍ନାଥ ସଂସ୍କୃତିର ବିକାଶକ୍ରମରେ ତା'ର ସମ୍ଭାବ୍ୟ ଅବଦାନ ସୂଚିତ କରିବାକୁ ଚାହେଁ । ସୂର୍ଯ୍ୟଦେବତା ହେଉଛନ୍ତି ସତ୍ୟର ସ୍ୱରୂପ । ଯେଉଁମାନେ ସୂର୍ଯ୍ୟଙ୍କୁ ସାକ୍ଷୀ ରଖି ଶପଥ ନିଅନ୍ତି, ସେମାନେ ଅସତ୍ୟ କହନ୍ତି ନାହିଁ ବୋଲି ବିଶ୍ୱାସ ରହିଛି । ଆଜି ବି ଓଡ଼ିଶାର ଲୋକେ ଶ୍ରୀମନ୍ଦିରର ସିଂହଦ୍ୱାରଠାରେ ଥିବା 'ଅରୁଣ ସ୍ତମ୍ଭ'କୁ ଛୁଇଁ ସତ୍ୟର ଶପଥ ନିଅନ୍ତି । ବଣ୍ଡା ପାହାଡ଼ରେ ଏ ପରମ୍ପରା ରହିଛି । ଆଜି ବି ସେଠାରେ 'ସିଙ୍ଗି ଆର୍କେ'ଙ୍କ ନାଆଁରେ ସେମାନେ ସତ୍ୟର ଶପଥ ନିଅନ୍ତି । ବିଶ୍ୱାସ ରହିଛି ଯେ ଥରେ ସେହି ଶପଥ ନେବା ପରେ, କେହି ମିଥ୍ୟା କହିବାକୁ ସାହସ କରନ୍ତି ନାହିଁ ।

ଏବେ ଆସିବା ଜଗନ୍ନାଥ ସଂସ୍କୃତିକୁ । ଜଗନ୍ନାଥ–କୈନ୍ଦ୍ରିକ ସଂସ୍କୃତିର ଗୋଟିଏ ପ୍ରମୁଖ ପ୍ରତୀକ ହେଉଛି



ମହାପ୍ରସାଦ । ଓଡ଼ିଆ ପରିବାରରେ ମହାପ୍ରସାଦ ବା ନିର୍ମାଲ୍ୟ ଦିଆନିଆ ହୋଇ ବନ୍ଧୁ ବନ୍ଧାଯାଏ । 'ମହାପ୍ରସାଦ ନିର୍ବନ୍ଧ' ମାଧ୍ୟମରେ ବୈବାହିକ ସମ୍ପର୍କ ଯୋଡାଯାଏ । ପୁଣି ଆଜି ବି ପ୍ରଥା ଅଛି ଯେ ଓଡ଼ିଆ ଘରର ବିବାହ, ବ୍ରତ ଆଦି ଶୁଭକର୍ମରେ ପ୍ରଥମ ନିମନ୍ତ୍ରଣ ଶ୍ରୀଜଗନ୍ନାଥଙ୍କୁ ଦିଆଯାଏ । ବିଶ୍ୱାସ ଅଛି ଯେ ସେହି ନିମନ୍ତ୍ରଣ ରକ୍ଷା କରି ଶ୍ରୀଜଗନ୍ନାଥ ସ୍ୱୟଂ ଉପସ୍ଥିତ ହୋଇ ବରକନ୍ୟାଙ୍କୁ ଆଶୀର୍ବାଦ ଦିଅନ୍ତି । ଏ ଉଭୟରେ ଶ୍ରୀଜଗନ୍ନାଥ ହୁଅନ୍ତି ସତ୍ୟକଥନର ସାକ୍ଷୀ ।

ମହାପ୍ରସାଦ ମଧ୍ୟ ସମାନତାର ଏକ ଦିବ୍ୟ ପ୍ରତୀକ । ମହାପ୍ରସାଦ କ୍ଷେତ୍ରରେ ସ୍ପୃଶ୍ୟ–ଅସ୍ପୃଶ୍ୟର ଭେଦଭାବ ନଥାଏ । ଏଠାରେ ମଧ୍ୟ ମହାପ୍ରସାଦ ସୂର୍ଯ୍ୟଙ୍କର ଭୂମିକା ନିଭାଏ କାରଣ ସୂର୍ଯ୍ୟଙ୍କଠାରେ ଭେଦର ବିଚାର ନଥାଏ । ସେ ସର୍ବଦ୍ରଷ୍ଟା, ସମଚକ୍ଷୁ । ସେ ସର୍ବୋପରି ।

ଓଡ଼ିଶାରେ ମୋର ଆଦ୍ୟ ଦିନଗୁଡିକରେ ମୁଁ ଗୋଟିଏ ଓଡ଼ିଆ ସିନେମା ଦେଖିଥିଲି, ଯାହାର ନାଆଁ ଥିଲା 'ଚକା ଆଖି ସବୁ ଦେଖୁଛି' । ଯେତେବେଳେ ମୁଁ ସେ ବାବଦରେ ଜାଣିବାକୁ ଚାହିଁଲି, ସେତେବେଳେ ମୋତେ କୁହାଯାଇଥିଲା, 'ଚକାଆଖି' ହେଉଛି ଶ୍ରୀଜଗନ୍ନାଥଙ୍କର ଗୋଲ ଆଖି । ସେ ସାକ୍ଷୀପୁରୁଷ । ସେ ଜଗତ୍–ଚକ୍ଷୁ । ଯେତେବେଳେ ମୁଁ ସେହି ଦାରୁବିଗ୍ରହଙ୍କ ସମ୍ମୁଖରେ ଦଣ୍ଡାୟମାନ ହେଲି, ଦେଖିଲି– ଦୁଇଟି ବିରାଟ ବର୍ତ୍ତୁଳାକାର ଚକ୍ଷୁ । 'ସର୍ବଦ୍ରଷ୍ଟା ସୂର୍ଯ୍ୟ' । ସେଇ ଆଦିଶକ୍ତିଙ୍କୁ ମୁଁ ଦର୍ଶନ କଲି । ଯେତେବେଳେ ମୁଁ ନୃସିଂହ ଅବତାରଙ୍କ ସହିତ ତାଙ୍କର ସମ୍ପର୍କ କଥା ଚିନ୍ତା କଲି, ସେତେବେଳେ ସେଇ ସୂର୍ଯ୍ୟ–ସିଂହ ପ୍ରତୀକାତ୍ମକତା ମୋର ମନକୁ ଆସିଲା । ମୋର ସ୍ମରଣକୁ ମଧ୍ୟ ଆସିଲା– ଶ୍ରୀମନ୍ଦିର ସିଂହଦ୍ୱାରର ଭବ୍ୟ ଦୃଶ୍ୟ ।

ପ୍ରଭୁ–ରାଜା ସମ୍ପର୍କ କଥା ମୁଁ ଆଗରୁ ସୂଚାଇଛି । ଏହା 'ରାଷ୍ଟ୍ରଦେବତା' ଓ 'ରାଜା ଶ୍ରୀଜଗନ୍ନାଥ' ଭାବଧାରା ମଧ୍ୟରେ ପ୍ରତିଷ୍ଠିତ । ରାଜାଙ୍କ ଆସନ 'ସିଂହାସନ' କେବଳ ଏଇଥିପାଇଁ ନୁହେଁ ଯେ ସିଂହ ଜଙ୍ଗଲର ରାଜା । ଏହା ଏଇଥିପାଇଁ ମଧ୍ୟ ଯେ ସିଂହ ପ୍ରତୀକାତ୍ମକ ଭାବରେ ସୂର୍ଯ୍ୟଙ୍କ ସହ ସମ୍ପର୍କିତ ଏବଂ ନିହିତାର୍ଥରେ ସେ ସତ୍ୟର ସାକ୍ଷୀ । ଏଣୁ ରାଜ–ଆସନ, ଯେଉଁଠାରୁ ସିଦ୍ଧାନ୍ତର ଉଦ୍‌ଘୋଷଣ କରାଯାଏ– ତାହା ସିଂହାସନ ହିଁ ହେବା ସ୍ୱାଭାବିକ । ଏଣୁ ପ୍ରଭୁ–ରାଜା, ସୂର୍ଯ୍ୟ–ସିଂହ ସଂକେତ ଯଥାର୍ଥ ଭାବରେ ଜଗନ୍ନାଥଙ୍କ 'ରାଷ୍ଟ୍ରଦେବତା' ଭାବଧାରା, ଓଡ଼ିଶା ସାମ୍ରାଜ୍ୟର ଶାସକ, ଜଗନ୍ନାଥ ମନ୍ଦିର ସହ ପୁରୀ ରାଜାଙ୍କ ସମ୍ପର୍କ ଏବଂ ସିଂହଦ୍ୱାର ଓ ମହାପ୍ରସାଦ ମାହାତ୍ମ୍ୟକୁ ଯଥାର୍ଥ ଭାବରେ ପ୍ରତିଫଳିତ କରେ । ଏହା ମଧ୍ୟ ଶ୍ରୀଜଗନ୍ନାଥ ଉପାସନାର ଆଦିବାସୀ ଉତ୍ସ ସମ୍ପର୍କରେ ସମ୍ଭାବ୍ୟ ସୂଚନା ଦିଏ ।

ଯଦି ଆମେ ଶ୍ରୀଜଗନ୍ନାଥଙ୍କ ସମ୍ପର୍କିତ ପୁରାଣ ପ୍ରସଙ୍ଗ, କିମ୍ବଦନ୍ତୀ, ପରମ୍ପରା, ଲିପିତାତ୍ତ୍ୱିକ ଉପାଦାନ ଏବଂ ଅନ୍ୟାନ୍ୟ ପ୍ରାମାଣିକ ତଥ୍ୟାବଳୀ ପ୍ରତି ଦୃଷ୍ଟିଦେବା, ତେବେ ଗୋଟିଏ କଥା ସ୍ପଷ୍ଟ ହେବ ଯେ ପ୍ରାଗୈତିହାସିକ କାଳ ହେଉ ବା ଲିପିବଦ୍ଧ ଇତିହାସର ସମୟ– ଶ୍ରୀଜଗନ୍ନାଥଙ୍କ ସ୍ୱରୂପରେ ବହୁତାର ଭାବଧାରା ସ୍ପଷ୍ଟ ।

ପୌରାଣିକ ପ୍ରସଙ୍ଗ ଓ କିମ୍ବଦନ୍ତୀରେ ବିଶ୍ୱାବସୁ, ଲଳିତା ଆଦି ଶାବର ଚରିତ୍ର, ଇନ୍ଦ୍ରଦ୍ୟୁମ୍ନଙ୍କ ପରି ରାଜା ଓ ବିଦ୍ୟାପତିଙ୍କ ପରି ବ୍ରାହ୍ମଣ ଅଛନ୍ତି । ଅନେକ ଅଶାନ୍ତ ଓ ବିକ୍ଷୁବ୍ଧ ସ୍ଥିତି ଭିତର ଦେଇ ଶ୍ରୀଜଗନ୍ନାଥ ଗତି କରି ଯାଇଛନ୍ତି ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ । ଏହି ପରିବହନର ପଥ ହୋଇଛି ପ୍ରକୃତି (ଅର୍ଥାତ୍, ସମୁଦ୍ର) । ଏହାର ମାଧ୍ୟମ ହୋଇଛନ୍ତି ମଣିଷ ।

ଆହୁରି ବି, ମଝିରେ ଆସିଛନ୍ତି କଳାପାହାଡ ପରି ଆକ୍ରମଣକାରୀ ଓ ବିଶର ମହାନ୍ତିଙ୍କ ପରି ଭକ୍ତ । ବିକ୍ଷୁବ୍ଧ ଓ ଶାନ୍ତ ଉଭୟ ସ୍ଥିତି ଦେଇ, ମାନବିକ ସଂପୃକ୍ତି ମାଧ୍ୟମରେ ଗତି କରିଛି ଶ୍ରୀଜଗନ୍ନାଥ ସଂସ୍କୃତି ଏବଂ ସବୁ ବିକ୍ଷୁବ୍‌ଧ ସ୍ଥିତି ଭିତର ଦେଇ ଗତିକରି ମଧ୍ୟ ବିଶର ମହାନ୍ତିଙ୍କ ପରି ଭକ୍ତଙ୍କ ମାଧ୍ୟମରେ ଜଗନ୍ନାଥ ଚେତନା ତା'ର ପ୍ରବହମାନତା ଅକ୍ଷୁଣ୍ଣ ରଖିପାରିଛି ।

ଆମେ ଯେତେବେଳେ ଇତିହାସର ସୂତ୍ର ଧରି ଅନଙ୍ଗଭୀମ ଦେବ, କପିଳେନ୍ଦ୍ରଦେବ, ରାମଚନ୍ଦ୍ର ଦେବ (ଦିତି–ଇନ୍ଦ୍ରଦ୍ୟୁମ୍ନ ରୂପେ ଖ୍ୟାତ)ଙ୍କ ପାଖକୁ ଯାଉ, ଯାଉ ମରାଠା, ମୋଗଲ ଏବଂ ବ୍ରିଟିଶ୍ ସାମ୍ରାଜ୍ୟର କର୍ଣ୍ଣୱାଲିସ୍ ଓ କାମ୍ପବେଲ୍‌ଙ୍କ



ପାଖକୁ, ଯାଉ ସାରଳା ଦାସ, ପଞ୍ଚସଖା କବିବୃନ୍ଦଙ୍କ ପାଖକୁ ଓ ମଧୁସୂଦନ, ଗୋପବନ୍ଧୁ ପ୍ରମୁଖଙ୍କ ନିକଟକୁ, ସେତେବେଳେ ପାଉ ଜଗନ୍ନାଥ ସଂସ୍କୃତିର ଏକ ପ୍ରବହମାନ ଧାରା । ଏହି ପ୍ରବହମାନ ଧାରାରେ ଆନୁଷ୍ଠାନିକ ବ୍ୟବସ୍ଥା, ଯଥା– ମନ୍ଦିର, ସେବକ, ପୂଜକ, ରାଜା ଓ ପ୍ରଶାସକ ଆଦିଙ୍କ ସମେତ ଓଡ଼ିଶାର ଜନସାଧାରଣଙ୍କର ମଧ୍ୟ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଆସିଛି । ଏହା ସ୍ୱାଭାବିକ ଯେ ବିଦେଶୀ ଶାସକମାନେ ଏକଦା ସେମାନଙ୍କ ପରିଭାଷାର 'ଜଗର୍ନଟ'ଙ୍କ ପାଇଁ ବ୍ୟସ୍ତ, ବିବ୍ରତ ହୋଇଉଠିଥିଲେ । ଏହା ଅମିତ ଶକ୍ତିଶାଳୀ ସ୍ଥାନୀୟ ସେନାବାହିନୀ ପାଇଁ ଯେତେ ନୁହେଁ, ସେତେ ଶ୍ରୀଜଗନ୍ନାଥଙ୍କ ପ୍ରତି ଅଗଣିତ ଜନସାଧାରଣଙ୍କର ଅତୁଟ ଓ ଅବିଚ୍ଛିନ୍ନ ବିଶ୍ୱାସ ପାଇଁ ।

ଶ୍ରୀଜଗନ୍ନାଥ ସଂସ୍କୃତିର ବ୍ୟାପକତା ଓ ବିଶାଳତା ସେତିକିବେଳେ ପ୍ରତିପାଦିତ ହୁଏ, ଯେତେବେଳେ ଜଗନ୍ନାଥ ମନ୍ଦିର ଛାଡି ମୁକ୍ତାକାଶ ତଳର ସୂର୍ଯ୍ୟାଲୋକକୁ ଚାଲିଆସନ୍ତି ଏବଂ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କୁ ସମାନ ଭାବରେ ଦର୍ଶନ ଦିଅନ୍ତି । ସେତେବେଳେ ଦେଶୀୟ ଓ ବୈଦେଶିକ ଭକ୍ତଙ୍କ ମଧ୍ୟରେ କୌଣସି ଭେଦଭାବ ରହେ ନାହିଁ । ଶ୍ରୀଜଗନ୍ନାଥଙ୍କ ବହୁତାର ତାହା ହିଁ ସର୍ବଶ୍ରେଷ୍ଠ ନିଦର୍ଶନ । ବୈଦେଶିକ ପରିଭାଷାର 'ଜଗର୍ନଟ' ସେତେବେଳେ ତାହାର ପ୍ରସିଦ୍ଧ ପରିକ୍ରମା କରେ । ସେତେବେଳେ ସବୁ ପଥର ଏକମାତ୍ର ଲକ୍ଷ୍ୟ ହୋଇଯାଏ ପୁରୀର ବଡଦାଣ୍ଡ ।

**ସମୂହର ଦେବତା**

କୌଣସି ଜଣେ ସମୂହର ଦେବତାଙ୍କ ପାଇଁ କଠିନ ପରୀକ୍ଷା ହେଉଛି ତାହା, ଯେତେବେଳେ ଅନ୍ୟ ଧର୍ମଧାରାର ଭକ୍ତଙ୍କ ବିଶ୍ୱାସକୁ ମଧ୍ୟ ସେ ନିଜ ଆଡକୁ ଆକର୍ଷଣ କରିବାରେ ସକ୍ଷମ ହୁଅନ୍ତି । ସାଲବେଗ ଏକ ଉଦାହରଣ । ବିଗଳିତ କରିଦେବା ପରି ବହୁ କାଳଜୟୀ ଭଜନ ତାଙ୍କର ଅଛି ।

ଶ୍ରୀଜଗନ୍ନାଥଙ୍କ ଅଭୟ ଆଶିଷ ଯେ ଓଡ଼ିଆଙ୍କ ଭାଗ୍ୟ ପାଇଁ ଅତ୍ୟାବଶ୍ୟକ, ଏହା କହିବାରେ ମଧୁବାବୁଙ୍କର କୌଣସି କୁଣ୍ଠା ନଥିଲା । ପ୍ରକୃତରେ କହିଲେ, ଆଗରୁ ସାଲବେଗଙ୍କ ଭଜନ କଥା ମୁଁ କେବଳ ଶୁଣିଥିଲି । କିନ୍ତୁ ଯେତେବେଳେ ରବୀନ୍ଦ୍ର ମଣ୍ଡପ ଓ ଜୟଦେବ ଭବନର ଭଜନ କାର୍ଯ୍ୟକ୍ରମରେ ସିକନ୍ଦର ଆଲାମଙ୍କ କଣ୍ଠରେ ତାହା ଶୁଣିଲି, ସେତେବେଳେ ଆଖି ମୁଦି ମୁଁ ଅନୁଭବ କଲି– ସବୁ ସୀମା ସରହଦ ସତେଯେମିତି ମିଳେଇ ଯାଉଛି । ମୋ ନିଜ ଭିତରେ ମୁଁ ଅନୁଭବ କଲି ସାଂସାରିକ ବନ୍ଧନର ସବୁ ସଂକୀର୍ଣ୍ଣ ପ୍ରାଚୀର ଅପସରି ଯାଉଛି । ଏହା ଶ୍ରୀଜଗନ୍ନାଥଙ୍କ ବହୁତାର, ସର୍ବବ୍ୟାପକତାର ନିଦର୍ଶନ ।

ଜୟ ଜଗନ୍ନାଥ ।
ବନ୍ଦେ ଉତ୍କଳ ଜନନୀ ।

---

ଉନ୍ନୟନ କମିଶନର ତଥା
ଅତିରିକ୍ତ ମୁଖ୍ୟ ଶାସନ ସଚିବ, ଓଡ଼ିଶା

*ମୂଳ ଇଂରାଜୀ : ଆର୍. ବାଲକ୍ରିଷ୍ଣନ୍*
*ଓଡ଼ିଆ ଅନୁବାଦ : ଅସିତ ମହାନ୍ତି*







# ଜଗନ୍ନାଥ ସଂସ୍କୃତିରେ ମା'ଲକ୍ଷ୍ମୀଙ୍କର ଭୂମିକା ଏକ ମାନବୀୟ ଉତ୍ତରଣ

ଡକ୍ଟର ଇତି ସାମନ୍ତ

ବଡ଼ ଦେଉଳର ଦୁଆର ବନ୍ଦ । ଜଣେ ବନ୍ଦ ଦୁଆରର ଭିତର ପଟେ ରହି ଅଭିମାନରେ ଅନେକ କଥା କହି ଚାଲିଛନ୍ତି ତ ଆଉ ଜଣେ ବନ୍ଦ ଦୁଆରର ବାହାର ପଟେ ରହି ବିଭିନ୍ନ କଥା କହି ତାଙ୍କୁ ବୁଝେଇ ଚାଲିଛନ୍ତି । ଜଣେ ଦୁଆର ଖୋଲିବା ପାଇଁ ଅନୁରୋଧ କଲାବେଳେ ଆଉ ଜଣେ ନ ଖୋଲିବାର ଜିଦରେ ଅଟଳ । ଦୁଆର ବାହାରେ ଅଛନ୍ତି ଆମର ଇଷ୍ଟଦେବ ଜଗତର ନାଥ ଶ୍ରୀଜଗନ୍ନାଥ ଏବଂ ଭିତରେ ଅଛନ୍ତି ତାଙ୍କ ସହଧର୍ମିଣୀ ମା' ଲକ୍ଷ୍ମୀ ଠାକୁରାଣୀ । କାଳିଆ ଠାକୁର ମା' ଲକ୍ଷ୍ମୀଙ୍କୁ କିଛି ନ ଜଣାଇ ବଡ଼ ଦେଉଳରୁ ବାହାରି ଭାଇଭଉଣୀଙ୍କୁ ସାଥୀରେ ନେଇ ଦଶଦିନ କାଳ ନିଜ ମାଉସୀ ଘରକୁ ବୁଲି ଯାଇଥିଲେ । ଏଥିପାଇଁ ଭୀଷଣ ଭାବେ ଦୁଃଖ ପାଇଲେ ଲକ୍ଷ୍ମୀ । ଅଭିମାନରେ ଭାଙ୍ଗି ପଡ଼ିଲେ । ରାଗରେ ଯାଇ ଜଗନ୍ନାଥଙ୍କ ରଥର କାଠ ଭାଙ୍ଗି ଦେଇ ଆସିଲେ । ତେବେ ବି ଜଗନ୍ନାଥ ତାଙ୍କୁ କିଛି କହି ନ ଥିଲେ । ଏଣୁ ଲକ୍ଷ୍ମୀ ଭୀଷଣ ଉତ୍‌କ୍ଷିପ୍ତ ହୋଇ ଭାଇଭଉଣୀଙ୍କୁ ସାଥୀରେ ନେଇ ମାଉସୀ ଘରୁ ସ୍ୱାମୀ ଫେରିଲାରୁ ଦେଢଶୁର ବଳରାମ ଓ ନଣନ୍ଦ ସୁଭଦ୍ରାଙ୍କୁ ଭିତରକୁ ଛାଡ଼ିଦେଇ, ସ୍ୱାମୀଙ୍କୁ ଯିବାକୁ ନ ଦେଇ ଅଭିମାନରେ ଦୁଆର ବନ୍ଦ କରି ରହିଲେ । ଜଗନ୍ନାଥ ଯେତେ ବୁଝାଇଲେ ମଧ୍ୟ ଲକ୍ଷ୍ମୀ ନଛୋଡ଼ବନ୍ଧା । ତାଙ୍କୁ ଦେଉଳ ବାହାରେ ଠିଆ କରି ଅଭିମାନରେ ଅନେକ କଥା କହିଚାଲିଲେ । ଶେଷରେ ଜଗନ୍ନାଥ ଅନେକ ବୁଝାସୁଝା କରି ସାଥୀରେ ନେଇ ଆସିଥିବା ରସଗୋଲା ଖାଇବାକୁ ଦେବାରୁ ଲକ୍ଷ୍ମୀ ଅଭିମାନ ଭାଙ୍ଗିଲେ । ଖୋଲିଗଲା ବନ୍ଦ ଦେଉଳର ଦୁଆର । ବାଜି ଉଠିଲା ଘଣ୍ଟଘଣ୍ଟା, ମାର୍ଦଳ । ଶଙ୍ଖ, ହୁଳହୁଳି, ହାସରୋଳ, କରତାଳିରେ କମ୍ପି ଉଠିଲା ଚତୁର୍ଦ୍ଦିଗ । ଲକ୍ଷ୍ମୀ ନିଜର ଅଭିମାନ ଛାଡ଼ି ବନ୍ଦାପନା କରି ସ୍ୱାମୀଙ୍କୁ ବଡ଼ଦେଉଳକୁ ପାଛୋଟି ନେଲେ ।



ସରିଗଲା ପତି ପତ୍ନୀଙ୍କର ମାନ ଅଭିମାନର ପର୍ବ । ପୁଣି ବେଶ ମଧୁର ଭାବରେ ସରିଲା । ବଡ଼ ଠାକୁର, ବଡ଼ ଠାକୁରାଣୀ ମନ୍ଦିର ଭିତରକୁ ଗଲେ । ଆମେ ସମସ୍ତେ ଘରମୁହାଁ ହେଲୁ । ପାଖରେ ଚାଲୁଥିବା ଜଣେ ସ୍ତ୍ରୀଲୋକ ଜଣକ କହିଲେ, ଲକ୍ଷ୍ମୀ କେଡ଼େ ସରଳ ସତରେ ! ଜଗନ୍ନାଥଙ୍କର ଏଭଳି ଅନ୍ୟାୟକୁ ସାମାନ୍ୟ କେତେଟା ରସଗୋଲାରେ ଭୁଲିଗଲେ ? ଭୁଲିଗଲେ, ତାଙ୍କ ସ୍ୱାମୀ ତାଙ୍କୁ ଏଭଳି ଭାବରେ ଉପେକ୍ଷା କରି କିଭଳି ଅପମାନିତ କଲେ । ପୁଣି ଭାଇଭଉଣୀଙ୍କୁ ସାଙ୍ଗରେ ନେଇ ମାଉସୀ ଘରେ ଥିଲାବେଳେ ଆଡ଼ ଆଖିରେ ବି ତାଙ୍କୁ ଚାହିଁ ନଥିଲେ । ଏଥିପାଇଁ କେତେ ରାଗିଥିଲେ ଲକ୍ଷ୍ମୀ । କେତେ ଅଭିମାନ କରିଥିଲେ । କୁଆଡ଼େ ଗଲା ତାଙ୍କର ସେ ଅଭିମାନ ? କୁଆଡ଼େ ଗଲା ତାଙ୍କର ସେ ରାଗ ? ଯେଉଁ ରାଗରେ ସେ ନନ୍ଦିଘୋଷ ମଧ୍ୟ ଭାଙ୍ଗିବାକୁ



ପଛେଇଲେ ନାହିଁ । ସ୍ୱାମୀଙ୍କର କେତେଟା ରସଗୋଲା ଓ କିଛି ଚାଟୁ କଥାରେ ସବୁ ଭୁଲିଗଲେ ?

ହୋ ହୋ ହେଇ ହସିଉଠିଲେ ସମସ୍ତେ ।

ଏହା ହେଉଛି ଶ୍ରୀମନ୍ଦିର ଭିତରେ ଜଗତଜନନୀ ମା' ଲକ୍ଷ୍ମୀଙ୍କର ମାନବୀୟ ଲୀଳା, ଯାହା ଅନୁଷ୍ଠିତ ହୋଇଥାଏ ଜ୍ୟେଷ୍ଠ ଶୁକ୍ଳପକ୍ଷ ଏକାଦଶୀଠାରୁ ଆଷାଢ଼ ଶୁକ୍ଳ ଦ୍ୱାଦଶୀ ପର୍ଯ୍ୟନ୍ତ । ଜ୍ୟେଷ୍ଠ ଶୁକ୍ଳ ଏକାଦଶୀ ଦିନ ଶ୍ରୀଜଗନ୍ନାଥଙ୍କର 'ପୁଷ୍ୟାଭିଷେକ ଯାତ୍ରା' ଅଭିଷେକ ଉତ୍ସବ ପରମ୍ପରାର ପ୍ରତୀକ ସ୍ୱରୂପ ଏବେ ମଧ୍ୟ ପୌଷ ପୂର୍ଣ୍ଣିମା ତିଥିରେ ଶ୍ରୀମନ୍ଦିରରେ ପାଳିତ ହେଉଛି । ସାମାଜିକ ଜୀବନରେ ବିବାହର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଏହି ପ୍ରସଙ୍ଗରେ ଶ୍ରୀମନ୍ଦିରରେ ଯେପରି ରୁକ୍ମିଣୀ ବିବାହ ପ୍ରଥା ଅନୁସୃତ ହୁଏ, ତାହା ଲକ୍ଷ୍ୟ କଲାଭଳି । ଜ୍ୟେଷ୍ଠ ଶୁକ୍ଳ ଏକାଦଶୀରେ ଶ୍ରୀଜଗନ୍ନାଥଙ୍କ ଚଳନ୍ତି ପ୍ରତିମା ମଦନମୋହନଙ୍କୁ ଶ୍ରୀକୃଷ୍ଣଙ୍କ ବେଶରେ ସଜାଯାଏ । ଆଉ ମା' ଲକ୍ଷ୍ମୀଙ୍କୁ ସଜ୍ଜିତ କରାଯାଏ ନବବଧୂ ବେଶରେ । ଶ୍ରୀକୃଷ୍ଣ ଓ ରୁକ୍ମିଣୀ ମାଜଣା ମଣ୍ଡପରେ ବିଜେ କରନ୍ତି ଓ ସେଠାରେ ସେମାନଙ୍କର ବିବାହ ଉତ୍ସବ ପାଳିତ ହୁଏ । 'ବାମଦେବ ସଂହିତା'ରେ ବର୍ଣ୍ଣନା ଅଛି:

ରମାଂ ଗୃହିତ୍ୱା ସଂନସ୍ୟେ ଦ୍ରଥୋ ପରିଗତୋ ବିଭୁଃ
ପ୍ରାସାଦ ଭ୍ରମଣ କୃତ୍ୱା ପୁରାଯଦବୃତ୍ତିମାଚରେତ୍ ।
ତତୋ କୃଷ୍ଣଂ ରମାଂଦେବି ସ୍ଥାପୟତେ କୁତ୍ରଚିତ୍ ସ୍ଥଳେ
ତତଃ ସାୟଂ ପୂଜନସାପ୍ୟାନ୍ତେ ବୈବାହିକୀ କୃତି ।

ଉକ୍ତ ବିବାହରେ ରୁକ୍ମିଣୀଙ୍କ କର୍ତ୍ତା ରୂପେ ଭିତରଚ୍ଛୁ ଓ ଶ୍ରୀକୃଷ୍ଣଙ୍କୁ କର୍ତ୍ତା ରୂପେ ମୁଦିରସ୍ତ ବିବାହ ଅନୁଷ୍ଠିତ କରାନ୍ତି । ବୈଦିକ ବିଧି ଅନୁଯାୟୀ ବରକନ୍ୟାଙ୍କର ପ୍ରଥମ ବରଣଠାରୁ ହସ୍ତଗ୍ରନ୍ଥି, ଲାଜାହୋମ, କଉଡ଼ିଖେଳ ଆଦି କର୍ମ ସମ୍ପାଦନ ହୁଏ । ଜ୍ୟେଷ୍ଠ ଶୁକ୍ଳ ପଞ୍ଚକ ଦ୍ୱାଦଶୀ ଦିନ ବିବାହ ଉପଲକ୍ଷେ ଭ୍ରମଣଲୀଳା ଅନୁଷ୍ଠିତ ହୁଏ । ଜ୍ୟେଷ୍ଠ ଶୁକ୍ଳ ଚତୁର୍ଦ୍ଦଶୀ ରାତିରେ ଶ୍ରୀକୃଷ୍ଣ ଓ ରୁକ୍ମଣୀଙ୍କର ଚତୁର୍ଥୀ ହୋମ ମଧ୍ୟ ସାମାଜିକ ପରମ୍ପରା ଅନୁସରଣ ପୂର୍ବକ କରାଯାଇଥାଏ । ସ୍ନାନଯାତ୍ରା ଓ ରଥଯାତ୍ରା ପରେ ଶ୍ରୀଜଗନ୍ନାଥ ରଥରୁ ଆସି ଯେତେବେଳେ ଶ୍ରୀମନ୍ଦିର ଭିତର ଭଣ୍ଡାର ଘର ପାଖରେ ପହଞ୍ଚନ୍ତି, ସେଠାରେ ବିବାହ ସମୟରେ ଯେଉଁ ଗଇଁଠାଳ ପଡ଼ିଥାଏ ତାକୁ ଫିଟାଯାଏ ।

ବିବାହ ପରେ ଆରମ୍ଭ ହୁଏ ଦାମ୍ପତ୍ୟ ଜୀବନ । ମଧୁମୟ ଦାମ୍ପତ୍ୟ ଜୀବନ ସବୁ ସୁଖର ଉତ୍ପତ୍ତି ସ୍ଥଳ ବୋଲି କବି ସମ୍ରାଟ ଉପେନ୍ଦ୍ରଭଞ୍ଜ ମତବ୍ୟକ୍ତ କରିଛନ୍ତି, ଶୁଦ୍ଧ, ଆଦର୍ଶ ଦାମ୍ପତ୍ୟ ଜୀବନର ପ୍ରତିଛବି ସ୍ୱରୂପ ଶ୍ରୀମନ୍ଦିରରେ ଏକାନ୍ତ ଉତ୍ସବ ପାଳିତ ହୋଇଥାଏ । ମିଳନ ପରେ ବିଚ୍ଛେଦ ବିଧି ନିର୍ଦ୍ଦିଷ୍ଟ । ଏହା କିପରି ଦାମ୍ପତ୍ୟ ଜୀବନକୁ ପ୍ରଭାବିତ କରିଥାଏ, ଶ୍ରୀମନ୍ଦିରର ପରମ୍ପରାରେ ଏହା ମଧ୍ୟ ପ୍ରତିଫଳିତ ହୋଇଥାଏ । ଏହାପରେ ମହାପ୍ରଭୁଙ୍କ ସହ ଲକ୍ଷ୍ମୀଦେବୀଙ୍କର ଆଉ ସାକ୍ଷାତ ହୋଇନଥାଏ । ସ୍ନାନ ପୂର୍ଣ୍ଣିମାରେ ସ୍ନାନ ପରେ ମହାପ୍ରଭୁ ଜରାଗ୍ରସ୍ତ ହୁଅନ୍ତି ଓ ନବଯୌବନ ବେଶ ଦର୍ଶନ ପରେ ସେ ଭାଇ ବଳଭଦ୍ର ଓ ଭଉଣୀ ସୁଭଦ୍ରାଙ୍କୁ ନେଇ ଗୁଣ୍ଡିଚା ମନ୍ଦିରକୁ ଯାତ୍ରା କରିଥାନ୍ତି । ଏହି ଘଟଣା ମହାଲକ୍ଷ୍ମୀଙ୍କୁ ସ୍ତ୍ରୀ ସୁଲଭ କ୍ରୋଧରେ ଯେତିକି କ୍ରୋଧିତ କରାଏ, ବିରହରେ ମଧ୍ୟ ସେ ସେତିକି ବ୍ୟଥିତା ହୁଅନ୍ତି । ସାଧାରଣ ନାରୀଟିଏ ପରି ସେ ନିଜର ମନୋଭାବ ବଖାଣି ବସନ୍ତି ଭଗ୍ନୀସମା ବିମଳାଙ୍କ ନିକଟରେ । ବିମଳାଙ୍କ ପରାମର୍ଶ କ୍ରମେ ମୋହପୂର୍ଣ୍ଣ ନେଇ ସେ ଯାତ୍ରା କରନ୍ତି ଆଡପମଣ୍ଡପ ଉଦ୍ଦେଶ୍ୟରେ । ମହାଲକ୍ଷ୍ମୀଙ୍କର କ୍ରୋଧ ଓ ଅଭିମାନ ଦେଖି ମହାପ୍ରଭୁ ଜଗନ୍ନାଥଙ୍କର ଦଇତା ସେବକଗଣ ଗୁଣ୍ଡିଚା ମନ୍ଦିରର ମୁଖ ଦ୍ୱାର ବନ୍ଦ କରି ଦିଅନ୍ତି । ମାତ୍ର ବିଦ୍ୟାପତି ବଂଶଜ ପତି ମହାପାତ୍ରମାନେ ଯଥାବିଧି ଲକ୍ଷ୍ମୀଙ୍କ ସେବା ବଢ଼ାଇ ନାକଚଣା ଦ୍ୱାର ବାଟେ ମହାଲକ୍ଷ୍ମୀଙ୍କୁ ଆଡ଼ପମଣ୍ଡପରେ ପ୍ରବେଶ କରାନ୍ତି ।

ଲକ୍ଷ୍ମୀଙ୍କ ସହିତ ଯାଉଥିବା ପଞ୍ଜୁପାଣ୍ଡବ ମହାଲକ୍ଷ୍ମୀଙ୍କର ମଧ୍ୟସ୍ଥି ଭାବରେ କାର୍ଯ୍ୟ କରନ୍ତି । ଲକ୍ଷ୍ମୀଙ୍କ ରୋଷ ଶାନ୍ତ କରିବା ନିମନ୍ତେ ମହାପ୍ରଭୁ ଦୁଇଦିନ ପରେ ଫେରିଯିବାର କଣ୍ଟଦେଇ ରଥକୁ ଦକ୍ଷିଣ ମୋଡ଼ କରିବା ନିମନ୍ତେ ଆଦେଶ ଦେଇଥାନ୍ତି । ତଥାପି ମହାଲକ୍ଷ୍ମୀଙ୍କର କ୍ରୋଧ ଶାନ୍ତ ହୁଏନାହିଁ । କ୍ରୋଧିତା ଲକ୍ଷ୍ମୀଦେବୀ ମହାପ୍ରଭୁଙ୍କ ରଥର ଖଣ୍ଡେ ଅଖ ଭାଙ୍ଗି ଦିଅନ୍ତି । ତଥାପି ଭକତ ଡୋରିରେ ବନ୍ଧା ମହାପ୍ରଭୁ ନିଜର ପ୍ରତିଶ୍ରୁତି ରଖି ପାରନ୍ତି ନାହିଁ । ଆଡ଼ପମଣ୍ଡପରେ ନଅଦିନ ରହିବା ପରେ

ଦଶମୀ ଦିନ ବାହୁଡ଼ା ଯାତ୍ରାରେ ବାହାରନ୍ତି। ଦଶମୀଦିନ ମହାପ୍ରଭୁଙ୍କ ରଥ ରାଜନଅର ପାଖରେ ପହଞ୍ଚିବାପରେ ଲକ୍ଷ୍ମୀଦେବୀ ଦାସଦାସୀଙ୍କ ଗହଣରେ ଆସି ସିଂହଦ୍ୱାରର ଦକ୍ଷିଣରେ ଅବସ୍ଥିତ ଚାହାଣିମଣ୍ଡପରୁ ନନ୍ଦିଘୋଷ ରଥରେ ମହାପ୍ରଭୁଙ୍କୁ ଦର୍ଶନ କରନ୍ତି। ଦ୍ୱାଦଶୀ ଦିନ ମହାପ୍ରଭୁ ରଥରୁ ରତ୍ନସିଂହାସନକୁ ବିଜେ କଲାବେଳେ ଅନ୍ୟ ଏକ ମହାନାଟକ ଅଭିନୀତ ହୁଏ। ବଳରାମ ଓ ଦେବୀ ସୁଭଦ୍ରା ପହଣ୍ଡି ବିଜେ କରି ଶ୍ରୀମନ୍ଦିର ମଧ୍ୟରେ ପ୍ରବେଶ କରିବା ପରେ ସେବିକାମାନଙ୍କୁ ନିର୍ଦ୍ଦେଶ ଦେଇ ଲକ୍ଷ୍ମୀ ସିଂହଦ୍ୱାର ବନ୍ଦ କରିଦିଅନ୍ତି। ମହାପ୍ରଭୁ କାକୁସ୍ଥ ହୋଇ ବଡ଼ଦାଣ୍ଡ ଉପରେ ଠିଆହୋଇ ରୁହନ୍ତି। ମହାପ୍ରଭୁଙ୍କୁ ଶାସ୍ତି ଦେବାପାଇଁ ଇନ୍ଦ୍ରଙ୍କୁ ପ୍ରାର୍ଥନା କରି ଦେବୀ ବର୍ଷା କରାନ୍ତି।

ବର୍ଷାରେ ଭିଜିଭିଜି ଶ୍ରୀଜଗନ୍ନାଥ ବହୁ କାକୁତି ମିନତି କରିବା ପରେ ସିଂହଦ୍ୱାର ଖୋଲେ ହେଲେ ଅଭିମାନିନୀ ଲକ୍ଷ୍ମୀଙ୍କର ଅଭିମାନ ସରିନଥାଏ। ପୁନଶ୍ଚ ସେବକମାନଙ୍କ ଦ୍ୱାରା ଜୟବିଜୟ ଦ୍ୱାର ବନ୍ଦ କରିଦିଅନ୍ତି ସେ। ଆରମ୍ଭ ହୁଏ ଲକ୍ଷ୍ମୀଙ୍କର ଦାସୀ ଓ ମହାପ୍ରଭୁଙ୍କ ସେବକମାନଙ୍କ ମଧ୍ୟରେ ବଚନିକା। ଜ୍ୟେଷ୍ଠଭ୍ରାତାଙ୍କ ଉପସ୍ଥିତି ଦର୍ଶାଇ ମହାପ୍ରଭୁ ଲକ୍ଷ୍ମୀଙ୍କୁ ବୁଝାଇବାକୁ ଚେଷ୍ଟା କରନ୍ତି। କ୍ରୋଧିତା ଲକ୍ଷ୍ମୀ ଦେବୀଙ୍କୁ ଶାନ୍ତ କରିବା ପାଇଁ ସଙ୍ଗରେ ଆଣିଥିବା ଅଳଙ୍କାର ଉପହାରମାନ ଦେଇ ସନ୍ତୁଷ୍ଟ କରିବାକୁ ଚେଷ୍ଟା କରନ୍ତି ମହାପ୍ରଭୁ। ଏଥିରେ ଲକ୍ଷ୍ମୀଦେବୀଙ୍କର ଅଭିମାନ ଆହୁରି ବଢ଼ିଯାଏ। ସମାଜର ସାଧାରଣ ସ୍ତ୍ରୀ ସୁଲଭ ଈର୍ଷାରୁ ଲକ୍ଷ୍ମୀଦେବୀ ମଧ୍ୟ ଊର୍ଦ୍ଧ୍ୱକୁ ଯାଇ ପାରି ନାହାଁନ୍ତି। ନିଜର ଅଲିଅଳ ନଣନ୍ଦ ସୁଭଦ୍ରାଙ୍କ ପ୍ରତି ଆକ୍ଷେପ ପ୍ରଦର୍ଶନ କରି ଭାଇ ଭଉଣୀ କେହି କାହାଠାରୁ କମ୍ ନୁହେଁ ବୋଲି ଆକ୍ଷେପ କରି କୁହନ୍ତି:

ଯାଅ ଯାଅ ଫେରି ନୀଳାଦ୍ରିବିହାରୀ ଭଉଣୀଙ୍କି ସଙ୍ଗେ ନିଅ
ଛାଡ଼ି କରି ଗଲେ ଦୁଃଖ କରିବଟି ନନ୍ଦ ରାଜାଙ୍କର ଝିଅ ।
(ଶ୍ରୀମନ୍ଦିର ବେଢ଼ାସ୍ଥ ଦେବାଦେବୀ)

ଏହିପରି ଅନେକ ଉଲୁଗୁଣା ଲକ୍ଷ୍ମୀ ଦେବାରେ ଲାଗି ଯାଆନ୍ତି। ଶେଷରେ ଲକ୍ଷ୍ମୀଙ୍କୁ ସପକ୍ଷକରି ଲକ୍ଷ୍ମୀଙ୍କ ଦେଢଶୁର ବଳଭଦ୍ର ସାନଭାଇ ଜଗନ୍ନାଥଙ୍କୁ ଆକଟ କରିବାରୁ ମହାଲକ୍ଷ୍ମୀ ଆନନ୍ଦିତା ହୋଇ ଦ୍ୱାର ଖୋଲନ୍ତି।

ଏହିପରି ଭାବରେ ଶ୍ରୀଜଗନ୍ନାଥ ସଂସ୍କୃତିରେ ମହାଲକ୍ଷ୍ମୀ ଐଶ୍ୱର୍ଯ୍ୟଲୀଳା, ଦେବୀଲୀଳା, ମାଧୁର୍ଯ୍ୟଲୀଳା ସହ ମାନବୀୟ ଲୀଳା ପ୍ରକାଶ କରି ଜଗନ୍ନାଥ ସଂସ୍କୃତିକୁ ମହିମା ମଣ୍ଡିତ କରିଥାନ୍ତି। ଏହି ସମସ୍ତ ଲୀଳାକୁ ଅନୁଧ୍ୟାନ କଲେ, ମହାଲକ୍ଷ୍ମୀ ଯେ ଦଶବିଧ ଐଶ୍ୱର୍ଯ୍ୟର ଅଧିକାରିଣୀ ଓ ବାସ୍ତବ ଜଗତର ଜୀବନ୍ତ ପ୍ରତିନିଧି ଏହା ପ୍ରମାଣିତ ହୁଏ।

**ଶ୍ରୀମନ୍ଦିରରେ ଲକ୍ଷ୍ମୀଙ୍କର ଭୂମିକା :** ପୌରାଣିକ ବର୍ଣ୍ଣନା ଅନୁସାରେ ଲକ୍ଷ୍ମୀ, ବ୍ରହ୍ମଦେବ ଓ ସୂର୍ଯ୍ୟପୁତ୍ର ଯମଙ୍କ ନିକଟରେ ଶ୍ରୀକ୍ଷେତ୍ର ସଂପର୍କିତ ଅନେକ ତଥ୍ୟ ବର୍ଣ୍ଣନା କରିଥିଲେ। ସେହିପରି ଜଗନ୍ନାଥ ସଂସ୍କୃତିର ମହନୀୟତା ପ୍ରଦର୍ଶନରେ ମା' ଲକ୍ଷ୍ମୀ ଏକ ଗୌରବାବହ ଭୂମିକା ଗ୍ରହଣ କରିଥାନ୍ତି। ସୃଷ୍ଟିର ପରିପାଳନରେ ଲକ୍ଷ୍ମୀଙ୍କ ବିନା ବିଷ୍ଣୁ ଅସମର୍ଥ। କାରଣ ସ୍ୱୟଂ ସୃଷ୍ଟିକର୍ତ୍ତାରେ ସମସ୍ତ ଭାର ମହାଲକ୍ଷ୍ମୀ ବହନ କରିଥାନ୍ତି। ଏ ସମସ୍ତ ଦୃଷ୍ଟିରୁ ଶ୍ରୀମନ୍ଦିରର ସର୍ବମୟୀକର୍ତ୍ତ୍ରୀ ଭାବରେ ଲକ୍ଷ୍ମୀଙ୍କର ଉପସ୍ଥିତି ଗୁରୁତ୍ୱ ବହନ କରେ। ଉଦ୍‌ବାହତତ୍ତ୍ୱରେ ବର୍ଣ୍ଣିତ ରହିଛି:

ନଗୃହଂ ଗୃହମିତ୍ୟାହୁ ଗୃହିଣୀ ଗୃହ ମୁଚ୍ୟତେ
ତୟାହି ସହିତଃ ସର୍ବାନ୍ ପୁରୁଷାର୍ଥାନ ସମାଶ୍ନୁତେ।

ଅର୍ଥାତ କୌଣସି ବାସସ୍ଥାନ ସେପର୍ଯ୍ୟନ୍ତ ଗୃହ ହୁଏ ନାହିଁ, ଯେଉଁଠାରେ ଗୃହିଣୀ ଉପସ୍ଥିତ ରହି ଧର୍ମ, କାମ, ମୋକ୍ଷ ରୂପକ ସୁଖ ଭୋଗ ନ କରାନ୍ତି। ଏ ସମସ୍ତ ଧର୍ମ ପାଳନ ନିମିତ୍ତ ଶ୍ରୀମନ୍ଦିରରେ ଶ୍ରୀଲକ୍ଷ୍ମୀଙ୍କର ଭୂମିକା ଅନସ୍ୱୀକାର୍ଯ୍ୟ। ସେ ଏକାଧାରରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ରୋଷଶାଳାର ଦାୟିତ୍ୱ ନେଇଥାନ୍ତି ଏବଂ ତାଙ୍କ ଆଶୀର୍ବାଦରେ ଆଚଣ୍ଡାଳ ବ୍ରାହ୍ମଣ ସ୍ୱକୀୟ ଜାତି ଅଭିମାନ ଭୁଲି ଏକତ୍ର ହୋଇ ମହାପ୍ରଭୁଙ୍କର ଅବଢାନ୍ନ ଗ୍ରହଣ କରିଥାନ୍ତି। ମହାଲକ୍ଷ୍ମୀ ହିଁ ଏହି ଅନନ୍ୟ ସଂସ୍କୃତିରେ ପ୍ରେରଣାଦାତ୍ରୀ ଅଟନ୍ତି। ଶ୍ରୀଜଗନ୍ନାଥ ସଂସ୍କୃତିରେ ଯାହା କିଛି ଅନନ୍ୟ ଓ ଅନୁକରଣୀୟ, ତାହା ଆପାତତଃ ମହାଲକ୍ଷ୍ମୀଙ୍କ ଯୋଗୁଁ ସମ୍ଭବ। ମହାପ୍ରସାଦର ମହତ୍ୱ ଠାରୁ ଆରମ୍ଭ କରି ସାଧାରଣ



ଗୃହିଣୀର ସାଧାରଣ କୁଳାଚାର ପର୍ଯ୍ୟନ୍ତ ଲକ୍ଷ୍ମୀଙ୍କୁ କେନ୍ଦ୍ରକରି ଶ୍ରୀମନ୍ଦିର ଓ ଶ୍ରୀଜଗନ୍ନାଥ ସଂସ୍କୃତି, ପରିବ୍ୟାପତା ସର୍ବତ୍ର ପରିଦୃଷ୍ଟ।

ଏଠାରେ ଆମେ ୧୬ଶ ଶତାବ୍ଦୀରେ ରଚିତ ବଳରାମ ଦାସଙ୍କ 'ଲକ୍ଷ୍ମୀ ପୁରାଣ'ର କଥାବସ୍ତୁକୁ ଲକ୍ଷ୍ୟ କରିପାରିବା। ଯେଉଁଥିରେ କି ଜଣେ ନାରୀ ଭାବରେ ଲକ୍ଷ୍ମୀଙ୍କର ଆଉ ଏକ ମହନୀୟ ଦିଗକୁ ଲକ୍ଷ୍ୟ କରିପାରିବା। ଏଠାରେ ନାରୀର ସ୍ୱାଧୀକାରଗତ ପ୍ରସଙ୍ଗକୁ କେତେ ସୁନ୍ଦର ଭାବରେ ଉପସ୍ଥାପିତ କରାଯାଇଛି । ଶ୍ରୀୟା ଚଣ୍ଡାଳୁଣୀ ଭକ୍ତି ଓ ଶ୍ରଦ୍ଧାରେ ମା' ଲକ୍ଷ୍ମୀଙ୍କର ପୂଜା କରିଛି। ଲକ୍ଷ୍ମୀ ତା'ର ଶ୍ରଦ୍ଧା ଓ ଭକ୍ତିରେ ଖୁସୀ ହୋଇ ତା' ଘରକୁ ଯାଇଛନ୍ତି ଏବଂ ତାକୁ ଆଶୀର୍ବାଦ କରି ବଡ଼ଦେଉଳକୁ ଫେରିଛନ୍ତି। ତେବେ ଲକ୍ଷ୍ମୀଙ୍କୁ ଏଥିପାଇଁ ଦଣ୍ଡ ଭୋଗିବାକୁ ପଡ଼ିଛି। ଜାତିଆଣ କଥା ନ ଭାବି ଚଣ୍ଡାଳୁଣୀ ଘରକୁ ଯାଇଥିବାରୁ ଲକ୍ଷ୍ମୀଙ୍କୁ ବଡ଼ଦେଉଳ ଛାଡ଼ିବାକୁ ପଡ଼ିଛି। କିନ୍ତୁ ସେଥିପାଇଁ ଲକ୍ଷ୍ମୀ କେବେ ବି ପଶ୍ଚାତାପ କରିନାହାନ୍ତି ଯେ ସେ କିଛି ଭୁଲ କରିଛନ୍ତି। ପବିତ୍ର, ଶୁଦ୍ଧ, ସ୍ୱଚ୍ଛ ମନୋଭାବ, ଶ୍ରଦ୍ଧା ଓ ଭକ୍ତି ସମ୍ମୁଖରେ ଆଉସବୁ ନ୍ୟୂନ ହୋଇଛି ତାଙ୍କ ପାଇଁ। ସେ ଜାତିପ୍ରଥାକୁ ବିଶ୍ୱାସ କରିନାହାନ୍ତି କି ଛୁଆଁ, ଅଛୁଆଁ ଭାବ ମାନିନାହାନ୍ତି। ସେ କେବଳ ତା'ର ପ୍ରବର୍ତ୍ତିକା ସାଜିଛନ୍ତି। କିନ୍ତୁ ଲକ୍ଷ୍ମୀଙ୍କର ଏଭଳି ସୁନ୍ଦର ଚିନ୍ତାଧାରାକୁ ବୁଝିଲେ ନାହିଁ ସ୍ୱାମୀ ଜଗନ୍ନାଥ କି ବୁଝିଲେ ନାହିଁ ଦେଢଶୁର ବଳରାମ। ଲକ୍ଷ୍ମୀଙ୍କର କୌଣସି କଥାକୁ କର୍ଣ୍ଣପାତ ନ କରି ଦୋଷ ଉପରେ ଦୋଷ ଲଦି ଦେଲେ ତାଙ୍କ ଉପରେ। ସେ କିଛି ଦୋଷ କରି ନାହାନ୍ତି ବୋଲି ବହୁଭାବରେ ବୁଝାଇବାକୁ ଚେଷ୍ଟା କଲେ ଲକ୍ଷ୍ମୀ। କିନ୍ତୁ ନା', ସଫଳ ହୋଇ ପାରିଲେନି ସେ। ଅବୁଝା ସ୍ୱାମୀ ଏବଂ ଦେଢଶୁର ପୁରୁଷ ସୁଲଭ ଅହଙ୍କାର ନେଇ ଅଡ଼ି ବସିଲେ ସେ ଶ୍ରୀମନ୍ଦିରରୁ ବାହାରିଯାନ୍ତୁ ବୋଲି। ବିନା ଦୋଷରେ ବଡ଼ ଦେଉଳ ଛାଡ଼ିବାଟା ଭାରି ଅନ୍ୟାୟ ଲାଗିଲା ତାଙ୍କୁ। ସ୍ୱାମୀ ଓ ଦେଢଶୂର ତାଙ୍କ ପ୍ରତି କରିଥିବା ଅନ୍ୟାୟକୁ ସେ ଚୁପ୍‌ଚାପ୍ ମୁଣ୍ଡପାତି ସହିଯିବାକୁ ପସନ୍ଦ କରିପାରିଲେନି। ଦୃଢ଼ ଭାବରେ ସ୍ୱର ଉତ୍ତୋଳନ କଲେ। ଲକ୍ଷ୍ମୀ ଭାବିଲେ ସେ ଯଦି ଏଭଳି ଅନ୍ୟାୟକୁ ମୁଣ୍ଡପାତି ସହି ନେବେ ତେବେ ଯୁଗେଯୁଗେ ପୁରୁଷ ସମ୍ମୁଖରେ ନାରୀ ଜାତି ନିଜର ମର୍ଯ୍ୟାଦା ହରାଇ ବସିବ ଏବଂ ପୁରୁଷର ଅନ୍ୟାୟ, ଅତ୍ୟାଚାରର ଶିକାର ହେବ। ସେଥିପାଇଁ ସେ ସହଜରେ ଟଳି ନଯାଇ ସେପର୍ଯ୍ୟନ୍ତ ନିଜକୁ ଦୃଢ଼ କରି ରଖିଲେ ଯେପର୍ଯ୍ୟନ୍ତ ସ୍ୱାମୀ ଓ ଦେଢଶୂର ନିଜେ ନିଜର ଭୁଲ ବୁଝିପାରିଲେନି। ସେ ତାଙ୍କ ସ୍ୱାଧୀନତା ଓ ସ୍ୱାଭିମାନ ବଜାୟ ରଖିବେ ସେଥିପାଇଁ ପୂର୍ଣ୍ଣ ପ୍ରାଣରେ ଚେଷ୍ଟା କଲେ ଏବଂ ସେଥିରେ ସଫଳ ହୋଇ ସମଗ୍ର ନାରୀ ଜାତି ପାଇଁ ଏକ ଦୃଷ୍ଟାନ୍ତ ସୃଷ୍ଟି କଲେ। ଶ୍ରୀମନ୍ଦିରରୁ ଜାତିପ୍ରଥା ଉଠାଇବାରେ ସକ୍ଷମ ହେଲେ। ବ୍ରାହ୍ମଣଠାରୁ ଚଣ୍ଡାଳ ପର୍ଯ୍ୟନ୍ତ ସମସ୍ତେ ଏକାଠି ବସି ବଡ଼ଦେଉଳରେ ମହାପ୍ରସାଦ ସେବନ କରିବାର ବ୍ୟବସ୍ଥା କରିପାରିଲେ। ପରିବାର ପାଇଁ, ସମାଜ ପାଇଁ, ଜାତି ପାଇଁ ସର୍ବୋପରି ପୁରୁଷ ପାଇଁ ନାରୀ ଯେ କେତେ ଅପରିହାର୍ଯ୍ୟ ତାହା ପ୍ରତିପାଦିତ କରି ଦେଖାଇ ଦେଲେ। କିନ୍ତୁ ଏଥିପାଇଁ ସେ କୌଣସି ଅଶୋଭନୀୟ ଆଚରଣକୁ ଆପଣେଇ ନଥିଲେ । ସେଥିପାଇଁ କଥାରେ ଅଛି, ଆଚାରେ ଲକ୍ଷ୍ମୀ, ବିଚାରେ ପଣ୍ଡିତ।

ଶ୍ରୀମନ୍ଦିରରୁ ଜାତିପ୍ରଥା ଉଠାଇବା ପାଇଁ 'ଲକ୍ଷ୍ମୀ ପୁରାଣ'ରେ ଲକ୍ଷ୍ମୀ ଜଗନ୍ନାଥଙ୍କୁ ସତ କରାଇ କହିଲେ:

ଚଣ୍ଡାଳୁ ବ୍ରାହ୍ମଣ ଯାଏଁ ଖୁଆଖୋଇ ହେବେ
ସମସ୍ତେ ଖାଇଣ ହସ୍ତ ଜଳେ ନ ଧୋଇବେ
ହାଡ଼ିର ହସ୍ତୁ ବ୍ରାହ୍ମଣ ଛଡ଼ାଇ ଖାଇବେ
ବ୍ରାହ୍ମଣ ଖାଇ ହସ୍ତକୁ ମୁଣ୍ଡରେ ପୋଛିବେ
ଅନ୍ନ ଖାଇ ସର୍ବେ ମୁଣ୍ଡେ ପୋଛୁଥିବେ ହସ୍ତ
ତେବେ ବଡ଼ଦେଉଳକୁ ଯିବି ଜଗନ୍ନାଥ।

ସ୍ତ୍ରୀର ମର୍ଯ୍ୟାଦା ହାନି କରିବାକୁ ଦେଲେ ନାହିଁ ମହାପ୍ରଭୁ। ଲକ୍ଷ୍ମୀଙ୍କ ପ୍ରସ୍ତାବରେ ସମ୍ମତି ପ୍ରଦାନ କଲେ ଏବଂ ନିଜର ଭୁଲ ସ୍ୱୀକାର କରି ସସମ୍ମାନେ ଲକ୍ଷ୍ମୀଙ୍କୁ ବଡ଼ ଦେଉଳକୁ ଫେରାଇ ଆଣିଲେ। ବିଶ୍ୱାସ କରାଯାଏ ଶ୍ରୀମନ୍ଦିରରୁ ସେଇଦିନଠୁଁ ଜାତିପ୍ରଥା ଉଠିଯାଇଛି। ମହାପ୍ରସାଦ ବିନିମୟରେ ଆମ ଜଗନ୍ନାଥ ପରମ୍ପରାରେ ବନ୍ଧୁତାର ମଧୁର ସମ୍ପର୍କ ଗଢ଼ିଉଠିଛି।

ଉତ୍ତମ ଲକ୍ଷଣ ଯୁକ୍ତ ସର୍ବଗୁଣସମ୍ପନ୍ନା ବୈଷ୍ଣବୀ ଶକ୍ତି ହେଉଛନ୍ତି ଲକ୍ଷ୍ମୀ। 'ଲକ୍ଷ' ଧାତୁରୁ ଲକ୍ଷ୍ମୀଙ୍କର ନାମ ନିର୍ବାଚନ



କରାଯାଏ। ଏହାର ଅର୍ଥ ହେଲା ଦର୍ଶନ ଓ ଅଙ୍କନ। ଋଗ୍ ବେଦରେ ଐଶ୍ୱର୍ଯ୍ୟର ଦେବୀ 'ଶ୍ରୀ' ବୋଲି ବର୍ଣ୍ଣିତା। ବିଶ୍ୱପାଳକ ବିଷ୍ଣୁଙ୍କର ପାଳନାତ୍ମିକା ମହାଶକ୍ତି ଲକ୍ଷ୍ମୀଦେବୀ ନିଖିଳ ବିଶ୍ୱବ୍ରହ୍ମାଣ୍ଡରେ ଧନ ଓ ଐଶ୍ୱର୍ଯ୍ୟର ମହାଦେବୀ। ପୁରାଣ ବର୍ଣ୍ଣନା ଅନୁସାରେ ମହର୍ଷି ଭୃଗୁଙ୍କର ଔରସରେ ତାଙ୍କ ପତ୍ନୀ ଖ୍ୟାତିଙ୍କ ଗର୍ଭରୁ ଉତ୍ପନ୍ନା ଲକ୍ଷ୍ମୀ ହେଉଛନ୍ତି ପରମ ପୁରୁଷ ବିଷ୍ଣୁଙ୍କର ପତ୍ନୀ। ସେ ଭଗବାନ ବିଷ୍ଣୁଙ୍କର ଚିର ସଙ୍ଗିନୀ ଶକ୍ତି ସ୍ୱରୂପିଣୀ। ସେ ଧନ ସମ୍ପତ୍ତି, ସୁଖ ସୌଭାଗ୍ୟ ଓ ରୂପ ସୌନ୍ଦର୍ଯ୍ୟର ପ୍ରତୀକ ଭାବରେ ପରିଗୃହୀତା। ଭାସ୍କର ମିଶ୍ରଙ୍କ 'ଶ୍ରୀମନ୍ଦିର ବେଢ଼ାସ୍ଥ ଦେବାଦେବୀ' ପୁସ୍ତକରେ ଲକ୍ଷ୍ମୀଙ୍କର ସ୍ୱରୂପ ବର୍ଣ୍ଣନା କରାଯାଇଛି। ଯଥା: ଲକ୍ଷ୍ମୀଙ୍କର ଉତ୍ପତ୍ତି, ସ୍ଥିତି ଓ ପ୍ରଳୟ କାଳରେ ପ୍ରକୃତିକୁ ପ୍ରେରିତ କରୁଥିବା ଶକ୍ତି। ପାଞ୍ଚ ରାତ୍ରରେ ଲକ୍ଷ୍ମୀଙ୍କର ପଞ୍ଚକୃତ ସ୍ୱୀକାର କରାଯାଏ। ତାହାହେଲା ତିରୋଭାବ, କୃତ, ସୃଷ୍ଟି କୃତ, ସ୍ଥିତି, ସଂହତି ଓ ଅନୁଗ୍ରହ କୃତ। ଲକ୍ଷ୍ମୀ ଏକାଧାରରେ ସୌନ୍ଦର୍ଯ୍ୟ, ବିଭବ, କ୍ଷମତା ଓ ପ୍ରତିଷ୍ଠାର ପ୍ରତୀକ ଭାବରେ ପରିଚିତ। ତାଙ୍କର ବହୁବିଧ ନାମରୁ ଏହା ପ୍ରତିଭାତ ହୋଇଥାଏ। ଯଥା: ଧନଲକ୍ଷ୍ମୀ, ରାଜଲକ୍ଷ୍ମୀ, ଗୋପଲକ୍ଷ୍ମୀ, ଗଜଲକ୍ଷ୍ମୀ, ଦୀପଲକ୍ଷ୍ମୀ, ମହାଲକ୍ଷ୍ମୀ, ସ୍ୱର୍ଗଲକ୍ଷ୍ମୀ, ସୌଭାଗ୍ୟଲକ୍ଷ୍ମୀ ଆଦି ଭାବରେ ସେ ପରିଚିତ। ସଂପୂର୍ଣ୍ଣ ଦଶବିଧ ଗୁଣର ସେ ଅଧିଷ୍ଠାତ୍ରୀ ଅଟନ୍ତି। ଅସାମାନ୍ୟ ଅନନ୍ତ ନୈସର୍ଗିକ ରୂପ ଗୁଣ, ରାଜକୀୟ କ୍ଷମତା, ଅସୀମ ଶ୍ରଦ୍ଧା, ସାରଲ୍ୟ, ଦୟାପରାୟଣତା ସହିତ ପୃଥିବୀର ଉର୍ବରତା ଓ ଶସ୍ୟ ସଂଭାର ଉତ୍ପାଦନ କ୍ଷମତାର ସେ ଅଧିଷ୍ଠାତ୍ରୀ ଅଟନ୍ତି। ଆପାତତଃ ଦୃଷ୍ଟିରୁ ବୈଦିକ କାଳରୁ ଋଗ୍‌ବେଦରେ ଭାଗ୍ୟଦେବୀ ଭାବରେ ସେ ପରିଚିତା। ଏସବୁ କାରଣରୁ ଭାରତୀୟ ସଂସ୍କୃତିରେ ଲକ୍ଷ୍ମୀ ଏକ ବହୁ ପରିଚିତ ନାମ। ଭାରତର ବିଭିନ୍ନ ଗ୍ରାମାଞ୍ଚଳରେ ଗୋମୟଠାରୁ କର୍ଦ୍ଦମ ପର୍ଯ୍ୟନ୍ତ ଓ ବୀଜ ବିପନଠାରୁ ଶସ୍ୟ ଉତ୍ପାଦନ ପର୍ଯ୍ୟନ୍ତ ସର୍ବତ୍ର ଲକ୍ଷ୍ମୀଙ୍କର ଉପସ୍ଥିତି ଓ ପୂଜନ ପ୍ରକ୍ରିୟା ଦୃଷ୍ଟିଗୋଚର ହୋଇଥାଏ। ଶ୍ରୀସୂକ୍ତର ବର୍ଣ୍ଣନା ଅନୁଯାୟୀ ଆଜି ମଧ୍ୟ ଗୋମୂତ୍ର ଓ ଗୋମୟ ଲକ୍ଷ୍ମୀଙ୍କର ନିବାସ ଭାବରେ ପବିତ୍ରତାର ସ୍ୱାକ୍ଷର ବହନ କରିଥାଏ। ଓଦାମାଟି ଲକ୍ଷ୍ମୀଙ୍କର ପୁତ୍ର ଓ ଗୋମୂତ୍ର ଓ ଗୋମୟ ଲକ୍ଷ୍ମୀଙ୍କର ନିବାସ ଭାବରେ ଚିହ୍ନିତ। ଗୋବର ପାଣି ସିଞ୍ଚନ ତଥା ଗୋବର ଲିପା ଘରକୁ ପବିତ୍ର କରେ ବୋଲି ବିଶ୍ୱାସ ରହିଛି। ପ୍ରାଚୀନ କାଳରୁ ଶ୍ରୀଲକ୍ଷ୍ମୀ ଗଜ ଓ କମଳ ଦୁଇଟି ସହିତ ଘନିଷ୍ଠ ଭାବରେ ଜଡ଼ିତ। ପଦ୍ମ ସର୍ବଦା ଉର୍ବରତା ଓ ପ୍ରଜନ୍ମର ପ୍ରତୀକ ଭାବରେ ବିଦିତ। ଲକ୍ଷ୍ମୀଙ୍କର ପଦ୍ମ ଉପରେ ଉପବେଶନ ସୃଷ୍ଟି ପ୍ରକ୍ରିୟାରେ ତାଙ୍କର ଅବଦାନକୁ ସୂଚାଇଥାଏ। ପଙ୍କ ଓ ପାଣି ପାର୍ଥିବ ଜଗତର ପ୍ରତୀକ ହୋଇଥିବା ବେଳେ, ପଦ୍ମ ସେଥିରୁ ସଂପୂର୍ଣ୍ଣ ମୁକ୍ତ ହୋଇ ଆଧ୍ୟାତ୍ମିକ ଜଗତର ଭିତ୍ତିଭୂମି ଭାବରେ ପ୍ରକାଶିତ ହୋଇଥାଏ। ତା' ଉପରେ ସମସ୍ତ ସୁଗୁଣର ଅଧିକାରିଣୀ ଲକ୍ଷ୍ମୀଙ୍କର ଉପବେଶନ ତାଙ୍କୁ 'ପଦ୍ମାଳୟା' ନାମରେ ମଧ୍ୟ ପ୍ରସିଦ୍ଧି ଦେଇଛି। ଏସବୁ ଦୃଷ୍ଟିରୁ ମହାଲକ୍ଷ୍ମୀଙ୍କର ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ମନ୍ଦିରରେ ଉପସ୍ଥିତି ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ। କାରଣ ଏହି ମହାଲକ୍ଷ୍ମୀ ହିଁ ଶ୍ରୀକ୍ଷେତ୍ର ଓ ଶ୍ରୀଜଗନ୍ନାଥଙ୍କର ମହତ୍ତ୍ୱ ପ୍ରତିପାଦନର ପ୍ରଥମ ପ୍ରବକ୍ତା।

**ଶ୍ରୀମନ୍ଦିର ବେଢ଼ାରେ ଲକ୍ଷ୍ମୀ ମନ୍ଦିରର ଅବସ୍ଥାନ:** ଶ୍ରୀମନ୍ଦିର ବେଢ଼ାସ୍ଥ ମହାଲକ୍ଷ୍ମୀ, ମହିମାମୟୀ, ଶ୍ରୀମନ୍ଦିରର କୀର୍ତ୍ତି ଓ ଶ୍ରୀଜଗନ୍ନାଥଙ୍କର ପରିବେଷଣକାରୀ। 'ମାଦଳାପାଞ୍ଜି' ଅନୁସାରେ ମହାଲକ୍ଷ୍ମୀଙ୍କ ମନ୍ଦିର ପ୍ରଥମେ କେଶରୀବଂଶର ରାଜା ଯଯାତିକେଶରୀ ଓ ପରେ ଗଙ୍ଗବଂଶର ରାଜା ଅନଙ୍ଗଭୀମଦେବ ନିର୍ମାଣ କରିଥିଲେ। ମନ୍ଦିରଟି ମୁଖତଃ ୪ ଭାଗରେ ବିଭକ୍ତ: ୧. ଗର୍ଭଗୃହ, ୨. ଜଗମୋହନ, ୩. ନାଟ ମଣ୍ଡପ, ୪. ଅଚିନ୍ତାମଣ୍ଡପ। ଗର୍ଭଗୃହର ମଧ୍ୟଭାଗରେ କଳାମୁଗୁନି ପ୍ରସ୍ତରରେ ନିର୍ମିତ ଶ୍ରୀଲକ୍ଷ୍ମୀ ବିଗ୍ରହ ପଦ୍ମାସନା ଓ ଚତୁର୍ଭୁଜା।

ଶ୍ରୀମନ୍ଦିର ପୁରୋହିତ ପଦ୍ମନାଭ ମହାପାତ୍ରଙ୍କ ମତାନୁସାରେ ପ୍ରକୃତରେ ଲକ୍ଷ୍ମୀଙ୍କ ମନ୍ଦିରକୁ ୭ ଭାଗରେ ବିଭକ୍ତ କରାଯାଇଛି। ଯଥା: ଗର୍ଭଗୃହ, ଉଦ୍ୱାସନ ମଣ୍ଡପ, ଜଗମୋହନ, ଏକାନ୍ତ ବିଜେଗୃହ, ଭୋଗ ମଣ୍ଡପ, ନାଟମଣ୍ଡପ ଓ ଅଚିନ୍ତା ମଣ୍ଡପ । ଏହି ମନ୍ଦିରକୁ ଆସିବା ପାଇଁ ତିନିଟି ରାସ୍ତା ଅଛି। ଦକ୍ଷିଣ, ଉତ୍ତର ଓ ପୂର୍ବାଭିମୁଖୀ ତା'ର ପ୍ରବେଶ ମାର୍ଗ। ମୁଖ୍ୟ ମନ୍ଦିରର ଉଚ୍ଚତା ପ୍ରାୟ ୬୦ ଫୁଟ ଉଚ୍ଚ ହେବ। ଗର୍ଭଗୃହର ଦେବୀ ପଦ୍ମାସନା, ଯାହା ଉପରେ ଅବସ୍ଥାନ କରିଛନ୍ତି ତା'ର ଉଚ୍ଚତା ପ୍ରାୟ ତିନି ଫୁଟ ହେବ। ଲକ୍ଷ୍ମୀ ଦେବୀଙ୍କର ଉପର ଦୁଇ



ହସ୍ତରେ ପଦ୍ମ ଏବଂ ନିମ୍ନ ଦୁଇ ହସ୍ତରେ ଅଭୟ ଓ ବରଦ ମୁଦ୍ରା ଧାରଣ କରିଛନ୍ତି । ଦେବୀଙ୍କର ଉପରିଭାଗର ଉଭୟ ପାର୍ଶ୍ୱରେ ୨ଟି ଯୁଗଳ ହସ୍ତୀ ଶୁଣ୍ଢରେ ସ୍ୱର୍ଣ୍ଣ କଳସୀ ଧାରଣ କରିଛନ୍ତି । ଏହି ସ୍ୱର୍ଣ୍ଣ କୁମ୍ଭ ବା କଳସୀରୁ ଜଳ ଢାଳି ଦେବୀଙ୍କୁ ସର୍ବଦା ଅଭିଷିକ୍ତ କରୁଥାନ୍ତି । ମନ୍ଦିରର ଗର୍ଭଗୃହ ମଧ୍ୟକୁ ପ୍ରବେଶ କରିବା ଦ୍ୱାରର ଦକ୍ଷିଣ ପାର୍ଶ୍ୱର କାନ୍ଥରେ ଅତ୍ୟନ୍ତ କମନୀୟ ଲକ୍ଷ୍ମୀ ନୃସିଂହଙ୍କର ମଣିମୟ ବିଗ୍ରହ ଓ ଉତ୍ତରରେ ବରାହ ମୂର୍ତ୍ତି ବିରାଜିତ ହୋଇଛନ୍ତି । ଉକ୍ତ ମନ୍ଦିରର ନାଟମଣ୍ଡପ କାନ୍ଥରେ ଗଣେଶ, ହନୁମାନ, ନୃସିଂହ, ବରାହ, ଲକ୍ଷ୍ମୀ ନୃସିଂହ ଓ ରାମାନୁଜାଚାର୍ଯ୍ୟଙ୍କର ଚିତ୍ର ପ୍ରତିମା ରହିଅଛି । ଲକ୍ଷ୍ମୀ ମନ୍ଦିରର ଭୋଗ ତିଆରି ନିମନ୍ତେ ଲକ୍ଷ୍ମୀ ମନ୍ଦିରକୁ ଲାଗି ଏକ ରୋଷ ଘର ମଧ୍ୟ ରହିଛି । ଏତଦ୍‌ବ୍ୟତୀତ ମନ୍ଦିର ମଧ୍ୟରୁ ବାହାରକୁ ଆସିବା ମାର୍ଗରେ ଉଭୟ ପାର୍ଶ୍ୱରେ ଯଥାକ୍ରମେ ନୃସିଂହ ଓ ବରାହଙ୍କ ସମ୍ମୁଖରେ ଇନ୍ଦ୍ର ଓ ଶଙ୍ଖ, ଚକ୍ର ଧନୁଶରଧାରୀ ନାରାୟଣଙ୍କର ମଣିବିଗ୍ରହ ରହିଥିବାର ଦୃଷ୍ଟିଗୋଚର ହୁଏ । ଲକ୍ଷ୍ମୀ ମନ୍ଦିରର ପୂର୍ବ ଦିଗ ବ୍ୟତୀତ ଅନ୍ୟ ତିନି ଦିଗରେ ଯେଉଁ ପାର୍ଶ୍ୱ ଦେବୀମାନେ ଅବସ୍ଥିତା, ସେମାନେ ମଧ୍ୟ ଗଜଲକ୍ଷ୍ମୀ ବିଗ୍ରହ ହିଁ ଅଟନ୍ତି । ଗର୍ଭଗୃହ ଦ୍ୱାରରେ ଦୁଇ ପାର୍ଶ୍ୱରେ ଗଙ୍ଗା ଓ ଯମୁନା ମୂର୍ତ୍ତିଦ୍ୱୟ ବିରାଜିତା । ଜଗମୋହନର ଦ୍ୱାର ଦେଶର ଉପରିଭାଗରେ ନବଗ୍ରହ ମୂର୍ତ୍ତି ମଧ୍ୟ ରହିଛନ୍ତି ।

**ମା' ଲକ୍ଷ୍ମୀଙ୍କର ପର୍ବପର୍ବାଣି :** ଲକ୍ଷ୍ମୀ ମନ୍ଦିରରେ ପାଳିତ ବିଭିନ୍ନ ପର୍ବପର୍ବାଣି ମଧ୍ୟରେ ପ୍ରଥମାଷ୍ଟମୀ, ଓଢ଼ଣ ଷଷ୍ଠୀ, ବସନ୍ତ ପଞ୍ଚମୀ, ଅକ୍ଷୟ ତୃତୀୟା, ରୁକ୍ମିଣୀ ବିବାହ, କୁମାର ପୂର୍ଣ୍ଣିମୀ, ଋଷି ପଞ୍ଚମୀ, ବାହୁଡ଼ା ଯାତ୍ରା ଓ ଗୁରୁବାର ନୀତି ଇତ୍ୟାଦିରେ କେତେକ ସ୍ୱତନ୍ତ୍ର ନୀତି ଅନୁଷ୍ଠିତ ହୋଇଥାଏ । ପ୍ରତ୍ୟେକ ଦିନ ପ୍ରତ୍ୟୁଷରୁ ପାଳିଆ ସେବକ 'ମଣିମା' ମଣିମା' ଡାକ ଦେଇ ଲକ୍ଷ୍ମୀ ମନ୍ଦିରର ଭିତର ଦ୍ୱାର ଫିଟାନ୍ତି ଓ ପରେ ପରେ କର୍ପୂର ଆଳତି ଓ ବଳିତାରେ ମଙ୍ଗଳ ଆଳତି କରିଥାନ୍ତି । ଆଳତି ପରେ ମଇଲମ ହୋଇ ଚୁଆ ଓ ଫୁଲୁରିରେ ମାଜଣା ହୋଇଥାଏ । ତା'ପରେ ବସ୍ତ୍ର, ଚନ୍ଦନ, କର୍ପୂର, ସିନ୍ଦୂର ଓ ପୁଷ୍ପମାଳା ଇତ୍ୟାଦିରେ ଠାକୁରାଣୀଙ୍କୁ ବେଶ କରାଯାଇଥାଏ ।

ଅତିଥି ପରାୟଣତା, ବ୍ରତ, ଉପବାସ ସହିତ ପତ୍ନୀର ମାନ ଅଭିମାନ, ଅହଙ୍କାର ଆଦି ସମସ୍ତ ପତ୍ନୀଧର୍ମରେ ଲୀଳାୟିତା ମା'ଲକ୍ଷ୍ମୀ ଠାକୁରାଣୀ । ଶ୍ରୀମନ୍ଦିର ମଧ୍ୟରେ ଲକ୍ଷ୍ମୀଙ୍କର ଅନେକ ଚିତ୍ତାକର୍ଷକ, ମନୋମୁଗ୍ଧକର ଲୌକିକଲୀଳା ଅନୁଷ୍ଠିତ ହୋଇଥାଏ ।

ଯେପରି ଜ୍ୟେଷ୍ଠମାସ ଶୁକ୍ଳପକ୍ଷ ଅଷ୍ଟମୀ ତିଥିରେ ଶିବପାର୍ବତୀଙ୍କର ବିବାହ ଉତ୍ସବ ଅନୁଷ୍ଠିତ ହୋଇଥାଏ । ଏହି ବିବାହ ଉତ୍ସବରେ ଶ୍ରୀକ୍ଷେତ୍ରର ପଞ୍ଚମହାଦେବ ନିଜ ନିଜର ନବବିବାହିତା ପତ୍ନୀଙ୍କ ସହିତ ଲକ୍ଷ୍ମୀ ମନ୍ଦିରରେ ବିଜେ କରିଥାଆନ୍ତି ଏବଂ ମହାଲକ୍ଷ୍ମୀ ସମସ୍ତଙ୍କୁ ନୈବେଦ୍ୟ ଅର୍ପଣ ପୂର୍ବକ ଅତିଥି ସତ୍କାର କରିଥାନ୍ତି ।

- ପୁଷ୍ୟାଭିଷେକରେ ଶ୍ରୀଜଗନ୍ନାଥଙ୍କ ସହିତ ଲକ୍ଷ୍ମୀଙ୍କର ଅଭିଷେକ ହୁଏ ।
- ଦୋଳଯାତ୍ରାରେ ଦୋଳଗୋବିନ୍ଦଙ୍କ ସହ ଲକ୍ଷ୍ମୀ ଦୋଳ ବେଦୀକୁ ବିଜେ କରିଥାନ୍ତି ।
- ଚନ୍ଦନ ଯାତ୍ରାରେ ସ୍ୱାମୀ ସୋହାଗିନୀ ନାରୀଟିଏ ପରି ଲକ୍ଷ୍ମୀ ଦେବୀ ମଦନମୋହନଙ୍କ ସହ ଜଳକ୍ରୀଡ଼ା କରିଥାନ୍ତି ।
- ଶୁକ୍ଳପକ୍ଷ ଦଶମୀତିଥି ଗୁରୁବାରରେ ପଡ଼ିଲେ ତାହା ମହାଲକ୍ଷ୍ମୀଙ୍କର ସୁଦଶାବ୍ରତ ହୋଇଥାଏ । ଏହି ବ୍ରତ ଓଡ଼ିଶାର ପୁରପଲ୍ଲୀରେ ପ୍ରତ୍ୟେକ ଗୃହିଣୀ କରିଥାନ୍ତି ।
- ମାର୍ଗଶିର ମାସର ପ୍ରତ୍ୟେକ ଗୁରୁବାର ଦିନ ଲକ୍ଷ୍ମୀପୂଜା ଓଡ଼ିଶାର ଘରେ ଘରେ ଅନୁଷ୍ଠିତ ହୋଇ ମହାଲକ୍ଷ୍ମୀଙ୍କ ମହତ୍ତ୍ୱ ପ୍ରତିପାଦିତ ହୋଇଥାଏ ।
- ଭାଦ୍ରବ ଶୁକ୍ଳପକ୍ଷ ପଞ୍ଚମୀ (ଋଷି ପଞ୍ଚମୀ) ଦିନ ରମଣୀମାନଙ୍କ ଗହଣରେ ମହାଲକ୍ଷ୍ମୀ ବ୍ରତ କରି ପୁରାଣ ଶ୍ରବଣ କରି ସେଠାରୁ ମାର୍କଣ୍ଡ ପୁଷ୍କରିଣୀକୁ ଆସି ସ୍ନାନ କରିଥାନ୍ତି ।
- ସାଧାରଣ ଗୃହବଧୂଟିଏ ପରି ସେ ପ୍ରତିବର୍ଷ ପୌଷ ମାସରେ ନିଜ ପିତ୍ରାଳୟକୁ ଗମନ କରିଥାନ୍ତି ଏବଂ



ସେଠାରେ ଏକମାସ ଅବସ୍ଥାନ କରି ପ୍ରତ୍ୟାବର୍ତ୍ତନ କରିବା ସମୟରେ ସାଧାରଣ ଝିଏଟିଏ ପରି ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ପାଇଁ ବହୁ ଉପହାର ସାମଗ୍ରୀ ସଙ୍ଗରେ ଆଣିଥାନ୍ତି ।

ଏହିପରି ଅସଂଖ୍ୟ ପୂଜାବିଧି ସାଧାରଣ ଗୃହିଣୀଟିଏ ପରି ମହାଲକ୍ଷ୍ମୀ ଶ୍ରୀମନ୍ଦିର ମଧ୍ୟରେ ପାଳନ କରିଥାନ୍ତି । ଶ୍ରୀଜଗନ୍ନାଥ ଓ ଓଡ଼ିଶାର ଜନସାଧାରଣଙ୍କୁ ଏକ ସୂତ୍ରରେ ବାନ୍ଧିରଖି ଆଧ୍ୟାତ୍ମିକ ଚିନ୍ତା ଓ ଚେତନାର ପ୍ଲାବନ ଆଣିବାରେ ମହାଲକ୍ଷ୍ମୀ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାନ୍ତି ।

ଜଣେ ନାରୀ ଭାବରେ ଲକ୍ଷ୍ମୀଙ୍କର ବ୍ୟକ୍ତିତ୍ୱ ବେଶ ପ୍ରଭାବଶାଳୀ ଓ ଅନୁକରଣୀୟ । ସମସ୍ତ ନାରୀସୁଲଭ ଗୁଣର ଅଧିକାରୀ ସେ । ଏକାଧାରରେ ସେ ସୁଗୃହିଣୀ, ଦୟା–କ୍ଷମାର ଅଧିକାରିଣୀ, ସନ୍ତାନବତ୍ସଳା, କର୍ତ୍ତବ୍ୟନିଷ୍ଠ ସ୍ୱୟଂସମ୍ପୂର୍ଣ୍ଣା ନାରୀଟିଏ । ତା' ସହିତ ତାଙ୍କର ରହିଛି ସାମବାଦ, ସ୍ୱାଭିମାନ, ଅତିଥିପରାୟଣତା, ଅନ୍ୟାୟ, ଅନୀତିକୁ ବରଦାସ୍ତ ନ କରିବା, ଦୃଢ଼ତା ଓ ସ୍ଥିରତା ଆଦି ଗୁଣମାନ । ଜଣେ ନାରୀ ହିସାବରେ ତାଙ୍କର ସ୍ୱାଧୀନ ଚିନ୍ତାଧାରା ସହିତ ସ୍ୱାଭିମାନ ମଧ୍ୟ ରହିଛି । କିନ୍ତୁ ସେଥିରେ କୌଣସି ଉଗ୍ରତା ନାହିଁ । ସେ ଅନ୍ୟାୟର ପ୍ରତିବାଦ କରିବାକୁ କେବେ ବି ପଛେଇ ଯାଇନାହାନ୍ତି । କୌଣସି ପରିସ୍ଥିତିରେ ଅଯଥାରେ ନଇଁପଡ଼ି ନାହାନ୍ତି କି ବିଚଳିତ ହୋଇପଡ଼ି ନାହାନ୍ତି । ନିଜର ସ୍ୱାଧୀନତା ଓ ସ୍ୱାଭିମାନ ବଜାୟ ରଖିବାକୁ ଯାହା ବି କରିଛନ୍ତି, ନମ୍ର, ଭଦ୍ର ତଥା ଦୃଢ଼ ଓ ଅବିଚଳିତ ଭାବରେ । ସ୍ନେହ, ପ୍ରେମ ସହିତ ତାଙ୍କର ମଧ୍ୟ ରହିଛି ଆନୁଗତ୍ୟ ଭାବ । କିନ୍ତୁ ନାରୀ ପ୍ରତି ଉପେକ୍ଷାକୁ ସେ ବରଦାସ୍ତ କରିନାହାନ୍ତି । ନିଜର ନ୍ୟାୟ ନୀତିରେ ଦୃଢ଼ ରହି ଭୁଲ ବାଟରେ ଯାଉଥିବା ପୁରୁଷକୁ, ସେ ପୁରୁଷ ତାଙ୍କର ସ୍ୱାମୀ କି ଦେଢଶୁର ଯିଏ ବି ହୋଇଥାନ୍ତୁ ତାଙ୍କୁ ଉଚିତ ଶିକ୍ଷା ଦେଇଛନ୍ତି । ତେବେ ସେ ଯାହା ବି କରିଛନ୍ତି, ନିଜର ସ୍ୱାର୍ଥ ପୂର୍ତ୍ତି ପାଇଁ ନ କରି, ସମଗ୍ର ନାରୀ ଜାତିର ଟେକ ରଖିବାର କଥା ଭାବିଛନ୍ତି । ଏଥିପାଇଁ ଯୁଗେଯୁଗେ ବନ୍ଦନୀୟା ମା' ଲକ୍ଷ୍ମୀଙ୍କୁ 'ବିଷ୍ଣୁପୁରାଣ'ରେ ବନ୍ଦନା କରି କୁହାଯାଇଛି:

ନିଜର ଶରୀର କାନ୍ତିରେ କାଞ୍ଚନ ପରି ଝଟକୁଥାନ୍ତି, ହିମାଳୟ ପର୍ବତ ପରି ଦେଖାଯାଉଥିବା ଚାରିଗୋଟି ହସ୍ତୀ ନିଜନିଜ ଶୁଣ୍ଢରେ ଗୋଟିଏ ଗୋଟିଏ ସ୍ୱର୍ଣ୍ଣମୟ ଅମୃତ ଘଟ ଧାରଣକରି ଯାହାଙ୍କ ମସ୍ତକରେ ନିରନ୍ତର ତହିଁରୁ ଜଳ ଅଭିଷେକ କରୁଥାନ୍ତି । ଯେ ନିଜର ଚାରି ହସ୍ତରେ ଦୁଇଗୋଟି ପଦ୍ମପୁଷ୍ପ, ବରଦ ତଥା ଅଭୟ ମୁଦ୍ରା ଧାରଣ କରିଥାନ୍ତି, ଯେ ନିତମ୍ବ ଦେଶରେ ପଟବସ୍ତ୍ର ଧାରଣ କରିଥାନ୍ତି, ଯାହାଙ୍କର ଅଧରୋଷ୍ଠ ଅତି ସୁନ୍ଦର ହୋଇଥାଏ, ଯେ ଅରବିନ୍ଦ (ପଦ୍ମପୁଷ୍ପ) ଉପରେ ଉପବେଶନ କରିଥାନ୍ତି, ସେହି ଶ୍ରୀଦେବୀଙ୍କୁ ମୁଁ ବନ୍ଦନା କରୁଛି ।

ଜଣେ ନାରୀ ଭାବରେ ଲକ୍ଷ୍ମୀ ହେଉଛନ୍ତି ପ୍ରତ୍ୟେକ ନାରୀ ପାଇଁ ଆଦର୍ଶ । ଘରୁ ବାହାର ପର୍ଯ୍ୟନ୍ତ ନିଜର ସମସ୍ତ କାର୍ଯ୍ୟ ସୁଚାରୁ ରୂପେ ତୁଲାଇବା ସହିତ ଜଗତର ନାଥ ଶ୍ରୀଜଗନ୍ନାଥଙ୍କ ପତ୍ନୀ ଭାବରେ ତାଙ୍କ ପାଖେପାଖେ ଥାଇ ଜଗତର ମଙ୍ଗଳ ପାଇଁ ନିଜକୁ ନିୟୋଜିତ କରିଛନ୍ତି । ଆବଶ୍ୟକ ସମୟରେ ସେ ଶ୍ରୀଜଗନ୍ନାଥଙ୍କୁ ଉଚିତ ପରାମର୍ଶ ଦେଇ ବିଭିନ୍ନ ସମସ୍ୟାର ସମାଧାନର ପଥ ଖୋଜି ବାହାର କରିଛନ୍ତି ।

ଶ୍ରୀଜଗନ୍ନାଥ ଯେଉଁଭଳି ଆମର ଇଷ୍ଟଦେବ ସେହିଭଳି ମା' ଲକ୍ଷ୍ମୀ ମଧ୍ୟ ପ୍ରତିଟି ଓଡ଼ିଆ ପରିବାରର ଆରାଧ୍ୟ ଦେବୀ । ପ୍ରେମ ଓ ମୈତ୍ରୀର ଦେବତା ଶ୍ରୀଜଗନ୍ନାଥ ହେଲେ ଦେବୀ ଲକ୍ଷ୍ମୀ ମଧ୍ୟ ସାରା ସଂସାରରେ ତାଙ୍କର କରୁଣାର ବାରି ପ୍ରବାହିତ କରିଛନ୍ତି । ଶ୍ରୀଜଗନ୍ନାଥଙ୍କ ଭଳି ଦେବୀଙ୍କର ଅଭୟ ଛତ୍ରଛାୟା ତଳେ ରହି ପ୍ରତ୍ୟେକ ଓଡ଼ିଆ ନିଜକୁ ସୁରକ୍ଷିତ ମଣିଥାନ୍ତି ।

ନୀଳିମା ନିଳୟ, ପ୍ଲଟ୍ ନଂ. ୪୨୧/୨୩୫୯
ପଦ୍ମାବତୀ ବିହାର, ଶୈଳଶ୍ରୀ ବିହାର
ଭୁବନେଶ୍ୱର–୨୧





# ଶ୍ରୀଜଗନ୍ନାଥ ମନ୍ଦିରର ବିଲୁପ୍ତ ସେବା ପରମ୍ପରା

**ଡକ୍ଟର ଭାସ୍କର ମିଶ୍ର**

ପ୍ରାଚୀନ ପୁରାଣ ଶାସ୍ତ୍ରାଦିରେ ଉଲ୍ଲେଖ ଅଛି ଯେ, ସମଗ୍ର ପୃଥିବୀରେ ଶ୍ରୀପୁରୁଷୋତ୍ତମ ସଦୃଶ ପୁଣ୍ୟ କ୍ଷେତ୍ର ବିରଳ । ଉତ୍କଳ ଭୂଖଣ୍ଡର ରାଷ୍ଟ୍ର ଦେବତା ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଅବସ୍ଥିତି ଯୋଗୁଁ ଏହି କ୍ଷେତ୍ର ଏକ ଆଧ୍ୟାତ୍ମିକ ତୀର୍ଥସ୍ଥଳ ଭାବେ ଭାରତବର୍ଷରେ ସୁପରିଚିତ । ଏପରିକି ଦାରୁବ୍ରହ୍ମରୂପୀ ଶ୍ରୀଜଗନ୍ନାଥଙ୍କ ଲୀଳାସ୍ଥଳୀ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ବିଷ୍ଣୁ ଉପାସକମାନଙ୍କ ପାଇଁ ଏକ ଅତ୍ୟନ୍ତ ପବିତ୍ର ସ୍ଥଳ ରୂପେ ସ୍ମରଣାତୀତକାଳରୁ ସ୍ୱୀକୃତ ହୋଇଆସିଛି । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ନୀତି, ସେବାପୂଜା, ଉତ୍ସବ ଇତ୍ୟାଦିର ବ୍ୟାପକତା ଅତୁଳନୀୟ ।



୧୯୫୨ ମସିହାରେ ରାଜ୍ୟ ସରକାର ଶ୍ରୀଜଗନ୍ନାଥ ମନ୍ଦିରର ସୁପରିଚାଳନା ତଥା ନୀତି, ସେବା, ପୂଜା ନିମିତ୍ତ ଏକ ଆଇନ୍ ପ୍ରଣୟନ କରିଥିଲେ । ତାହା 'ଶ୍ରୀଜଗନ୍ନାଥ ମନ୍ଦିର (ପ୍ରଶାସନ) ଆଇନ୍– ୧୯୫୨, ନାମରେ ଅଭିହିତ ଅଟେ । ଉକ୍ତ ଆଇନ୍‌ର ବ୍ୟବସ୍ଥା ପ୍ରକାରେ ଶ୍ରୀମନ୍ଦିରର ସମସ୍ତ ସେବା ବିବରଣୀ, ଠାକୁରମାନଙ୍କ ନୀତି, ସେବା, ପୂଜା, ଯାନିଯାତ୍ରା ଓ ସେବକମାନଙ୍କର କର୍ତ୍ତବ୍ୟ ସମ୍ବନ୍ଧରେ ଏକ ସ୍ୱତ୍ୱଲିପି (Recod of Rights) ପ୍ରଣୀତ ହେଲା । ଶ୍ରୀଜଗନ୍ନାଥ ମନ୍ଦିର ସ୍ୱତ୍ୱଲିପିରେ ମୋଟ୍ ୧୧୯ ପ୍ରକାର ସେବା ବିବରଣ ରହିଅଛି । ଏହି ସ୍ୱତ୍ୱଲିପି ପ୍ରସ୍ତୁତିରେ ପ୍ରାୟ ଦୁଇ ବର୍ଷ ସମୟ ଲାଗିଥିଲା । ଜଣେ ଜିଲ୍ଲା ଜଜ୍ ପାହ୍ୟାର ଅଫିସର ଶ୍ରୀଯୁକ୍ତ ଲକ୍ଷ୍ମଣ ପଣ୍ଡା ଏହି କାର୍ଯ୍ୟରେ ନିୟୋଜିତ ହୋଇଥିଲେ । ଶ୍ରୀମନ୍ଦିର ସ୍ୱତ୍ୱଲିପିରେ ଉଲ୍ଲେଖ ହୋଇଥିବା କେତେକ ସେବାର ବିଲୁପ୍ତି ସମ୍ପର୍କରେ ଏଠାରେ ଉପସ୍ଥାପନ କରାଗଲା ।

**୧. ଖଟୁଲି ସେବକ:** ଏହି ସେବକ ପ୍ରତ୍ୟହ ଠାକୁରମାନଙ୍କ ଅବକାଶ ସମୟରେ ପାଣି ପଡ଼ି ସାରିବା ପରେ ବଲ୍ଲଭ ପୂଜାରେ ଅଣସର ପିଣ୍ଡିରେ ଖଟୁଲି ପକାଇଥାନ୍ତି । ଏତଦ୍‌ବ୍ୟତୀତ ପହିଲି ଭୋଗ, ଭୋଗମଣ୍ଡପ ଇତ୍ୟାଦିରେ ମଧ୍ୟ ଖଟୁଲି ପକାନ୍ତି । ସମ୍ପ୍ରତି ଏହି ନାମରେ କୌଣସି ସେବକ ନାହାଁନ୍ତି । ଏପରିକି ରେକର୍ଡ଼ ଅଫ ରାଇଟସ୍ ପ୍ରସ୍ତୁତି ସମୟରେ ଉକ୍ତ ସେବା ନିରଂଶ ହୋଇଯାଇଥିଲା ।

**୨. ପାଇକ ସେବା :** ସ୍ୱତ୍ୱଲିପିର ଉଲ୍ଲେଖ ପ୍ରକାରେ ୧୯୫୨ ମସିହାରେ ୩୬ ଜଣ ପାଇକ ସେବକଙ୍କ ନାମ ଲିପିବଦ୍ଧ ହୋଇଥିଲା । ଏହି ସେବାର ମୁଖ୍ୟ କାର୍ଯ୍ୟ ହେଲା ପରସ୍ପର ପାଳି କରି ଦିବାରାତ୍ର ମନ୍ଦିରରେ ଉପସ୍ଥିତ ରହିବେ । ଦଳାଇ ଓ ଦଳବେହେରାଙ୍କ ନିର୍ଦ୍ଦେଶମତେ କାମ କରିବେ । ଯେତେବେଳେ ଯେଉଁ ସେବା ପାଇଁ ସମ୍ପୃକ୍ତ ସେବକଙ୍କର





ଆବଶ୍ୟକ ପଡ଼େ, ପାଇକମାନେ ସାହିକୁ ଯାଇ ସେହି ସେବକମାନଙ୍କୁ ଡ଼ାକି ଆଣି ସେବାରେ ହାଜର କରାଇବେ । ଏହାବ୍ୟତୀତ ମଧ୍ୟାହ୍ନ ଧୂପ ପରେ ଦକ୍ଷିଣ ଘର, ନୃସିଂହ ଓ ଲକ୍ଷ୍ମୀ ମନ୍ଦିର ବାହାର ଦେଉଳି ଭୋଗ ପାଇଁ ପୂଜାପଣ୍ଡାଙ୍କୁ ଡ଼ାକିବେ । ଗୁଣ୍ଡିଚା ମନ୍ଦିର ଓ ଚନ୍ଦନ ଯାତ୍ରା ସମୟରେ ଚନ୍ଦନ ମଣ୍ଡପରେ ମଧ୍ୟ ଏ କାମ ପାଇକମାନେ କରିଥାନ୍ତି । ଆଶ୍ୱିନ ଷୋଳ ପୂଜା ସଙ୍ଖୁଡ଼ି ଭୋଗ ଶେଷ ତିନି ଦିନ ଭୋଗ ସରିବା ପରେ ସଙ୍ଖୁଡ଼ି ହାଣ୍ଡି ନେଇ ପଶ୍ଚିମ ଦ୍ୱାର ଆଡ଼େ ବାହାର କରିବେ । ଏହି ସେବା ପାଇଁ ବହୁ ପରିମାଣରେ ଜାଗିରି ଜମି ଏମାନେ ପାଇଥିଲେ । ଦିନକୁ ଛଅ ଜଣ ପାଇକଙ୍କର ସେବା ପଡୁଥିଲା । ସକାଳ ବଲ୍ଲଭଠାରୁ ବାହାର ଦେଉଳି ଭୋଗ ଯାଏଁ ତିନି ଜଣ ଏବଂ ତତ୍ପର ନୀତିଠାରୁ ପହୁଡ଼ ଯାଏଁ ତିନି ଜଣ ପାଇକ ଉପସ୍ଥିତ ରହି କାର୍ଯ୍ୟ କରୁଥିଲେ । ଏହି ସେବା ପ୍ରାୟ ୫୫ ବର୍ଷରୁ ଊର୍ଦ୍ଧ୍ୱ ଧରି ବନ୍ଦ ହୋଇଯାଇଛି । ସମ୍ପ୍ରତି ଏଥିମଧ୍ୟରୁ ଅଧିକାଂଶ କାର୍ଯ୍ୟ ଶ୍ରୀମନ୍ଦିରର ଚର୍ଚ୍ଚା କର୍ମଚାରୀ (ମନ୍ଦିର ପୋଲିସ୍) ଏବଂ ପରିମଳ କର୍ମଚାରୀମାନଙ୍କ ଉପରେ ନ୍ୟସ୍ତ ହୋଇଛି ।

**୩. ପରିଚ୍ଛା (ପରୀକ୍ଷା) ସେବା :** ଶ୍ରୀମନ୍ଦିର ସ୍ୱତ୍ୱଲିପି ମୁତାବକ ଏହି ପରିଚ୍ଛା ସେବା ଗଜପତି ମହାରାଜାଙ୍କ ରାଜଗୁରୁମାନଙ୍କର ଥିଲା । ଅତୀତରେ ପରିଚ୍ଛାମାନେ ହିଁ ମନ୍ଦିରର ପରିଚାଳକ ଥିଲେ । ଏପରିକି ମନ୍ଦିରର ସମସ୍ତ ନୀତି ଓ ସେବକମାନଙ୍କର କାର୍ଯ୍ୟ ଏହି ସେବକ ତଦାରଖ କରୁଥିଲେ । ଏହାବ୍ୟତୀତ ଦୈନିକ ସକାଳ ଧୂପ ଟେରା ପଡ଼ିଲେ ଦେବଦାସୀ ନୃତ୍ୟ ଆଗରେ ଏହି ସେବକ ସୁନା ବେଦ ଧରି ପଟୁଆର କରାନ୍ତି । ଦୀର୍ଘ ବର୍ଷ ଧରି ଏହି ସେବାର ବିଲୁପ୍ତି ଘଟିଛି ।

**୪. ବୀଣାକାର ସେବା :** ଗବେଷଣାରୁ ଜଣାଯାଏ ଯେ, ୧୯୫୦ ମସିହାରୁ ଏହି ସେବା ବନ୍ଦ ରହିଛି । ବୀଣାକାର ସେବା ମଧ୍ୟରେ ଦୈନନ୍ଦିନ ଚନ୍ଦନ ଲାଗି ସମୟରେ କଳାହାଟ ଦ୍ୱାର ଲଣ୍ଡାବର୍ତ୍ତ ତଳେ ଓ ପହୁଡ଼ ସମୟେ ପୁଷ୍ପାଞ୍ଜଳି ଠାକୁରଙ୍କ ସହ ଜୟବିଜୟ ଦ୍ୱାରଠାରୁ ଭିତର ପଲଙ୍କ ପର୍ଯ୍ୟନ୍ତ ଦୈନିକ ବୀଣା ବଜାଇଥାନ୍ତି । ଦୀର୍ଘ ୬୭ ବର୍ଷ ଧରି ଏହି ସେବାରେ ବିଲୁପ୍ତି ଘଟିଥିଲେ ହେଁ ପୁରୀ ସହରରେ ଏବେ ବି ବୀଣାକାର ସେବକଙ୍କ ବଂଶଧରମାନେ ବସବାସ କରୁଛନ୍ତି । ଏଠାରେ ସୂଚନାଯୋଗ୍ୟ ଯେ, ୧୯୭୮ ମସିହାରେ ଶ୍ରୀମନ୍ଦିର ରତ୍ନ ଭଣ୍ଡାରର ତାଲିକା ପ୍ରସ୍ତୁତ କରାଯିବା ସମୟରେ ଭିତର ଭଣ୍ଡାରରେ ରୂପାର ଏକ ବୀଣା ଭଗ୍ନ ଅବସ୍ଥାରେ ରହିଥିବା ଜଣାଗଲା ।

**୫. ଗୀତଗୋବିନ୍ଦ ସେବା :** ପ୍ରତ୍ୟହ ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥାଦି ଚତୁର୍ଦ୍ଧା ବିଗ୍ରହଙ୍କର ଚନ୍ଦନ ଲାଗି ନୀତି ସମୟରେ ଭିତର କାଠ ପାଖରେ ଜନୈକ ବ୍ରାହ୍ମଣ ସେବକ ଗୀତଗୋବିନ୍ଦ ପାଠ ସେବା କରୁଥିଲେ । ଗୀତଗୋବିନ୍ଦ ସେବକ ନିରଂଶ ହେତୁ ୧୯୫୦ ମସିହା ପୂର୍ବରୁ ଏହି ସେବା ବନ୍ଦ ହୋଇଯାଇଥିଲା । ପୁନର୍ବାର ସେହି ସମୟରେ ଜଗନ୍ନାଥ ବଲ୍ଲଭ ମଠ ଓ ରାଘବ ଦାସ ମଠ ତରଫରୁ ପୁରୀ ବାସେଳୀ ସାହିର ନାରାୟଣ ଆଚାର୍ଯ୍ୟଙ୍କୁ ଏହି ସେବାରେ ସାମୟିକ ଭାବେ ନିୟୋଜିତ କରାଯାଇଥିଲା । କିଛି ବର୍ଷ ପରେ ପୁନଶ୍ଚ ଏହି ସେବା ବନ୍ଦ ହୋଇଯାଇଥିଲା । ଫଳରେ ଦୀର୍ଘ ୫୩ ବର୍ଷ ଧରି ଏହି ସେବାର ବିଲୁପ୍ତି ଘଟିଛି ।

**୬. ସୁଆର ନିଯୋଗ ନାୟକ :** ଏହି ସେବକଙ୍କ ଉପରେ ପୂର୍ବେ କୋଠ ଭୋଗ ସୁଆର ନିଯୁକ୍ତି, ସୁଆର ନିଯୋଗ ପରିଚାଳନା, ଦାରୁ ଘର ସମ୍ଭାଳିବା ଓ ବୈକୁଣ୍ଠ ଆୟ ଆମଦାନୀ ବୁଝିବା କାର୍ଯ୍ୟ ନ୍ୟସ୍ତ ଥିଲା । ମାତ୍ର ୧୯୭୦ ମସିହା ଅଦାଲତ ରାୟ ଦ୍ୱାରା ଏହି ସବୁ ସେବା କାର୍ଯ୍ୟ ସୁଆର ମହାସୁଆର ନିଯୋଗର ନିୟମାବଳୀ ଅନୁଯାୟୀ କମିଟି ଦ୍ୱାରା ସମ୍ପନ୍ନ ହୋଇଆସୁଛି ।

**୭. ଭିତର ଗାଆଣୀ ଦେବଦାସୀ :** ଶ୍ରୀମନ୍ଦିର ସ୍ୱତ୍ୱଲିପିରୁ ଜଣାଯାଏ ଯେ, ସେତେବେଳେ ଅର୍ଥାତ୍ ୧୯୫୦ରୁ ୧୯୫୫ ମସିହା ମଧ୍ୟରେ ସର୍ବମୋଟ୍ ୯ଜଣ ଭିତର ଗାଆଣୀ ଦେବଦାସୀ ଶାଢ଼ୀ ବନ୍ଧା ସେବା କରୁଥିଲେ । ଏହି ଦେବଦାସୀ ସେବିକାମାନେ ଶ୍ରୀମନ୍ଦିରରେ ନିମ୍ନ ପ୍ରକାରେ କାର୍ଯ୍ୟ କରୁଥିଲେ । ଯଥା– ସକାଳଧୂପ ପଟୁଆର ବେଳେ ଜଗମୋହନଠାରେ ନୃତ୍ୟ କରିବେ । ବଡ଼ସିଂହାର ଭୋଗ ପରେ ଶୟନ ଠାକୁର ଭିତରକୁ



ବିଜେ କଲେ କଳାହାଟ ଦ୍ୱାର ଲଣ୍ଡାବର୍ତ୍ତଠାରେ ଠିଆ ହୋଇ ଗୀତଗୋବିନ୍ଦ ଗାଇବେ । ଶୟନ ଠାକୁର ବିଜେ ହୋଇ ଆସିବା ପରେ ଏମାନେ ଆଗେ ଆଗେ ଗୀତ ବୋଲିବେ । ଠାକୁର ଭିତରକୁ (ଗମ୍ଭୀରାକୁ) ଯିବା ପର୍ଯ୍ୟନ୍ତ ଜୟ ବିଜୟ ଦ୍ୱାରଠାରେ ଗୀତ ଗାଇବେ । କାର୍ତ୍ତିକ ମାସରେ ବାଳଧୂପ ବେଳେ ଗୀତ ଗାଇବେ । ବୈଶାଖ ମାସ ଚନ୍ଦନ ଯାତ୍ରା ୪୨ ଦିନ ଯାକ ଆଲଟ ଲାଗି ସମୟରେ ଅଣସର ପିଣ୍ଡିରେ ଠିଆ ହୋଇ ଗୀତ ବୋଲିବେ । ସେହିପରି ୪୨ ଦିନ ଯାକ ଚନ୍ଦନ ଲାଗି ସମୟରେ ଜଗମୋହନରେ ନୃତ୍ୟ କରିବେ । ବାହାର ଚନ୍ଦନ ୨୧ ଦିନ ମଦନମୋହନଙ୍କ ଚାପ ଉପରେ ନୃତ୍ୟ ଓ ଅନ୍ୟାନ୍ୟ ବିଶେଷ ପର୍ବପର୍ବାଣି ଦିନମାନଙ୍କରେ ମଙ୍ଗଳଗାନ, ମାଳଶ୍ରୀ, ବନ୍ଦାପନା, ଫଗୁ ଖେଳ, ହୁଳହୁଳି ଇତ୍ୟାଦି ସେବା କରିଥାନ୍ତି। ତେବେ ଏଥି ମଧ୍ୟରୁ ନୃତ୍ୟ ସେବା ବହୁ ବର୍ଷ ଧରି ବନ୍ଦ ହୋଇଯାଇଥିଲା । ଏପରିକି ୧୯୬୦ ମସିହାରେ ରାଜ୍ୟ ସରକାର ଶ୍ରୀମନ୍ଦିରର ପରିଚାଳନା ଭାର ନେବାର ବହୁ ପୂର୍ବରୁ ଶ୍ରୀମନ୍ଦିରରେ ନୃତ୍ୟ ସେବା ହେଉନଥିଲା । ୧୯୩୩ ମସିହାରେ କୋକିଳପ୍ରଭା ଦେବଦାସୀଙ୍କ ମୃତ୍ୟୁ ପରେ ଏହି ସମସ୍ତ ସେବା ବନ୍ଦ ହୋଇଯାଇଛି । ଏହାର ମୁଖ୍ୟ କାରଣ ହେଲା, ଭିତର ଗାଆଣୀ ଦେବଦାସୀ ରୂପେ ଆଉ କେହି ସେବା କରିବା ପାଇଁ ଶାଢ଼ୀ ବନ୍ଧାଇ ନଥିଲେ । ଏପରିକି ଶେଷ ଦେବଦାସୀ କୋକିଳପ୍ରଭା ତାଙ୍କର ମୃତ୍ୟୁ ପୂର୍ବରୁ କୌଣସି ଝିଅକୁ ପୋଷ୍ୟା କନ୍ୟା ରୂପେ ଗ୍ରହଣ କରିନଥିବାରୁ ଏହି ସେବାର ବିଲୁପ୍ତି ଘଟିଛି ।

**୮. ସମ୍ପ୍ରଦା ନିଯୋଗ :** ଶ୍ରୀମନ୍ଦିର ସ୍ୱତ୍ତ୍ୱଲିପିର ସେବା ନଂ ୭୬ର ବିବରଣୀରୁ ଜଣାଯାଏ ଯେ, ସେତେବେଳେ ପ୍ରାୟ ୧୨ ଜଣ ଦେବଦାସୀ ସମ୍ପ୍ରଦା ନିଯୋଗର ଅନ୍ତର୍ଭୁକ୍ତ ଥିଲେ । ଏହି ନିଯୋଗର ତିନିଗୋଟି ଏକାଏକ ସେବା ମଧ୍ୟରେ ରୁକ୍ମିଣୀ–ହରଣ ଏକାଦଶୀ ଦିନ ଲକ୍ଷ୍ମୀ ଠାକୁରାଣୀଙ୍କ ଦାସୀ ସ୍ୱରୂପ ବିପ୍ର ବ୍ରାହ୍ମଣ ସଙ୍ଗେ ଯାଆନ୍ତି, ହେରାପଞ୍ଚମୀ ଦିନ ଦଇତାଙ୍କୁ ଦଣ୍ଡମଣ୍ଡ କରିବା ଓ ରଥ ଭାଙ୍ଗିବା ଏବଂ ନନ୍ଦ ଉତ୍ସବରେ ରୋହିଣୀ, ଯଶୋଦା ସେବା କରିଥାନ୍ତି । ଏହାବ୍ୟତୀତ ପ୍ରତ୍ୟହ ସେବା ମଧ୍ୟରେ ସକାଳ ଧୂପରେ ନୃତ୍ୟ, ଚନ୍ଦନ ଯାତ୍ରା ଚାପରେ ନୃତ୍ୟ, ରୁକ୍ମିଣୀ ବିବାହରେ ଗୀତ, ହୁଳହୁଳି ପକାଇବା, ଖଦୀ ଚାମର ସେବା, ଝୁଲଣ ମଣ୍ଡପ ତଳେ ପଟୁଆର ସେବା ଇତ୍ୟାଦି ଅନ୍ୟତମ । ଏହି ସେବା ମଧ୍ୟରୁ ଅନେକ ସେବା ଲୋପ ପାଇଯାଇଛି । ଏପରିକି ଶ୍ରୀମନ୍ଦିରର ଶେଷ ବାହାର ଗାଆଣୀ ସେବିକା ଶଶିମଣି ଦେବଦାସୀଙ୍କର ଇତିମଧ୍ୟରେ ପରଲୋକଗମନ ହୋଇଥିବାରୁ ରୋହିଣୀ ଯଶୋଦା ସେବା, ରୁକ୍ମିଣୀ ବିବାହ ସମୟରେ ଗୀତ, ହୁଳହୁଳି, ଖଦୀ ଚାମର ସେବା ତଥା ନବକଳେବର ସମୟର ହୁଳହୁଳି ସେବା ଇତ୍ୟାଦି ବନ୍ଦ ହୋଇଯାଇଛି ।

**୯. ମାଦେଳି ସେବା :** ଏହି ସେବକ ଦୈନିକ ସକାଳ ଧୂପ ପଟୁଆରରେ ଚନ୍ଦନ ଯାତ୍ରା ସମୟରେ ଚାପ ଉପରେ, କାର୍ତ୍ତିକ ମାସ ବାଳଧୂପ ପଟୁଆରରେ, ସ୍ନାନ ବେଦୀ ସାମନା ପଟୁଆରରେ, ବିମଳା ମନ୍ଦିରରେ ଷୋଳ ପୂଜା ସମୟେ ପଟୁଆରରେ, ଦୋଳ ବେଦୀରେ ଅନୁଷ୍ଠିତ ନୃତ୍ୟ ସମୟରେ, ପ୍ରତ୍ୟେକ ରଥଯାତ୍ରାରେ ଘଣ୍ଟୁଆମାନଙ୍କ ସହିତ ମାଦଳ ବାଦ୍ୟ (ଏକ ପ୍ରକାର ବାଦ୍ୟ ଯନ୍ତ୍ରକୁ ମାଦଳ କୁହାଯାଏ) ବଜାଇଥାନ୍ତି । ୧୯୫୨ ମସିହା ପୂର୍ବରୁ ମାଦେଳି ସେବା ବନ୍ଦ ରହିଥିବା ଶ୍ରୀମନ୍ଦିର ସ୍ୱତ୍ତ୍ୱଲିପିରୁ ଜଣାଯାଏ । ଆଜିକୁ ୬୪ ବର୍ଷ ପୂର୍ବେ ଏହି ମାଦେଳି ସେବକ ଭାବେ ମାତ୍ର ଦୁଇ ଜଣଙ୍କ ନାମ ମିଳୁଅଛି । ସେହି ସେବକମାନଙ୍କର ବଂଶଧରମାନେ ଶ୍ରୀମନ୍ଦିର ପଶ୍ଚିମ ଦ୍ୱାର ସମ୍ମୁଖସ୍ଥ ବାସେଳୀ ସାହିରେ ଅବସ୍ଥାନ କରୁଥିଲେ ।

**୧୦. ପତରବନ୍ଧା :** ଚଷା ଶ୍ରେଣୀୟ ସେବକ ପତର ବନ୍ଧା ସେବା କରୁଥିଲେ । ଶ୍ରୀମନ୍ଦିରରୁ ଶ୍ରୀନଅରକୁ ଯେତେ ତାଟ ଯାଏ, ପିଠା ସବୁ ପତରରେ ବାନ୍ଧି ତାଟୁଆକୁ ଏହି ସେବକ ଦେଇଥାନ୍ତି । ୧୯୫୪ ମସିହାରେ ଏହି ସେବା କରିବାକୁ କେହି ନଥିଲେ, ଯାହାଫଳରେ କି ସ୍ୱତ୍ତ୍ୱଲିପିରେ କୌଣସି ପତରବନ୍ଧା ସେବକଙ୍କ ନାମ ଉଲ୍ଲେଖ ନାହିଁ । ସମ୍ପ୍ରତି ଏହି କାର୍ଯ୍ୟ ଜନୈକ ବଡୁ ମହାପାତ୍ର ସେବକ କରୁଥିବା ଜଣାଯାଏ ।

**୧୧. ବୈଜୟନ୍ତୀ ସେବା (ବାଦ୍ୟକାର ସେବା):** ଦୈନିକ ସକାଳଧୂପ ଓ ସନ୍ଧ୍ୟା ଧୂପରେ ଏହି ସେବା ସହ ସଂଶ୍ଳିଷ୍ଟ ୫ ଜଣ ବାଦ୍ୟକାର ସେବକ ପାଞ୍ଚ ପ୍ରକାରର ବାଦ୍ୟ ବଜାଉଥିଲେ । ବିଗତ ୪୭ ବର୍ଷରୁ ଉର୍ଦ୍ଧ୍ୱ ହେବ ଏଥି ମଧ୍ୟରୁ



ମହୁରୀ, ସ୍ୱର, ଢ଼ୋଲକି ଇତ୍ୟାଦି ବାଦ୍ୟ ବାଜୁ ନଥିବା ଜଣାଯାଏ । କେବଳ ବୈଜୟନ୍ତୀ ସେବକ ସ୍ୱର୍ଗତ ରାମ ମହାପାତ୍ରଙ୍କ ପୁତ୍ରମାନେ ନିୟମିତ ଘସା ବାଦ୍ୟ ବଜାଉଛନ୍ତି । ଅନ୍ୟ ୪ଟି ବାଦ୍ୟଯନ୍ତ୍ର ସେବକମାନଙ୍କ ଦୀର୍ଘ ଅନୁପସ୍ଥିତିରୁ ଏହି ସେବାଗୁଡ଼ିକର ବିଲୁପ୍ତି ଘଟିଛି ।

**୧୨. ଶଙ୍ଖୁଆ :** ଏହି ସେବକ ଦୈନନ୍ଦିନ ସକାଳଧୂପ ପଟୁଆର ସମୟରେ ଜଗମୋହନରେ ଓ ଠାକୁରମାନଙ୍କର ସମସ୍ତ ବିଜେ, ଯାନିଯାତ୍ରା ଓ ବିବାହ ନୀତିରେ ଶଙ୍ଖ ବଜାଇଥାନ୍ତି । ଶ୍ରୀମନ୍ଦିର ସ୍ୱତ୍ୱଲିପି ଓ ଅନ୍ୟାନ୍ୟ ସୂତ୍ରରୁ ସଂଗୃହୀତ ତଥ୍ୟ ଅନୁଯାୟୀ ଆଜକୁ ପ୍ରାୟ ୮୬ ବର୍ଷ ପୂର୍ବରୁ ଏହି ସେବାର ବିଲୁପ୍ତି ଘଟିଛି ।

**୧୩. କଳାବେଠିଆ :** ଏ ପ୍ରକାର ସେବକମାନେ ହେରାପଞ୍ଚମୀ ପରଦିନ ଗୁଣ୍ଡିଚାପଦାରେ ତିନି ରଥ ଦକ୍ଷିଣମୋଡ଼ କରନ୍ତି ତଥା ଶ୍ରୀଗୁଣ୍ଡିଚା ଓ ବାହୁଡ଼ା ଯାତ୍ରା ରଥ ଟଣାରେ ଲୋକ ଅଭାବ ହେଲେ ବା ଆବଶ୍ୟକ ପଡ଼ିଲେ କଳା ବେଠିଆ ସେବକମାନେ ଆସି ରଥ ଟାଣିଥାନ୍ତି । ଅନ୍ୟାନ୍ୟ କାର୍ଯ୍ୟ ମଧ୍ୟରେ ରଥ କାଠ ବୋହିବା, ଛାମୁଣ୍ଡିଆ ତିଆରି କରିବା, ଚାରମାଳ ବୋହିବା ଇତ୍ୟାଦି କାର୍ଯ୍ୟ ଅନ୍ୟତମ । ଏହି ସେବା ଓ ବ୍ୟବସ୍ଥା ବହୁ ବର୍ଷ ଧରି ଲୁପ୍ତ ହୋଇଯାଇଛି ।

**୧୪. କୁମ୍ଭାର ବିଶୋଇ :** ଏହି ସେବକ ପ୍ରତ୍ୟହ ଠାକୁରମାନଙ୍କ କୋଠ ଭୋଗ ନିମନ୍ତେ ଆବଶ୍ୟକ ପଡୁଥିବା ହାଣ୍ଡି, କୁଡୁଆ, ଓଳି, ତାଡ଼ ଇତ୍ୟାଦି ମାଟି ପାତ୍ର ଯୋଗାଇଥାନ୍ତି । ପୂର୍ବରୁ ଏହି ସେବା କୁମ୍ଭାରପଡ଼ାର ଥିଲା । ମାତ୍ର କେତେକ ବାରଣ ଯୋଗୁଁ ୧୯୦୬ ମସିହାରେ ରାଜା ମୁକୁନ୍ଦ ଦେବଙ୍କ ହୁକୁମ୍ ଅନୁଯାୟୀ କୁମ୍ଭାର ବିଶୋଇମାନଙ୍କୁ ଏହି ସେବା ପ୍ରଦାନ କରାଯାଇଥିଲା । ୧୯୮୩ ମସିହାଠାରୁ ଏହି ସେବକମାନେ ହାଣ୍ଡି କୁଡୁଆ ଠିକ୍ ସମୟରେ ନ ଯୋଗାଇବାରୁ ୨୯.୧୧.୧୯୮୭ ମସିହାରେ ଅନୁଷ୍ଠିତ ଶ୍ରୀମନ୍ଦିର କାର୍ଯ୍ୟାଳୟାଦେଶ ସଂଖ୍ୟା ୯୧୦ (୧୨୩) ତା.୦୫.୦୧.୧୯୮୮ରିଖ ଅନୁଯାୟୀ ସମ୍ପୃକ୍ତ ସେବାକୁ ସ୍ୱତ୍ୱଲିପିରୁ ଉଚ୍ଛେଦ କରାଯାଇଛି ।

**୧୫. ବାଣୁଆ :** ଠାକୁରମାନଙ୍କ ମହାଦୀପ ଜାଳିବା ନୀତିରେ, ଚନ୍ଦନ ଯାତ୍ରାରେ, ବିବାହ ଉତ୍ସବ ଇତ୍ୟାଦି ଦିନିମାନଙ୍କରେ ଯାହା ବାଣ ଫୁଟାଯାଏ, ତାହା ଏ ସେବକ ମନ୍ଦିର କର୍ତ୍ତୃପକ୍ଷମାନଙ୍କଠାରୁ ମୂଲ୍ୟ ନେଇ ଯୋଗାଇଥାନ୍ତି । ଶ୍ରୀମନ୍ଦିରର ସ୍ୱତ୍ୱଲିପିରେ କେବଳ ଜଣେ ମାତ୍ର ବାଣୁଆ ସେବକ ଅନନ୍ତ ଜେନାଙ୍କ ନାମ ଉଲ୍ଲେଖ ହୋଇଛି । ଏହି ସେବା ବଂଶାନୁକ୍ରମିକ ହୋଇନଥିବାରୁ ପୂର୍ବ ବାଣୁଆ ସେବକ ନିରଂଶ ହେବାରୁ ଅନ୍ୟ ଜଣେ ବ୍ୟକ୍ତିଙ୍କ ନାମ ଲିପିବଦ୍ଧ ହୋଇଥିଲା । ସମ୍ପ୍ରତି ବାଣୁଆ ସେବକ ନାହାଁନ୍ତି । ବାହାର ବାଣୁଆମାନଙ୍କଠାରୁ ମନ୍ଦିର କର୍ତ୍ତୃପକ୍ଷ ଆବଶ୍ୟକ ବାଣ କିଣୁଥିବା ଜଣାଯାଏ ।

**୧୬. ମାପ ସାଇତାକରଣ (ମହାପ୍ରଶସ୍ତ ସେବା):** ଦୈନିକ ଓ ପର୍ବପର୍ବାଣି ଦିନମାନଙ୍କରେ ଭୋଗ ସରିବା ପରେ ଏ ସେବକ ଥାଇ ବିଭିନ୍ନ ସେବକମାନଙ୍କ ତାଲିକା ଅନୁଯାୟୀ ଖେଇ ବଣ୍ଟନ କରନ୍ତି । କିନ୍ତୁ ଉକ୍ତ ସେବକ ତାଙ୍କ ସେବାରେ ଅନୁପସ୍ଥିତ ରହୁଥିବାରୁ ୨୨.୧୧.୧୯୨୫ର ଏକ ଆଦେଶ ମୁତାବକ ଏହି ସେବାର ବିଲୁପ୍ତି ଘଟିଛି ।

**୧୭. କୋଠ କରଣ :** ଏହି ସେବକ ବେହେରଣ ସିରସ୍ତା ଲେଖନ୍ତି ଓ ଧ୍ୱଜା, ପିଣ୍ଡିକା, ଲାଗି ଇତ୍ୟାଦି ସମସ୍ତ ସିହା (ହିସାବ) ରଖିଥାନ୍ତି । ଚାପ ଉପରେ ଛୁରି, ଖଣ୍ଡା ସେବା କରନ୍ତି । ସେବା ପୂଜାରେ ଖିଲାପ ହେଲେ ରିପୋର୍ଟ କରିଥାନ୍ତି । ରାଜା ବିଜେ କଲେ ଅନ୍ୟ କରଣଙ୍କ ସହ ଉପସ୍ଥିତ ରହନ୍ତି । ଦୀର୍ଘ ୩୫ ବର୍ଷରୁ ଊର୍ଦ୍ଧ୍ୱ ଧରି ଏ ପ୍ରକାର ସେବା ବନ୍ଦ ହୋଇଯାଇଛି । ଏଠାରେ ସୂଚନାଯୋଗ୍ୟ ଯେ, ଭଣ୍ଡାରକରଣ, ଚାଙ୍ଗଡ଼ା କରଣ, ଶିଠ କରଣଙ୍କ କାର୍ଯ୍ୟ ସମ୍ପ୍ରତି ଦେଉଳକରଣ ଓ ତଡ଼ାଉକରଣ ସେବକ ନିର୍ବାହ କରିଆସୁଅଛନ୍ତି ।

**୧୮. ଚର୍ଚ୍ଚାଇତକରଣ :** ଏହି ସେବକ ପ୍ରତିଦିନ ଶ୍ରୀମନ୍ଦିର ଦ୍ୱାରଫିଟା ପୂର୍ବରୁ ପହୁଡ଼ ଯାଏ ଉପସ୍ଥିତ ରହି ସେବକମାନଙ୍କୁ ଡ଼ାକହାକ କରାଇ ଶୃଙ୍ଖଳିତ ଭାବେ ନୀତି କରାଇବେ । ସେବକମାନଙ୍କ ଶାଢ଼ୀବନ୍ଧା ବେଳେ ଚାଙ୍ଗଡ଼ା ମେକାପଠାରୁ ଶାଢ଼ୀ ନେଇ ପାଟ୍ଟଯୋଷୀ ବା ଭିତରଛ ମହାପାତ୍ର ସେବକଙ୍କୁ ଦେଇଥାନ୍ତି । ପହିଲି ଭୋଗ ମାସରେ ବଡ଼ି, କଣ୍ଟେଇ



ଆଦି ପହିଲି ଭୋଗ ସାମଗ୍ରୀ ବାଣ୍ଟିଥାନ୍ତି । ଲେଙ୍କା, ପ୍ରଧାନୀ, ପାଇକ ସେବକ ଏହାଙ୍କ ନିର୍ଦ୍ଦେଶରେ କାମ କରିଥାନ୍ତି । ସେବକ ନୀତିରେ ଉପସ୍ଥିତ ନଥିଲେ ତାଙ୍କୁ ଡ଼କାଇ ହାଜର କରାଇବା ଏହାଙ୍କର ପ୍ରଧାନ କାମ ଥିଲା । ସ୍ୱତ୍ୱଲିପି ପ୍ରସ୍ତୁତି ସମୟରେ ଏହି ସେବା ହେଉନଥିବା ଜଣାଯାଏ । ଏହାର କାରଣ ତତ୍କାଳୀନ ଚର୍ଚ୍ଚାଇତକରଣ ସେବକ ଜଗନ୍ନାଥ ମହାନ୍ତି ନିଃସନ୍ତାନ ଥିବାରୁ ତାଙ୍କ ଅନ୍ତେ ଏହି ସେବା ବନ୍ଦ ହୋଇଯାଇଛି ।

**୧୯. ଦଉଡ଼ିବଳା ସେବା :** ଏହି ସେବକ ଶ୍ରୀବିଗ୍ରହମାନଙ୍କ ଦୈନନ୍ଦିନ ନୀତି ପାଇଁ ବିମଳାଙ୍କ କୂପରୁ ପାଣି କଢ଼ାଯିବା ନିମନ୍ତେ ଆବଶ୍ୟକୀୟ କତା ଦଉଡ଼ି ଯୋଗାଇଥାନ୍ତି । ଦଉଡ଼ି ଛିଡ଼ି ଗଲେ ନୂଆ ଦଉଡ଼ି ଦେଇ ଛିଣ୍ଡା ଦଉଡ଼ି ନେଇ ଯାଇଥାଆନ୍ତି । ବହୁ ବର୍ଷ ଧରି ଏ ସେବା ବନ୍ଦ ରହିଛି । ମନ୍ଦିର ପ୍ରଶାସନ ପକ୍ଷରୁ ଏହି ଦଉଡ଼ି ସ୍ଥାନୀୟ ବଜାରରୁ କ୍ରୟ ପୂର୍ବକ ଏହି କାର୍ଯ୍ୟ ସମ୍ପନ୍ନ ହେଉଅଛି ।

ଶ୍ରୀମନ୍ଦିର ସ୍ୱତ୍ୱଲିପି ପ୍ରସ୍ତୁତ ସମୟରେ ୧୧୯ ପ୍ରକାର ସେବାର ବିବରଣୀ ଲିପିବଦ୍ଧ ରହିଥିଲେ ହେଁ, ସେସମୟରେ ରାଜ୍ୟ ସରକାରଙ୍କୁ ଅସହଯୋଗ କରି ତତ୍କାଳୀନ ପୁରୀ ରାଜା ସୁପରିନ୍‌ଟେଣ୍ଡେଣ୍ଟ, ମନ୍ଦିର କମାଣ୍ଡର ତଥା ରାଜାନୁଗତ କେତେକ ସେବକ ଓ କର୍ମଚାରୀ ସ୍ୱତ୍ୱଲିପି ପ୍ରସ୍ତୁତକାରୀଙ୍କ ନିକଟରେ ସେବା ସମ୍ବନ୍ଧୀୟ ତଥ୍ୟ ସନନ୍ଦ, ପୁରାତନ କାଗଜାତ୍ ଆଦି ଉପସ୍ଥାପନ କରିନଥିଲେ । ତେଣୁ ଦେଉଳକରଣ, ପୂଜାପଣ୍ଡା, ବିମାନବଡ଼ୁ, ଦଇତାପତି ଓ ଅନ୍ୟାନ୍ୟ ସେବକମାନଙ୍କ ବକ୍ତବ୍ୟ, ଛାମୁଚିଟାଉ ଓ ଅନ୍ୟାନ୍ୟ ପ୍ରାମାଣିକ କାଗଜାତ୍‌କୁ ଆଧାର କରି ତତ୍କାଳୀନ ସ୍ପେଶାଲ ଅଫିସର ଶ୍ରୀ ଲକ୍ଷ୍ମଣ ପଣ୍ଡା ସ୍ୱତ୍ୱଲିପି ପ୍ରସ୍ତୁତି କରିଥିଲେ । ସେହିପରି ସ୍ୱତ୍ୱଲିପି ପ୍ରସ୍ତୁତି ସମୟରେ ସ୍ଥାନୀତ ହୋଇନଥିବା ଅନ୍ୟ ଏକ ସେବା ପ୍ରଶାସକ, ଶ୍ରୀଜଗନ୍ନାଥ ମନ୍ଦିରଙ୍କ ଆଦେଶକ୍ରମେ ୧୯୮୮ ମସିହାରେ 'ବେହେରାକରଣ' ସେବା ପ୍ରଚଳିତ ହୋଇଅଛି । ଉଲ୍ଲେଖଯୋଗ୍ୟ ଯେ, ୧୯୮୮ ମସିହା ପୂର୍ବରୁ ଅର୍ଥାତ୍ ଦୀର୍ଘ ୬୫ ବର୍ଷ ଧରି ଏହି ସେବା ବନ୍ଦ ହୋଇଯାଇଥିଲା । ଏହି ସେବାର ପୁନରୁଦ୍ଧାର ହୋଇ ସ୍ୱତ୍ୱଲିପିରେ ଅନ୍ତର୍ଭୁକ୍ତ ହୋଇଛି ।

୧୧୯ ପ୍ରକାର ସେବା ମଧ୍ୟରୁ ଉପରଲିଖିତ ସେବାଗୁଡ଼ିକର ବିଲୁପ୍ତି ଘଟିବାର କେତେକ ମୁଖ୍ୟ କାରଣ ମଧ୍ୟରେ (୧) ସେବା ନିରଂଶ ହୋଇଯିବା, (୨) ଅତୀତରେ ଠାକୁରମାନଙ୍କ ସମସ୍ତ ନୀତି ପାଳନ ହୋଇନପାରିବା ଫଳରେ ସେବା କ୍ଷେତ୍ରରେ ସେବକ ଉପସ୍ଥିତ ନହେବା, (୩) ଅଣହିନ୍ଦୁମାନଙ୍କ ଦ୍ୱାରା ଶ୍ରୀମନ୍ଦିର ଉପରେ ବାରମ୍ବାର ଆକ୍ରମଣ ହେବା ଫଳରେ ଶ୍ରୀବିଗ୍ରହମାନଙ୍କୁ ବିଭିନ୍ନ ସ୍ଥାନକୁ ସ୍ଥାନାନ୍ତର ଓ ଗୋପନରେ ସ୍ୱଳ୍ପ ସଂଖ୍ୟକ ସେବକଙ୍କ ଦ୍ୱାରା ସେବା ପୂଜା ହେଉଥିବା ଯୋଗୁଁ, (୪) କେତେକ ସେବା, ପୂଜା, ଯାନିଯାତ୍ରା ସାମୟିକ ଭାବେ ବନ୍ଦ ହୋଇଯିବା କାରଣରୁ, (୫) ସାମାନ୍ୟ ଖେଇ ମହାପ୍ରସାଦ ପାଇ ପରିବାର ଚଳାଇବା କଷ୍ଟକର ହୋଇପଡ଼ିବା ହେତୁ ଏବଂ (୬) ଜାଗିର ଜମି ଓ ଅନ୍ୟାନ୍ୟ ଭୂ-ସମ୍ପତ୍ତିର ଲୋପ, ଉଚ୍ଛେଦ, ହସ୍ତାନ୍ତର, ବିକ୍ରୟ ଆଦି କାରଣରୁ ସେବା ଚଳାଇବା ସମ୍ଭବପର ନହେବା ଇତ୍ୟାଦି କେତେକ କାରଣ ଯୋଗୁଁ ବିଭିନ୍ନ ସମୟରେ ଶ୍ରୀମନ୍ଦିରରେ କେତେକ ସେବାର ବିଲୁପ୍ତି ଘଟିଛି । ମୁଖ୍ୟତଃ ନିର୍ଦ୍ଦିଷ୍ଟ ସେବକ ନିରଂଶ ହେବା ଫଳରେ କେତେକ ସେବା ବିଲୁପ୍ତି ଘଟିବାର ମୁଖ୍ୟ କାରଣ ଅଟେ ।

ବିଶେଷ କର୍ତ୍ତବ୍ୟରତ ଅଧିକାରୀ
(ଶ୍ରୀମନ୍ଦିର ପ୍ରଶାସନ)
ବିଧି ବିଭାଗ, ଓଡ଼ିଶା, ହାତୀଶାଳ, ପୁରୀ-୨

**ତଥ୍ୟ ସୂଚୀ**

୧. ଶ୍ରୀଜଗନ୍ନାଥ ମନ୍ଦିର (ପ୍ରଶାସନ) ଆଇନ୍ ୧୯୫୨
୨. ଶ୍ରୀଜଗନ୍ନାଥ ମନ୍ଦିର ସ୍ୱତ୍ୱଲିପି
୩. 'ଅଭିନନ୍ଦନିକା' ସ୍ମରଣିକା-୨୦୦୧, ପୃ.-୪୯
୪. ଘସା ବାଦ୍ୟକାର (ବୈଜୟନ୍ତୀ ସେବା) ସ୍ୱର୍ଗତ ରାମଚନ୍ଦ୍ର ମହାପାତ୍ରଙ୍କ ସୂତ୍ରରୁ
୫. ଶ୍ରୀମନ୍ଦିର କାର୍ଯ୍ୟାଳୟ ନୀତି ଉପବିଭାଗ
୬. ଶ୍ରୀଧାମ : ଶ୍ରୀଜଗନ୍ନାଥ ଚେତନା -ଡଃ ଭାସ୍କର ମିଶ୍ର



# କୋଟିଆରେ କଳାଶ୍ରୀମୁଖ

**ଉମାକାନ୍ତ ଦାଶ**

ମଣିଷ ଯେଉଁଠି ଚର୍ମନେତ୍ରରେ ବ୍ରହ୍ମଙ୍କୁ ଦର୍ଶନ କରିବାର ସାହସ କରିଛି ଇଏ ସେଇ ଉତ୍ତ୍ରଦେଶ । ଏ ଦେଶର ଉତ୍କର୍ଷ ରହିଛି । ଏଠାରେ ମଣିଷ ଦାରୁରେ ବ୍ରହ୍ମ ଦର୍ଶନ କରିଥାଏ । ଏଥିପାଇଁ ଏହି ଦେଶ ସର୍ବୋତ୍ତମ । ଏଠାରେ ପୁରୁଷୋତ୍ତମ କ୍ଷେତ୍ରରେ ନିର୍ବିକଳ୍ପ ଅବ୍ୟକ୍ତ ବ୍ରହ୍ମ ଶ୍ରୀଜଗନ୍ନାଥାଦି ମୂର୍ତ୍ତି ଚତୁଷ୍ଟୟ ରୂପେ ବିରାଜମାନ ।

ନିରାକାର ନିର୍ଗୁଣ ବ୍ରହ୍ମଙ୍କର ସାକାର ଉପଲବ୍ଧି କରିବାର ପ୍ରକୃଷ୍ଟ କ୍ଷେତ୍ର ଏ ଦେଶ । ସର୍ବବ୍ୟାପୀ ବ୍ରହ୍ମଙ୍କୁ ସ୍ଥୂଳ ରୂପରେ ମାନବୀ ଚକ୍ଷୁରେ ସାଧାରଣ ମଣିଷ ସମକ୍ଷରେ ଉପସ୍ଥାପନ କରିବାର ସୂକ୍ଷ୍ମ ବିଚାର ପ୍ରାଚୀନ ଉତ୍କଳର ସର୍ବଶ୍ରେଷ୍ଠ ଅନୁଭବ । ସର୍ବତ୍ର ବହୁ ଉପଲବ୍ଧି 'ସକଳ ଦେହେ ନାରାୟଣ' ଭାବନାକୁ ଉତ୍କଳର ସାଧାରଣ ଜନତାର କାଳକାଳର ସିଦ୍ଧାନ୍ତ ।

ଉତ୍କଳୀୟ ସଂସ୍କୃତିର ମୌଳିକ ପିଣ୍ଡଟି ଶବର ସଂସ୍କୃତିରେ ବିଦ୍ୟମାନ । ଶବରଙ୍କ ପରମ ଆରାଧ୍ୟ ଶ୍ରୀଜଗନ୍ନାଥ ବ୍ରହ୍ମ ରୂପେ ପରିକଳ୍ପିତ ହୋଇଛନ୍ତି । ବ୍ରହ୍ମ ଏହି ବିଚାରର ଏକ ସମୁନ୍ନତ ବିବର୍ତ୍ତନ । ଶ୍ରୀଜଗନ୍ନାଥ ଚେତନା ଭିତରେ ପ୍ରଚ୍ଛନ୍ନ ଶବର ସଂସ୍କୃତିର ମାନବବାଦୀ ବିଚାରଟି ଏବେ ମଧ୍ୟ ସ୍ପଷ୍ଟ ଅନୁଭବ କରିହୁଏ । ଶବର ପରମ୍ପରାରେ ସମସ୍ତ ସ୍ଥାବର ଜଙ୍ଗମର ନିୟନ୍ତା ସେହି କିତୁଙ୍ଗ୍ ବା ଜଗନ୍ତ । ତେଣୁ ଶବର (ଆଦିମ ଅଧିବାସୀ) ଜୀବ ଓ ଜଡ଼ ମଧ୍ୟରେ ପାର୍ଥକ୍ୟ ଦେଖେନାହିଁ । ପ୍ରାଣୀ ପ୍ରାଣହୀନ ହୋଇ ଜଡ଼ ରୂପରେ ନିରନ୍ତର ଜାଗ୍ରତ ରହେ, ପ୍ରାଣୀର ପଥ ପ୍ରଦର୍ଶନ କରେ । ଗଛ ଓ କାଷ୍ଠ ମଧ୍ୟରେ ପାର୍ଥକ୍ୟ ଦେଖେ ନାହିଁ ଆଦିମ ଅଧିବାସୀ । ଅଖିଳ ବ୍ରହ୍ମ ବିଚାରଠାରୁ ଏହା ଭିନ୍ନ ନୁହେଁ । ପ୍ରାଣ ଥିଲେ ଗଛ, ପ୍ରାଣ ଚାଲିଗଲେ କାଷ୍ଠ, ଦାରୁ । ସେ ଦେବତାର ମାନ୍ୟତା ପାଏ । ଏହି ରୀତିରେ ଶ୍ରୀଜଗନ୍ନାଥଙ୍କର ଦାରୁବିଗ୍ରହ ଦେବତା । ବ୍ରାହ୍ମଣ ତାଙ୍କଠାରେ ବ୍ରହ୍ମ ସ୍ଥାପନ କରି ଅଥବା ତାଙ୍କୁ ବ୍ରହ୍ମ ସ୍ୱରୂପ କଳ୍ପନା କରି ଦାରୁବ୍ରହ୍ମ କରିଦେଲେ । ଯେତେ ଯାହା ପୁଟ ଦେଲେ ହେଁ ଶ୍ରୀଜଗନ୍ନାଥ ଉତ୍କଳର ପ୍ରାଚୀନ ମାନବଗୋଷ୍ଠୀ ଶବରଙ୍କ ପରମ ଉପାସ୍ୟ ଦେବତା, ଏହା ସ୍ୱୟଂସିଦ୍ଧ । ବହୁ ବିଦ୍ୱାନ୍ ଆଦିମ ଶବରଙ୍କ ସହ ଶ୍ରୀଜଗନ୍ନାଥଙ୍କ ନିତ୍ୟ ସମ୍ପର୍କକୁ ପ୍ରମାଣସିଦ୍ଧ କରିଛନ୍ତି ।

ମାନବର ଆଧ୍ୟାତ୍ମିକ ଚିନ୍ତାର ସମୁନ୍ନତ ପରିପ୍ରକାଶ ବେଦାନ୍ତ ଦର୍ଶନ । ଏହା ବିଶ୍ୱକୁ ଭାରତୀୟ ମନୀଷୀର ସର୍ବଶ୍ରେଷ୍ଠ ଅବଦାନ ପରି ଶ୍ରୀଜଗନ୍ନାଥ ଚେତନା/ ସଂସ୍କୃତି / ବିଚାର / ଧର୍ମ ଉତ୍କଳୀୟଙ୍କର ସର୍ବଶ୍ରେଷ୍ଠ ଅବଦାନ । ମାନବବାଦୀ ଚିନ୍ତା, ସମଦର୍ଶୀଭାବ, ସମନ୍ୱୟଭାବ, ସମାନ ବିଚାର, ସମାଦର ହିଁ ଏହି ଚେତନାର ସ୍ୱରୂପ । ଏହି ଚେତନାରେ ନାହିଁ ରାଜା ପ୍ରଜାର ବ୍ରାହ୍ମଣ ଚଣ୍ଡାଳର, ଧନୀ ଦରିଦ୍ରର ଭେଦ, ବନବାସୀ ଓ ନଗରବାସୀର ପ୍ରଭେଦ, ହିନ୍ଦୁ ମୁସଲମାନର ବିଚାର, ସବର୍ଣ୍ଣ ଅସବର୍ଣ୍ଣର ସଂକୀର୍ଣ୍ଣତା । ସବୁର ଊର୍ଦ୍ଧ୍ୱରେ ଶ୍ରୀଜଗନ୍ନାଥ ଚେତନା । ସର୍ବତ୍ର ପରମ ମିତ୍ର ଭାବ । ଶବର ଓ ବ୍ରାହ୍ମଣର ମିତ୍ରତା, ବନବାସୀ ଓ ନଗରବାସୀର ମିତ୍ରତା । ଏହି ଚେତନା ଉତ୍କଳୀୟ ରକ୍ତରେ ଅନାଦି କାଳରୁ ନିରବଚ୍ଛିନ୍ନ ଭାବରେ ପ୍ରବହମାନ । କୌଣସି କୌଣସି ଆଦିମ ଅଧିବାସୀଙ୍କ ଗୃହରେ ଏବେ ମଧ୍ୟ ଏକ ଶୁଷ୍କ ତରୁ ପୋତା ହୋଇ ରହିଥାଏ, ଯାହାକୁ ସେମାନେ ପିତୃ ପୁରୁଷ/ ଦେବତା ଜ୍ଞାନ କରିଥାନ୍ତି ଏବଂ ଏହି ଦେବତା ପରିବାରର ସୁଖଦୁଃଖର ନିୟାମକ, ସାକ୍ଷୀ, ଦ୍ରଷ୍ଟା ହୋଇଥାନ୍ତି । ଶ୍ରୀଜଗନ୍ନାଥ ଉତ୍କଳୀୟ ଚେତନାରେ ଅନୁରୂପ





ଭାବରେ ସମସ୍ତ ସୁଖ ଦୁଃଖର ସାକ୍ଷୀ, ସାଥୀ, ନିୟନ୍ତା ହୋଇ ଆସିଛନ୍ତି । ଶ୍ରୀଜଗନ୍ନାଥ ହିଁ ଉତ୍କଳୀୟର ସର୍ବଶ୍ରେଷ୍ଠ ଓ ସର୍ବଶେଷ ପରିଚୟ । ସକଳ ସୁଖ ସମୃଦ୍ଧିର ନିୟାମକ । ଶ୍ରୀଜଗନ୍ନାଥ, ଏହି ନାଆଁଟିର ମାଦକତା, ମାହାତ୍ମ୍ୟ ସମସ୍ତଙ୍କର ମଥାନତ କରିଦିଏ । ଶ୍ରୀଜଗନ୍ନାଥ ମହାନ ହୋଇ ଉଠନ୍ତି ଏବଂ ତାଙ୍କ ଅଧିଷ୍ଠାନ ମହାନ ହୋଇଯାଏ । ଏହାର ଏକମାତ୍ର କାରଣ ସେ ସମଦର୍ଶୀଭାବର ପ୍ରତୀକ । ଉପେନ୍ଦ୍ର ତେଣୁ ଯଥାର୍ଥରେ ଲେଖିଛନ୍ତି – ଜଗତି ଜଗତରେ ଜୀମୁତ ଭେଦକରେ ଜାଗ୍ରତ ଜୈତ୍ର ଯା ବିମଳ, ଜଗତ ନାଥ ବୋଲି ଜଗତଯାକ ହୁରି ଜେତ୍ରଙ୍କ ମଧ୍ୟରେ ପ୍ରବଳ, ହେ ନୀଳଦ୍ରୀଶ, ଜାତି ଅଜାତି ସର୍ବଜନ, ଜଙ୍ଗମ ମାତ୍ରେ ସମଜ୍ଞାନ, ଜଗତ ଜିଣାଭୋଗ ଜଗଦ୍ଦୀଶ ସମ୍ଭବ ଜାଣି ତରନ୍ତି ହୀନଜନ ହେ । (ନୀଳାଦ୍ରୀଶ ଚଉତିଶା) ଜଗତବାସୀଙ୍କୁ ସମଜ୍ଞାନ କରୁଥିବା ଜଗତ ନାଥଙ୍କର ସାରା ଜଗତରେ ଜୈତ୍ର ପତାକା ଉଡୁଛି । ତାଙ୍କର କୃପା କୈବଲ୍ୟ ଦୀନହୀନର ସମ୍ବଳ । ଏଥିପାଇଁ ସେ ଜଗତ ପ୍ରସିଦ୍ଧ, ଜଗତର ନାଥ, ଜଗନ୍ନାଥ । ସେ ଅତୁଳନୀୟ ।

ସେବନରେ ଜାତିଭେଦ, ଶୌଚାଶୌଚ ବିଚାରରହିତ ହେତୁ ଶ୍ରୀଜଗନ୍ନାଥଙ୍କ ମହାପ୍ରସାଦର ମାହାତ୍ମ୍ୟ ଅବର୍ଣ୍ଣନୀୟ । କେଉଁ ଅନାଦି କାଳରୁ ଏହି ଭେଦହୀନ ଭାବଟିକୁ ନେଇ ଶ୍ରୀଜଗନ୍ନାଥ ସ୍ୱୟଂ ଅଚଳ ମହାମେରୁ ହୋଇ ବସିଛନ୍ତି । ଏହି ଭେଦହୀନ ଭାବନାଟି ସଂପୂର୍ଣ୍ଣ ଉତ୍କଳୀୟ ସମାଜର ଆତ୍ମିକ ବିଭବ । ଏହି ମାଟିର ଶବର ସଂସ୍କୃତିର ସମୃଦ୍ଧିର ପରିଚାୟକ । ମହାକବି ସାରଳା ତାଙ୍କର ମହାଭାରତରେ ଶବର ନାରାୟଣ ପ୍ରସଙ୍ଗର ଅବତାରଣା କରି ଏହି ସାର୍ବଜନୀନ ଭାବଟି ହିଁ ବାରମ୍ବାର ବ୍ୟକ୍ତ କରିଛନ୍ତି । ଶବରର ମନ୍ତ୍ରହୀନ କ୍ରିୟାହୀନ ସରଳ ଭକ୍ତି ଭାବଟିକୁ ବ୍ୟକ୍ତ କରିବାକୁ ଯାଇ ସାରଳା ଲେଖିଛନ୍ତି–

ଅର୍ଣ୍ଣ ପୁଆୟେକ ଛାମୁରେଣ ଥୋଇବୁ
ମାଧବ ଭୁଞ୍ଜ ବୋଲି ଆଡ଼େ ହୋଇଯିବୁ ।

ଏପରି ଅନାବିଳ ଭକ୍ତି ସମ୍ଭବତଃ ଶବର ପାଖରେ ହିଁ ସମ୍ଭବ ଥିଲା । ଏଣୁ ଏହା ଥିଲା ଗୋପନୀୟ । ଭାବମାତ୍ରକେ ଗୋପନୀୟ ଗୂଢ଼ । ଭକ୍ତିରେ ପ୍ରଚାରର ସ୍ଥାନ କାହିଁ ? ଭକ୍ତି ଏକ ସ୍ୱତଃ ସ୍ଫୁରିତ ସ୍ୱାଭାବିକ ଅଭିବ୍ୟକ୍ତି । ତେଣୁ ଶବରୀ ନାରାୟଣଙ୍କ ମୁଖରେ ସାରଳା କହୁଛନ୍ତି– ତୁ ମତେ ପାଣି ପତ୍ର ଦେଇ କରୁଥିବୁ ପୂଜା, ନ ଜାଣିବେଟି କୁଟୁମ୍ବ ତୋର ପୁତ୍ର କି ଭାରିଯା ।

ଶ୍ରୀଜଗନ୍ନାଥଙ୍କ ପ୍ରତି ଏହି ଅନାବିଳ, ନିଷ୍କପଟ, ସରଳ ଭାବଟି ଆଜି ବି ଶବର ହୃଦୟରେ ପ୍ରଚ୍ଛନ୍ନ ରହିଛି । ଶିଳାଖଣ୍ଡରୂପୀ ଶବରୀ ନାରାୟଣରୁ ଦାରୁରୂପୀ ଜଗନ୍ନାଥଙ୍କ ପର୍ଯ୍ୟନ୍ତ ବିବର୍ତ୍ତନ ଧାରାରେ ବହୁ ଅଭିବ୍ୟକ୍ତି ମଧ୍ୟରେ ଶାବର, ବୌଦ୍ଧ, ଜୈନ, ଶୈବ, ସୌର, ଗାଣପତ୍ୟ, ଶାକ୍ତ, ବୈଷ୍ଣବ ପ୍ରଭୃତି ସମସ୍ତ ମତବାଦର ସମନ୍ୱୟ ଘଟିଛି ସିନା କାହାର ସତ୍ତା ହଜିଯାଇନାହିଁ । ସମସ୍ତଙ୍କୁ ଆତ୍ମସ୍ଥ କରିବାର ଭାବନାହିଁ ଶ୍ରୀଜଗନ୍ନାଥ ବିଚାରର ଅନନ୍ୟ ବିଭବ । ଶତାବ୍ଦୀ ଶତାବ୍ଦୀ ଧରି ଶ୍ରୀଜଗନ୍ନାଥଙ୍କ ସହ ଆତ୍ମୀୟତା କରି ଆସିଛି ଉତ୍କଳୀୟ ସମାଜ । ଶେଷରେ ଶ୍ରୀଜଗନ୍ନାଥ ହୋଇଯାଇଛନ୍ତି ଉତ୍କଳର ପ୍ରାଣ ସ୍ପନ୍ଦନ । ସହସ୍ର ବର୍ଷର ସାମାଜିକ ବିବର୍ତ୍ତନ ଭିତରେ ଶ୍ରୀଜଗନ୍ନାଥ ଏ ଜାତିର ଆତ୍ମସତ୍ତାପରି ଅପରିବର୍ତ୍ତନୀୟ ରହିଛନ୍ତି । ଉତ୍କଳର ଅନ୍ୟ ଅଞ୍ଚଳ ଅପେକ୍ଷା କୋରାପୁଟ ଭଳି ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ସାମାଜିକ ବିବର୍ତ୍ତନର ପ୍ରଭାବ ସର୍ବନ୍ୟୂନ । ସେଥିପାଇଁ ଏଠାର ଆଦିବାସୀଙ୍କଠାରେ ସେହି ନିଖୁଣ ନିଷ୍କପଟ ଭାବଟି ଅକ୍ଷୁଣ୍ଣ ରୂପେ ଆଜି ମଧ୍ୟ ଉପଲବ୍ଧ ହୋଇଥାଏ ।

ଅଷ୍ଟାଦଶ ଶତକର ପ୍ରାକ୍‌କାଳରେ ମହାରାଜା ବିଶ୍ୱମ୍ଭର ଦେବ ନନ୍ଦପୁରରୁ ନାରାୟଣପାଟଣାକୁ ରାଜଧାନୀ ସ୍ଥାନାନ୍ତର କଲେ ଏବଂ ଚମ୍ପାବତୀ ନାମ୍ନୀ କନ୍ଧ ରମଣୀଙ୍କର ପାଣିଗ୍ରହଣ କରିଥିଲେ । ଏହା ବ୍ରାହ୍ମଣ ବିଦ୍ୟାପତିଙ୍କର ଶବର କନ୍ୟା ଲଳିତାଙ୍କ ପାଣିଗ୍ରହଣ ଅନୁରୂପ ମନେହୁଏ । ସେ ବୈଷ୍ଣବ ଦୀକ୍ଷାଗ୍ରହଣ କରିଥିଲେ । ଗଜପତି ମହାରାଜାମାନଙ୍କ ସହିତ ନନ୍ଦପୁର ତଥା ଜୟପୁର ରାଜନ୍ୟମଣ୍ଡଳୀର ଘନିଷ୍ଠ ସଂପର୍କ ଥିଲା । ସର୍ବୋପରି ମହେନ୍ଦ୍ରାଂଚଳର ଆଦିବାସୀ ଶବରଙ୍କ ସହ ନନ୍ଦପୁର ରାଜ୍ୟର ଆଦିବାସୀଙ୍କର ସଂପର୍କ ଅତି ନିବିଡ଼ ଥିଲା । ନନ୍ଦପୁରର ସୂର୍ଯ୍ୟବଂଶୀ ରାଜାମାନେ ଆଦିବାସୀ ଅଧ୍ୟୁଷିତ ଏହି ଅଞ୍ଚଳରେ

ଜଗନ୍ନାଥ ଚେତନାକୁ ଉଜ୍ଜୀବିତ କରାଇବାରେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ । ରାଜ୍ୟର ନନ୍ଦପୁର, ଜୟପୁର, ନବରଙ୍ଗପୁର, ରାୟଗଡ଼ା, କାଶୀପୁର, କୋଟପାଡ଼, ବିଷମକଟକ ଆଦି ପ୍ରମୁଖ ସ୍ଥାନମାନଙ୍କରେ ଶ୍ରୀଜଗନ୍ନାଥ ଅଧିଷ୍ଠିତ ହୋଇଥିଲେ । ଶ୍ରୀଜଗନ୍ନାଥଙ୍କ ପ୍ରତି ଆଦିବାସୀ ଅଧ୍ୟୁଷିତ ଏ ଅଞ୍ଚଳର ଜନତାର ଅଖଣ୍ଡ ବିଶ୍ୱାସର ପ୍ରମାଣ ଦିଏ ଏହି ଅଧିଷ୍ଠାନମାନ ।

ଗତ ଶତାବ୍ଦୀର ସତୁରୀ ଦଶକ ଶ୍ରୀଜଗନ୍ନାଥ ଚେତନାର ବ୍ୟାପକ ପ୍ରଚାର ଓ ପ୍ରସାର ପାଇଁ ଏକ ଉଲ୍ଲେଖଯୋଗ୍ୟ କାଳ । ଏହି ଦଶକରେ ମାନବବାଦୀ ଚେତନାର ବିପୁଳ ଉନ୍ମେଷ କାଳରେ ଉତ୍କଳ ତଥା ଉତ୍କଳ ବାହାରେ ସମନ୍ୱୟ ଓ ସଦ୍‌ଭାବନା ଧର୍ମୀ ଶ୍ରୀଜଗନ୍ନାଥ ବିଚାରର ପରିପ୍ରସାର ଏକ ଐତିହାସିକ ଆବଶ୍ୟକତା । ଆଲୋଚ୍ୟ ଦଶକର ପ୍ରାକ୍‌କାଳରେ କୋରାପୁଟଠାରେ ଶ୍ରୀଜଗନ୍ନାଥଙ୍କ ଅଧିଷ୍ଠାନ ଏ କ୍ଷେତ୍ରକୁ ଶାବର ଶ୍ରୀକ୍ଷେତ୍ରର ମର୍ଯ୍ୟାଦା ଦେବା ସାଙ୍ଗକୁ ଉପାନ୍ତ ଅଞ୍ଚଳରେ ଉତ୍କଳୀୟ ଉଦାର ମାନବବାଦୀ ସଂସ୍କୃତିକୁ ଉଜ୍ଜୀବିତ କରିଛି । ଶବରଗୋଷ୍ଠୀର ପ୍ରଚ୍ଛନ୍ନ ଶ୍ରୀଜଗନ୍ନାଥ ପ୍ରୀତିର ଏହା ଶାଶ୍ୱତ ଅଭିବ୍ୟକ୍ତି ମାତ୍ର । ମୈତ୍ରୀ ଏହି ଭାବର ରୂପାନ୍ତର ମାତ୍ର । ଏଠାରେ ବିଶେଷ ଲକ୍ଷଣୀୟ ଯେ ସମୟକ୍ରମେ ଓଡ଼ିଶାର ଦକ୍ଷିଣ ପ୍ରାନ୍ତ ବିନ୍ଦୁ ମୋଟୁ ଯାହା ଆନ୍ଧ୍ର ପ୍ରଦେଶ, ଓଡ଼ିଶା ଓ ଛତିଶିଗଡ଼ (ତତ୍‌କାଳୀନ ମଧ୍ୟପ୍ରଦେଶ)ର ସୀମାସ୍ଥଳୀ । ସେଇଠି ଶବରୀ ଓ ସିଲେରୁ ନଦୀଦ୍ୱୟର ସଙ୍ଗମ ସ୍ଥଳରେ ଶ୍ରୀଜଗନ୍ନାଥ ମନ୍ଦିର ପ୍ରତିଷ୍ଠିତ ହୋଇଛି । ଓଡ଼ିଶାର ଏହି ପ୍ରାନ୍ତ ବିନ୍ଦୁରେ ଶ୍ରୀଜଗନ୍ନାଥଙ୍କ ଉଡ୍‌ଡୀୟମାନ ଜୈତ୍ର ନିଶାଣ ଶ୍ରୀଜଗନ୍ନାଥ ଚେତନାର ସାର୍ବଭୌମତ୍ୱର ସ୍ୱଷ୍ଟ ପରିପ୍ରକାଶ । ପରବର୍ତ୍ତୀ କାଳରେ ବନ୍ଧୁଗାଁ ଓ ଲକ୍ଷ୍ମୀପୁରଠାରେ ସ୍ଥାନୀୟ ଅଧିବାସୀଙ୍କ ଉଦ୍ୟମରେ ଶ୍ରୀଜଗନ୍ନାଥ ଅଧିଷ୍ଠିତ ହୋଇ ଆଦିବାସୀଙ୍କ ମଧ୍ୟରେ ସୁପ୍ତ ଜଗନ୍ନାଥ ପ୍ରୀତି, ସାର୍ବଜନୀନ ମାନବପ୍ରେମ, ପରମ ଉଦାରତା ସଂପ୍ରତି ଜାଗ୍ରତ ହୋଇଛି । ତେଣୁ ସମ୍ଭବତଃ ନନ୍ଦପୁର ବ୍ଲକ ଅନ୍ତର୍ଗତ ଅପରକଣ୍ଡାପଲ୍ଲୀ ନାମକ ଅଖ୍ୟାତ କନ୍ଧପଲ୍ଲୀର ଆବାଳବୃଦ୍ଧବନିତା ଶ୍ରୀଜଗନ୍ନାଥଙ୍କର ନିତ୍ୟ ସେବକ ହୋଇଛନ୍ତି । ଶାବର ଶ୍ରୀକ୍ଷେତ୍ରରେ ସେମାନଙ୍କ ଅକୁଣ୍ଠ ଅଯାଚିତ ସେବା, ଭକ୍ତସୁଲଭ ଅନୁରକ୍ତି ଓ ନିଷ୍ଠା ଅନନ୍ୟ । ଆଜି ଆଦିବାସୀଙ୍କ ଏହି ମହାଭାବ ଅନ୍ୟତ୍ର ପ୍ରକଟିତ ।

ଓଡ଼ିଶାର ସର୍ବୋଚ୍ଚ ଗିରିଶୃଙ୍ଗ ଦେଓମାଳିର ପାଦଦେଶରେ କୋଟିଆ ଗ୍ରାମପୁଞ୍ଜ । ଆନ୍ଧ୍ର ସୀମାକୁ ଲାଗି ଏହି ଅଞ୍ଚଳ ସଂପ୍ରତି ରାଜନୈତିକ ଦୃଷ୍ଟିକୋଣରୁ ବହୁ ଚର୍ଚ୍ଚିତ । ପଟ୍ଟାଙ୍ଗୀ ପଞ୍ଚାୟତ ସମିତି ଅନ୍ତର୍ଭୁକ୍ତ କୋଟିଆ ଗ୍ରାମପଞ୍ଚାୟତର ପ୍ରମୁଖ ଗ୍ରାମ କୋଟିଆ । କୋରାପୁଟ ଦେଇ ବିଜୟନଗର ଆଡ଼କୁ ଲମ୍ବିଥିବା ୪୩ ନମ୍ବର ଜାତୀୟ ରାଜପଥରେ ଗଲେ ପଟ୍ଟାଙ୍ଗୀ ପୂର୍ବରୁ ପଡ଼େ କୁନ୍ଦୁଲି । ଏଇ ଗାଆଁରେ ସାପ୍ତାହିକ ହାଟ ବସେ । ଏହି ହାଟଠାରୁ ଉତ୍ତର ଦିଗକୁ ଲମ୍ବିଥିବା ରାସ୍ତାରେ ପ୍ରାୟ ୨୬ କିଲୋମିଟର ଗଲେ ପଡ଼େ କୋଟିଆ, ଏକ ନିଭୃତ ଆଦିବାସୀ ପଲ୍ଲୀ । କୁନ୍ଦୁଲିଠାରୁ କୋଟିଆ ଗଲାବେଳେ ପ୍ରାୟ ୧୬ କିଲୋମିଟର ପରେ ବାମପଟରେ ଅଦୂରରେ ଦିଶୁଥାଏ ଦେଓମାଳି, ରାସ୍ତାଠାରୁ ପ୍ରାୟ ୬ କି.ମି. ଦୂରରେ । ଏଇଠି ଠିଆହେଲେ ଦର୍ଶକ ଚଉଦିଗକୁ ଅନାଇ ଆତ୍ମହରା ହୋଇପଡ଼େ । ନଗର ସଭ୍ୟତାଠାରୁ ବହୁ ଦୂରରେ ଏହି ରମଣୀୟ ସ୍ଥାନ ଭାରି ଏକାନ୍ତ, ନିଛାଟିଆ ଜଣାପଡ଼େ । ଆଧୁନିକ ପ୍ରଗତିଠାରୁ ବହୁ ଦୂରରେ ଏହି ନିଭୃତ କୋଟିଆଠାରେ ପହଞ୍ଚିଗଲେ ସମସ୍ତ ଅତ୍ୟାଧୁନିକ ପରିବେଶ ସ୍ୱପ୍ନତୁଲ୍ୟ ପ୍ରତୀତି ସୃଷ୍ଟି କରେ । ତେବେ ପାହାଡ଼ ଓ ଅରଣ୍ୟାନୀ ପରିବେଷ୍ଟିତ ପ୍ରକୃତିର ଏହି ନିକାଞ୍ଚନ କୋଳରେ କୋଟିଆର ଆଦିବାସୀଙ୍କ ସରଳ ଜୀବନଧାରା ଜାଗତିକ ମୋହମାୟାଠାରୁ ଦୂରକୁ ନେଇଯାଏ । ସେମାନଙ୍କର ନିଛକ ଜଗନ୍ନାଥ ପ୍ରୀତି ଯେକୌଣସି ଜଗନ୍ନାଥ ପ୍ରେମୀଙ୍କୁ ଅଭିଭୂତ କରିଦେବ ।

ସେଦିନ କେଉଁ ଏକ ଦେବଦୁର୍ଲ୍ଲଭ ମୁହୂର୍ତ୍ତରେ କେଉଁ ଭକ୍ତର ନିବେଦନକୁ ଅଙ୍ଗୀକାର କରି ଶ୍ରୀକ୍ଷେତ୍ରରେ କେଉଁ ଦକ୍ଷ ବିନ୍ଧାଣିଙ୍କର କରରେ ଦାରୁବିଗ୍ରହ ଧରି ଚତୁର୍ଦ୍ଧାମୂର୍ତ୍ତି ଶାବର ଶ୍ରୀକ୍ଷେତ୍ରରେ ବିରାଜମାନ କରିଥିଲେ । ସାଙ୍ଗରେ ଧରି ଆସିଥିଲେ ପରମ ସେବକ ପଣ୍ଡିତ ସଦାଶିବ ରଥଶର୍ମାଙ୍କୁ । ଶବର ଦେବତାଙ୍କୁ ଶାବର ଅଧ୍ୟୁଷିତ ଭୂମିରେ ଶବର ପାଖରେ ପହଞ୍ଚାଇ ଦେବାର ଯେଉଁ ସାଧୁ ସଂକଳ୍ପ ଥିଲା ସ୍ୱର୍ଗତ



ରଥଶର୍ମାଙ୍କର ଆଜି ତାହା ଯଥାର୍ଥରୂପ ପରିଗ୍ରହ କରିଛି । ଆଦିବାସୀ ହୃଦୟର ପ୍ରଚ୍ଛନ୍ନ ମହାଭାବ ଉଦ୍ରେକ ହୋଇଛି । ସେମାନେ ସ୍ୱତଃ ପ୍ରବୃତ୍ତ ହୋଇ କୋଟିଆଠାରେ ଏକ କ୍ଷୁଦ୍ର ମନ୍ଦିର ନିର୍ମାଣ କରିଛନ୍ତି, ଯେଉଁଠି ତାଙ୍କର ପ୍ରାଣପ୍ରିୟ ଦାରୁଦେବତା ଶ୍ରୀଜଗନ୍ନାଥଙ୍କ ଉଡ୍‌ଡ୍ଡୀୟମାନ ଗୈରିକ ପତାକା ବହମାନ ପବନରେ ବହୁ ଦୂରରୁ ଭକ୍ତଙ୍କୁ ଆହ୍ୱାନ ଜଣାଏ । ଶାବର ଶ୍ରୀକ୍ଷେତ୍ରରୁ ଦାରୁବିଗ୍ରହ ଧରି ଚତୁର୍ଦ୍ଧାମୂର୍ତ୍ତି ମୋଟୁ ଯାଇଛନ୍ତି, ବନ୍ଧୁଗାଁ ଯାଇଛନ୍ତି ଏବଂ ଯାଇଛନ୍ତି ଲକ୍ଷ୍ମୀପୁର । ଆଜି ସେମିତି ସୁଦକ୍ଷ ବିନ୍ଧାଣି ହସ୍ତରେ ରୂପ ପରିଗ୍ରହ କରିଛନ୍ତି ଦାରୁବ୍ରହ୍ମ । ଶବରର ବ୍ୟାକୁଳତା ପରିପୃକ୍ତ ହୋଇଛି ଯେମିତି । ଆତୁର ପ୍ରାଣରେ ସେମାନେ ଅପେକ୍ଷା କରିଥିଲେ ସେହି ଶୁଭମୁହୂର୍ତ୍ତକୁ । ତିନିଠାକୁର ଆସିବେ, ଆସିବେ ଠାକୁର ରାଜା । ସେଇ ଆକାଙ୍କ୍ଷିତ ମୁହୂର୍ତ୍ତ ଆସିଗଲା ସେଦିନ । ୨୦୦୪ମସିହା ମଇ ମାସ ଏକ ତାରିଖ । ଭକ୍ତଙ୍କ ଅପୂର୍ବ ଉଲ୍ଲାସ ମଧ୍ୟରେ ତିନିଠାକୁର ନବନିର୍ମିତ ମନ୍ଦିରରେ ପ୍ରବେଶ କଲେ । ଠାକୁର ରାଜା ଗଜପତି ଦିବ୍ୟସିଂହ ଦେବଙ୍କ ଉପସ୍ଥିତିରେ ତିନିଠାକୁର ରତ୍ନସିଂହାସନରେ ବିଜେ କଲେ । ଗଜପତି ମହାରାଜାଙ୍କ ଗହଣରେ ଆସିଥିଲେ ସେଦିନ ତାଙ୍କର କୁଳଗୁରୁ ଏବଂ ଓଡ଼ିଶାର ବହୁ ଗଣ୍ୟମାନ ବିଦ୍ୱଜ୍ଜନ । ବହୁ ମୁର୍ଦ୍ଧନ୍ୟ ବ୍ୟକ୍ତିଙ୍କ ଉପସ୍ଥିତିରେ ସମାହିତ ହୋଇଥିଲା ହୋମ ଯଜ୍ଞାଦି ପ୍ରତିଷ୍ଠା କର୍ମ । କାର୍ଯ୍ୟକ୍ରମ ଅନୁସାରେ ତିନିଠାକୁରଙ୍କ ମନ୍ଦିର ପ୍ରବେଶାନ୍ତେ ଗଜପତି ମହାରାଜାଙ୍କଠାରୁ ସମବେତ ଜନତାଙ୍କ ଉଦ୍ଦେଶ୍ୟରେ ଆଶୀର୍ବଚନ ସ୍ୱତଃ ପରିସ୍ଫୁଟ ହୋଇଥିଲା । ସେତେବେଳେ ସେ ନିଃସଙ୍କୋଚରେ ସ୍ୱୀକାର କରିଥିଲେ ଶବର ପ୍ରାଣ ପ୍ରିୟ ଦେବତାଙ୍କର ଆଜି ବିଶ୍ୱରେ ବ୍ୟାପି ଯାଇଛି ଖ୍ୟାତି, ଏକ ଚେତନା ରୂପରେ । ପ୍ରଶାନ୍ତିର ପ୍ରଲେପ ବୋଲି ଦେବାପାଇଁ ବିଶ୍ୱରେ ଏ ଚେତନା ହିଁ ପରମ ପାଥେୟ । ଶବର ଦେବତା ଆଜି ଶବରଙ୍କ ଗହଣରେ ବିରାଜମାନ । ପ୍ରିୟଜନଙ୍କ ଡ଼ାକରାରେ ସେ ବିମୋହିତ ।

ଶ୍ରୀଜଗନ୍ନାଥ ସଂସ୍କୃତି ତଥା ଉତ୍କଳର ସାଂସ୍କୃତିକ ଇତିହାସରେ ଏହାଥିଲା ନିଶ୍ଚିତ ଭାବରେ ଏକ ଉଲ୍ଲେଖଯୋଗ୍ୟ ଘଟଣା । ସେଦିନର ସ୍ମୃତି ଆଜି ରୋମାଞ୍ଚ ସୃଷ୍ଟି କରୁଛି । ଭାବବିହ୍ୱଳ ଅଗଣିତ ଆଦିବାସୀ ଜନତା ପାଖପଡ଼ିଶା ଗାଆଁମାନଙ୍କରୁ ଧାଇଁ ଆସିଛନ୍ତି । ପାହାଡ଼ର ଧାରରେ ଠାକୁରଙ୍କ ମନ୍ଦିର ଆଗକୁ ଅଣ ଓସାରିଆ ରାସ୍ତାଟିଏ । ପାହାଡ଼ର ପଛକୁ ଗହୀର ଗହ୍ୱର, ଆଖି ପାଉନାହିଁ । ତିଖ ହୋଇ ଉଠିଛି ପାହାଡ଼ । ପାହାଡ଼ ପରେ ପୁଣି ପାହାଡ଼ । ମଝିରେ ମଝିରେ ସଂକୀର୍ଣ୍ଣ ଗିରିପଥ ଅଥବା ଜଳବାହୀ ନାଳ । ଅପୂର୍ବ, ସ୍ୱପ୍ନିଳ ଏ ଦୃଶ୍ୟ । ତା'ରି ଭିତରେ ଏକ ପାହାଡ଼ ପାର୍ଶ୍ୱରେ ଶ୍ରୀଜଗନ୍ନାଥଙ୍କ ଅଧିଷ୍ଠାନ । ଏହାର ପଛ ପଟକୁ ରହିଛି ଆମ ରାଜ୍ୟର ସୀମା । ସୀମାଟି ଠିକ୍ ଭାବରେ ନିର୍ଦ୍ଧାରିତ ହୋଇପାରିନି ବୋଲି ସଂପ୍ରତି ବିବାଦ ଭିତରେ ରହିଛି ଏହି ଅଞ୍ଚଳ । ତେବେ ଶ୍ରୀଜଗନ୍ନାଥ ଅଧିଷ୍ଠିତ ହେଲାପରେ ଅଭୂତପୂର୍ବ ଉନ୍ମାଦନା ଏ ଅଞ୍ଚଳରେ ଖେଳିଯାଇଛି । ଏବେ ଏକ ପାର୍ଶ୍ୱରେ ଦେଓମାଳି ପର୍ବତର ପାଦଦେଶ ପର୍ଯ୍ୟନ୍ତ ଲମ୍ବିଥିବା ନବନିର୍ମିତ ପକ୍କାରାସ୍ତା । ଅପର ପାର୍ଶ୍ୱରେ କୋଟିଆ ଗ୍ରାମପୁଞ୍ଜ ଅଭିମୁଖେ ଯିବାପାଇଁ ଅନୁରୂପ ରାସ୍ତା । ରାସ୍ତାରେ ସର୍ପିଳ ଗତିରେ ପାହାଡ଼ ଉପରକୁ ଉଠିଲାବେଳେ ଦର୍ଶକ ଉଭୟ ପାର୍ଶ୍ୱର ପ୍ରାକୃତିକ ଦୃଶ୍ୟରେ ବିମୋହିତ ହୋଇ ପଡ଼ିବ । ଦେଓମାଳି ଶୃଙ୍ଗର ପାଦଦେଶରେ ଠିଆହୋଇ ଚାରି ଆଡ଼କୁ ଅନେଇଲେ ତଳକୁ ତଳକୁ ଖାଲି ପାହାଡ଼ ଆଉ ପାହାଡ଼ ମାଇଲ ମାଇଲ ଧରି । ଏକ ନିର୍ଜନ ପରିବେଶରେ ଉତ୍ତୁଙ୍ଗ ଦେଓମାଳିର ଶିଖରକୁ ଅନେଇ ଆପଣାର କ୍ଷୁଦ୍ରତା ଅନୁଭବ କରିବ ମଣିଷ । ସେମିତି ଅନୁଭବ ଆସିବ ଶ୍ରୀଜଗନ୍ନାଥଙ୍କ ମନ୍ଦିର ସମ୍ମୁଖରେ ଠିଆହେଲେ । ଅଖିଳବ୍ରହ୍ମାଣ୍ଡର ଅଧୀଶ୍ୱର ଶ୍ରୀଜଗନ୍ନାଥ କେତେ ଉପରେ ବିରାଜମାନ କରି ସାରା ଜଗତକୁ ଦେଖୁଛନ୍ତି ଯେମିତି ଅପଲକ ଚକା ଚକା ଆଖିରେ । ସୀମାନ୍ତ ଅଞ୍ଚଳରେ ଓଡ଼ିଶାର ସାଂସ୍କୃତିକ ସ୍ତମ୍ଭ ସ୍ୱରୂପ ଏହି ଶ୍ରୀଜଗନ୍ନାଥ ମନ୍ଦିର । ଏହି ଅଞ୍ଚଳର ସାମଗ୍ରିକ ଚେତନାକୁ ଉଜ୍ଜୀବିତ କରି ରଖିବାପାଇଁ ଜାଗ୍ରତ ପ୍ରହରୀ ପରି ସାଂସ୍କୃତିକ ସାର୍ବଭୌମତ୍ୱ ତଥା ଅଖଣ୍ଡତାକୁ ବଜାୟ ରଖିବାପାଇଁ ଶ୍ରୀଜଗନ୍ନାଥଙ୍କୁ ଧାରଣ କରି ଏଇଠି ଅଧିଷ୍ଠିତ । ଏସବୁ ସମ୍ଭବ ହୋଇଛି ସେଇ ଦାରୁବ୍ରହ୍ମଙ୍କ ଅଶେଷ କରୁଣାରୁ ।





ଯେଉଁ ଦିନ ପ୍ରଥମ ଥର ପାଇଁ କୋଟିଆରେ ପତିତପାବନ ବାନା ଉଡ଼ାଇ ରାସ୍ତାରେ ଗଡ଼ି ଗଡ଼ି ଗଲା ଶ୍ରୀଜଗନ୍ନାଥଙ୍କ ରଥ ଓ କୋଟିଆ ଗ୍ରାମପୁଞ୍ଜର ଆଦିବାସୀଙ୍କର ହର୍ଷୋଦ୍‌ଫୁଲ୍ଲ ବିପୁଳ ସମାବେଶ ଭିତରେ ଏହି ଭବ୍ୟ ନବ୍ୟଯାତ୍ରା ଯେଉଁ ପରିବେଶ ସୃଷ୍ଟି କରିଥିଲା, ତାହା ଅନେକଙ୍କ ପାଇଁ ଆଣିଦେଇଥିଲା ଏକ ନୂଆ ଅନୁଭବ । ବିଚିତ୍ର ଭାବାବେଶରେ ରଥ ଟାଣୁଥିଲେ ଶହ ଶହ ଆଦିବାସୀ ଜନତା । ଶ୍ରୀଜଗନ୍ନାଥଙ୍କ କନ୍ଧପୂଜକ ବେକରେ ମାଳପକାଇ ଠାକୁରଙ୍କ ପାଖରେ ରଥରେ ଠିଆହୋଇ ଭାବାପ୍ଳୁତ ନେତ୍ରରେ ଅନାଇଁ ରହିଥିଲେ । ବିଚିତ୍ର ଏ ଠାକୁର, ବିଚିତ୍ର ତା'ରି ଲୀଳା । କେମିତି ଏତେସବୁ ସମ୍ଭବ ହୋଇଗଲା । ଅଳ୍ପଦିନ ଭିତରେ କୋଟିଆ ବଦଳି ଗଲା । ସେହିଦିନୁ ବର୍ଷ ବର୍ଷ ପରେ ଯାତ୍ରା ହେଉଛି କୋଟିଆରେ । ରଥ ପଛେ ପଛେ ପ୍ରଗତି ଗଡ଼ି ଗଡ଼ି ଆସୁଛି କୋଟିଆ ଗ୍ରାମପୁଞ୍ଜକୁ । ପ୍ରଭୁ ଧନ୍ୟ କରିଛନ୍ତି ଏ ଅଞ୍ଚଳର ଅଧିବାସୀଙ୍କୁ, ଅଗଣିତ ଆଦିସେବକଙ୍କୁ ।

ଚଳିତ ବର୍ଷର ଶ୍ରୀଗୁଣ୍ଡିଚା ଯାତ୍ରା ହେବ କୋଟିଆରେ ଦଶମ ରଥଯାତ୍ରା । ବର୍ଷକୁ ବର୍ଷ ଶ୍ରଦ୍ଧାଳୁ ଭକ୍ତଙ୍କ ସଂଖ୍ୟା ବଢ଼ି ବଢ଼ି ଚାଲିଛି । ଏକ କ୍ଷୁଦ୍ର ଅଥବା ରମଣୀୟ ରଥରେ ଚତୁର୍ଦ୍ଧାମୂର୍ତ୍ତି ବିଜେ କରନ୍ତି । ପ୍ରଥମ ବର୍ଷରୁ ହିଁ ଶ୍ରୀଗୁଣ୍ଡିଚା ପରଦିନ ଅର୍ଥାତ୍ ଆଷାଢ଼ ଶୁକ୍ଳ ତୃତୀୟା ଦିନ ଏଠାରେ ଯାତ୍ରା ଅନୁଷ୍ଠିତ ହେବା ପରମ୍ପରା ସୃଷ୍ଟି ହୋଇଛି । ଏହାର ଉଦ୍ଦେଶ୍ୟ ହେଲା ଶାବର ଶ୍ରୀକ୍ଷେତ୍ରରେ ତଥା ପଟ୍ଟାଙ୍ଗୀଠାରେ ଶ୍ରୀଗୁଣ୍ଡିଚା ଯାତ୍ରା ନିର୍ଦ୍ଦିଷ୍ଟ ଦିନ ଅନୁଷ୍ଠିତ ହେବ ଏବଂ ପରବର୍ତ୍ତୀ ଦିନ ବହୁ ଆଦିବାସୀ କୋଟିଆରେ ଏକତ୍ର ହେବା ସୁବିଧା ହୋଇପାରିବ । ପଟ୍ଟାଙ୍ଗୀ ତହସିଲଦାର ଏହି ଯାତ୍ରାର ଦାୟିତ୍ୱ ନେଇଥାନ୍ତି । ପୁଣି ଶାବର ଶ୍ରୀକ୍ଷେତ୍ରରୁ ଆବଶ୍ୟକୀୟ ଉପକରଣମାନ ପ୍ରତିବର୍ଷ ଜଣେ ପୂଜକଙ୍କ ସହ ପ୍ରେରିତ ହୁଏ । ନିକଟସ୍ଥ ପଟ୍ଟାଙ୍ଗି, ସୁନାବେଡ଼ା, ଦାମନଯୋଡ଼ି ତଥା କୋରାପୁଟର ବହୁ ଗଣ୍ୟମାନ୍ୟ ବ୍ୟକ୍ତି ଏହି ଯାତ୍ରାରେ ପ୍ରତିବର୍ଷ ଉପସ୍ଥିତ ରହନ୍ତି ।

କୋଟିଆ ଯାତ୍ରାର ସ୍ୱାତନ୍ତ୍ର୍ୟ ରହିଛି । ପାହାଡ଼ ଉପରେ ଲମ୍ବିଥିବା ରାସ୍ତାରେ ମହାପ୍ରଭୁଙ୍କ ରଥ ଗଡ଼ିଗଡ଼ି ଚାଲେ । ରାସ୍ତାର ବାମ ପାର୍ଶ୍ୱଟି ତିଖ ଡ଼ାହାଣ ପାର୍ଶ୍ୱଟି ଗଡ଼ାଣିଆ ପ୍ରାୟ ପ୍ରତିବର୍ଷ ବର୍ଷା ହେଉଥାଏ । ବର୍ଷେ ବର୍ଷେ ପ୍ରବଳ ବର୍ଷା । ରଥଯାତ୍ରାକୁ ଉପଭୋଗ କରନ୍ତି ଅଗଣିତ ଭକ୍ତ । ବର୍ଷାରେ ଭିଜି ଭିଜି ରଥଟଣା ଥିଲା ବେଳେ ଯେଉଁ ଉନ୍ମାଦନାଭରା ଧ୍ୱନୀ ଯେଉଁ ଭାବବିଭୋର ଭାବରେ ହରିବୋଲ ଘଣ୍ଟି ମୃଦଙ୍ଗର ନାଦ ପାର୍ବତ୍ୟ ଅଞ୍ଚଳରେ ପ୍ରତିଧ୍ୱନିତ ହେଉଥାଏ, ଚତୁର୍ଦ୍ଦିଗରେ ରଥଯାତ୍ରା ପ୍ରକମ୍ପ ସୃଷ୍ଟି କରେ ମେଘମାଳାର ଗୁରୁଗର୍ଜନ ପରି । ପ୍ରାକୃତିକ ପରିବେଶରେ ପ୍ରକୃତିର ସନ୍ତାନଙ୍କର ଅପୂର୍ବ ପ୍ରୀତିର ଆସ୍ୱାଦନ କରି ପ୍ରଭୁ ଚକାଡ଼ୋଳା ମୁରୁକି ହସୁଥାନ୍ତି ଯେମିତି, ଅପାର କରୁଣା ଅଜାଡ଼ି ଦେଉଥାନ୍ତି ପ୍ରଭୁ ଭକ୍ତର ଅନାବିଳ ପ୍ରେମରେ ସ୍ନାତ ହୋଇ ।

ଏ ଯାତ୍ରା ବାସ୍ତବରେ ପ୍ରଗତିର ଯାତ୍ରା କୋଟିଆର ନିଭୃତ ପାହାଡ଼ି ଇଲାକାରେ । ଜାଗରଣର ଏ ଯାତ୍ରା ଜନସମାଜରେ ସର୍ବୋପରି ଓଡ଼ିଶାର ସାର୍ବଭୌମ ଶ୍ରୀଜଗନ୍ନାଥଙ୍କର ଯଥାର୍ଥ ଯାତ୍ରା ଓଡ଼ିଶାର ପ୍ରାଚୀନ ଶବର ସଂସ୍କୃତିର ପୁନଃ ପ୍ରତିଷ୍ଠା ପାଇଁ ନିଭୃତ ଆଦିବାସୀ ଅଧୁଷିତ ଏ ଅଞ୍ଚଳରେ । ବିଶ୍ୱାସ ଶ୍ରୀଜଗନ୍ନାଥ ହିଁ ଏଠାରେ ଯଥାର୍ଥ ପ୍ରେରଣାର ଉତ୍ସ ରୂପେ ଏଠାରେ ବିଦ୍ୟମାନ ହୋଇଛନ୍ତି ଏବଂ ଏହି ଯାତ୍ରାରେ ସେହି ପ୍ରେରଣାର ତରଙ୍ଗ ସୃଷ୍ଟି ହୋଇ ପ୍ରତିଟି ପ୍ରାଣଙ୍କୁ ଉଜ୍ଜୀବିତ କରି ଆସୁଛି ।

ଏଇ ଅଳ୍ପ ଦିନରେ କୋଟିଆର ରୂପ ବଦଳି ଯାଇଛି । ଏକ ଆଧ୍ୟାତ୍ମିକ ବିଚାରରେ ଉଦ୍‌ବୁଦ୍ଧ ଏ ଅଞ୍ଚଳ ଏବେ ଅନେକଙ୍କ ଦୃଷ୍ଟି ଆକର୍ଷଣ କରୁଛି । ଜଗନ୍ନାଥ ମନ୍ଦିର ପାଖରେ ଠିଆହେଲେ ଲାଗୁଛି ଇଏ ଓଡ଼ିଶା ରାଜ୍ୟ । ରଥଯାତ୍ରା ତ ନିଆରା ସ୍ପନ୍ଦନ ଆଣିଦିଏ । ଏଠାରେ ଶ୍ରୀଗୁଣ୍ଡିଚା ପରଦିନ ଅର୍ଥାତ୍ ଆଷାଢ଼ ଶୁକ୍ଳ ତୃତୀୟା ଦିନ ରଥଯାତ୍ରା ଅନୁଷ୍ଠିତ ହୁଏ । ଏଥିପାଇଁ ସମ୍ଭବତଃ ବହୁ ସଂଖ୍ୟକ ଭକ୍ତ ଦର୍ଶକ ପାଖ ପଡ଼ିଶା ନଗରାଞ୍ଚଳରୁ ଓ ଆଦିବାସୀ ଗ୍ରାମମାନଙ୍କରୁ ଆସି ରୁଣ୍ଡ ହୋଇଯାନ୍ତି । ପାହାଡ଼ ଉପରେ ଥିବା ସଂକୀର୍ଣ୍ଣ ରାସ୍ତାଟି ଜନାକୀର୍ଣ୍ଣ ହୋଇପଡ଼େ । ମହାପ୍ରଭୁଙ୍କ କ୍ଷୁଦ୍ର ଅଥଚ ସୁରମ୍ୟ ରଥ ଗଡ଼ିଚାଲେ ଗୁଣ୍ଡିଚା ମନ୍ଦିର ଅଭିମୁଖେ । ପଟ୍ଟାଙ୍ଗୀ ତହସିଲ ଅନ୍ତର୍ଗତ ଏହି ସ୍ଥାନଟିର ଯାତ୍ରା ଦାୟିତ୍ୱ ବହନ କରିଥାନ୍ତି ପଟ୍ଟାଙ୍ଗୀ ତହସିଲଦାର । ଏ ମନ୍ଦିରର ନିର୍ମାଣରେ, ପ୍ରତିଷ୍ଠାରେ ଶାବର ଶ୍ରୀକ୍ଷେତ୍ରସ୍ଥ ଶ୍ରୀଜଗନ୍ନାଥ



ମନ୍ଦିରର ପରିଚାଳନା କମିଟିଙ୍କ ଉଦ୍ୟମ ଅବିସ୍ମରଣୀୟ । ଆଜି ମଧ୍ୟ ପ୍ରତ୍ୟେକ ଯାତ୍ରାରେ ଯାବତୀୟ ଉପକରଣ ଶାବର ଶ୍ରୀକ୍ଷେତ୍ରରୁ ପ୍ରେରିତ ହୁଏ । ଜଣେ ପଣ୍ଡା ସମସ୍ତ ପଦାର୍ଥ ସହିତ ଯାତ୍ରାରେ ଉପସ୍ଥିତ ରହନ୍ତି । ପରିଚାଳନା ସଂସ୍ଥାର ସଦସ୍ୟମାନେ ଏହି ଯାତ୍ରାରେ ପ୍ରତିବର୍ଷ ଯୋଗ ଦେବାର ପରମ୍ପରା ରହିଛି ।

କୋଟିଆର ରଥଯାତ୍ରାର ପରମ୍ପରା ନିଆରା । ଉପରେ ଝରୁଥାଏ ଆଷାଢ଼ ଆକାଶର ଅବିଶ୍ରାନ୍ତ ବାରି । ତଳେ ଥରିଲା ଦେହରେ ଭକ୍ତ ଟାଣନ୍ତି ରଥ । ମୃଦଙ୍ଗର ଘଣ୍ଟର ଭେରୀ ତୂରୀର ଧ୍ୱନି ସାଙ୍ଗକୁ ଆଦିବାସୀଙ୍କ ପାରମ୍ପରିକ ବାଦ୍ୟ ବାଜଣାର ଧ୍ୱନି ପରିବେଶରେ ପ୍ରକମ୍ପ ସୃଷ୍ଟି କରେ । ଶ୍ରୀଜଗନ୍ନାଥଙ୍କ ରଥ ମଧ୍ୟ ଦୋହଲି ଦୋହଲି ଚାଲେ । କଳାଶ୍ରୀମୁଖ ପ୍ରୀତ ବଦନରେ ଅନାଇଁ ରହିଥାନ୍ତି ପ୍ରାଣପ୍ରିୟ ଭକତକୁ । ଆଦିମ ସେବକ ଓ ଭକ୍ତ ବତ୍ସଳଙ୍କ ଭାବର ଯାତ୍ରା କୋଟିଆର ରଥଯାତ୍ରା ଯେଉଁଠି ଭକ୍ତ ଭଗବାନଙ୍କ ମଧ୍ୟରେ କେବଳ ଭାବ ହିଁ ସୂତ୍ର ହୋଇଥାଏ । ଅପୂର୍ବ ଏ ଅନୁଭବ । ବର୍ଷ ବର୍ଷ ଧରି ଚାଲି ଆସିଛି ଏ ଯାତ୍ରା । ଶ୍ରୀଜଗନ୍ନାଥଙ୍କ ଲୀଳା ମାଧୁର୍ଯ୍ୟ କିଏ କେଉଁଭଳି କେତେମାତ୍ରାରେ ଉପଭୋଗ କରୁଛି କେଜାଣି ତେବେ ଶ୍ରୀଜଗନ୍ନାଥ ସେଇଠି ବସି ମୁରୁକି ହସୁଛନ୍ତି । ବୋଧହୁଏ ଏହି ଭାବବିଭୋର ଜାତିକୁ ଘଣ୍ଟ ଆଢୁଆଳରେ ଘୋଡ଼େଇ ରଖିବା ପାଇଁ ତାଙ୍କର ଏତେ ଆୟୋଜନ । ଧନ୍ୟ ପ୍ରଭୁ ! ତୁମେ ଏ ଜାତିକୁ ଏମିତି ତୁମର ମହାବାହୁରେ ସୁରକ୍ଷିତ କରି ଧରିଥାଅ । ଏତିକି ଏ ଜାତିର ତୁମଠାରେ ପ୍ରାର୍ଥନା ।

ନୈବେଦ୍ୟ, ପୂଜାରୀପୁଟ, କୋରାପୁଟ

# ତୁମ ପାଇଁ ତିନୋଟି ଏକପଦୀ

ଡକ୍ଟର ବଳରାମ ଦାସ

(୧)
କେତେ ନିବୁଜ ଆତ୍ମୀୟତାରେ ପ୍ରଭୁ
ଭରିଦିଅ ଜୀବନର ସବୁ ଶୂନ୍ୟସ୍ଥାନ
କି ଅଦୃଶ୍ୟ ଆକର୍ଷଣେ
ନିମିଷକେ ଛିନ୍ନ ହୁଏ
ଜନ୍ମ ଆଉ ମୃତ୍ୟୁର ବନ୍ଧନ ।

(୨)
କେତେ ନିବିଡ ଆପଣା ପଣରେ
ବାହୁ ବିସ୍ତାରି ଦିଅ ପ୍ରଭୁ
ଛଳ ଛଳ ବାତ୍ସଲ୍ୟରେ ତିନ୍ତୁ ଥାଏ
ପ୍ରୀତିମୟ ପ୍ରାଣ



ଅନିତ୍ୟ ସଂସାରଚକ୍ରେ ଆବର୍ତ୍ତିତ
ଜୀବନର ନିତ୍ୟ ବୃନ୍ଦାବନ ।

(୩)
କି ନିଗୂଢ ନିଃସଙ୍ଗ–ସଖ୍ୟରେ ପ୍ରଭୁ
ଜୀବନକୁ ଛୁଇଁ ଦିଅ
ଆକୁଳ ପ୍ରାଣରେ ଢାଳି କରୁଣାର ବାରି
କୁସୁମିତ କଦମ୍ବର ସହସ୍ର ଶାଖାରେ
ସଂଗୋପନେ ବାଜୁଥାଏ ବିଜନ ବାଂଶରୀ ।



ଶଙ୍ଖନାଭି
ସର୍ବୋଦୟ ନଗର, ପୁରୀ





# ଶବରୀର ଅଇଁଠା ଫଳକୁ ଛୁଁଉଛନ୍ତି କି ପ୍ରଭୁ !

**ଡକ୍ଟର ହେମନ୍ତ କୁମାର ଛୋଟରାୟ**

ଶ୍ରୀରାମ ନବମୀ ଆସିଲେ ଆପଣଙ୍କର ମନେପଡ଼େ ତ୍ରେତୟା ଯୁଗର ରାମ ଅବତାର ଗାଥା । ଜଣେ ଅଛବ ନାରୀ ପ୍ରାଣରେ ଆପଣଙ୍କ ପାଇଁ ଥିଲା ହୃଦୟଭରା ଭକ୍ତିର ଉଚ୍ଛ୍ୱାସ । ସେ ଯେ ବର୍ଷ ବର୍ଷ ଧରି ଆପଣଙ୍କ ସାନ୍ନିଧ ପାଇବା ପାଇଁ ଅପେକ୍ଷା କରି ରହିଥିଲା, ତାହା କେବଳ ଆପଣ ହିଁ ଜାଣିଥିଲେ । ଆପଣତ ଅନ୍ତର୍ଯ୍ୟାମୀ ! ସବୁରି ଅନ୍ତରକୁ ଜାଣି ପାରିବା ଆପଣଙ୍କର ଅନ୍ୟତମ ମହାନ୍ ଲକ୍ଷଣ ।



ଚୈତ୍ର ମାସର ଶୁକ୍ଳ ନବମୀ ତିଥିରେ, କର୍କଟ ଲଗ୍ନ, ପୁନର୍ବସୁ ନକ୍ଷତ୍ର, ପଂଚ ଗ୍ରହ ଉଚ୍ଚ ସ୍ଥାନରେ ଓ ସୂର୍ଯ୍ୟ ମେଷ ରାଶି ଉପରେ ଅବସ୍ଥାନ କାଳରେ ଆପଣ ରାମ ଅବତାର ଗ୍ରହଣ କରି ଅଯୋଧ୍ୟାର ପାଟରାଣୀ କୌଶଲ୍ୟାଙ୍କ ଗର୍ଭରୁ ଭୂମିଷ୍ଠ ହୋଇଥିଲେ । ପୁତ୍ରେଷ୍ଟି ଯଜ୍ଞର ଫଳସ୍ୱରୂପ ଜ୍ୟେଷ୍ଠ ପୁତ୍ର ସନ୍ତାନ ଜନ୍ମ ଖବର ଶୁଣି ସେଦିନ ମହାଆନନ୍ଦରେ ଉଲ୍ଲସିତ ହୋଇ ଉଠିଥିଲେ ପିତା ଦଶରଥ । ଏହି ପରମ୍ପରାକୁ ଭକ୍ତ ମନରେ ଉଜ୍ଜୀବିତ କରି ରଖିବା ପାଇଁ ଆପଣଙ୍କ ଶ୍ରୀମନ୍ଦିରରେ ମହା ସମାରୋହରେ ପାଳନ ହୁଏ ଶ୍ରୀରାମ ନବମୀ ଉତ୍ସବ । ସକାଳ ଧୂପ ପରେ ମହାସ୍ନାନ ଓ ବେଶଲାଗି ହୁଏ । ତା'ପରେ ଜୟବିଜୟ ଦ୍ୱାର ବନ୍ଦ ହୁଏ । ଭଣ୍ଡାର ଘରର ଆଗ ପୋଛାପୋଛି ସରିଲେ ପଂଚବର୍ଣ୍ଣ ମୁରୁଜରେ ନିର୍ଦ୍ଦିଷ୍ଟ ସେବକ ଜନ୍ମ ମଣ୍ଡଳ କାଟନ୍ତି । ମଧ୍ୟାହ୍ନ ଧୂପ ଶେଷରେ ଦକ୍ଷିଣ ଘର ଠାକୁରମାନଙ୍କର ଭୋଗ ବଢ଼ିଲେ ରାମ ବିଗ୍ରହଙ୍କୁ ଭିତର ସିଂହାସନକୁ ବିଜେ କରାଯାଏ । ଏହାପରେ ରାମ ବିଗ୍ରହଙ୍କୁ ଆଜ୍ଞାମାଳ ଦିଆଯାଇ ମଣ୍ଡଳ ଉପରକୁ ଅଣାଯାଏ । ସେବକମାନଙ୍କ ମଧ୍ୟରୁ ଦୁଇଜଣ ଦଶରଥ ଓ କୌଶଲ୍ୟା ରୂପରେ ଉପସ୍ଥିତ ରହି ଖଣ୍ଡୁଆ ଘୋଡ଼ାଇ ଜନ୍ମବିଧି ପାଳନ କରନ୍ତି । କର୍ପୂର ଆଳତି ବନ୍ଦାପନା ପରେ ଗଣ୍ଡୁଷ ମସଲା ଓ କ୍ଷୀର ମଣୋହି ବଢ଼େ । ପୂଜକ ଜନ୍ମବିଧି ବଢ଼ାଇ ପଇତା ଲାଗି କଲାପରେ ଶୀତଳଭୋଗ ମଣୋହି କରାଯାଏ । ଅନ୍ୟ ଜଣେ ସେବକ ଜୟବିଜୟ ଦ୍ୱାରଠାରେ ଚରୁଅନ୍ନ ମଣୋହି କରାଇବା ପରେ ଦେବବିଗ୍ରହ ଦକ୍ଷିଣ ଘରକୁ ବାହୁଡ଼ି ଯାଆନ୍ତି । ଏହାପରେ ଶ୍ରୀମନ୍ଦିରର ଦୈନନ୍ଦିନ ନୀତି ସମ୍ପନ୍ନ ହୋଇଥାଏ । ସେଦିନର ସବୁ ବିଧିବିଧାନ ପାଳନ ବେଳେ ଆପଣଙ୍କର ମନେପଡ଼େ ଭକ୍ତିମତୀ ଶବରୀର ଅଇଁଠା ଫଳ କଥା । ଆପଣ ମଧ୍ୟ ପରବର୍ତ୍ତୀ ଦିନ ଶୁକ୍ଳ ଦଶମୀ, ଏକାଦଶୀ, ଦ୍ୱାଦଶୀ, ଚତୁର୍ଦ୍ଦଶୀ, ପୂର୍ଣ୍ଣିମା, ବୈଶାଖ କୃଷ୍ଣ ପ୍ରତିପଦା ଓ ଦ୍ୱିତୀୟା ତିଥିମାନଙ୍କରେ ଯଥାକ୍ରମେ ଯଜ୍ଞ ରକ୍ଷା, ସୀତା ବିବାହ, ବନବାସ, ମାୟାମୃଗ ବଧ, ଲଙ୍କା ପୋଡ଼ି,



ସେତୁବନ୍ଧ ଓ ରାବଣ ବଧର ସ୍ମାରକୀ ଉତ୍ସବ ପାଳନ ବେଳେ ଝୁରି ହୁଅନ୍ତି ସେହି ଶବରୀକୁ । କେଡେ ମହାନ୍ ଭକ୍ତିମତୀ ଥିଲା ସେ ଶବରୀ ସତେ !

ପ୍ରଭୁଙ୍କ କୃପାଲାଭ କରିବା ପାଇଁ ଜାତି, ନାମ, ଆଶ୍ରମ, କୁଳ, ଲିଙ୍ଗ, ବିଦ୍ୟା ଇତ୍ୟାଦି ବିଶେଷତ୍ୱର କିଛି ପ୍ରୟୋଜନ ନାହିଁ । ଶବରୀ ଜାତି ଦୃଷ୍ଟିରୁ ଅତି ନୀଚ ଥିଲା । ତା’ପାଖରେ ବିଦ୍ୟାବୁଦ୍ଧିର ମଧ୍ୟ ଅଭାବ ଥିଲା । ବଣ ଜଙ୍ଗଲବାସୀ ଶବରମାନେ ସାଧାରଣତଃ ଅସୁନ୍ଦର ହୋଇଥାନ୍ତି । ଶବରୀ ମଧ୍ୟ ଅସୁନ୍ଦରୀ ଥିଲା । ତା’ର ବାପା ବହୁ କଷ୍ଟ ସ୍ୱୀକାର କରି ଗୋଟିଏ ବରପାତ୍ର ତା’ ପାଇଁ ଯୋଗାଡ କରିଥିଲେ । ବିବାହ ପରେ ରାତାରାତି ବରକନ୍ୟାକୁ ବିଦାୟ କରିବା ପାଇଁ ସ୍ଥିର କଲେ । ବାପାଙ୍କର ଇଛାଥିଲା, ବର ଶବରୀ ରୂପକୁ ଦେଖିନପାରୁ । ସେଥିପାଇଁ ବାପା ବ୍ୟସ୍ତ ହୋଇ ବିବାହ ପରେପରେ ରାତିରେ ହିଁ ଶବରୀକୁ ତା’ ବର ସହ ବିଦାୟ କରିଦେଇଥିଲେ । ନିଷ୍ଠୁର ପିତା କନ୍ୟା ବୋଝରୁ ମୁକ୍ତ ପାଇବା ପାଇଁ ଏମିତି କରିଥିଲେ । ବର ଓ ଶବରୀ ଦୁହେଁ ନିଜ ଘରକୁ ଯାଉଥିଲେ । ବାଟରେ ସକାଳ ହେଲା । ପ୍ରଭାତର ଆଦ୍ୟ ସୂର୍ଯ୍ୟ କିରଣ ପଡିଲା ଶବରୀର ମୁଖ ମଣ୍ଡଳରେ । ତା’ ବର ଯେମିତି ଦେଖି ପାରିଛି ଶବରୀର ରୂପକୁ, ସେ ଭୟଭୀତ ହୋଇପଡିଲା । ଶବରୀ କେବଳ ଜଣେ ଅସୁନ୍ଦରୀ ନଥିଲା । ସେ ଦିଶୁଥିଲା ଜଣେ ଡାଆଣୀ ବା ପିଶାଚୀ ଭଳି । ବର ଜଣକ ଏହା ଦେଖି ସେଠାରୁ ପଳାୟନ କଲା ଓ ଶବରୀ ହୋଇଗଲା ଏକାକିନୀ । ସ୍ୱାର୍ଥ ସର୍ବସ୍ୱ ସଂସାରରେ କେହି କାହାର ନୁହେଁ । ଯେତେବେଳେ ବରର ହୋଇ ପାରିଲା ନାହିଁ, ତା’ର ପିତା ଯେ ଆଗ୍ରହରେ ତାକୁ ଗୃହରେ ସ୍ଥାନ ଦେବେ ସେହି ସନ୍ଦେହରେ ସେ ଦଣ୍ଡକାରଣ୍ୟ ଛାଡି କୁଆଡେ ନଯିବା ପାଇଁ ସ୍ଥିର କଲା । ସଂସାରର ମାୟା ବନ୍ଧନ ତୁଟାଇ ସେଇଠି ପଡ଼ି ରହିଲା ଜଙ୍ଗଲର ଫଳମୂଳ ଖାଇ ।

ଦଣ୍ଡକାରଣ୍ୟରେ ବାନପ୍ରସ୍ଥାଶ୍ରମୀ ଓ ଋଷିମୁନିମାନେ ଅବସ୍ଥାନ କରି ଅହରହ ଈଶ୍ୱରଙ୍କ ଭଜନ କୀର୍ତ୍ତନ କରୁଥିଲେ । କାରଣ ସେହି ଯୁଗରେ ବର୍ଣ୍ଣାଶ୍ରମର ମର୍ଯ୍ୟାଦା ଅଧିକ ଥିଲା । ଋଷିମୁନିମାନଙ୍କୁ ସେ ଲୁଚି ରହି ଦର୍ଶନ କରୁଥିଲା । ସେମାନଙ୍କ ଦର୍ଶନ ଲାଭ କରି ସେ ଆନନ୍ଦିତ ହେଉଥିଲା । ଥରେ ସେ ମନେ ମନେ ଚିନ୍ତା କଲା, ମୁଁ ତ ଅଭାଗିନୀ ନାରୀ । ମୂର୍ଖ ହୋଇ ନିଜ ଉଦ୍ଧାର ପାଇଁ କ’ଣ କରିପାରିବି ? ଯଦି ଏହି ପବିତ୍ର ପୁରୁଷ ମାହାତ୍ମାମାନଙ୍କ ସେବା କରିପାରନ୍ତି ତେବେ ନିଶ୍ଚୟ ଧନ୍ୟ ହୁଅନ୍ତି । ସେମାନେ କ’ଣ ଏ ଅଧମ ଶବରୀର ସେବା ଗ୍ରହଣ କରିବେ ? ଏମିତି ଚିନ୍ତାକରି ସେ ଶେଷରେ ନିଷ୍ପତ୍ତି ନେଲା, ଗୋପନରେ ଏହି ମୁନିଋଷିମାନଙ୍କର ସେବା କରିବ । ଏମାନଙ୍କ ସେବାକଲେ ପୁଣ୍ୟପ୍ରାପ୍ତିର ଆଶା ତା’ର ଫଳବତୀ ହେବ । ମୁନିଋଷିମାନଙ୍କ ସେବା ପ୍ରତି ତା’ର ମନରେ ଅହେତୁକ ଶ୍ରଦ୍ଧା ଜାଗ୍ରତ ହେଲା । ରାତିଥାଇ ସେମାନଙ୍କ ଆଶ୍ରମ ଆଗ ରାସ୍ତାରେ ଝାଡୁ ଦେବା, ଜଙ୍ଗଲରୁ ଜାଳେଣି କାଠ ଆଣି ଆଶ୍ରମ ଆଗରେ ରଖି ଦେବା, ସେମାନଙ୍କ ସ୍ନାନାଦିକର୍ମ ପାଇଁ ଯାଉଥିବା ରାସ୍ତାରୁ କଣ୍ଟା, ଗୋଡି, ପଥର ଉଠାଇ ସଫା କରିଦେବା ପ୍ରଭୃତି କାର୍ଯ୍ୟରେ ସେ ସଦାସର୍ବଦା ନିମଗ୍ନ ରହିଲା । ଭଲକାମର ସୁଗନ୍ଧ ଚତୁର୍ଦ୍ଦିଗରେ ପ୍ରଚାରିତ ହୁଏ । ମୁନିଋଷିମାନେ ଚିନ୍ତା କଲେ ଏ ପ୍ରକାର ସେବାମୂଳକ କାମ କିଏ କରୁଛି ? ଆମ ସାଧନାର ପୁଣ୍ୟଠାରୁ ଏହି କାର୍ଯ୍ୟର ମୂଲ୍ୟ ଅଧିକ । ସେଥିପାଇଁ ଏହି କାର୍ଯ୍ୟର କର୍ତ୍ତାକୁ ଖୋଜି ବାହାର କରିବା ପାଇଁ ମୁନିଋଷିମାନେ ତାଙ୍କ ଶିଷ୍ୟମାନଙ୍କୁ ଆଦେଶ ଦେଲେ । ଶିଷ୍ୟମାନେ ରାତିସାରା ଉଜାଗର ରହି ଜାଣିବାକୁ ଚାହିଁଲେ । ଦିନେ ରାତିର ଶେଷ ପ୍ରହରରେ ଶବରୀ ଧରା ପଡିଗଲା । ଭାବିଲା, ବୋଧହୁଏ ମୁନିଋଷିମାନେ ତାଙ୍କ ସାଧନାରେ ବିଘ୍ନ ଘଟୁଥିବା ଜାଣି ତାକୁ ଅଭିଶାପ ଦେବେ । ସେଥିପାଇଁ ସେ ଭୟଭୀତ ହୋଇପଡିଲା । ମୁଣ୍ଡରେ କାଠବିଡ଼ା ହାତରେ ଝାଡୁଧରି ସେ ଠିଆ ହୋଇରହିଲା । ଶିଷ୍ୟମାନେ ତାଙ୍କୁ ମତଙ୍ଗ ମୁନିଙ୍କ ନିକଟକୁ ନେଇଗଲେ । ସେଠାରେ ସେ ଜଣେ ଅପରାଧୀ ପରି ଠିଆ ହେଲା । ମତଙ୍ଗ ପଚାରିଲେ, ମାଆଲୋ ତୁ କିଏ ? କାହିଁକି ତୁ ପ୍ରତିଦିନ ଏମିତି ସେବା କରିଚାଲିଛୁ ? ତୋର ପ୍ରକୃତ ଅଭିପ୍ରାୟ କ’ଣ ? ଆମେତ ତୋତେ ଏଥିପାଇଁ ବେତନ ପ୍ରଦାନ କରିନାହୁଁ ।

ନିଷ୍କାମ ସେବାକାରିଣୀ ଭକ୍ତିମତୀ ଶବରୀ ଥରିଥରି ନମ୍ରଭାବରେ ପ୍ରଣାମ କରି କହିଲା ହେ ମହାତ୍ମା ! ମୋ ନାଁ





ଶବରୀ । ମୋର ମନ୍ଦଭାଗ୍ୟ କାରଣରୁ ମୁଁ ନୀଚ ଜାତିରେ ଜନ୍ମ ହୋଇଛି । ମୁଁ ଏହି ବନରେ ରହୁଛି । ଆପଣମାନଙ୍କ ସେବାକରି ଧର୍ମ ଅର୍ଜନ କରୁଛି । ଏଥିସହ ଆପଣମାନଙ୍କୁ ସଦାସର୍ବଦା ଦର୍ଶନ କରି ମୁଁ ନିଜକୁ ପବିତ୍ର କରିବାରେ ଲାଗିଛି । ଆପଣମାନଙ୍କ ପାଖକୁ ଯାଇ ମୁଁ ତ ସେବା କରିପାରିବି ନାହିଁ । ଭାବିଲି, ଦୂରରେ ରହି ଲୁଚିଛପି ଏତିକି ସେବା ତ କରିପାରିବି । ହେ ମହାତ୍ମା ! ଏଭଳି କାର୍ଯ୍ୟ କରିବାରେ ମୋର ଯଦି କିଛି ତ୍ରୁଟି ହୋଇଥାଏ, ତେବେ ମୋତେ କ୍ଷମା କରିଦିଅନ୍ତୁ । ଶବରୀର ନମ୍ରତା ଓ ସେବାପରାୟଣତା ଦେଖି ମତଙ୍ଗମୁନି ମୁଗ୍ଧ ହୋଇଗଲେ । ତାଙ୍କ ମନରେ ଦୟାଭାବ ଜାଗ୍ରତ ହେଲା । ଶବରୀ ସ୍ଥାୟୀ ଭାବରେ ବସବାସ କରିବାର ବନ୍ଦୋବସ୍ତ ସେ କରିଦେଲେ । ଶିଷ୍ୟମାନଙ୍କୁ ଆଦେଶ ଦେଇ କହିଲେ, ଏ ବଡ଼ ଭାଗ୍ୟବତୀ । ଆଶ୍ରମ ବାହାରେ ୟା ପାଇଁ ଗୋଟିଏ କୁଡ଼ିଆ ନିର୍ମାଣ କର । ଏହାର ଖାଇବା ପିଇବା ପାଇଁ କିଛି ସ୍ଥାୟୀ ବ୍ୟବସ୍ଥା କର । ଶବରୀ ଏହାଶୁଣି ନୟନରୁ ଅଶ୍ରୁ ଝରାଇଲା, ମନେ ମନେ ଆନନ୍ଦିତ ହେଲା । ଏଇ ମହାତ୍ମା ତା'ର ସେବାକୁ ଗ୍ରହଣ କଲେ ଓ ଉଦର ଭରଣର ସ୍ଥାୟୀ ବନ୍ଦୋବସ୍ତ କରିଦେଲେ । ସେ ନିଜକୁ ଏଥିପାଇଁ ଧନ୍ୟ ମନେକଲା । ଏହାଦ୍ୱାରା ସେ ସେବା କରିବାପାଇଁ ଅଧିକ ସୁଯୋଗ ପାଇଲା । ତା' ଭାଗ୍ୟର ଦ୍ୱାର ଖୋଲିଯିବାରୁ ସେ ଅଶ୍ରୁସଜଳ ନୟନରେ କରଯୋଡ଼ି କହିଲା, ମୁନିବର ମୋ ପାଇଁ ଚିନ୍ତା କରନ୍ତୁ ନାହିଁ । ମୁଁ ତ ଫଳମୂଳ ଆହାର କରି ଦିନ କାଟୁଛି । ଆପଣ ମୋ ସେବାକୁ ଅନୁଗ୍ରହ କରି ଗ୍ରହଣ କରିଥିବାରୁ ମୁଁ ଅତ୍ୟନ୍ତ ଆନନ୍ଦିତ । ଏମିତି କୃପା ଆପଣଙ୍କର ମୋ ପ୍ରତି ସଦାସର୍ବଦା ଥାଉ । ଆପଣଙ୍କ ଆଶିଷ ପାଇ ମୁଁ କୃତାର୍ଥ ହୋଇଯିବି । ଆପଣଙ୍କ ପ୍ରସାଦ ସେବନ କରି ମୁଁ ପରମ ସୌଭାଗ୍ୟର ଅଧିକାରିଣୀ ହୋଇପାରିବି । ହେ ମହାତ୍ମା, ମୋର ଧନ–ଜନ ଲୋଡ଼ା ନାହିଁ । ଆପଣ ମୋତେ ଏତିକି ଆଶୀର୍ବାଦ ପ୍ରଦାନ କରନ୍ତୁ ଯେ, ମୁଁ ଈଶ୍ୱରଙ୍କ ଶ୍ରୀଚରଣରେ ନିତ୍ୟ ଭକ୍ତି ପ୍ରୀତିରେ ନିମଜ୍ଜିତ ହୋଇପାରିବି ।

ଶବରୀର ବିନୟ ବଚନ ଶୁଣି ଦୟାଳୁ ମତଙ୍ଗମୁନି କିଛି ସମୟ ଚିନ୍ତା କରି କହିଲେ, ଆଚ୍ଛା ଠିକ୍ ଅଛି । ତୁ ଏଠି ନିର୍ଭୟରେ ରହି ଈଶ୍ୱରଙ୍କ ନାମ ଅହରହ ଜପକର । ଏହାପରେ ଶବରୀକୁ ସେ ମନ୍ତ୍ରଦାନ କଲେ । ଶବରୀର ଆତ୍ମା ନିର୍ମଳ ଥିଲା । ସେଥିପାଇଁ ଅନୁସନ୍ଧାନ ନକରି ସେ ଗୁରୁ ପାଇଗଲା । ଜଣେ ଶ୍ରଦ୍ଧାଳୁକୁ ଗୁରୁମନ୍ତ୍ର ପ୍ରଦାନକରି ମତଙ୍ଗ ମୁନି ମଧ୍ୟ ସେଦିନ ଆନନ୍ଦ ଅନୁଭବ କରିଥିଲେ । ଗୁରୁଙ୍କ କୃପାଲାଭ କରି ଶବରୀ ଭଗବତ୍ ଭଜନରେ ବୁଡ଼ି ରହିଲା । ଏହି ଖବର ପ୍ରଚାର ହେବା ମାତ୍ରେ ଅନ୍ୟ ସବୁ ଋଷିମାନେ କ୍ରୋଧାଗ୍ନିରେ ଜର୍ଜରିତ ହୋଇ ଉଠିଲେ । ବର୍ଣ୍ଣାଶ୍ରମର ମର୍ଯ୍ୟାଦା ଦୃଷ୍ଟିରୁ ସେମାନେ ମତଙ୍ଗ ମୁନିଙ୍କୁ କହିଲେ, ଆପଣ ନୀଚଜାତିର ନାରୀକୁ ଆଶ୍ରମରେ ରହିବାକୁ ସୁଯୋଗ ଦେଇ ମସ୍ତବଡ଼ ଭୁଲ କରିଛନ୍ତି । ତେଣୁ ଆମେମାନେ ଆପଣଙ୍କ ସହ ବସି ଭୋଜନ କରିବୁ ନାହିଁ । ମତଙ୍ଗମୁନି ଶବରୀର ଉତ୍ତମ ଗୁଣ ସମ୍ପର୍କରେ ବୁଝାଇ ଥିଲେ ମଧ୍ୟ ସେମାନେ ତାଙ୍କର କୌଣସି କଥା ଗ୍ରହଣ କଲେ ନାହିଁ । ହେଲେ ମଧ୍ୟ ମତଙ୍ଗମୁନି ସେମାନଙ୍କ କଥାକୁ ଗୁରୁତ୍ୱ ଦେଲେନାହିଁ । ଶବରୀଠାରେ ଥିବା ଭକ୍ତି ଭାବକୁ ସେ ଜାଣିପାରିଥିଲେ । ସେ ଯେ ସାଧାରଣ ନୀଚ ଜାତିର ନାରୀ ନୁହେଁ । ସେ ଜଣେ ଭକ୍ତି ପରାୟଣା ମହାନ ଆତ୍ମା –ଏକଥା ଅନ୍ୟ ମୁନିଋଷିମାନେ ଜାଣିବେ ବା କେମିତି ?

ଦିନ ପରେ ଦିନ ଅତିକ୍ରମ ହେଲା । ଭଗବାନଙ୍କ ନାମ ସ୍ମରଣ କରି ଶବରୀ ବୃଦ୍ଧ ବୟସରେ ଉପନୀତ ହେଲା । ମତଙ୍ଗ ମୁନିଙ୍କ ଶରୀର ତ୍ୟାଗ କରିବାର ସମୟ ମଧ୍ୟ ଉପସ୍ଥିତ ହେଲା । ଏକଥା ଜାଣି ଶିଷ୍ୟମାନେ ଦୁଃଖିତ ହେଲେ ଓ ଶବରୀ ସମସ୍ତଙ୍କଠାରୁ ଅଧିକ ଦୁଃଖଭାରରେ ନଇଁପଡ଼ିଲା । ଗୁରୁଦେବଙ୍କ ବିୟୋଗର ସୂଚନା ତାକୁ ଅସହ୍ୟ କଷ୍ଟ ଦେଲା । ସେ ବିନମ୍ରତାର ସହ ଗୁରଦେବଙ୍କୁ ନିବେଦନ କଲା । ଗୁରୁଦେବ ! ଆପଣ ମୋତେ ହିଁ ସାଙ୍ଗରେ ନେଇଯାଆନ୍ତୁ । ମୁଁ ଆପଣଙ୍କ ସେବା ବିନା ବଞ୍ଚିରହିବା ସମ୍ଭବ ନୁହେଁ । ଏ କଥା କହି ଶବରୀ ଆଖିରୁ ଅଶ୍ରୁ ଝରାଇବାକୁ ଲାଗିଲା । ଶବରୀର ଅଶ୍ରୁସଜଳ ମୁଖମଣ୍ଡଳ ଦେଖି ମତଙ୍ଗ ମୁନି କହିଲେ, 'ଦୁଃଖକରନା ମାଆ, ତୁ ପରମ ଭାଗ୍ୟଶାଳିନୀ ଅଟୁ । ତୋ ଭାଗ୍ୟରେ ଏକ ଦୁର୍ଲଭ ସୁଯୋଗ ରହିଛି । ମୁଁ ଶରୀର ତ୍ୟାଗ କଲେ ଦିବ୍ୟଲୋକରେ ପରମାତ୍ମାଙ୍କର ଦର୍ଶନଲାଭ କରିବି । କିନ୍ତୁ ତୁ ବଞ୍ଚିଥିବାବେଳେ ଅଯୋଧ୍ୟା ନରେଶ ସ୍ୱୟଂ ଭଗବାନ ରାମଚନ୍ଦ୍ରଙ୍କର ଦର୍ଶନ ପାଇବୁ । ସେ ତୋତେ ଦର୍ଶନ ଦେବା ପାଇଁ ଏଇ ଆଶ୍ରମକୁ ଆସିବେ । ମୁଁ ଦିବ୍ୟଚକ୍ଷୁ



ବଳରେ ଜାଣିପାରୁଛି ଏବେ ସେ ଚିତ୍ରକୁଟରେ ଅଛନ୍ତି । ସେ ଏଠାକୁ ନିଶ୍ଚୟ ଆସିବେ । ତୁ ତାଙ୍କୁ ଚର୍ମଚକ୍ଷୁରେ ଦର୍ଶନ କରି ପରମ ତୃପ୍ତି ଲାଭ କରିବୁ । ସ୍ୱୟଂ ନାରାୟଣଙ୍କ ଦର୍ଶନ ପାଇଲେ ତୋର ଉଦ୍ଧାର ହୋଇଯିବ । ତାଙ୍କୁ ସ୍ୱାଗତ କରିବା ପାଇଁ ତୁ ତାଙ୍କର ନାମ ଅହରହ ଜପ କରି ପ୍ରତୀକ୍ଷା କର । ଶବରୀକୁ ଏହି ଆଶ୍ୱାସନା ପ୍ରଦାନ କରି ଋଷିବର ମତଙ୍ଗ ଦିବ୍ୟଲୋକ ଗମନ କଲେ । ଋଷିବରଙ୍କ ଦେହତ୍ୟାଗ ଦେଖି ଶବରୀର ଶରୀର ଅଶ୍ରୁଜଳରେ ତିନ୍ତିଗଲା ।

ଗୁରୁଦେବଙ୍କ ବାଣୀ ଶବରୀର କର୍ଣ୍ଣରେ ବାରମ୍ବାର ପ୍ରତିଧ୍ୱନିତ ହେଉଥାଏ । ସେ ଗୁରୁଙ୍କର ବାକ୍ୟକୁ ବିଶ୍ୱାସ କରି ଆସୁଥିଲା । ସେଥିପାଇଁ ସେ ସେହି ଶୁଭ ଦିନକୁ ଅପେକ୍ଷା କରି ରହିଲା । ପ୍ରଭୁ ଶ୍ରୀରାମ ତା' ପର୍ଣ୍ଣ କୁଟୀରକୁ ଆସିବେ । ଏହି କଥା ଭାବି ସେ ଉଲ୍ଲସିତ ହୋଇଉଠିଲା । ତା' ପରଠୁ ସେ ରାମନାମ ଜପରେ ମଗ୍ନ ହୋଇଗଲା । ପ୍ରଭୁଙ୍କ ଆଗମନର କଳ୍ପନା ତା' ମାନସପଟରେ ନାଚିବାକୁ ଲାଗିଲା । ବଣର ଫଳମୂଳ ଆହାର କରି ଭଗବାନଙ୍କ ଶୁଭ ଆଗମନକୁ ଅପେକ୍ଷା କରି ରହିଲା ଶବରୀ । ପ୍ରତିଟି ସକାଳ ତାକୁ ଲାଗୁଥାଏ, ସତେ ଯେମିତି ଆଜି ହିଁ ପ୍ରଭୁ ଶ୍ରୀରାମ ତା' କୁଟୀରକୁ ଆଗମନ କରିବେ । ପ୍ରଭୁ ଦର୍ଶନର ଲାଳସା ତା'ର ବୃଦ୍ଧି ହେବାରେ ଲାଗିଲା । ଶବରୀ ରହିଲା ପ୍ରଭୁ ଶ୍ରୀରାମଙ୍କ ପ୍ରତୀକ୍ଷାରେ । ସେ ପ୍ରତୀକ୍ଷା ଥିଲା ଅନନ୍ତ । ସେହି ପ୍ରତୀକ୍ଷା ମଧ୍ୟରେ ଭରି ରହିଥିଲା ଯୁଗଯୁଗର ଉତ୍କଣ୍ଠା । ନିଶାର୍ଦ୍ଧରେ କେହି ପଶୁପକ୍ଷୀ କୁଟୀର ଦେଇ ଯାଉଥିବା ଶବ୍ଦ କାନରେ ବାଜିଲେ ସେ ଆନମନା ହୋଇଯାଉଥିଲା । କାନ ଡେରି ରହେ, ତା'ର ଆରାଧ୍ୟ ପରମପ୍ରିୟ ପ୍ରଭୁ ଶ୍ରୀରାମ ଆସିଗଲେ କି ! ଜାତି ଜାତିକା ଫଳ ଜଙ୍ଗଲରୁ ଆଣି ଫଳକୁ ନିଜେ ଚାଖି ସ୍ୱାଦଯୁକ୍ତ ଫଳ ହିଁ ରଖିଥାଏ ପ୍ରଭୁଙ୍କ ସତ୍କାର ଲାଗି । ଗୋଟିଏ ଦିନ ସିନା ସରିଯାଏ ପ୍ରତୀକ୍ଷାରେ କିନ୍ତୁ ମନରୁ ତା'ର ମରିଯାଏ ନାହିଁ ପ୍ରଭୁଙ୍କୁ ପାଇବାର ଲାଳସା । ପ୍ରଭୁ ଆସନ୍ତି ନାହିଁ । ସେ ତରୁଲତାଙ୍କୁ ପଚାରେ, ପ୍ରଭୁ ଶ୍ରୀରାମଙ୍କୁ ଆସୁଥିବାର ଦେଖିଛ କି ? ସେମାନେ ନିରବ ରହିବା ଦେଖି ସେ ଆଶ୍ରମ ଭିତରୁ ଚାଲିଯାଏ । ରାତି ହେଲେ ବିଶ୍ରାମ ନିଏ । ପ୍ରଭାତ ହେଲେ ପୁନଶ୍ଚ ପ୍ରତୀକ୍ଷା କରେ । ଚାହିଁ ରହେ ପ୍ରଭୁଙ୍କ ଆଗମନକୁ । ଏହିପରି ପ୍ରଭୁଙ୍କ ଆଗମନର ପ୍ରତୀକ୍ଷାରେ ସେ ଏତେ ଆତୁର ହୋଇଯାଏ ଯେ ଆଶ୍ରମର ପାଖ ପଡୋଶୀ ତାକୁ ପାଗଳୀ ବୋଲି ଭାବନ୍ତି । ସତରେ ଭକ୍ତି ଭାବରେ ପାଗଳ ନହେଲେ ପ୍ରଭୁଙ୍କୁ ପାଇବା କ'ଣ ସହଜ ? ଦଣ୍ଡକାରଣ୍ୟର ସମସ୍ତେ ତାକୁ ପାଗଳୀ ଭାବୁଥିଲେ ହେଁ ସେ କିନ୍ତୁ ପ୍ରଭୁଙ୍କ ଆଗମନକୁ ଅପେକ୍ଷା କରିବାକୁ ନିବୃତ୍ତ ହେଉନଥିଲା । ଗୁରୁଦେବଙ୍କ ବାଣୀ ଅନୁସାରେ ପ୍ରଭୁ ଶ୍ରୀରାମ ନିଶ୍ଚୟ ତା' କୁଟୀରରେ ପାଦ ଦେବେ– ଏହି ବିଶ୍ୱାସ ତା'ର ଦୃଢ଼ ହେବାରେ ଲାଗୁଥିଲା । ସେଥିପାଇଁ ସେ ପ୍ରଭୁଙ୍କ ସତ୍କାର ଉଦ୍ଦେଶ୍ୟରେ ପ୍ରତିଦିନ ପ୍ରସ୍ତୁତ ହୋଇରହୁଥାଏ ।

ଥରେ ଶବରୀ ବିଳମ୍ବରେ ସକାଳୁ ଉଠିଲା । ପମ୍ପା ସରୋବର ରାସ୍ତାରେ ଦୈନନ୍ଦିନ ସେବା କରୁଥିବାବେଳେ ସ୍ନାନସାରି ଫେରୁଥିବା ଜଣେ ମୁନିଙ୍କ ଦେହ ସ୍ପର୍ଶ କରିଦେଲା । ତା' ଅଜାଣତରେ ଏମିତି ଘଟଣା ଘଟି ଥିବାରୁ ସେ ମନେ ମନେ ଦୁଃଖିତ ହୋଇପଡିଲା । କିନ୍ତୁ ମୁନି ରାଗରେ ନିଆଁବାଣ ହୋଇଗଲେ । ପୂର୍ବରୁ ଶବରୀ ପ୍ରତି ତାଙ୍କର ଦ୍ୱେଷ ଭାବ ରହିଥିଲା । ସେଥିପାଇଁ ତା'ର ଉତ୍ତମ କର୍ମକୁ ମଧ୍ୟ ସେ ଘୃଣା କରୁଥିଲେ । ଶବରୀକୁ ସେ ନାନାପ୍ରକାର କଟୁକଥା କହି ଗାଳିଦେଲେ । ସେ କହିଲେ, ଛି...ଛି..., ପ୍ରଭାତରୁ ଏ ଅଶୁଭ ଶବରୀର ମୁହଁ ଦେଖିବାକୁ ପଡିଲା । ମୋତେ ପୁନଶ୍ଚ ସ୍ନାନ କରିବାକୁ ପଡ଼ିବ । ଗୁଡ଼ାଏ ଲୋକ ଦେଖାଣିଆ ଭକ୍ତିରେ ମାତିଛି । ସତେ ଯେମିତି ରାମଚନ୍ଦ୍ର ୟାରି ପାଖକୁ ନିତି ଆସୁଛନ୍ତି । ଏଇଟା ଗୋଟାଏ ବଦ୍ଧ ପାଗଳୀ । ଏଭଳି ଭର୍ତ୍ସନା କରି ସେ ପୁନଶ୍ଚ ପମ୍ପା ସରୋବରକୁ ସ୍ନାନ ଉଦ୍ଦେଶ୍ୟରେ ଚାଲିଲେ । ଯୁଗେ ଯୁଗେ ଭଗବାନ ଭକ୍ତର ଅପମାନ ସହ୍ୟ କରିପାରନ୍ତି ନାହିଁ । ଶବରୀର ଅପମାନ ପ୍ରଭୁ ଅନ୍ତର୍ଯ୍ୟାମୀ ଜାଣିପାରିଲେ । ସେଥିପାଇଁ ତା'ର ମହିମା ପ୍ରଦର୍ଶନ କରିବା ଉଦ୍ଦେଶ୍ୟରେ ଗୋଟିଏ ଲୀଳା ରଚ଼ନା କଲେ । ମୁନି ସରୋବରରେ ପ୍ରବେଶ କରିବାମାତ୍ରେ ସରୋବରର ଜଳ ଲାଲ ହୋଇଗଲା । ସେଥିରେ ଅସଂଖ୍ୟ ଜୀବାଣୁ ସାଲୁବାଲୁ ହୋଇ ଭାସିଲେ । ଭକ୍ତକୁ ଅପମାନିତ କରିଥିବାରୁ ଭଗବାନ ସରୋବରର ଜଳକୁ ଏପରି ଅପବିତ୍ର



କରିଦେଲେ। କିନ୍ତୁ ଋଷି ଏକଥା ବୁଝିନପାରି ଶବରୀ ପରି ଅଛୁଆଁ ନାରୀକୁ ସ୍ପର୍ଶ କରି ଆସି ସ୍ନାନ କରିବାରୁ ଏପରି ହେଲା ବୋଲି ସିଦ୍ଧାନ୍ତ ନେଲେ। ଅନ୍ୟ ପକ୍ଷରେ ଶବରୀ ନିଜର ସରଳଗୁଣ ଲାଗି ଭାବିଲା ଯେ, ଆଜି ତା'ର ଟିକିଏ ଭୁଲରୁ ଜଣେ ଋଷିଙ୍କ ମନରେ କଷ୍ଟ ହେଲା। ଏହା ଭାବି ସେ ମନଦୁଃଖରେ ଆଶ୍ରମକୁ ଫେରିଗଲା। ପରେପରେ ସରୋବରର ଜଳକୁ ପବିତ୍ର କରିବାଲାଗି ଈର୍ଷାଳୁ ଋଷିମାନେ ବହୁପ୍ରକାର ପ୍ରତିକାର ବ୍ୟବସ୍ଥା କରି ବିଫଳ ହେଲେ। ଏମିତି ଦିନପରେ ଦିନ ଗଡ଼ିଚାଲିଲା। ଶବରୀ ମନରେ ପ୍ରଭୁ ଦର୍ଶନ ଅଭିଳାଷ ଦିନକୁ ଦିନ ବୃଦ୍ଧି ହେଉଥାଏ। କେବେ ପ୍ରଭୁ ଶ୍ରୀରାମ ଆସିବେ! କେବେ ଏ ନୟନ ଯୁଗଳ ତାଙ୍କର ଦର୍ଶନଲାଭ କରି ପବିତ୍ର ହେବ ? ଏହି ଚିନ୍ତାରେ ସେ ବାଟ ଚାହିଁ ବସିଥାଏ। ପ୍ରଭୁଙ୍କ ପାଦରେ କଣ୍ଟା ଫୁଟିଯିବାର ଭୟଥିବାରୁ ସେ ପ୍ରତିଦିନ ରାସ୍ତା ସଫା କରୁଥାଏ। ସେଥିରେ ପୁଷ୍ପ ବିଛାଉଥାଏ। ନିଜ କୁଟୀରକୁ ଗୋମୟରେ ଲିପାପୋଛା କରି ପବିତ୍ର କରି ରଖୁଥାଏ। ପ୍ରଭୁଙ୍କ ସତ୍କାରରେ କାଳେ ଅସୁବିଧା ଉପୁଜିବ, ସେଥିପାଇଁ ସେ ସଦାସର୍ବଦା ସତର୍କ ହୋଇ ରହେ।

ଶେଷରେ ଦିନେ ତା' ପ୍ରତୀକ୍ଷାର ଅନ୍ତିମ ଦିବସ ଆସି ଉପସ୍ଥିତ ହେଲା। ଭଗବାନଙ୍କୁ ଯିଏ ଯେମିତି ଅନ୍ତରର ସ୍ମରଣ କରେ, ଭଗବାନ ମଧ୍ୟ ଅନୁରୂପ ଭାବରେ ତାକୁ ସେମିତି ସ୍ମରଣ କରନ୍ତି। ଶବରୀ ଯେମିତି ପ୍ରଭୁ ଶ୍ରୀରାମଙ୍କୁ ଦେଖିବାକୁ ବ୍ୟାକୁଳ ଥିଲା, ପ୍ରଭୁ ଅନ୍ତର୍ଯ୍ୟାମୀ ମଧ୍ୟ ସେହିପରି ଶବରୀର କୁଟୀରରେ ପାଦଦେବାକୁ ବ୍ୟାକୁଳ ଥିଲେ। ଭ୍ରାତୃଦ୍ୱୟ ବନବାସୀମାନଙ୍କୁ ଓ ପଡ଼ୋଶୀ ଋଷିମାନଙ୍କୁ ଶବରୀର ଆଶ୍ରମକୁ ବାଟ ପଚାରି ପଚାରି ଆସି ପହଞ୍ଚିଲେ କୁଟୀର ସମ୍ମୁଖରେ। ଶ୍ୟାମଳ, ଗୌର ଭ୍ରାତୃଦ୍ୱୟଙ୍କ ଦର୍ଶନଲାଭ କରି ଶବରୀ ଭାବବିହ୍ୱଳ ହୋଇଗଲା। ତା'ର କଣ୍ଠରୁଦ୍ଧ ହୋଇଗଲା। ସେ ଆନମନା ହୋଇପଡ଼ିଲା। ସତରେ ମୋ ରାମ ଆଜି ବଡ଼ବଡ଼ ଋଷିମୁନିମାନଙ୍କ ଆଶ୍ରମକୁ ନଯାଇ ମୋତେ ଦର୍ଶନ ଦେବା ପାଇଁ ମୋ କୁଡ଼ିଆରେ ପାଦ ଦେଇଛନ୍ତି! ଏଇ ଭାବନାରେ ତା'ର ନେତ୍ରଯୁଗଳରୁ ବହିଚାଲିଲା ଶ୍ରାବଣର ଅଶ୍ରୁଧାରା। ପ୍ରଭୁ କୋମଳ ସ୍ୱରରେ ଡାକିଲେ, ଶବରୀ!! ଏତିକିରେ ସେ ଚେତନା ଫେରିପାଇଲା। ଆରେ, ପ୍ରଭୁଙ୍କୁ ସ୍ୱାଗତ ନକରି ମୁଁ ଚାଣ୍ଡାଳି ଏମିତି ଠିଆ ହୋଇରହିଛି କ'ଣ ? ସେ ସଂଗେ ସଂଗେ ମଥାନତ କରି ପ୍ରଣିପାତ କଲା। ପ୍ରଭୁଙ୍କ ଚରଣଯୁଗଳ ସତେ ଯେମିତି ତା' ଅଶ୍ରୁଜଳରେ ଧୋଇ ହୋଇଗଲା। ପ୍ରଭୁ ତାକୁ ମାତା ବୋଲି ଆଉଥରେ ସମ୍ବୋଧନ କରି ନିଜ କର ସ୍ପର୍ଶରେ ଉଠାଇଲେ। ସେହି ସ୍ପର୍ଶରେ ସେ ପ୍ରକୃତିସ୍ଥ ହେଲା। ପ୍ରଭୁଙ୍କୁ ଆଦର କରି ସେ ଆଶ୍ରମ ଭିତରକୁ ଡାକିନେଲା। ଆନନ୍ଦରେ ସେ ଉଲ୍ଲସିତ ହୋଇଯାଉଥାଏ। ପାଗଳୀଙ୍କ ଭଳି କ'ଣ କହିବ କିଛି ସ୍ଥିର କରିପାରୁ ନଥାଏ। ରଙ୍କୁଣୀ କୋଟିନିଧି ପାଇଲା ଭଳି ସେ ଆନନ୍ଦରେ ଶିହରି ଉଠୁଥାଏ। ପ୍ରଭୁ ତା'ର ଭକ୍ତିଭାବ ଓ ବିଭୋର ପଣ ଦେଖି ମନ୍ଦ ମନ୍ଦ ହସୁଥାନ୍ତି। ତରବର ହୋଇ ସେ ପ୍ରଭୁଙ୍କ ପାଦ ଯୁଗଳକୁ ଜଳ ସିଞ୍ଚନ କରି ସତ୍କାର କଲା। କୁଶ ଆସନ ଦୁଇଟି ପାରିଦେଇ ରାମ ଓ ଲକ୍ଷ୍ମଣଙ୍କୁ ବସିବା ପାଇଁ ନିବେଦନ କଲା। ଶବରୀର ଅନୁରୋଧ ରକ୍ଷାକରି ଦୁଇଭାଇ ବସି ପଡ଼ିଲେ। ତା'ପରେ ବନରୁ ତାଙ୍କ ପାଇଁ ଚାଖିଚାଖି ତୋଳି ଆଣି ରଖିଥିବା ଫଳସବୁକୁ ନିଜ ହାତରେ ପ୍ରଭୁଙ୍କୁ ଅର୍ପଣ କଲା। ପ୍ରଭୁ ତ ଭାବଗ୍ରାହୀ। ଶବରୀର ଭକ୍ତିଭାବରେ ବିମୁଗ୍ଧ ହୋଇ ସେ ଅଇଁଠା ଫଳ ସବୁକୁ ଖାଇ ଚାଲିଲେ। ଖାଇଲାବେଳେ ସେହି ଫଳ ସବୁର ସ୍ୱାଦକୁ ବେଶ୍ ପ୍ରଶଂସା ମଧ୍ୟ କରୁଥିଲେ। ସେହି ଅଇଁଠା ଫଳ ମଧ୍ୟରେ ଲୁଚି ରହିଥିଲା ଶବରୀର ଅନାବିଳ ଭକ୍ତି। ସେଥିପାଇଁ ତାହାର ସ୍ୱାଦ ବହୁଗୁଣିତ ହୋଇଯାଉଥିଲା। ଶବରୀର ହାତରୁ ଗୋଟିକ ପରେ ଗୋଟିଏ ଫଳନେଇ ଖାଇଲା ବେଳେ ଭଗବାନ ନିଜ ମାତା କୌଶଲ୍ୟାଙ୍କ ହାତରୁ ଖାଇଲା ଭଳି ଅନୁଭବ କରୁଥିଲେ। ଗୋଟିଏ ଅପୂର୍ବ ଭାବାବେଗରେ ଶିହରି ଉଠୁଥିଲା ଶବରୀର ମନ ଓ ପ୍ରାଣ। ନିଜର ମାଆ ଭଳି ଶବରୀର ଅର୍ପଣକୁ ପ୍ରଭୁ ଗ୍ରହଣ କରିଚାଲୁଥିଲେ ଅତ୍ୟନ୍ତ ଆନନ୍ଦ ମନରେ। ସେହି ସମୟ ଥିଲା ଭକ୍ତ ଓ ଭଗବାନଙ୍କ ମିଳନର ଏକ ବିରଳ ମୁହୂର୍ତ୍ତ, ଯାହା ଯୁଗଯୁଗ ପାଇଁ ସ୍ମରଣୀୟ ହୋଇ ରହିଛି।

ପ୍ରଭୁ ପ୍ରଥମେ ଶବରୀ ଆଶ୍ରମରେ ପଦାର୍ପଣ କରିଥିବାରୁ ଋଷିମୁନିମାନେ ନିଜକୁ ଲଜ୍ଜିତ ଅନୁଭବ କଲେ। ସେମାନଙ୍କର



ଗର୍ବ ଅହଙ୍କାର ଚୂର୍ଣ୍ଣ ହୋଇଗଲା। ସେମାନେ ଅନ୍ୟ ଉପାୟ ନପାଇ ଶବରୀ ଆଶ୍ରମକୁ ଆସିଲେ। ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କୁ ଦର୍ଶନ କଲେ ଓ ପ୍ରଣାମ ମଧ୍ୟ କଲେ। ସେମାନେ ସେମାନଙ୍କ ସମସ୍ୟା ପ୍ରତି ଅଧିକ ଚିନ୍ତିତ ଥିଲେ। ପମ୍ପା ସରୋବରର ଜଳ କିପରି ପବିତ୍ର ଓ ଶୁଦ୍ଧ ହେବ ସେହି ବିଷୟ ପ୍ରଭୁଙ୍କୁ ପ୍ରଶ୍ନ କଲେ। ପ୍ରଭୁ ଉତ୍ତର ଦେଲେ, ଆପଣମାନଙ୍କ ନିକଟରେ ନିର୍ମଳ ଭକ୍ତିର ଅଭାବ ରହିଛି। ଜଣେ ଭକ୍ତଙ୍କୁ ଅପମାନ ଦେଇଥିବାରୁ ଏହାର ପରିଣାମ ସ୍ୱରୂପ ସରୋବରର ଜଳ ଅପବିତ୍ର ହୋଇଯାଇଛି। ଏହା ମୋର ଏକ ଅଲୌକିକ ଲୀଳା। ପ୍ରଥମେ ଶବରୀମାତାଙ୍କ ପାଦସ୍ପର୍ଶ କରି କ୍ଷମା ଭିକ୍ଷାକର ଓ ପରେ ତାଙ୍କର ପାଦକୁ ନେଇ ସେ ଜଳରେ ସ୍ପର୍ଶ କରାଅ, ତା'ହେଲେ ସେହି ଜଳ ତା'ର ପୂର୍ବ ଅବସ୍ଥା ଫେରିପାଇବ। ଋଷିମାନେ ପ୍ରଭୁଙ୍କର ଆଦେଶ ପାଳନ କଲେ। ଏହାପରେ ହଠାତ୍ ସେରୋବରର ଜଳ ପୂର୍ବବତ ନିର୍ମଳ ହୋଇଗଲା। ତା'ପରେ ଦଣ୍ଡକାରଣ୍ୟର ସମସ୍ତ ମୁନିଋଷି ଶବରୀର ଭକ୍ତିକୁ ପ୍ରଶଂସା କରିବାକୁ ଲାଗିଲେ। ଶବରୀର ଜୀବନ ଧନ୍ୟ ହୋଇଗଲା। ପ୍ରଭୁଙ୍କ ସ୍ତୁତିଗାନ କରି ଶେଷରେ ସେ ନଶ୍ୱର ସଂସାରରୁ ବିଦାୟ ନେଇ ପରମଧାମ ଗମନ କଲା।

ପ୍ରଭୁ ! ଆପଣଙ୍କୁ ଷାଠିଏ ପଉଟି ଭୋଗ ସମର୍ପଣ ହୁଏ। କେତେବେଳେ କେମିତି କାହାର ସ୍ପର୍ଶଜନିତ ଅସୁବିଧା ଉପୁଜିଲେ ସବୁଯାକ ଭୋଗ ମାରା ହୋଇଯାଏ। ତାକୁ ପୋତିଦିଅନ୍ତି ସେବକମାନେ। ଆପଣଙ୍କୁ ସେଭଳି ପ୍ରସାଦ ସମର୍ପଣ କରାଯାଏ ନାହିଁ। କିନ୍ତୁ ଗୋଟିଏ ଅଛୁଆଁ ନାରୀର ଅଇଁଠା ଫଳପ୍ରତି ଆପଣଙ୍କର ଏତେ ଆସକ୍ତି କାହିଁକି ? ସେହି ତ୍ରେତୟାର ରାମ ଅବତାରରେ ଆପଣ ଥରେ ସମସ୍ତଙ୍କୁ ଜଣେଇ ଦେଇଥିଲେ, ଯେତେ ଅନ୍ନବ୍ୟଞ୍ଜନ ଆପଣ ସେବନ କରିଛନ୍ତି ସବୁ ଶବରୀ ମାଆର ଅଇଁଠା ଫଳର ସମକକ୍ଷ ନୁହେଁ। ମିଥିଳା ନରେଶ ଆପଣଙ୍କୁ ନିମନ୍ତ୍ରଣ କରି ନେଇଥିଲେ ତାଙ୍କ ରାଜ ଉଆସକୁ। ସାଙ୍ଗରେ ଥିଲେ ପତ୍ନୀ ସୀତା ଠାକୁରାଣୀ। ଦେବୀ ଜାନକୀମାତା ପ୍ରସ୍ତୁତ କରିଥିଲେ ଅଶେଷ ପ୍ରକାର ଅନ୍ନ ବ୍ୟଞ୍ଜନ ଆପଣଙ୍କ ତୃପ୍ତି ପାଇଁ। ସଖୀମାନଙ୍କ ସହ ସେ ନିଜେ ଉପସ୍ଥିତ ଥିଲେ ଆପଣଙ୍କ ବ୍ୟଞ୍ଜନ ବେଳେ। ପରିହାସ କରିବା ପାଇଁ ତାଙ୍କର ଇଚ୍ଛା ହେଲା। ସଖୀମାନେ ଚତୁରତାର ସହ ଅଲଗା ଅଲଗା ଜାଗାରେ ନାନା ପ୍ରକାର ବ୍ୟଞ୍ଜନ ବାଢ଼ି ସାରି କେଉଁ ପଦାର୍ଥ ସ୍ୱାଦିଷ୍ଟ ହୋଇଛି ବୋଲି ପଚାରିଲେ। ଆପଣ ସେମାନଙ୍କ ପ୍ରଶ୍ନର ଉତ୍ତରରେ ନୂଆ କଥାଟିଏ କହିଲେ, ଯାହାଫଳରେ ସଖୀମାନଙ୍କୁ ପରିହାସ କରିବା ପାଇଁ ସୁଯୋଗ ମିଳିଲା ନାହିଁ । ଆପଣ ସେଦିନ କହିଥିଲେ, ଆଜିଯାଏଁ ଯେଉଁଠି ଯେତେ ବି ସତ୍କାର ପାଇଛି, ସବୁ ଶବରୀ ମାଆର ଅଇଁଠା ଫଳ ତଳେ। ଶବରୀର ଜଙ୍ଗଲିଆ ଫଳରେ ଯେଉଁ ସ୍ୱାଦ ଥିଲା, ତାହା ଏହି ବିବିଧ ବ୍ୟଞ୍ଜନରେ ନାହିଁ।

ସତରେ ପ୍ରଭୁ ଆପଣଙ୍କ ଇଚ୍ଛାକୁ କଳନା କରିବା ସାଧାରଣ ମାନବ ପକ୍ଷେ ସମ୍ଭବ ନୁହେଁ । ଆପଣ କେତେବେଳେ କ'ଣ ଇଚ୍ଛା କରନ୍ତି ତାହା ଜାଣିହୁଏ ନାହିଁ। ଆପଣଙ୍କର ବାରମାସରେ ତେର ପର୍ବ। ଶ୍ରୀରାମ ନବମୀ ଆସିଲେ ଆପଣଙ୍କ ବେନି ନୟନ ଖୋଜିବୁଲେ ଶବରୀକୁ। ଆପଣଙ୍କର ଇଚ୍ଛା ହୁଏ, ଶବରୀ ଆସନ୍ତା ବନବାସୀ ବେଶରେ ଶ୍ରୀମନ୍ଦିର ଭିତରକୁ। ହାତରେ ଧରି ଆସିଥାନ୍ତା ସ୍ୱାଦଯୁକ୍ତ ଅନେକ ଫଳ। ତା'ସାମ୍ନାରେ ଆପଣ ଯାଇ ବସିପଡ଼ନ୍ତେ। ଗୋଟିକ ପରେ ଗୋଟିଏ ଫଳକୁ ସେ ନିଜେ ଚାଖି ଆପଣଙ୍କୁ ବଢ଼େଇ ଦିଅନ୍ତା। ଆପଣ ତା' ହାତରୁ ଗୋଟିକ ପରେ ଗୋଟିଏ ଅଇଁଠା ଫଳକୁ ନେଇ ଭକ୍ଷଣ କରିଚାଲନ୍ତେ ମହା ଆନନ୍ଦରେ। ଏଭଳି ଦୃଶ୍ୟ ଦେଖି ଉପସ୍ଥିତ ସେବକ ଓ ଦର୍ଶନାର୍ଥୀମାନେ ଆଶ୍ଚର୍ଯ୍ୟ ହୋଇପଡ଼ନ୍ତେ। ଆପଣ ସେଇଠି ପ୍ରମାଣ କରିଦିଅନ୍ତେ, ନିର୍ମଳ ଭକ୍ତି ନିକଟରେ ଜାତି ଅଜାତିର ପ୍ରତିବନ୍ଧକ ଆଦୌ ନାହିଁ। ଭକ୍ତର ଅନାବିଳ ତ୍ୟାଗ ଓ ପ୍ରତୀକ୍ଷା ନିକଟରେ ଶୁଦ୍ଧ ଅଶୁଦ୍ଧର ବାଛବିଚାର ନାହିଁ।

ନାଗାବଗିଚା, ପ୍ରଥମଗଳି, ମଧୁବନ, ପୁରୀ–୨





# ଭକତ ତୋ ବନ୍ଧୁ

ଡକ୍ଟର ଶରତ କୁମାର ବିଶ୍ୱାଳ

ଆଦି ଶଙ୍କରାଚାର୍ଯ୍ୟ ଭାରତରେ ଚାରିଧାମ ପ୍ରତିଷ୍ଠା କରିଥିଲେ । ଉତ୍ତରରେ ବଦ୍ରିକାସ୍ଥିତ ଯୋଶିମଠ, ଦକ୍ଷିଣରେ ଶୃଙ୍ଗେରୀ ମଠ, ପଶ୍ଚିମରେ ଦ୍ୱାରକାସ୍ଥିତ ଶାରଦା ମଠ ଏବଂ ପୂର୍ବରେ ପୁରୀସ୍ଥିତ ଗୋବର୍ଦ୍ଧନ ମଠ । ଏହି ଚାରିଧାମ ମଧ୍ୟରୁ ପୁରୀ ନୀଳାଚଳ ଧାମ ହେଉଛି ଶ୍ରେଷ୍ଠଧାମ । ଏଠାରେ ଜଗତର ନାଥ ଶ୍ରୀଜଗନ୍ନାଥ ବିଜେ କରିଛନ୍ତି । ପ୍ରଭୁ ହେଉଛନ୍ତି ଉତ୍କଳର ରାଷ୍ଟ୍ର ଦେବତା । ଜଗନ୍ନାଥ ସର୍ବଧର୍ମର ସମନ୍ୱୟ । ରଥଯାତ୍ରାରେ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଭକ୍ତ ଓ ଭଗବାନଙ୍କର ମିଳନ ହୁଏ । ବଡଦାଣ୍ଡରେ ବିଦେଶୀ-ସ୍ୱଦେଶୀ, ଧନୀ-ଦରିଦ୍ର, ବ୍ରାହ୍ମଣ-ଚଣ୍ଡାଳ ସମସ୍ତେ ହୋଇଯାଆନ୍ତି ଏକାକାର । ଉତ୍କଳର ଆରାଧ୍ୟ ଦେବତା ଜଗାକାଳିଆ ହେଉଛନ୍ତି ରହସ୍ୟମୟ ଠାକୁର । ସେ ସବୁଠାରୁ ପ୍ରାଚୀନ କିନ୍ତୁ ସବୁବେଳେ ନୂତନ । ସେ ହେଉଛନ୍ତି ଭାବର ଠାକୁର, ଭକ୍ତିର ଠାକୁର ଓ ଭକ୍ତର ଏକାନ୍ତ ନିଜର । ଭକ୍ତର ଭାବ ଗ୍ରହଣ କରି ସେ ଭାବ ବିନୋଦିଆ । ସାଧାରଣ ଭକ୍ତପାଇଁ ସେ ଭକ୍ତ ବତ୍ସଳ, ସଖା, ସହୋଦର, ବନ୍ଧୁ ସବୁ କିଛି । ଭକ୍ତର ଏକାନ୍ତ ଠାକୁର ହେଉଛନ୍ତି ଦାରୁବ୍ରହ୍ମ ଜଗନ୍ନାଥ । ଭକ୍ତ ହେଉଛି ଜଗନ୍ନାଥଙ୍କର ପ୍ରିୟ । ଅଲୌକିକ ତାଙ୍କର ଲୀଳାଖେଳା । ଯୁଗେ ଯୁଗେ ସେ ଭକ୍ତ ଭାବରେ ବନ୍ଧା ହୋଇ ରହିଛନ୍ତି । ତେଣୁ ତାଙ୍କର ଅନ୍ୟନାମ ଭାବଗ୍ରାହୀ । ଭକ୍ତର ଦୁଃଖ ସହି ନ ପାରି କେତେବେଳେ ବନ୍ଧୁ ଭାବରେ ନିଜେ ପାଖରେ ଉଭା ହୋଇଯାଆନ୍ତି ତ ଆଉ କେତେବେଳେ ଭକ୍ତକୁ ପରୀକ୍ଷାର ସମ୍ମୁଖୀନ କରାଇଥାନ୍ତି । ସବୁଥିରେ ପ୍ରଭୁଙ୍କର ବନ୍ଧୁପଣିଆର ମହିମା ପ୍ରକାଶ ପାଇଥାଏ । ତାଙ୍କଠାରୁ ପ୍ରିୟସଖା ଭକ୍ତର ଆଉ କେହି ନାହିଁ । କବି ଦୀନକୃଷ୍ଣ ଦାସ ଗାଇଛନ୍ତି-

ଜଗବନ୍ଧୁ ପରି ଜଣେ ସାମନ୍ତ ନାହିଁ ନାହିଁ ତ
ଚଉଦ ଭୁବନ ବାରତା ଜାଣନ୍ତି
ଚକ୍ରରେ ଛେଦନ୍ତି ଆରତ ।

ଭକ୍ତକବି ସାଲବେଗ ଭକ୍ତ ସହିତ ଜଗନ୍ନାଥଙ୍କର ସଂପର୍କକୁ ଅବତାରଣା କରିବାକୁ ଯାଇ ଗାଇଛନ୍ତି-

ଏକା ତୋ' ଭକତ ଜୀବନ
ଭକତ ନିମନ୍ତେ ତୋର ଶଙ୍ଖଚକ୍ର ଚିହ୍ନ ।
ଭକତ ତୋ ପିତାମାତା ଭକତ ତୋ ବନ୍ଧୁ
ଭକତ ହିତରେ ତୋର ନାମ କୃପାସିନ୍ଧୁ ।

ଭକ୍ତର ଭଗବାନ ସେ । ଜଗନ୍ନାଥ କିପରି ଭକ୍ତର ବନ୍ଧୁ ସେ ବିଷୟରେ ବହୁ ଦିବ୍ୟାନୁଭୂତିର ବର୍ଣ୍ଣନା ଦେଖିବାକୁ ମିଳିଥାଏ । ଏସବୁକୁ ନେଇ ବହୁ କାହାଣୀ ଅଛି । ଭକ୍ତ ବଳରାମ ଦାସ, ଜଗନ୍ନାଥ ଦାସ, ଶ୍ରୀଚୈତନ୍ୟ ସାଲବେଗ, ବନ୍ଧୁ ମହାନ୍ତି ଓ ଦାସିଆ ବାଉରୀର ଭକ୍ତିଭାବରେ କିପରି ଜଗନ୍ନାଥ ବନ୍ଧୁ ପଣିଆର ଦିବ୍ୟାନୁଭୂତି ପ୍ରଦର୍ଶନ କରିଛନ୍ତି, ତାହା ସମସ୍ତଙ୍କୁ ମୁଗ୍ଧ କରିଥାଏ । ସାତଶ ପଞ୍ଚାଶ କୋଶ ଦୂର ପୁରୀରୁ ବୃନ୍ଦାବନ । ଭକ୍ତ ସାଲବେଗ ତୀର୍ଥଯାତ୍ରାରେ ସେତେବେଳେ ବୃନ୍ଦାବନରେ ଥାଆନ୍ତି । ଆଗକୁ ପୁରୀରେ ଜଗାକାଳିଆର ରଥଯାତ୍ରା । ଭକ୍ତସାଲବେଗ ନନ୍ଦିଘୋଷରେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବେ । ତରତର ହୋଇ ବୃନ୍ଦାବନରୁ ବାହାରି ପଡିଲେ । ମନ ଯାଇ କାଳିଆ ପାଖରେ । କିନ୍ତୁ ରୋଗାକ୍ରାନ୍ତ ଶରୀର ଅନୁମତି ଦେଉନାହିଁ । ମନରେ ଆଶଙ୍କା ସେ କ'ଣ ପୁରୀରେ ପହଞ୍ଚି ଜଗନ୍ନାଥଙ୍କୁ ନନ୍ଦିଘୋଷ ରଥରେ ଦର୍ଶନ କରି ପାରିବେ ନାହିଁ !



ହାତଟେକି ନିଜକୁ ଜଗନ୍ନାଥଙ୍କ ପାଦତଳେ ସମର୍ପଣ କରି ଗାଇଉଠିଲେ–

ଜଗବନ୍ଧୁ ହେ ଗୋସାଇଁ
ତୁମ୍ଭ ଶ୍ରୀଚରଣ ବିନୁ ଅନ୍ୟ ଗତି ନାହିଁ ।
ସାତଶ ପଞ୍ଚାଶ କୋଶ ଚାଲି ନ ପାରଇ
ମୋହ ଯିବା ଯାଏ ନନ୍ଦିଘୋଷେ ଥିବ ରହି ।

ଗୁଣ୍ଡିଚା ରଥଯାତ୍ରା ସରି ବାହୁଡା ଯାତ୍ରା ଆରମ୍ଭ ହୋଇ ଗଲାଣି । କିନ୍ତୁ ଭକ୍ତ ସାଲବେଗ ଏ ପର୍ଯ୍ୟନ୍ତ ବଡଦାଣ୍ଡରେ ପହଞ୍ଚି ନାହାନ୍ତି । ଅଟକିଗଲା ବଡଦାଣ୍ଡରେ ନନ୍ଦିଘୋଷ । ଗଡିଲା ନାହିଁ ଆଗକୁ । ସେବକମାନଙ୍କର ସମସ୍ତ ପ୍ରୟାସ ବ୍ୟର୍ଥ ହେଲା । ସାଲବେଗ ବଡଦାଣ୍ଡରେ ପହଞ୍ଚି ନିଜ ଆଖିକୁ ବିଶ୍ୱାସ କରି ପାରିଲେ ନାହିଁ । ପ୍ରଭୁ ! ଏ ପର୍ଯ୍ୟନ୍ତ ନନ୍ଦିଘୋଷ ରଥରେ ଅଟକି ରହିଛନ୍ତି । ଗଡିଗଲେ ଶରଧା ବାଲିରେ । ହାତଯୋଡି ଭୂମିଷ୍ଠ ପ୍ରଣାମ କଲେ । ଭକ୍ତର ମନୋବାଞ୍ଛା ପୂରଣ ହେଲାପରେ ନନ୍ଦିଘୋଷ ରଥ ଗଡିଲା ବଡଦାଣ୍ଡରେ ଶ୍ରୀମନ୍ଦିର ଅଭିମୁଖେ ।

ଦ୍ୱାପର ଯୁଗରେ ବନ୍ଧୁ ସୁଦାମକୁ ଶଙ୍ଖୋଳିବାକୁ ଯାଇ ଆପଣ ଶ୍ରେଷ୍ଠ ସଖାର ପରିଚୟ ଦେଇଛନ୍ତି । ତୁମ ବନ୍ଧୁ ପଣିଆର ପଟାନ୍ତର ନାହିଁ । ଅତି ଦରିଦ୍ର ଅସହାୟ ଭକ୍ତକୁ ବନ୍ଧୁ ଭାବେ ସ୍ୱୀକାର କରି, ଆପଣ ରତ୍ନଥାଳିରେ ନିଜେ ମହାପ୍ରସାଦ ଦେଇ ଯେପରି ବନ୍ଧୁ ଶଙ୍ଖୋଳିଲେ ତାହା ଜନମାନସରେ ଆଜି ବି ଅବିସ୍ମରଣୀୟ ହୋଇ ରହିଛି । ବିରଜାକ୍ଷେତ୍ର ଯାଜପୁର ସହିତ ଶ୍ରୀକ୍ଷେତ୍ରର ନିବିଡ ସଂପର୍କ । ଯାଜପୁର ସହରର ନିକଟବର୍ତ୍ତୀ ଏକ ଗ୍ରାମ କପିଳେଶ୍ୱର । ସେହି ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ ଦୀନବନ୍ଧୁ ମହାନ୍ତି । ସେ ଥିଲେ ଜଗନ୍ନାଥଙ୍କର ପରମ ଭକ୍ତ । ଜଗନ୍ନାଥଙ୍କର ଶରଣାପନ୍ନ ହୋଇ ତାଙ୍କର ନାମ ଜପି ଦିନରାତି କଟାଉ ଥିଲେ । ବଡ ଅଭାବୀ ଲୋକ । ବିଶେଷ ଜମି ବାଡି ନଥିଲା । ଦୁଃଖ କଷ୍ଟେ ପରିବାର ଚଳାଉଥିଲେ । ପରିବାର କହିଲେ ପାଞ୍ଚ ପ୍ରାଣୀ–ସ୍ୱାମୀ, ସ୍ତ୍ରୀ ଏବଂ ୩ ଗୋଟି ସନ୍ତାନ । କୌଣସି ପ୍ରକାରେ ମାଗିଯାଚି ଚଳିଯାଉଥିଲେ । ଜଗନ୍ନାଥଙ୍କ ପାଦପଦ୍ମକୁ ଧ୍ୟାନ କରି ଓ ତାଙ୍କ ଗୁଣ କୀର୍ତ୍ତନ କରି ସପରିବାର ଜୀବନ ବିତାଉଥିଲେ । ଯାଜପୁର ଏକ ନଦୀ ନାଳ ଘେରା ଅଞ୍ଚଳ । ବନ୍ୟା, ବାତ୍ୟା, ଦୁର୍ଭିକ୍ଷ ପ୍ରଭୃତି ପ୍ରାକୃତିକ ଦୁର୍ବିପାକ ଏହାର ଚିର ସହଚର । ବର୍ଷା ଅଭାବରୁ ସେ ଅଞ୍ଚଳରେ ଦୁର୍ଭିକ୍ଷ ପଡିଲା । ଖାଦ୍ୟାଭାବ ଦେଖାଦେଲା । ଲୋକମାନେ ଖାଇବାକୁ ପାଇଲେ ନାହିଁ । ଭୋକିଲା ପେଟକୁ ଦାନା ମୁଠାଏ ଯୋଗାଡ କରିବା କଷ୍ଟକର ହୋଇପଡିଲା । ଦୀନବନ୍ଧୁ ମହାନ୍ତିଙ୍କୁ ମାଗିଯାଚି କୁଟୁମ୍ବ ଚଳାଇବା ଏକ ପ୍ରକାର ଅସମ୍ଭବ ମନେହେଲା । କାହାକୁ ମାଗିବେ । ସମସ୍ତଙ୍କୁ ସମଦଶା । କାହା ପାଖରେ ଥିଲେ ସିନା କିଏ ଦେବ ! କିପରି ପିଲାମାନଙ୍କ ମୁହଁରେ ଆହାର ଗଣ୍ଡାଏ ଦେବେ, ଦୀନବନ୍ଧୁ ମହାନ୍ତିଙ୍କୁ ଚାରିଦିଗ ଅନ୍ଧାର ଦିଶିଲା । ଦିନସାରା ବାର ଦୁଆରେ ମାଗି ମାଗି ଯେତେବେଳେ ଶୂନ୍ୟ ହସ୍ତରେ ଫେରୁଥିଲେ ଦାଣ୍ଡ ଦୁଆରେ ଭୋକିଲା ପିଲା ଓ ଅପେକ୍ଷାରତା ସ୍ତ୍ରୀଙ୍କୁ ଦେଖି ସେ କୋହ ସମ୍ଭରଣ କରିପାରୁ ନଥିଲେ । ପିଲାମାନଙ୍କର ଭୋକ ଦେଖି କୌଣସି ମାଆ ବା ସହ୍ୟ କରିପାରିବ ! ଦୀନବନ୍ଧୁ ମହାନ୍ତିଙ୍କ ସ୍ତ୍ରୀ କାନ୍ଦି କାନ୍ଦି ସ୍ୱାମୀଙ୍କୁ କହିଲେ ବାପା ମାଆ ବଞ୍ଚି ଥାଉଁ ଥାଉଁ ପିଲା ତିନୋଟି ଭୋକ ଉପାସରେ ଆଉଟ ପାଉଟ ହେଉଛନ୍ତି । ଧିକ୍ ଆମ ବଞ୍ଚିବା । ଦୀନବନ୍ଧୁ ମହାନ୍ତି ଜଗନ୍ନାଥଙ୍କୁ ଏ କଥା ଧ୍ୟାନରେ ଜଣାଇଲେ– ତୁମକୁ ଆଶ୍ରା କରି ମୁଁ ପଡି ରହିଛି । ତୁମେ ନରଖିଲେ ଆଉ କିଏ ରଖିବ । ତୁମ ବିନା ମୋର ଆଉ କିଏ ସାହା ଅଛି । ଖାଦ୍ୟ ବିନା ତିନୋଟି ସନ୍ତାନଙ୍କର ମୃତ୍ୟୁ ହେଲେ ପ୍ରଭୁଙ୍କ ନାମରେ କଳଙ୍କ ଲାଗିବ ନାହିଁ ! ହେ ଦୀନବାନ୍ଧବ । ମୋ ଦୁଃଖ ଦୂର ନ କଲେ ଆଉ କିଏ ଶୁଣିବ ତ ତୁମେ ଯଦି ମୋତେ ପାଶୋରିବ ତେବେ ମୋ ବନ୍ଧୁ ହୋଇବ କିଏ । ସ୍ତ୍ରୀଙ୍କ ଡାକରେ ଦୀନବନ୍ଧୁଙ୍କର ଧ୍ୟାନଭଗ୍ନ ହେଲା । ସେ ଆଖି ଖୋଲି ସ୍ତ୍ରୀଙ୍କୁ ଚାହିଁଲେ । ସ୍ତ୍ରୀଙ୍କ ଆଖିରେ ଲୁହ । କୋହଭରା କଣ୍ଠରେ ସ୍ତ୍ରୀ କହିଲେ– 'ଏତେବଡ ଦୁନିଆରେ ତୁମର କ'ଣ କେହି ବନ୍ଧୁ ନାହାନ୍ତି । ତାଙ୍କୁ ସାହାଯ୍ୟ ମାଗୁନାହଁ ।'

ଦୀନବନ୍ଧୁ ମହାନ୍ତି ସ୍ତ୍ରୀଙ୍କ ମୁହଁକୁ ଚାହିଁ ମନେ ମନେ ଭାବୁଛନ୍ତି, ଏ ଦୁନିଆରେ ତାଙ୍କର ଆଉ ଏତେବଡ ବନ୍ଧୁ କିଏ ଅଛନ୍ତି । ଯିଏକି ଏ ଅସମୟରେ ତାଙ୍କ ପାଖରେ ଛିଡାହୋଇ ସାହାଯ୍ୟର ହସ୍ତ ପ୍ରସାରଣ କରିବେ । ଆଖି ଆଗରେ ଝଲସି





ଉଠିଲା ନୀଳକନ୍ଦରରେ ଶୋଭା ପାଉଥିବା କଳାବଦନ ମହାପ୍ରଭୁ ଶ୍ରୀଜଗନ୍ନାଥ ! ତାଙ୍କଠାରୁ ଆଉ ବଡ ବନ୍ଧୁ କିଏ ଅଛନ୍ତି । ସିଏ ଏ ମହାଦୁଃଖରୁ ରକ୍ଷା ନ କଲେ ଆଉ କିଏ ରଖିବ । ଯାଉଛି ନୀଳଗିରି କାଳିଆକୁ ଦର୍ଶନ କରି ସବୁ ଦୁଃଖ ଜଣାଇବି । ଶ୍ରୀକ୍ଷେତ୍ର ଯିବି । ଦୀନବନ୍ଧୁ ପ୍ରକୃତିସ୍ଥ ହୋଇ ସ୍ତ୍ରୀଙ୍କୁ କହିଲେ ମୋର ଜଣେ ବନ୍ଧୁ ଅଛନ୍ତି । ହେଲେ ତାଙ୍କ ଘର ଏଠାରୁ ବହୁଦୂର ! ସାତ ଦିନର ଚ଼ଲାପଥ । ତୁମେ ପିଲାମାନଙ୍କ ସହ ପ୍ରସ୍ତୁତ ହୁଅ । ଆମେ ଆସନ୍ତା କାଲି ସକାଳୁ ବାହାରିଯିବା ।

ଦୀନବନ୍ଧୁ ମହାନ୍ତି ସ୍ତ୍ରୀ ପିଲାଙ୍କୁ ସାଥିରେ ନେଇ ଚାଲିଲେ ପୁରୀ । ପିଲାମାନଙ୍କୁ କେତେବେଳେ କାନ୍ଧରେ ବସାଇ ତ ଆଉ କେତେବେଳେ କାଖେଇ ଧରି ସ୍ୱାମୀ ସ୍ତ୍ରୀ କାଳିଆକୁ ସୁମରଣା କରି ବାଟ ଚାଲିଥାନ୍ତି । ସବୁ ଦୁଃଖ କଷ୍ଟ ସହି ଯେତେବେଳେ ବଡଦାଣ୍ଡରେ ପହଞ୍ଚି ନୀଳଚ଼କ୍ରରେ ଉଡୁଥିବା ବାନାକୁ ଦେଖିଲେ, ଆଖିରୁ ଖସିପଡିଲା ଆନନ୍ଦର ଅଶ୍ରୁ । ହସ୍ତଯୋଡି ଠାକୁରଙ୍କ ଉଦ୍ଦେଶ୍ୟରେ ଭୂମିଷ୍ଠ ପ୍ରଣାମ କଲେ । ଆଗକୁ ମାଡି ଚାଲିଲେ । ଅରୁଣସ୍ତମ୍ଭ ପାର୍ଶ୍ୱଦେଇ ସିଂହଦ୍ୱାରରେ ପହଞ୍ଚିଗଲେ । ଭିଡଠେଲି ପରିବାରକୁ ନେଇ ଭିତରକୁ ଯିବା ତାଙ୍କ ପାଇଁ ଅସମ୍ଭବ ହୋଇ ପଡିଲା । ସେହିଠାରେ ଠିଆହୋଇ ଦୁଇହାତ ଉପରକୁ ଟେକି ଜଗନ୍ନାଥକୁ ଗୁହାରି କଲେ – ମଣିମା ! ଏ ଗରିବ ନିରକ୍ଷଜନ ଡାକୁଛି । ବାରେ ଶୁଣିମା ହେଉ ପ୍ରଭୁ । ହେ ପଙ୍କଜ ମୁଖ! ତୁମର ଶରଣାଗତ ହେଲି ପ୍ରଭୁ! ପିଲାମାନଙ୍କୁ ରକ୍ଷାକର ମହାବାହୁ ।

କ୍ଳାନ୍ତ ଶରୀର । ସ୍ତ୍ରୀ ଓ ପିଲାମାନେ ଭୋକିଲା । ଗୁମୁଟରୁ ଜଗନ୍ନାଥ ମହାପ୍ରଭୁଙ୍କୁ ଦର୍ଶନ କଲେ ଦୀନବନ୍ଧୁ ମହାନ୍ତି । ଗହଳି କମିଗଲେ ଜଗବନ୍ଧୁଙ୍କୁ ମନ ପୂରାଇ ଦର୍ଶନ କରିବେ । ସ୍ତ୍ରୀଙ୍କ ହାତଧରି ପିଲାମାନଙ୍କ ସହ ସେ ଦକ୍ଷିଣ ଦ୍ୱାର ଆଡକୁ ଚାଲିଲେ । ଟଙ୍କା ପଇସା ପାଖରେ ନାହିଁ । ଥିଲେ ଅବା ପିଲାମାନଙ୍କୁ ଦୋକାନରୁ କିଣି ଖୋଇଥାନ୍ତେ । ପହଞ୍ଚିଗଲେ ପେଜନଳା ପାଖରେ । ସମସ୍ତେ ବସି ପଡିଲେ ସେଠି । ପେଜ ଆଞ୍ଜୁଳାଏ ଲେଖାଏଁ ପିଇ କ୍ଳାନ୍ତି ମେଣ୍ଟାଇଲେ । ମହାପ୍ରଭୁଙ୍କୁ ସୁମରଣା କରି ସ୍ତ୍ରୀ ପିଲାଙ୍କ ସହ ଦୀନବନ୍ଧୁ ମହାନ୍ତି ସେହିଠାରେ ଗାମୁଛା ବିଛାଇ ଶୋଇ ପଡିଲେ । ବାଟଚଲା ଯୋଗୁଁ ଶରୀର ଅବଶ ହୋଇ ପଡିଥିବାରୁ ସମସ୍ତଙ୍କୁ ନିଦ ଆସିଗଲା ।

ଶ୍ରୀଜୀଉଙ୍କ ବଡସିଂହାର ବେଶସାରି ସେବକ ପାଳିଆମାନେ ଚାଲିଗଲେଣି । ତେଣେ ଭକ୍ତ ଦୀନବନ୍ଧୁ ମହାନ୍ତିଙ୍କ ସପରିବାର ଉପବାସରେ ପେଜନଳା ପାଖରେ ପଡିଛନ୍ତି । ମହାପ୍ରଭୁ ଅନ୍ତର୍ଯ୍ୟାମୀ । ଭକ୍ତର ଅନ୍ତର ବାରତା ଜାଣି ପାରନ୍ତି । ତାଙ୍କ ଆଖିକୁ ନିଦ ଆସିଲା ନାହିଁ । ରନ୍ଥାଳିରେ ମହାପ୍ରସାଦ ଧରି ପହଞ୍ଚିଗଲେ ଦକ୍ଷିଣ ଦ୍ୱାରର ପେଜନଳା ପାଖରେ । ଉଚ୍ଚସ୍ୱରରେ ଡାକ ପକାଇଲେ–ବନ୍ଧୁ ! ବନ୍ଧୁ ! କୁଆଡେ ଗଲ । ରାତି ଅଧରେ କାହାର ଡାକରେ ଦୀନବନ୍ଧୁ ମହାନ୍ତିଙ୍କର ନିଦ୍ରାଭଙ୍ଗ ହେଲା । କିଏ କାହାକୁ ବନ୍ଧୁବୋଲି ଡାକୁଛି ! ଏତେ ବଡ ନୀଳାଚଳ ଧାମରେ ତାଙ୍କର କିଏ ଜଣା ଅଛି ଯେ ଡାକିବ । ଦୀନବନ୍ଧୁ ମହାନ୍ତି ଦେଖିଲେ ସ୍ତ୍ରୀ ଓ ପିଲାମାନେ ନିଘୋଡ ନିଦରେ ଶୋଇଛନ୍ତି । ପୁଣି ଆଖିବୁଜି ଶୋଇପଡିଲେ ଦୀନବନ୍ଧୁ ମହାନ୍ତି । କିନ୍ତୁ ଏ କ'ଣ । ପୁଣି ସେହି ଦିବ୍ୟସ୍ୱର ଶୁଭିଯାଉଛି । ଦୀନବନ୍ଧୁ ଉଠି ବସିଲେ । ତାଙ୍କ କାନକୁ ଶୁଭିଯାଉଥିଲା ସତେ ଯେପରି କିଏ ଡାକୁଛି । ହୋ ଯାଜପୁରିଆ ବନ୍ଧୁ! କେଉଁଠି ଶୋଇଛ । ମୋ ପାଖକୁ ଆସ । ଦୀନବନ୍ଧୁ ମହାନ୍ତି ଆଖିମଳି ଚାହିଁ ଦେଖିଲେ ଜଣେ ବ୍ରାହ୍ମଣ ହାତଠାରି ତାଙ୍କୁ ଡାକୁଛନ୍ତି । ବ୍ରାହ୍ମଣଙ୍କ ଦେହରୁ ଦିବ୍ୟ ଆଲୋକ ବିଚ୍ଛୁରିତ ହେଉଛି । ସେ ବ୍ରାହ୍ମଣଙ୍କ ନିକଟତର ହେଲେ । ବ୍ରାହ୍ମଣ ହସି ହସି ତାଙ୍କ ହାତକୁ ରନ୍ଥାଳିପୂର୍ଣ୍ଣ ମହାପ୍ରସାଦ ବଢାଇ ଦେଇ କହିଲେ ବନ୍ଧୁ! ତୁମେ ଏଠି ଉପବାସରେ ଶୋଇଛ । ବନ୍ଧୁଘରେ କେହି କ'ଣ ଉପବାସରେ ରୁହନ୍ତି । ନିଅ ଏହି ମହାପ୍ରସାଦ! ସପରିବାର ଭୋଜନ କରି ଶାନ୍ତିରେ ନିଦ୍ରାଯାଅ ! ଅଗୁରୁଚ଼ନ୍ଦନ ବାସନାରେ ସେ ସ୍ଥାନ ମହ ମହ ବାସୁଥିଲା । ଦୀନବନ୍ଧୁ ମହାନ୍ତି ହସ୍ତ ପ୍ରସାରଣ କରି ଛଦ୍ମ ବେଶଧାରୀ ବ୍ରାହ୍ମଣଙ୍କ ହସ୍ତରୁ ମହାପ୍ରସାଦ ଥାଳି ଗ୍ରହଣ କରି ସ୍ୱସ୍ଥାନକୁ ଫେରିଆସିଲେ । ସ୍ତ୍ରୀ ଓ ପିଲାମାନଙ୍କୁ ନିଦ୍ରାରୁ ଉଠାଇଲେ । ସମସ୍ତେ ମିଶି ପରମତୃପ୍ତିରେ ପ୍ରସାଦ ଖାଇଲେ । ଦିବ୍ୟଭୋଜନ ସାରି ପ୍ରଭୁଙ୍କ ଉଦ୍ଦେଶ୍ୟରେ ହାତଯୋଡି ଦୀନବନ୍ଧୁ ମହାନ୍ତି ଜଣାଇଲେ–ଆହେ ନୀଳଗିରି ! ଦୀନବନ୍ଧୁ ! ଜଗବନ୍ଧୁ !



ତୁମ ବନ୍ଧୁପଣ ଯଶ ସାରା ଜଗତରେ ଖ୍ୟାତ । ଏ ଦୀନଜନର ଗୁହାରି ଶୁଣିଲ ପ୍ରଭୁ ! ଭୂମିଷ୍ଠ ପ୍ରଣାମ କରି ରତ୍ନଥାଳି ଫେରାଇବାକୁ ଗଲାବେଳକୁ ବ୍ରାହ୍ମଣ ବେଶଧାରୀ ମହାପ୍ରଭୁ ଅନ୍ତର୍ଦ୍ଧାନ ହୋଇ ଯାଇଥିଲେ । ବ୍ରାହ୍ମଣ ନନା କେଉଁଠି ଅଛ । ତୁମ ଥାଳି ନିଅ କହି ଡାକ ପକାଇଲେ ଦୀନବନ୍ଧୁ । କିନ୍ତୁ ତାଙ୍କର ସମସ୍ତ ଡାକ ଶୂନ୍ୟରେ ମିଳାଇ ଗଲା । ସେ ବ୍ରାହ୍ମଣ ଆଉ ଆସିଲେ ନାହିଁ । ଏକ ଦୀର୍ଘଶ୍ୱାସ ଛାଡି ଦୀନବନ୍ଧୁ ମହାନ୍ତି ଥାଳିଟିକୁ ଧରି ଫେରି ଆସିଲେ ତାଙ୍କ ଶୋଇବା ସ୍ଥାନ ପେଜନଳା ପାଖକୁ । ଛିଣ୍ଡା କନାରେ ଥାଳିଟିକୁ ଘୋଡାଇ ମୁଣ୍ଡତଳେ ରଖି ନିଦ୍ରା ଗଲେ ।

ପରଦିନ ସକାଳେ ସେବକମାନେ ପ୍ରଭୁଙ୍କର ରତ୍ନଥାଳି ଭଣ୍ଡାର ଘରେ ନପାଇ ବ୍ୟସ୍ତ ହୋଇ ପଡିଲେ । ବହୁ ଖୋଜିଲା ପରେ ରତ୍ନଥାଳି ଦୀନବନ୍ଧୁ ମହାନ୍ତିଙ୍କ ପାଖରେ ଥିବାର ସେବକମାନେ ଜାଣି ଆଶ୍ଚର୍ଯ୍ୟ ହୋଇଗଲେ । ରତ୍ନଥାଳି ଏଠାକୁ କିପରି ଆସିଲା । ଏ ଲୋକ ନିଶ୍ଚୟ ଚୋରି କରି ଆଣି ରଖିଛି । ଦୀନବନ୍ଧୁ ମହାନ୍ତିଙ୍କୁ ମାଡଗାଳି ଦେଇ ଚୋରି ଅଭିଯୋଗରେ ରାଜାଙ୍କ ପାଖରେ ହାଜର କରାଇଲେ । ଶେଷରେ ରାଜାଙ୍କ ଆଦେଶରେ ତାଙ୍କୁ ବନ୍ଦୀଶାଳରେ ରଖାଗଲା । ଦୀନବନ୍ଧୁ ମହାନ୍ତିଙ୍କ ଆଖିରେ ଲୁହ । ହାତଯୋଡି ପ୍ରଭୁଙ୍କୁ ଜଣାଇଲେ– ମହାପ୍ରଭୁ ! ଏ କ'ଣ କଲ । ଶେଷରେ ମୋତେ ଚୋର ବନାଇ ଦେଲ । ପରମଭକ୍ତର କଷ୍ଟ ସହି ପାରିଲେ ନାହିଁ ଶ୍ରୀଜଗନ୍ନାଥ । ସେହିଦିନ ରାତିରେ ରାଜାଙ୍କୁ ସ୍ୱପ୍ନାଦେଶ ହେଲା– ମୋର ପରମ ଭକ୍ତ ଯାଜପୁରିଆ ବନ୍ଧୁ– ବନ୍ଧୁ ମହାନ୍ତି ଦର୍ଶନକୁ ଆସି ଉପବାସରେ ସପରିବାର ଦକ୍ଷିଣଦ୍ୱାର ପେଜନଳା ନିକଟରେ ଶୋଇଥିଲେ । ମୁଁ ନିଜେ ବ୍ରାହ୍ମଣ ବେଶରେ ରତ୍ନଥାଳିରେ ମହାପ୍ରସାଦ ନେଇ ତାଙ୍କୁ ଶଙ୍ଖୋଳି ଥିଲି । ତାହାର କିଛି ଦୋଷ ନାହିଁ । ଦୀନବନ୍ଧୁ ମହାନ୍ତିଙ୍କୁ ବନ୍ଦୀଶାଳରୁ ଶୀଘ୍ର ମୁକ୍ତ କରି ଯଥୋଚିତ ସମ୍ମାନ ପ୍ରଦର୍ଶନ କରି ଥଇଥାନ କର । ପ୍ରଭୁଙ୍କର ସ୍ୱପ୍ନାଦେଶ ପାଇ ରାଜା ଦୀନବନ୍ଧୁ ମହାନ୍ତିଙ୍କୁ ତୁରନ୍ତ ମୁକ୍ତ କରି ନିଜ ହାତରେ ତାଙ୍କ ମସ୍ତକରେ ପାଟ ଶିରପା ବାନ୍ଧି ସମ୍ମାନିତ କଲେ । ରାଜକର୍ମଚରୀ ଭାବେ ଜଗନ୍ନାଥଙ୍କ ସେବାରେ ନିଯୁକ୍ତି ଦେଇ ତାଙ୍କ ପରିବାରକୁ ଥଇଥାନ କଲେ । ସେହିଦିନରୁ ଦୀନବନ୍ଧୁ ମହାନ୍ତି, ଯାଜପୁରିଆ ବନ୍ଧୁ–ବନ୍ଧୁ ମହାନ୍ତି ଭାବରେ ଜନମାନସରେ ସ୍ଥାନ ପାଇଲେ । ବନ୍ଧୁ ମହାନ୍ତି ଅନାବିଳ ଭକ୍ତି ଓ ଶ୍ରୀଜଗନ୍ନାଥଙ୍କ ବନ୍ଧୁତ୍ୱର ସଂପର୍କକୁ ଉଜ୍ଜୀବିତ କରି ରଖିବା ପାଇଁ ଏବେ ବି ଶ୍ରୀମନ୍ଦିରରେ ବନ୍ଧୁ ମହାନ୍ତିଙ୍କ 'ରତ୍ନଥାଳି ମହାପ୍ରସାଦର' ପରମ୍ପରା ଚାଲୁ ରହିଛି ।

---

୭/ଏମ୍–୫୧, ଶୈଳଶ୍ରୀ ବିହାର
ଭୁବନେଶ୍ୱର–୨୧

**ସହାୟକ ପୁସ୍ତିକା**

୧–ଅନନ୍ୟ ଶ୍ରୀଜଗନ୍ନାଥ, ୨୦୦୯ ସଂକଳକ–ପୀତବାସ ରାଉତରାୟ, ଭୁବନେଶ୍ୱର ।

୨– ଶ୍ରୀଜଗନ୍ନାଥ ଓ ଓଡ଼ିଆ ସାହିତ୍ୟ,୨୦୦୨ ଲେଖକ–ଲକ୍ଷ୍ମଣ କୁମାର ପରିଡ଼ା, ଟଙ୍କପାଣି ରୋଡ, ଭୁବନେଶ୍ୱର ।

୩–ଶ୍ରୀଜଗନ୍ନାଥଙ୍କ ଭଜନ ଜଣାଣ ଓ ଚଉତିଶା, ସୂଚନା ଓ ଲୋକ ସଂପର୍କ ବିଭାଗ, ଓଡ଼ିଶା ସରକାର ।

୪–ଅମୃତ ଅନୁଭବ, ୨୦୧୬, ସଂପାଦନା– ଶ୍ରୀକାଂତ ମହାନ୍ତି, ପୁରୀ ।

୫–ଉତ୍କଳ ପ୍ରସଙ୍ଗ, ୨୦୧୦, ଜୁଲାଇ, ପୃଷ୍ଠା– ୧୧୦–୧୧୨ ।





# କବି ଉପେନ୍ଦ୍ର ଭଞ୍ଜଙ୍କ ଦୃଷ୍ଟିରେ ଶ୍ରୀଜଗନ୍ନାଥଙ୍କ ଚନ୍ଦନ ଯାତ୍ରା

**ଡକ୍ଟର କାହ୍ନୁ ଚରଣ ଶତପଥୀ**

ଶ୍ରୀକ୍ଷେତ୍ର ଓ ଶ୍ରୀଜଗନ୍ନାଥଙ୍କ ମନ୍ଦିରରେ ବାରମାସରେ ତେର ଯାତ୍ରା ପାଳିତ ହୁଏ ବୋଲି ଭକ୍ତ କବି ବନମାଳି ଦାସ 'ବାରମାସେ ତେର ଯାତ ଦେଖୁଥିବି ଶ୍ରୀକ୍ଷେତ୍ରେ ହୋଇ ଭିକାରୀ' ବୋଲି ମୁକ୍ତ କଣ୍ଠରେ ବଳିଆର ଭୁଜଙ୍କ ପାଦରେ ଦଇନି କରିଛନ୍ତି । ଏହି ତେର ଯାତ୍ରାକୁ ବାଦ୍ ଦେଲେ ବର୍ଷ ସାରା ଆହୁରି ଅନେକ ପର୍ବପର୍ବାଣି ଓ ଯାନିଯାତ୍ରା ବାର, ତିଥି ପ୍ରଭୃତିକୁ ନେଇ ଶ୍ରୀମନ୍ଦିରରେ ପାଳନ କରାଯାଉଥିବାର ପରିଲକ୍ଷିତ ହୁଏ । ତନ୍ମଧ୍ୟରୁ ପ୍ରସିଦ୍ଧ ଦ୍ୱାଦଶ ଯାତ୍ରାଗୁଡ଼ିକ ହେଲା ସ୍ନାନ, ରଥ, ଶୟନ, ଦକ୍ଷିଣାୟନ, ପାର୍ଶ୍ୱ ପରିବର୍ତ୍ତନ, ଉତ୍ଥାନ, ପ୍ରାବରଣ, ଷଠୀ, ପୁଷ୍ୟାଭିଷେକ, ଦୋଳ, ଦମନକ, ଅକ୍ଷୟ ତୃତୀୟା ଓ ଚନ୍ଦନ । ସେ ମଧ୍ୟରୁ ଚନ୍ଦନ ଯାତ୍ରା ଅନ୍ୟତମ । କର୍ମମୟ ପ୍ରାଣକୁ ନିତ୍ୟ ନୂତନ ଭାବଧାରାରେ ଗଢ଼ିବା ସହ କର୍ମମୟ ଜୀବନରେ ଶାନ୍ତି ସନ୍ତୋଷ ସୌହାର୍ଦ୍ଦ୍ୟ ରକ୍ଷା କରିବା ପାଇଁ ଏହି ଯାତ୍ରା ପାଳିତ ହୋଇଥାଏ । ଏହି ଦ୍ୱାଦଶ ଯାତ୍ରା ମଧ୍ୟରୁ ଚନ୍ଦନଯାତ୍ରାର ବିଧି ବିଧାନ, ନୀତି, ସମ୍ପର୍କରେ ସ୍କନ୍ଦ ପୁରାଣ, ନୀଳାଦ୍ରି ମହୋଦୟ, ଯାତ୍ରା ଭାଗବତ, ବ୍ରହ୍ମ ପୁରାଣ ଓ ଶାରଦା ପୁରାଣ ଇତ୍ୟାଦିରେ ବର୍ଣ୍ଣନା ରହିଛି । ଏହି ଯାତ୍ର ବୈଶାଖ ଅକ୍ଷୟ ତୃତୀୟା ଦିନ ଆରମ୍ଭ ହୋଇ ଜ୍ୟେଷ୍ଠ କୃଷ୍ଣ ଅଷ୍ଟମୀରେ ଶେଷ ହୋଇଥାଏ । ତେଣୁ ସ୍କନ୍ଦ ପୁରାଣରେ ଉଲ୍ଲେଖ ଅଛି –

'ଦୋଳେଚ ଦୋଳଗୋବିନ୍ଦଂ ଚାପେଚ ମଧୁସୂଦନମ୍
ରଥେତୁ ବାମନଂ ଦୃଷ୍ଟ୍ୱା ପୁନର୍ଜନ୍ମ ନ ବିଦ୍ୟତେ ।।'

ପୁରୁଷୋତ୍ତମ ମାହାତ୍ମ୍ୟ ଅନୁସାରେ ରୋହିଣୀ ନକ୍ଷତ୍ର ଯୁକ୍ତ ବୈଶାଖ ମାସର ତୃତୀୟା ସର୍ବ ପାପ ବିନାଶିନୀ ତିଥି ଭାବେ ପରିଚିତ । ଏହି ଦିବସକୁ ଅକ୍ଷୟ ତୃତୀୟା କୁହାଯାଏ । ଏହି ଦିବସରେ ରଥ ନିର୍ମାଣ ପାଇଁ ପ୍ରସ୍ତୁତ ଥିବା କାଠରୁ ତିନୋଟି ରଥର ଅଖ କାର୍ଯ୍ୟ ମଧ୍ୟ ଆରମ୍ଭ କରାଯାଏ । ଏହି ଦିନ ଦାରୁବ୍ରହ୍ମ ଶ୍ରୀଜଗନ୍ନାଥଙ୍କ ଦ୍ୱାଦଶ ଯାତ୍ରା ମଧ୍ୟରେ ପ୍ରଧାନ ଯାତ୍ରା ଚନ୍ଦନ ଉତ୍ସବର ଶୁଭାରମ୍ଭ ହୋଇଥାଏ । ଏଥିରେ ପୁରୁଷୋତ୍ତମ ଜଗନ୍ନାଥଙ୍କ ପ୍ରତିନିଧି ଭାବେ ମଦନ ମୋହନ ଓ ରାମକୃଷ୍ଣ ବିମାନ ଓ ପାଲିଙ୍କିରେ ବିଜେ କରି ଜଳ କ୍ରୀଡ଼ା କରିବା ପାଇଁ ନରେନ୍ଦ୍ର ପୁଷ୍କରିଣୀକୁ ଯାଆନ୍ତି । ଶ୍ରୀଜଗନ୍ନାଥ ଶ୍ରୀକୃଷ୍ଣଙ୍କ ପ୍ରତୀକ ଭାବେ ଉପାସିତ ହେବାଠାରୁ ଶ୍ରୀକୃଷ୍ଣଙ୍କ ବହୁ ନୀତି ଶ୍ରୀମନ୍ଦିରରେ ପାଳିତ ହୋଇଥାଏ । ଶ୍ରୀକୃଷ୍ଣ ଯମୁନାରେ ଗୋପୀମାନଙ୍କ ସହିତ ନାବ କ୍ରୀଡ଼ା କରୁଥିବାରୁ ତା'ର ପୃଷ୍ଠଭୂମିରେ ଜଗନ୍ନାଥରୂପୀ କୃଷ୍ଣଙ୍କର ପ୍ରତିମୂର୍ତ୍ତି ଭକ୍ତ ଓ ସେବକମାନଙ୍କ ସହାୟତାରେ ଜଳକ୍ରୀଡ଼ା ୪୨ ଦିନ ପର୍ଯ୍ୟନ୍ତ କରିଥାନ୍ତି । ବ୍ରହ୍ମ ପୁରାଣ ଅନୁଯାୟୀ ଅକ୍ଷୟ ତୃତୀୟା ଦିନ ସତ୍ୟଯୁଗ ଆରମ୍ଭ ହୋଇଥିଲା । ଏହିଦିନ ରାଜା ଭଗୀରଥ ଗଙ୍ଗା ମାତାଙ୍କୁ ମର୍ତ୍ତ୍ୟ ଲୋକକୁ ଆଣିଥିଲେ । ଏହା ବିଷ୍ଣୁଙ୍କ ଅବତାର ପର୍ଶୁରାମଙ୍କ ଜନ୍ମ ତିଥି । ସାଧାରଣତଃ ଚନ୍ଦନ ଯାତ୍ରା ୪୨ ଦିନ ବ୍ୟାପୀ ଅନୁଷ୍ଠିତ ହୁଏ । ଏହି ଯାତ୍ରାର ପ୍ରଥମ ୨୧ ଦିନ ବାହାର ଚନ୍ଦନ ଓ ପରବର୍ତ୍ତୀ ୨୧ ଦିନ ଭିତର ଚନ୍ଦନ ଭାବେ ଅନୁଷ୍ଠିତ ହୋଇଥାଏ । ସ୍କନ୍ଦପୁରାଣ ଅନୁଯାୟୀ, ଏହି ଦିନ ଦକ୍ଷ ପ୍ରଜାପତି ଶ୍ରୀଜଗନ୍ନାଥଙ୍କ ସର୍ବାଙ୍ଗରେ ଚନ୍ଦନ ଲେପନ କରିଥିଲେ । ପ୍ରକୃତ ପକ୍ଷେ ଏହି ଯାତ୍ରାର ପ୍ରସ୍ତୁତି ଅକ୍ଷୟ ତୃତୀୟାର ପୂର୍ବ ଦିନଠାରୁ ଆରମ୍ଭ ହୋଇଥାଏ, ଯେଉଁଥି ପାଇଁ ରାଜାଙ୍କ ନଅର ଓ ରାଘବ ଦାସ ମଠରୁ ଚନ୍ଦନ ଆସିଥାଏ । ଅକ୍ଷୟ ତୃତୀୟା ଦିନ ସକାଳ ଧୂପ ସରିଲା ପରେ ପୂର୍ବ ଦିନର



ଅଧିବାସିତ ଚନ୍ଦନକୁ ମେକାପ ଗଣ, ଘଣ୍ଟ ଛତ୍ର କାହାଳୀ ସହ ଶ୍ରୀମନ୍ଦିରକୁ ତିନି ଥର ପ୍ରଦକ୍ଷିଣ କରିଥାନ୍ତି, ଯାହାକୁ ଚନ୍ଦନ ବେଢ଼ା କୁହାଯାଏ । ଷୋଡ଼ଶ ଉପଚାରରେ ମଧ୍ୟାହ୍ନ ଧୂପ ପୂଜା ଓ ଭୋଗ ମଣୋହୀ ପରେ ଆଜ୍ଞାମାଳ ପାଇ ରାମକୃଷ୍ଣ, ମଦନ ମୋହନ, ଶ୍ରୀଦେବୀ, ଭୂଦେବୀଙ୍କୁ ଅଣାଯାଇ ମୁକ୍ତି ମଣ୍ଡପ ତଳେ ଥିବା ବିମାନରେ ବିଜେ କରାଯାଇ ନରେନ୍ଦ୍ର ପୁଷ୍କରିଣୀକୁ ଯାତ୍ରା କରାନ୍ତି । ସିଂହଦ୍ୱାରଠାରେ ପଞ୍ଚ ମହାଦେବ, ପଞ୍ଚୁ ପାଣ୍ଡବ ରୂପେ ଶ୍ରୀଯମେଶ୍ୱର(ଯୁଧିଷ୍ଠିର), ଶ୍ରୀଲୋକନାଥ(ଭୀମ), ଶ୍ରୀମାର୍କଣ୍ଡେଶ୍ୱର(ଅର୍ଜୁନ), ଶ୍ରୀକପାଳ ମୋଚନ(ନକୁଳ) ଓ ଶ୍ରୀନୀଳକଣ୍ଠ (ସହଦେବ) ଭାବେ ସ୍ୱ ସ୍ୱ ବିମାନରେ ଯାତ୍ରା କରିଥାନ୍ତି । ରାଜାଙ୍କ ନଅର ନିକଟରେ ପହଞ୍ଚିବା ପୂର୍ବରୁ ରଥ ଅନୁକୂଳ କର୍ମ ଶେଷ ହୋଇଥାଏ । ଶ୍ରୀନଅରରୁ ଆସିଥିବା ତିନୋଟି ଆଜ୍ଞାମାଳ ଦାନ ପୂର୍ବକ ରଥ କର୍ମ ଅନୁକୂଳ ହୋଇଥାଏ । ଚାପ କ୍ରୀଡ଼ା ପାଇଁ ପ୍ରସ୍ତୁତ ଲାଲ ନୌକାରେ ରାମ କୃଷ୍ଣଙ୍କ ସହ ପଞ୍ଚ ମହାଦେବ ଓ ଧବଳ ନୌକାରେ ମଦନ ମୋହନ, ଲକ୍ଷ୍ମୀ ଓ ସରସ୍ୱତୀ ବିଜେ କରନ୍ତି । ଚାପ ଦୁଇଥର ପୁଷ୍କରିଣୀରେ ବୁଲିବା ପରେ କୂଳକୁ ଆସି ରାମକୃଷ୍ଣ ନିଜ ନୌକାରୁ ଅବତରଣ କରି ମଦନ ମୋହନଙ୍କ ଚାପରେ ବିଜେ କରନ୍ତି । ତା'ପରେ ଠାକୁରମାନେ ଜଗତି ଉପରକୁ ବିଜେ କରି ଜଳରେ ବୁଡ଼ି ରହନ୍ତି । ଏହାପରେ ଜଳ କୁଣ୍ଡରୁ ବାହାର କରାଯାଇ ଶୀତ ମଣୋହୀ କରାଯାଏ । ଜଳଲାଗି ଶେଷ ହେବାପରେ ଠାକୁରଙ୍କୁ ପୋଛା ଯାଇ ବସ୍ତ୍ର ପରିଧାନ କରାଯାଏ । ସନ୍ଧ୍ୟା ପରେ ପ୍ରତିଦିନ ରାତ୍ର ଚାପ ଅନୁଷ୍ଠିତ ହୋଇ ତିନିଥର ପୁଷ୍କରିଣୀ ପରିକ୍ରମା କରନ୍ତି । ତାହା ସରିବା ପରେ ପାଲିଙ୍କିରେ ବିଜେ ହୋଇ ଶ୍ରୀମନ୍ଦିର ଅଭିମୁଖେ ପ୍ରତ୍ୟାବର୍ତ୍ତନ କରିଥାନ୍ତି । ଯାତ୍ରାର ୨୦ ଦିନ ଠାକୁରମାନେ ରାତ୍ର ଚାପରେ ୨୧ ଘେରା ଭ୍ରମଣ କରନ୍ତି ଓ ୭ଥର ପୁଷ୍କରିଣୀ ମଧ୍ୟ ଭାଗରେ ଓ କୋଣରେ ଭଉଁରୀ ଖେଳନ୍ତି, ଯାହାକୁ ଭଉଁରୀ ଯାତ୍ରା କୁହାଯାଏ । ୨୧ଦିନ ହଳଦି ପାଣି ନୀତି ହେବା ପରେ ବାହାର ଚନ୍ଦନ ଯାତ୍ରାର ସମାପ୍ତି ହୁଏ । ଶ୍ରୀକ୍ଷେତ୍ରର ଚନ୍ଦନ ଯାତ୍ରାକୁ ନେଇ ବହୁ ପ୍ରାଚୀନ କବି, କାବ୍ୟକାର, ପୁରାଣ ଲେଖକ, ବହୁ ବର୍ଣ୍ଣନା ପ୍ରଦାନ କରିଛନ୍ତି ବିଗ୍ରହମାନେ ମଣି ବିମାନରେ ବିଜେ କରୁଥିବା ସମୟରେ ଭକ୍ତ ମଣ୍ଡଳି ବାଦ୍ୟର ତାଳେ ତାଳେ ସଙ୍ଗୀତର ମଧୁର ମୂର୍ଚ୍ଛନାରେ ବିଭିନ୍ନ ପୌରାଣିକ କବିମାନଙ୍କ କବିତା ତଥା ଆଖ୍ୟାୟିକାକୁ ଗାଇଥାନ୍ତି । ଏହି ଚନ୍ଦନ ଯାତ୍ରା ସମ୍ପର୍କରେ ପ୍ରାଚୀନ କବିମାନଙ୍କ ମଧ୍ୟରୁ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ଶ୍ରୀଜଗନ୍ନାଥଙ୍କ ଚନ୍ଦନ ଯାତ୍ରାର ଏକ ନିଖୁଣ ଚିତ୍ର ତାଙ୍କ ରଚିତ କାବ୍ୟଗ୍ରନ୍ଥ 'ରସିକ ହାରାବଳୀ' ଅତି ଚମତ୍କାର ଭାବରେ ବର୍ଣ୍ଣିତ, ଯାହା ଏହି ପ୍ରବନ୍ଧର ମୁଖ୍ୟ ଆଲୋଚ୍ୟ ବସ୍ତୁ ।

କହିବାକୁ ଗଲେ ଉପନିଷଦ, ବେଦାନ୍ତ, ଯୋଗ ଓ ଅନ୍ୟାନ୍ୟ ଦର୍ଶନ, ଗୀତା, ଭାଗବତ, ରାମାୟଣ, ମହାଭାରତ ପ୍ରଭୃତିରେ ଭାରତର ଆଧ୍ୟାତ୍ମିକ, ସାଂସ୍କୃତିକ ଓ ଦର୍ଶନ ବର୍ଣ୍ଣିତ ହେବା ପରି ରୀତିଯୁଗର ପ୍ରଚଣ୍ଡ ପ୍ରତିଭାଧର କବି ଉପେନ୍ଦ୍ର ଭଞ୍ଜ ମଧ ତାଙ୍କର ବିଭିନ୍ନ କାବ୍ୟ କବିତାରେ ଜଗନ୍ନାଥ ଧର୍ମର ଦର୍ଶନ, ସଂସ୍କୃତି, ଧର୍ମ ଓ ବିଭିନ୍ନ ପର୍ବପର୍ବାଣି ସମ୍ପର୍କରେ ନିଜ ନିଜ ଦୃଷ୍ଟିଭଙ୍ଗୀକୁ ନେଇ ବର୍ଣ୍ଣନା କରିଛନ୍ତି । ଏମିତି ଦେଖିଲେ 'ରସିକ ହାରାବଳୀ' କାବ୍ୟଗ୍ରନ୍ଥ କବିଙ୍କର ସ୍ୱକୀୟ ଅନୁଭୂତିଭିତ୍ତିକ ଅନ୍ୟ ଏକ ପ୍ରାଥମିକ କାବ୍ୟ । ଏହି କାବ୍ୟ ସୃଷ୍ଟିର ଆଭିମୁଖ୍ୟ ସମ୍ପର୍କରେ ସୂଚନା ଦେଇ କବି ପ୍ରଥମ ଛାନ୍ଦରେ ଉଲ୍ଲେଖ କରିଛନ୍ତି ଯେ , ଏହା ତାଙ୍କ ଅନୁଭୂତି ପ୍ରସୂତ ରସସାର ଶୃଙ୍ଗାର ରସାଶ୍ରିତ ମାନ ଓ ସୃଷ୍ଟି । ବହୁ କଷ୍ଟ ସାଧନାର୍ଜିତ କାବ୍ୟଟିର ମୂଲ୍ୟାଙ୍କନ କରିବାକୁ ସେ ବିଜ୍ଞ ରସିକମାନଙ୍କର ଶ୍ରଦ୍ଧା ଉପରେ ଭରସା ପୋଷଣ କରିଛନ୍ତି । ଏ କାବ୍ୟର ନାୟିକା ନୀଳାଚଳ କ୍ଷେତ୍ରର ଜଣେ ବିଦ୍ୟାଧର (ଗନ୍ଧର୍ବଙ୍କର) କନ୍ୟା । ନାୟକ ଦକ୍ଷିଣ କୋଶଳ ରାଜ୍ୟର ରାଜ କୁମାର । କବି ଜନ୍ମଭୂମି ଉତ୍କଳର ନୀଳାଚଳ କ୍ଷେତ୍ର ପ୍ରତିଷ୍ଠିତ ଦାରୁମୂର୍ତ୍ତି ଜଗନ୍ନାଥଙ୍କର ସ୍ତୁତି କରି କାବ୍ୟ ଆରମ୍ଭ କରିଛନ୍ତି । ସେହି ସମୟରେ ରଚିତ ବ୍ରହ୍ମାଣ୍ଡ ପୁରାଣରେ ବର୍ଣ୍ଣିତ ଉକ୍ତି –

'ବର୍ଷାଣାଂ ଭାରତ ଶ୍ରେଷ୍ଠ / ଦେଶାଣାଂ ଉତ୍କଳ ସୃତଃ
ଉତ୍କଳସ୍ୟ ସମଦେଶ / ଦେଶନାସ୍ତି ମହୀତଳେ ।'

କୁ କବିତାର ପ୍ରତି ଛନ୍ଦେ ଛନ୍ଦେ ରୂପାୟିତ କରିଛନ୍ତି ।

ନାୟିକା 'ରସିକ ହାରାବଳୀ' ଉତ୍କଳର କନ୍ୟା ହେଲେ ମଧ ସେ ଦେବୀ ବିମଳାଙ୍କର ଆଶୀର୍ବାଦ ପ୍ରସୂତା । ଅନ୍ୟ



କାବ୍ୟମାନଙ୍କ ଭଳି ଏଥିରେ ମାନବ ଚରିତ୍ର ସହ ଦେବ, ବିଦ୍ୟାଧର, ଯକ୍ଷ ଓ ରାକ୍ଷସ ଚରିତ୍ରର ସମାବେଶ ଏବଂ ଦେବଭୂମି ମେରୁ ପ୍ରଦେଶ ଓ ଇଲାବୃତ୍ତ ଗଣ୍ଡ ପ୍ରଭୃତି ଅଲୌକିକ ଚରିତ୍ର ଓ ଅଲୌକିକ ସ୍ଥାନର ବର୍ଣ୍ଣନା କରାଯାଇଛି । ସଂସ୍କୃତ, ପ୍ରାକୃତ କଥା କାବ୍ୟର ଲକ୍ଷଣ ଅନୁସାରେ ସ୍ଥାନର ବର୍ଣ୍ଣନା କରାଯାଇ ନାୟକର କନ୍ୟା ଲାଭ ଏବଂ କାର୍ଯ୍ୟରେ ନାୟକ ନାୟିକାଙ୍କର ବିଚ୍ଛେଦ ଓ ଯକ୍ଷଙ୍କ ସହାୟତାରେ ନାୟକ ସହ ମିଳନର ଚିତ୍ର ବର୍ଣ୍ଣିତ ହୋଇଥିବାବେଳେ କାବ୍ୟ ମଧ୍ୟରେ ଓଡ଼ିଶାର ପର୍ବପର୍ବାଣି, ସାଂସ୍କୃତିକ ଓ ଆଧ୍ୟାତ୍ମିକ ଜୀବନ ସହିତ ଶ୍ରୀଜଗନ୍ନାଥଙ୍କ ବିଭିନ୍ନ ଯାତ୍ରାର ସାମାଜିକ ସାମୂହିକ ପ୍ରତିଛବି ପ୍ରତିଫଳିତ ।

ଉପେନ୍ଦ୍ରଙ୍କ ସମସ୍ତ ସୃଷ୍ଟିରେ ଜଗନ୍ନାଥଙ୍କ ମାହାତ୍ମ୍ୟ ବର୍ଣ୍ଣିତ ହୋଇଥିବା ବେଳ 'ରସିକ ହାରାବଳୀ' କାବ୍ୟରେ ଶ୍ରୀଜଗନ୍ନାଥଙ୍କ ଚନ୍ଦନ ଯାତ୍ରାର ଏକ ବିସ୍ତୃତ ରୂପରେଖ ଦେଖିବାକୁ ମିଳିଥାଏ । କାବ୍ୟର ତୃତୀୟ ଛାନ୍ଦରେ ଚନ୍ଦନ ଯାତ୍ରା ସମ୍ପର୍କରେ ବର୍ଣ୍ଣନା କରି ଲେଖିଛନ୍ତି –

'ଦୀନ ବାନ୍ଧବ ମାଧବ ରତି ହିଁ ମାଧବ ମାସେ
ନୃପତି ନନ୍ଦନ ଚନ୍ଦନ ଯାତ୍ରା ଦେଖେ ହରଷେ ।
ନରୀନ୍ଦ୍ର ତଡ଼ଗେ କରୀନ୍ଦ୍ରେ ସୁରେନ୍ଦ୍ର ପରିହରି
ନାବରେ ଭାବରେ ବିଜୟ କରି ସୁଖେ ବିହରି ।

ଦୀନ ଦରିଦ୍ରର ବନ୍ଧୁ ମାଧବ (ଶ୍ରୀକୃଷ୍ଣ), ମାଧବ ମାସ ବୈଶାଖ ମାସରେ ହେଉଥିବା ଚନ୍ଦନ ଯାତ୍ରାକୁ ନୃପତି ନନ୍ଦନ ରାଜକୁମାର ଦର୍ଶନ କରି ନରେନ୍ଦ୍ର ପୁଷ୍କରିଣୀରେ ଥିବା ନାବ ଉପରେ ଭଙ୍ଗୀରେ ବସି ଆନନ୍ଦରେ ବିହାର କରୁଥାନ୍ତି । ପ୍ରଭୁଙ୍କ ଏହି ଜଳକେଳି ଚନ୍ଦନଯାତ୍ରାର ଅଂଶ ବିଶେଷ । ଏହି ଜଳ କେଳି ଅପରାହ୍ଣରେ ବିଧିପୂର୍ବକ କରାଯାଏ । ତା'ପରେ ସେ ମନ୍ଦିର ମଧ୍ୟରେ ପ୍ରବେଶ କରି ଶ୍ରୀଅଙ୍ଗରେ ଚନ୍ଦନ ଲାଗି କରିବା ପାଇଁ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ସ୍ତୁତି କରନ୍ତି । ସ୍ତୁତି ପାଠ ପରେ ପୁରୁଷ ସୂକ୍ତ ମନ୍ତ୍ରରେ ବଳଦେବଙ୍କୁ, ଶ୍ରୀସୂକ୍ତ ମନ୍ତ୍ରରେ ଶ୍ରୀଜଗନ୍ନାଥଙ୍କୁ, ଦେବୀଙ୍କ ମନ୍ତ୍ରରେ ସୁଭଦ୍ରାଙ୍କୁ ଓ ସୁଦର୍ଶନଙ୍କ ଅଙ୍ଗରେ ଚନ୍ଦନ ଲାଗି କରାଯାଏ । ଚତୁର୍ଦ୍ଧାମୂର୍ତ୍ତିଙ୍କ ପରେ ମହାଲକ୍ଷ୍ମୀ ନୀଳ ମାଧବ ପ୍ରଭୃତିଙ୍କ ଅଙ୍ଗରେ ଚନ୍ଦନ ଲାଗି ହୁଏ ।

କାବ୍ୟରେ ବସ୍ତୁ ବିଚାର କଲେ ଦେଖାଯାଏ ଏକଦା ବସନ୍ତ କାଳରେ ଇନ୍ଦ୍ର, ନାରଦ ଅନ୍ୟାନ୍ୟ ଦେବତାଙ୍କ ସମେତ ସ୍ୱର୍ଗର ଅପ୍ସରୀ ଗଣ ଉର୍ବଶୀଙ୍କ କେଦାର ରାଗ ଆଳାପରେ ମୁଗ୍ଧ ଥିବା ସମୟରେ ଚାମର ସେବକ ଜନୈକ ବିଦ୍ୟାଧର କାମ ବିକାର ହେତୁ ଇନ୍ଦ୍ରଙ୍କ ଉପରେ ପଡ଼ିଯାଏ । ଇନ୍ଦ୍ରଙ୍କ ଅଭିଶାପରେ ବିଦ୍ୟାଧର ଓ ତା' ସ୍ତ୍ରୀ ନୀଳାଚଳ କ୍ଷେତ୍ରରେ ଜନ୍ମଲାଭ କରି ଜଗନ୍ନାଥଙ୍କ ସେବା ଓ ବିମଳାଙ୍କ ଆଶୀର୍ବାଦ ହେତୁ ଅନିନ୍ଦ୍ୟ ସୁନ୍ଦରୀ କନ୍ୟାଟିଏ ଲାଭ କଲେ । ଦକ୍ଷିଣ କୋଶଳ ରାଜକୁମାର ଦ୍ୱିଜ ଓ ଭାଟଙ୍କ ମୁଖରୁ ନବ ଯୌବନ ପ୍ରାପ୍ତ କନ୍ୟାର ସୌନ୍ଦର୍ଯ୍ୟ ବିଷୟରେ ଶ୍ରବଣ କରି ବାନ୍ଧବୀ ଭାବରେ ଲାଭ କରିବାକୁ ଇଚ୍ଛା କରି, ବ୍ରାହ୍ମଣୀର ପରାମର୍ଶରେ ରାଜକୁମାର ବୈଶାଖ ମାସରେ ଜଗନ୍ନାଥଙ୍କ ଚନ୍ଦନ ଯାତ୍ରା ସମୟରେ ସସୈନ୍ୟ ନୀଳାଚଳ କ୍ଷେତ୍ରକୁ ଆସି କନ୍ୟା ପ୍ରାପ୍ତି ପାଇଁ ଶ୍ରୀଜଗନ୍ନାଥଙ୍କୁ ପ୍ରାର୍ଥନା କଲେ । ଯାତ୍ରା ଶେଷରେ ଜଗତି ଉପରେ ଠିଆ ହୋଇଥିବା ଜେମାର ଦୃଷ୍ଟି ରାଜକୁମାର ଉପରେ ନିବଦ୍ଧ ହେଲା । ଉଭୟଙ୍କ ଚତୁରାକ୍ଷ ଓ ହୃଦୟର ମିଳନ ଘଟିଲା । ଏଭଳି ଭାବରେ କାହାଣୀ କ୍ରମଶଃ ଗତିଶୀଳ ହୋଇଛି ।

ସବୁଠାରୁ ବଡ଼ ବୈଚିତ୍ର୍ୟମୟ ବର୍ଣ୍ଣନା ନୀଳାଚଳ କ୍ଷେତ୍ରରେ ବୈଶାଖ ମାସର ଚନ୍ଦନ ଯାତ୍ରା ଉତ୍ସବର ବର୍ଣନା । କବିଙ୍କର ପ୍ରତ୍ୟକ୍ଷଦର୍ଶୀ ଅନୁଭୂତିରେ ଯେପରି ବାସ୍ତବ ଓ ଜୀବନ୍ତ, କଳ୍ପନା ଚାତୁରୀରେ ସେହିପରି ରସୋତ୍ତୀର୍ଣ୍ଣ ଓ ରମଣୀୟ । ଶ୍ରୀକ୍ଷେତ୍ରର ବର୍ଣ୍ଣନାରେ କବିଙ୍କର ଜାତୀୟ ଭାବ ତଥା ସ୍ୱଦେଶ ପ୍ରୀତି ପ୍ରକଟିତ ହୋଇଛି । କବି ସୁଭଦ୍ରା ପରିଣୟ ଓ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ପରି ଏହି କାବ୍ୟର ପ୍ରଥମ ଛାନ୍ଦରୁ ଦାରୁ ବିଗ୍ରହଧାରୀ ଜଗନ୍ନାଥଙ୍କ ବନ୍ଦନା କରି, ଜଗନ୍ନାଥଙ୍କୁ କୃଷ୍ଣ ଓ ବିଷ୍ଣୁଙ୍କ ଭାବରେ ପ୍ରତିପାଦିତ କରି ତୃତୀୟ ଛାନ୍ଦରେ ଶାସ୍ତ୍ରୀୟ ପ୍ରମାଣ ଭିତ୍ତିରେ ସଂକ୍ଷେପରେ ଶ୍ରୀକ୍ଷେତ୍ର, କଳ୍ପବଟ, ରୋହିଣୀ କୁଣ୍ଡ, ନୀଳଚକ୍ର ଓ ମହାପ୍ରସାଦର ମାହାତ୍ମ୍ୟ ଏବଂ ଚନ୍ଦନ ଯାତ୍ରାର ବର୍ଣ୍ଣନା କରିଛନ୍ତି । କ୍ଷେତ୍ର ମାହାତ୍ମ୍ୟ ସମ୍ପର୍କରେ ଭଞ୍ଜ ଲେଖିଛନ୍ତି–



'ଯେଉଁ କ୍ଷେତ୍ରରାଜ ବିରାଜମାନ ଗରୁଡ଼ ଧ୍ୱଜେ
ଶ୍ରବଣେ ଚରିତ ତୁରିତ ଜନ ଦୂରିତ ଗଞ୍ଜେ ।
ଯେବଣ କଟକେ ଛଟକେ ବିରାଟକେ ମୁକତି,
ମହାପ୍ରସାଦରେ ସାଦରେ ଲୋକମାନେ ଲଭନ୍ତି ।
ଅଳପ କଳପ ବଟର ଯହିଁ ଛାୟା ଆଶ୍ରିତ,
କଳପ କଳପ ନିର କିନ୍ନର ତରିଲା ମତ ।
ବିନା ତୃଷାତୁରେ ଚତୁରେ କୁଣ୍ଡ ପତନେ ଯହିଁ ,
କାକର ହେଲା କର ଭାରି କିସ ବିଚାର ତହିଁ ।
(ତୃତୀୟ ଛାନ୍ଦ)

ଜଗନ୍ନାଥ ନରେନ୍ଦ୍ର ପୁଷ୍କରିଣୀରେ ନାବରେ ବିଜୟ କରି ବିହାର କରିବା, ବ୍ରାହ୍ମଣଙ୍କର ସେବା ମୟୂର ପୁଚ୍ଛ ବିଞ୍ଚଣା ସହ ସାଧୁମାନଙ୍କର ସେବା, ଶ୍ୱେତ ଚାମର ଚାଳନା । କର୍ପୂର ଚନ୍ଦନ ମିଶ୍ରିତ ଜଳର ଚର୍ଚ୍ଚରୀ (ପିଚିକା), ଚିତ୍ରିତ ତ୍ରାସ(ତରାସ) ଛତ୍ର ଓ ବିବିଧ ବାଦ୍ୟର ବର୍ଣ୍ଣନା ସହ ଗହଳିରେ ନାରୀ ପୁରୁଷମାନଙ୍କର ପାରସ୍ପରିକ ଦର୍ଶନଜନିତ ନେତ୍ରଭଙ୍ଗୀ, କାମ ପୀଡ଼ା, କାମାତୁର ପୁରୁଷମାନଙ୍କର ଯୁବତୀ ଦର୍ଶନରେ ଇନ୍ଦ୍ରିୟ ଭାବାବେଗଜନିତ ଦୁର୍ବଳତା, ଉତ୍ତୁଙ୍ଗବକ୍ଷା ଗଣିକାମାନଙ୍କର ନୃତ୍ୟ ଓ ଗାନ, ଭାଟମାନଙ୍କ ଚାତୁର୍ଯ୍ୟପୂର୍ଣ୍ଣ କବିତାଗାନ, ସୌଧ ଉପରେ ସାମନ୍ତ ସ୍ତ୍ରୀଙ୍କ ଶାଢ଼ୀ ଗୃହ ମଧ୍ୟରେ ଗବାକ୍ଷ ବାଟରେ ଜଗନ୍ନାଥ ଚାପକ୍ରୀଡ଼ା (ଜଳବିହାର) ଦର୍ଶନର ଛବି ଯମକ, ଅନୁପ୍ରାସ, ଉପମାଦି ପ୍ରୟୋଗରେ ଅତି ଜୀବନ୍ତ ଭାବରେ ବର୍ଣ୍ଣନା କରାଯାଇଛି । ଯାତ୍ରା କାଳରେ ଯୁବତୀ ଦର୍ଶନରେ ଯୋଗୀ ସନ୍ନ୍ୟାସୀଙ୍କର ଦୁର୍ବଳତା ଏବଂ ବ୍ୟାଜଦେବ ଦର୍ଶନାର୍ଥୀ କାମୁକମାନଙ୍କ ପ୍ରତି କଟାକ୍ଷ ପାତ କରି ଜଣେ ଅନାସକ୍ତ ଶିଳ୍ପୀ ଦୃଷ୍ଟିରେ ଲେଖିଛନ୍ତି –

'ନୀରଜ ମୁଖୀଙ୍କ ଉରଜ ହିମ ରଜରେ ଭୂଷି,
ଦର୍ଶନ ଲୋଭରେ ନିର୍ଭର କଲେ ଯୋଗୀ ସନ୍ନ୍ୟାସୀ ।

ଭେଟେ ଭେଟେ ମାର ଉଚ୍ଚାଟେ ସ୍ନେହେ ନାରୀ ପୁରୁଷ,
ଇକ୍ଷଣେ ଇକ୍ଷଣେ କଲେ ସେ କ୍ଷଣେ କ୍ଷଣେ ବିଳାପ ।
କପଟ ଦର୍ଶନ ଲମ୍ପଟ ବିଟ ରୀତିକି ଚାହିଁ
ଯେ ସୁଧୀ ସୁଧୀରେ ବୋଲନ୍ତି କ୍ଷେତ୍ର ବରଟିଏ ଏହି ।

ଶ୍ରୀକ୍ଷେତ୍ରର ଏହି ଚନ୍ଦନ ଯାତ୍ରା ଅତ୍ୟନ୍ତ ରମଣୀୟ । ଶୋଭାଯାତ୍ରାରେ ମାହାରୀମାନେ ସମ୍ମୁଖରେ ନୃତ୍ୟରତ ରହନ୍ତି । ଚନ୍ଦନ ଯାତ୍ରା କାଳରେ ଶ୍ରୀଜଗନ୍ନାଥ ନୌକା ବିହାର କରି ସାଧାରଣ ଜନତାଙ୍କୁ ଭବ ଜଳରୁ ଉଦ୍ଧାର ନିମିତ୍ତ ସତେ ଯେପରି ସଙ୍କେତ ମିଳେ ଭଞ୍ଜଙ୍କ ଭାଷାରେ –

'ହରିକି ତରିକି ଆରୋହି ଖେଳ ଏମନ୍ତ ଭାବି
ଏହି ମତ ଘେନ ମତିରେ ଭବଜଳୁଁ ତାରିବି ।'

ଜଗନ୍ନାଥ ମହାପ୍ରଭୁ ଭକ୍ତମାନଙ୍କ ଭୟ ନିବାରକ ଓ ହର୍ଷ ଦାୟକ । ପ୍ରଭୁଙ୍କ ନୌକା ବିହାର ବେଳେ ସେବକମାନେ ମଦନମୋହନଙ୍କ ପଛରେ ଠିଆ ହୋଇ ସ୍ୱଚ୍ଛ ମୟୂରଚନ୍ଦ୍ରିକା ପଙ୍ଖାରେ ବିଞ୍ଚୁଥିବା ବେଳେ କେହି କେହି କର୍ପୂର ପାଣି ସିଞ୍ଚନ କରିଥାନ୍ତି । ରୀତି ଅନୁସାରେ ଏହି ନୌକା ବିହାର ୨୦ ଦିନ ଧରି ହୋଇଥାଏ । ଏକବିଂଶତି ଦିବସରେ ନୌକାଟିକୁ ଭଉଁରୀ ଗତିରେ ଚାଳନ କରାଯାଏ । ଅଗ୍ନିକୋଣରୁ ଆରମ୍ଭ ହୋଇ ଐଶାନ୍ୟ କୋଣ ଯାଏଁ ପ୍ରତ୍ୟେକ କୋଣରେ ସାତଥର ନୌକାକୁ ଭଉଁରୀ କରାଯାଏ । ସର୍ବଶେଷରେ ପୁଷ୍କରିଣୀର ମଧ୍ୟ ଭାଗରେ ସାତଥର ନୌକାକୁ ବୁଲାଇ ଯାତ୍ରା ଉଦ୍‌ଯାପନ କରାଯାଏ । ଭଞ୍ଜଙ୍କ ବର୍ଣ୍ଣନାରେ–

'ପଛେ ରହି ସ୍ୱେଚ୍ଛେ ବରହି ପୁଚ୍ଛେ ଦ୍ୱିଜ ସେବନ୍ତି,
ରଞ୍ଜନ ବ୍ୟଜନ ସଜନ କରେ ଧରି ବିଞ୍ଚନ୍ତି ।
ସଂସାର ସାରା ଘନସାର ପିଚିକାଳି ମାରଇ,
କ୍ଷୀର ନିଧି ଧୀର ଲହରି ପରି ଚାମର ଶୋହି ।'

ନୌକା ବିହାର ପରେ ସମସ୍ତ ବିଗ୍ରହ ପାଣି କୁଣ୍ଡରେ ବୁଡ଼ନ୍ତି । ଯାତ୍ରା ସମୟରେ ପଟୁଆରରେ ଯାଇଥିବା ବିଶାଳ ଛତ୍ର ସବୁ ପାପୀମାନଙ୍କୁ ଭୟଙ୍କର ଦେଖାଯାନ୍ତି । ସେହି ଛତ୍ରମାନଙ୍କରେ ସ୍ୱର୍ଣ୍ଣମୟ ଚନ୍ଦ୍ର, ସୂର୍ଯ୍ୟ, ତାରକ ଜଡ଼ିତ ଥିବାରୁ ଚକ୍ ଚକ୍ ଦେଖାଯାଉଥାଏ । ଏପରିକି ଚନ୍ଦ୍ରମାର ଲାବଣ୍ୟ ମଧ୍ୟ ଏମାନଙ୍କ ନିକଟରେ ଅତ୍ୟନ୍ତ କ୍ଷୀଣ ।

ଛତ୍ର ଉପରେ ଥିବା ବିଭିନ୍ନ ବସ୍ତ୍ର ମେଘର ଘନଘଟା ସୃଷ୍ଟି କରିଥାଏ । ଏହି ପଟୁଆର ବେଳେ ସାଧୁ ସନ୍ନ୍ୟାସୀଗଣ



କର୍ପୂର ଗୁଣ୍ଡ ସିଞ୍ଚନ କରିଥାନ୍ତି । ସେ ଗୁଣ୍ଡଗୁଡ଼ିକ ସ୍ତ୍ରୀମାନଙ୍କ ବକ୍ଷୋଜ ଉପରେ ପଡ଼ି ବିଭୂତି ଭୂଷଣଙ୍କ ଶୋଭା ବହନ କରିଥାଏ । ଯୋଗୀ ସନ୍ନ୍ୟାସୀଗଣଙ୍କ ବିଭୂତି ରୂପକ କର୍ପୂର ଗୁଣ୍ଡ ରମଣୀମାନଙ୍କ ଦେହରେ ଲେପିତ ହେବାରୁ ରୋମାଞ୍ଚକର ଭାବନା ସୃଷ୍ଟି ହୋଇଛି । ଏହି ଚନ୍ଦନ ଯାତ୍ରା ସମୟରେ କବିଙ୍କ ଶୃଙ୍ଗାର ରସର ଆଭାସ ବର୍ଣ୍ଣନା ରହିଛି –

'ଆଡ଼ମ୍ବର ମେଘ ଡ଼ମ୍ବର କେତେ ଦେଖି ଅମ୍ବର
ଅମର ପୁରେ ସମ୍ବରିବେ ନାନା ବାଦ୍ୟ ନାରଦର ।'

କପଟ ମନୋଭାବ ରଖି ଦର୍ଶନ କରିବାକୁ ଆସିଥିବା ଲମ୍ପଟ ଓ ବିଟପୀମାନଙ୍କ କାର୍ଯ୍ୟ କଳାପ ଦେଖି ସାଧୁ ସନ୍ଥ ଓ ବିଜ୍ଞ ଲୋକ କହିଛନ୍ତି, ଏହି କ୍ଷେତ୍ରରେ ପୁରୁଷୋତ୍ତମ ଯଥାର୍ଥରେ କାମ ବର୍ଗ ପ୍ରଦାୟକ ।' ସାଧୁମାନେ ଶ୍ରୀଜଗନ୍ନାଥଙ୍କ ଚରିତାମୃତକୁ ହୃଦୟ ମଧ୍ୟରେ ଧ୍ୟାନ କରୁଥିବା ବେଳେ, ଗଣିକାମାନେ ନୃତ୍ୟ ମାଧ୍ୟମରେ ମନୋରଞ୍ଜନ ଦେଇଥାନ୍ତି । ମର୍ଦ୍ଦଳ ତାଳ ସହିତ ସେମାନଙ୍କର ତ୍ରିପୁର ମୋହିନୀ ଉରଜ ଭଙ୍ଗୀ ଦର୍ଶକମାନଙ୍କୁ ବିମୋହିତ କରିଦିଏ । କେହି କେହି କହନ୍ତି, ଏହି ନୃତ୍ୟର ଚମକ ତିନିପୁର ମୋହିତ କରିବ ।

ନୌକାରେ ବିରାଜିତ ପ୍ରଭୁ ଗୋପୀନାଥ ସୁବେଶ ସମ୍ପନ୍ନ ହୋଇ ଉପବେଶନ କରିଥିବା ବେଳେ ଭାଟଗଣ ନିଜର ଚତୁରତା ଦେଖାଇ ଭଲ ଭଲ କବିତାମାନ ଆବୃତ୍ତି କରି ଉପସ୍ଥିତ ଦର୍ଶକମାନଙ୍କ ଚିତ୍ତ ହରଣ କରିଥାନ୍ତି । ସେଠାରେ ସଦାସର୍ବଦା ହରି ହରି ଶବ୍ଦ ଶୁଭୁଥିବାରୁ କ୍ଷଣିକ ମାତ୍ରେ ଯମଦଣ୍ଡ ଦୂର ହୋଇଥାଏ ।

କେହି କେହି ତାଳପତ୍ରରେ ଗୃହ କରି ଚନ୍ଦନ ଯାତ୍ରା ଦେଖୁଥିବା ବେଳେ, ଜମିଦାରମାନେ ଶାଢ଼ୀରେ (ତମ୍ବୁ) କରିଥିବାରୁ ସେମାନଙ୍କ ନାରୀମାନେ ସେଠାରୁ ଚନ୍ଦନଯାତ୍ରା ଉପଭୋଗ କରିଥାନ୍ତି । କୌଣସି ରମଣୀ ବାତାୟନ ମଧ୍ୟ ଦେଇ ପ୍ରଭୁଙ୍କ ନୌକା ବିହାରରେ ଭାବବିହ୍ୱଳ ହୋଇ ଉଠିଛନ୍ତି । ଜଳରେ ବିହାର ସମାଜ ପାଇଁ ଏକ ଶିକ୍ଷାର ଦୃଷ୍ଟାନ୍ତ । ପ୍ରଭୁଙ୍କ ଇଙ୍ଗିତ ପ୍ରକାରେ, ଏହି ଜଳରେ ବିହାର କଳାପରି, ଭକ୍ତମାନଙ୍କୁ ଭବ ଜଳରୁ ତାରଣ କରିବେ ।

ଉପେନ୍ଦ୍ର ଭଞ୍ଜଙ୍କ ରଚିତ (ରସିକ ହାରାବଳୀ) କାବ୍ୟରେ ପ୍ରସଙ୍ଗକ୍ରମେ କୋଶଳ ରାଜପୁତ୍ରଙ୍କୁ ଜଗନ୍ନାଥଙ୍କ ନୌକା ବିହାର ଓ ଚନ୍ଦନ ଯାତ୍ରାର ଦର୍ଶନ କରାଇବା ସହ ରସିକ ହାରାବଳୀକୁ ପ୍ରେୟସୀ ଭାବେ ପାଇବା ପାଇଁ ଶ୍ରୀଜଗନ୍ନାଥଙ୍କ ଚରଣାଶ୍ରିତ କରାଇଛନ୍ତି । କାବ୍ୟର ତୃତୀୟ ଛାନ୍ଦରେ ଅକ୍ଷୟ ତୃତୀୟାରେ ଆରମ୍ଭ ଚନ୍ଦନ ଯାତ୍ରାର ମନୋମୁଗ୍ଧକର ବର୍ଣ୍ଣନା ସହିତ ନିଜେ ଏହି ମହୋତ୍ସବର ଦର୍ଶନ ନିମନ୍ତେ ଉଦ୍‌ବିଗ୍ନ ହୋଇଛନ୍ତି ।

ଅନ୍ୟାନ୍ୟ କାବ୍ୟପରି ସାମାଜିକ ଜୀବନର ନାନା ପ୍ରତିଛବି ଏଥିରେ ପ୍ରତିଫଳିତ । ବିଶେଷତଃ ବିବାହ ଉତ୍ସବ ସମୟର ବର୍ଣ୍ଣନା ସରଳ ଭାଷା, ସବାଲୀଳ ପ୍ରକାଶ ଭଙ୍ଗୀ ଓ ରସାନୁରୂପ ରାଗ ନିର୍ବାଚନରେ ପ୍ରେମ କାବ୍ୟଟି କବିଙ୍କର ବ୍ୟକ୍ତିଗତ ଜୀବନ ସ୍ମୃତିର ପ୍ରତିଫଳନ ବହନ କରି ଉତ୍କଳୀୟ ଜନ ଜୀବନ ସହ ମିଶିଯାଇଛି । କେବଳ ଚନ୍ଦନ ଯାତ୍ରା କାହିଁକି ସମସ୍ତ ଦ୍ୱାଦଶ ଯାତ୍ରାର ଦୃଷ୍ଟାନ୍ତ କବିଙ୍କ ବିଭିନ୍ନ କାବ୍ୟରେ ବର୍ଣ୍ଣିତ । କହିବାକୁ ଗଲେ କବିଙ୍କ ବ୍ୟକ୍ତିଗତ ଜୀବନର ଅନୁଭୂତି, ଯାହା ଶ୍ରୀକ୍ଷେତ୍ରର ଚନ୍ଦନ ଯାତ୍ରା ସମୟରେ ଉପେନ୍ଦ୍ର ଅନୁଭବ କରିଥିଲେ 'ରସିକ ହାରାବଳୀ' କାବ୍ୟ ମାଧ୍ୟମରେ ବର୍ଣ୍ଣନା କରିଛନ୍ତି, ଯେଉଁଥିରେ ଉପେନ୍ଦ୍ରଙ୍କ ବର୍ଣ୍ଣନା ଚାତୁରୀ ପରିବ୍ୟାପ୍ତ । କାରଣ ତାଙ୍କ ରଚିତ 'ପ୍ରେମ ସୁଧାନିଧି' କାବ୍ୟଟିରେ ମଧ୍ୟ କବିଙ୍କର ବ୍ୟକ୍ତିଗତ ଅନୁଭୂତି ଏହି ଚନ୍ଦନ ଯାତ୍ରା ସମ୍ପର୍କିତ ରହିଛି । କବି ବିଦ୍ୟାଧର ପଦବୀଧାରୀ ବାଣପୁରର ଅଚ୍ୟୁତ ହରିଚନ୍ଦନଙ୍କ ବିଦୂଷୀ କନ୍ୟାର ପାଣି ଗ୍ରହଣ କରିଥିଲେ । ଚନ୍ଦନ ଯାତ୍ରା ସମୟରେ ବାଣପୁର ରାଜଜେମାଙ୍କ ସହ ସାକ୍ଷାତ ହୋଇଥିଲା ଏବଂ ତାଙ୍କ ସହ ବିବାହ ସ୍ଥିର ହୋଇଥିବାରୁ ଶ୍ରୀକ୍ଷେତ୍ର ସମ୍ପର୍କରେ ବାଣପୁର ସାମନ୍ତ ଏବଂ ତାଙ୍କ କନ୍ୟା ଆସିଥିବା ସ୍ମୃତିକୁ ଉଜ୍ଜୀବିତ କରିବା ପାଇଁ କବି ଏହି କାବ୍ୟଟିର ପରିକଳ୍ପନା କରିଥାଇପାରନ୍ତି । ସେଥିପାଇଁ କାବ୍ୟର ନାୟିକାକୁ ଉତ୍କଳୀୟ ଜେମା ଏବଂ ତା' ପିତା ବିଦ୍ୟାଧରକୁ ନୀଳାଚଳବାସୀ ସାମନ୍ତ ବଂଶୀୟ ଭାବେ କଳ୍ପନା କରିଛନ୍ତି । ନାୟକର ବୀରବର ଉପାଧି କବିଙ୍କ ଲବଧ୍ ବୀରବର ଉପାଧିର ସ୍ମାରକୀ କହିଲେ ଅତ୍ୟୁକ୍ତି ହେବ ନାହିଁ ।

◆◆◆



ଭଞ୍ଜୀୟ କାବ୍ୟଧାରା ମଧ୍ୟରେ ପ୍ରଣୟର ଗତିଶୀଳତା ସହ ଐଶୀ ଚେତନାର ପ୍ରବାହ କାବ୍ୟଗୁଡ଼ିକୁ ସୌନ୍ଦର୍ଯ୍ୟ ବିମଣ୍ଡିତ କରିପାରିଛି । ନିଜର ଉପାସ୍ୟ ପ୍ରଭୁ ଶ୍ରୀରାମ ରୂପୀ ଶ୍ରୀଜଗନ୍ନାଥଙ୍କ ଯଶଗାନ କରାଯାଇ କବିତାଗୁଡ଼ିକ ପ୍ରାଣବନ୍ତ ହୋଇଛି । ପ୍ରଭୁଙ୍କ ବିଭିନ୍ନ ଲୀଳା ବର୍ଣ୍ଣନା ସହିତ ଶ୍ରୀକ୍ଷେତ୍ରର ମାହାତ୍ମ୍ୟ, ରଥ ଯାତ୍ରାର ଗୌରବ ପ୍ରତିପାଦନ କରିବାରେ ତାଙ୍କ ସୃଷ୍ଟି ଯେତିକି ସଫଳତା ପାଇଛି, ତା' ସହିତ ଆତ୍ମିକ ବିକାଶରେ ପ୍ରଗାଢ଼ ନିଷ୍ଠା ମଧ୍ୟ ଚିର ସ୍ମରଣୀୟ । କାବ୍ୟ ରଚନା କ୍ଷେତ୍ରରେ ବିଭିନ୍ନ ଅଳଙ୍କାରର ବିଚିତ୍ର ପ୍ରୟୋଗ, କଳ୍ପନା ଓ ବର୍ଣ୍ଣନା ଚାତୁରୀ, ଭାବ ଓ ରସାନୁରୂପ ଭାଷା, ପଦ ସଂଯୋଜନା, ସ୍ୱକୀୟ ଅନୁଭୂତିର ପ୍ରାଣସ୍ପର୍ଶୀ ସ୍ୱତଃସ୍ଫୂର୍ତ୍ତ ଅଭିବ୍ୟକ୍ତି (ରସିକ ହାରାବଳୀ) କାବ୍ୟର ଶ୍ରୀକ୍ଷେତ୍ରର ଚନ୍ଦନ ଯାତ୍ରାକୁ ଆହୁରି ମହିମା ମଣ୍ଡିତ କରିପାରିଛି ।

ମାଷ୍ଟର ପଡ଼ା, ଫୁଲବାଣୀ–୭୬୨୦୦୧

# ତିନି ରଥେ ଆଜି

ହଂସନାଥ ମୁଦୁଲି

ତିନି ରଥେ ଆଜି ଦେଖିବି ମୁଁ ମୋର
ତିନି ଠାକୁର
ବଡଦାଣ୍ଡେ ଭାଇ ଭଉଣୀଙ୍କ ସାଥେ
ଶ୍ରୀକ୍ଷେତ୍ର ସାର ।
ସଂସାର ବନ୍ଧନ ଭିତରୁ ଆସିଛି
ଦେଖିବି ବୋଲି
ରଥାରୂଢ ମୋର ତିନି ଦେବତାଙ୍କୁ
ହୃଦୟ ଖୋଲି
ଜନ ସମୁଦ୍ରରେ ଭାସିଯିବା ହେବ
ଆନନ୍ଦ ମୋର ।
ହାତଦୁଇ ଟେକି ନାଚିବି ମୁଁ ଆଜି
ଭକତ ମେଳେ
ହରିବୋଲ ହୁଳହୁଳି ଶବଦର
ସୁନ୍ଦର ତାଳେ
କୋଟିଜନଙ୍କର ଆଖି ଦେଖୁଥିବ
ରୂପ ତାଙ୍କର ।
ଭକ୍ତ ଚାହୁଁଥିବେ ରଥ ଦଉଡିକୁ
ଭକତି ଭରେ
ହଲିହଲି ମୋର ପ୍ରଭୁ ଚାଲୁଥିବେ
ଗୁଣ୍ଡିଚା ଘରେ
ମନ ରହିଥିବ ବାଟରେ ପଡିବ
ମାଉସୀ ଘର ।



ଖାଇ ପୋଡପିଠା ପାଟି କରି ମିଠା
ଆଗକୁ ଯିବେ
ରଥ ମଧ୍ୟେ ଥାଇ ଭକ୍ତ ହୃଦୟକୁ
ନିହାରୁ ଥିବେ
ମନୋବାଞ୍ଛା ପୂରା କରି ଚାଲୁଥିବେ
ଭକ୍ତଜନର ।
ମନ ରହିଥିବ କିଏ ଡାକୁଥିବେ
କେଉଁଠି କାଳେ
ପଥ ମଝିଟାରେ ରହିଯାଉଥିବେ
ସେଇ ଆଶାରେ
ସଭିଙ୍କୁ ଦର୍ଶନ ଦେଇସାରି ଯିବେ
କାଳିଆ ବୀର ।
ଦୟାମୟ ମୋର ଜଗତ ଠାକୁର
ସଭିଙ୍କ ପାଇଁ
ସମର୍ପଣ ଭାବେ ଶରଣ ପଶିଲେ
ରଖିବେ ସାଇଁ
ସେ ଭରସା ନେଇ ଆସିଛି ମୁଁ ଧାଇଁ
ପାଇବି ବର ।



ଖଣ୍ଡଗିରି (ଢୁମୁଢୁମା–କ)
ଭୁବନେଶ୍ୱର –୭୫୧୦୩୦





# ଏକାଦଶ ସ୍କନ୍ଧେ ତତ୍ତ୍ୱ ନିରୂପଣ

ଅଭିରାମ ନାୟକ

ମହର୍ଷି ବେଦବ୍ୟାସଙ୍କ ସର୍ବଶ୍ରେଷ୍ଠ କୃତି ସଂସ୍କୃତ ଭାଷାରେ ରଚିତ ଅଷ୍ଟାଦଶ ପୁରାଣ ମଧ୍ୟରେ 'ଶ୍ରୀମଦ୍ ଭାଗବତ' ଶ୍ରେଷ୍ଠତମ ଅଟେ । ତେଣୁ ଭାଗବତ ମହାପୁରାଣ ଭାବେ ଖ୍ୟାତ ।

ଅଷ୍ଟାଦଶ ପୁରାଣ ସାର, ଶ୍ରୀ ଭାଗବତ ନାମ ଯା'ର ॥

(ଭାଗବତ ୧୨–୭)

ଶ୍ରୀମଦ୍ ଭାଗବତ ରଚନା କରି ବ୍ୟାସଦେବ ପରମ ତୃପ୍ତି ଲାଭ କରିଥିଲେ । (ପି.ଭି. କାଣେଙ୍କ ରଚିତ ଧର୍ମଶାସ୍ତ୍ର ଇତିହାସ ଅନୁଯାୟୀ ଅଷ୍ଟାଦଶ ପୁରାଣ ଖ୍ରୀଷ୍ଟପୂର୍ବ ୨ୟ ଶତାବ୍ଦୀରୁ ଖ୍ରୀଷ୍ଟପର ୨ୟ ଶତାବ୍ଦୀ ମଧ୍ୟରେ ରଚିତ ।) ମୂଳ ଭାଗବତରେ ମୋଟ୍ ଶ୍ଳୋକ ସଂଖ୍ୟା ଅଠର ହଜାର ବୋଲି ଶାସ୍ତ୍ରାକାରମାନେ ମତ ଦେଇଥିଲେ ମଧ୍ୟ ସମ୍ପ୍ରତି ମୋଟ୍ ୧୨ ସ୍କନ୍ଧ ଓ ୩୩୫ ଅଧ୍ୟାୟ ବିଶିଷ୍ଟ ଭାଗବତରେ ୧୪,୦୯୮ ଗୋଟି ଶ୍ଳୋକ ଉପଲବ୍ଧ ଅଛି । ଅବଶିଷ୍ଟ ଶ୍ଳୋକ ହୁଏତ ସମୟ ସ୍ରୋତରେ ଅବଲୁପ୍ତ କିମ୍ବା ଅଦ୍ୟାବଧି ଅନାବିଷ୍କୃତ । ଷୋଡ଼ଶ ଶତାବ୍ଦୀରେ ଓଡ଼ିଶାର ପ୍ରଣମ୍ୟ କବି ଅତିବଡ଼ୀ ଜଗନ୍ନାଥ ଦାସ ମୂଳ ସଂସ୍କୃତ ଭାଗବତ ଆଧାରରେ ଓଡ଼ିଆ ଭାଗବତ ରଚନା କରିଛନ୍ତି, ଯାହା ୧୨ଗୋଟି ସ୍କନ୍ଧ ଓ ମୋଟ୍ ୩୪୨ ଅଧ୍ୟାୟ ବିଶିଷ୍ଟ ଅଟେ । ଓଡ଼ିଆରେ ତ୍ରୟୋଦଶ ସ୍କନ୍ଧ ଭାଗବତ ଉପଲବ୍ଧ ଥିଲେ ମଧ୍ୟ ଏହା (ତ୍ରୟୋଦଶ ସ୍କନ୍ଧ) ଜଗନ୍ନାଥ ଦାସଙ୍କ ଦ୍ୱାରା ରଚିତ ନୁହେଁ ଓ ମୂଳ ଭାଗବତର ଅଂଶ ଭାବେ ପରିଗୃହୀତ ହୁଏ ନାହିଁ ବୋଲି ଶାସ୍ତ୍ରମତ ରହିଛି ।

ମାନବିକତାର ବିକାଶ ଓ ସୁସ୍ଥ ସମାଜ ଗଠନ ପାଇଁ ଭାଗବତ ପ୍ରଦର୍ଶିତ ମାର୍ଗର ବିକଳ୍ପ ନାହିଁ । ଭାଗବତ କଥା ହେଉଛି ମର୍ତ୍ତ୍ୟରେ ଅମୃତ । (କଥାମୃତ ରସାସ୍ୱାଦ ......, ଭାଗବତ ୧–୧–୩) ଏହି ଅମୃତ ସଂସ୍ପର୍ଶରେ ଆସିଲେ ମନୁଷ୍ୟ ଯଶସ୍ୱୀ ହୋଇ ଅମରତ୍ୱ ପ୍ରାପ୍ତହୁଏ । ସଂସ୍କୃତ ଭାଗବତ ୧୦ମ ସ୍କନ୍ଧ, ୧ମ ଅଧ୍ୟାୟ, ୧୬ଶ ଶ୍ଳୋକ ଆଧାରରେ ଓଡ଼ିଆ ଭାଗବତରେ ଯଥାର୍ଥରେ କୁହାଯାଇଛି–

ଗୋବିନ୍ଦ କଥା ପରଶନ ହେଲେ ତାରଇ ତିନିଜଣ
ଶ୍ରୋତା ବକତା ଯେ ପଚାରି ଏ ତିନି ଜଣ ଯା'ନ୍ତି ତରି ॥

(ଭାଗବତ ୧୦–୧)

**ଶ୍ରୀମଦ୍ ଭାଗବତର ତାତ୍କାଳିକ ସଫଳତା**

୧) ଯେଉଁ ସ୍ଥାନରେ ଦୈନନ୍ଦିନ ଭାଗବତର କିୟଦଂଶ ପାଠ କରାଯାଏ ଓ ଯେଉଁ ବ୍ୟକ୍ତି ଦୈନନ୍ଦିନ ଭାଗବତର କିୟଦଂଶ ପଠନ ବା ଶ୍ରବଣ କରନ୍ତି, ସେ ସ୍ଥାନରେ ଓ ସେ ବ୍ୟକ୍ତିଙ୍କଠାରେ ଗ୍ରହପୀଡ଼ା, ଶତ୍ରୁଭୟ ଓ ରୋଗ ଆକ୍ରମଣ ହାର୍ ମାନେ ।

୨) ଭାଗବତ ୬ଷ୍ଠ ସ୍କନ୍ଧ ୮ମ ଅଧ୍ୟାୟ ପାଠକଲେ ହିଂସ୍ରଜନ୍ତୁ ଆକ୍ରମଣ ଭୟ, ସର୍ପାଘାତ, ବଜ୍ରପାତ ଆଦି ଆକସ୍ମିକ ଦୁର୍ଘଟଣା ସମେତ ପ୍ରେତ ପିଶାଚ ଆଦି ଭୟ ଦୂର ହୋଇଯାଏ । ମହର୍ଷି ବ୍ୟାସଦେବଙ୍କ ଶିଷ୍ୟମାନେ ଏହି ଅଧ୍ୟାୟ ପାଠକରି ଘଞ୍ଚ ଜଙ୍ଗଲ ମଧ୍ୟରେ ନିର୍ଭୟରେ ଫଳ, ପୁଷ୍ପ ଓ ସମିଧ ଆଦି ସଂଗ୍ରହ କରୁଥିଲେ ।

୩) ମହାଳୟା, ପୟାଶ୍ରାଦ୍ଧ ଓ ଏକୋଦିଷ୍ଟ ଶ୍ରାଦ୍ଧ ତିଥିମାନଙ୍କରେ ଗୃହରେ ଭାଗବତ ପାଠ କରାଗଲେ ପିତୃପୁରୁଷ ସନ୍ତୁଷ୍ଟ ହୁଅନ୍ତି ।



୪) ନୂତନ ଗୃହ ପ୍ରବେଶ ସମୟରେ କର୍ତ୍ତା ଏକ ଭାଗବତ ଗ୍ରନ୍ଥ ନେଇ ପ୍ରଥମେ ଗୃହ ପ୍ରବେଶ କଲେ ସେ ଗୃହ ସର୍ବଶୁଭଦାୟକ ହୁଏ ବୋଲି ବାସ୍ତୁଶାସ୍ତ୍ରରେ ଦର୍ଶାଯାଇଛି।

୫) ଜୀବନର ଅନ୍ତିମ ସମୟରେ ଭାଗବତ କର୍ଣ୍ଣଗୋଚର ହେଲେ ଜୀବ ମୋକ୍ଷପ୍ରାପ୍ତ ହୋଇ ବୈକୁଣ୍ଠ ଗମନ କରେ।

'ଅନ୍ତକାଳେ ତୁ ଯେନୈବ ଶ୍ରୂୟତେ ଶୁକ ଶାସ୍ତ୍ରବାକ୍
ପ୍ରୀତ୍ୟା ତସ୍ୟୈବ ବୈକୁଣ୍ଠଂ (ଗୋବିନ୍ଦଃ ଅପି)ହ୍ୟପ୍ରୟଚ୍ଛତି'

(ପଦ୍ମ ପୁରାଣ, ଉତ୍ତର ଖଣ୍ଡ, ୩ୟ ଅଧ୍ୟାୟ, ଶ୍ଳୋକ–୪୦)

ସମ୍ପୂର୍ଣ୍ଣ ଭାଗବତର ନିର୍ଯାସ ହେଉଛି ଏହାର ଏକାଦଶ ସ୍କନ୍ଧ। ତେଣୁ ଏକାଦଶ ସ୍କନ୍ଧକୁ 'ଶ୍ରୀଏକାଦଶ' ବୋଲି କୁହାଯାଏ। 'ଶ୍ରୀଏକାଦଶ'ର ଅନ୍ୟନାମ 'ଉଦ୍ଧବଗୀତ'। କଳିଯୁଗ ଆଗମନ ପୂର୍ବରୁ ପରମ ପୁରୁଷ ଭଗବାନ ଶ୍ରୀକୃଷ୍ଣ ଦେହତ୍ୟାଗ ପାଇଁ ପ୍ରସ୍ତୁତ ହେଉଥିବା ଜାଣି ବ୍ରହ୍ମଜ୍ଞାନୀ ଉଦ୍ଧବ ମୋହଗ୍ରସ୍ତ ହୋଇପଡ଼ିଥିଲେ। ଏହି ସମୟରେ ଉଦ୍ଧବଙ୍କ ପ୍ରତି ଭଗବାନଙ୍କ ସାର୍ବଜନୀନ ଉପଦେଶାବଳୀ ଉଦ୍ଧବଗୀତାରେ ବର୍ଣ୍ଣିତ ହୋଇଛି।

ଜୀବନରେ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ନେବା ବେଳେ ଉଦ୍ଧବଗୀତା ଓ ଶ୍ରୀମଦ୍ ଭଗବଦ୍ ଗୀତାର ମାର୍ଗଦର୍ଶିକା ଅନୁଶୀଳନ କରାଗଲେ ଲକ୍ଷ୍ୟ ପ୍ରାପ୍ତି ସହଜ ହେବା ସଂଗେ ସଂଗେ ପଶ୍ଚାତାପ ଦୂର ହୁଏ। ଉଦ୍ଧବଗୀତା (ଶ୍ରୀଏକାଦଶ) ୩୧ ଅଧ୍ୟାୟ ବିଶିଷ୍ଟ ଓ ଏଥିରେ ମୋଟ୍ ୧୩୬୭ ଗୋଟି ଶ୍ଳୋକ ଉପଲବ୍ଧ (ଓଡ଼ିଆ ଭାଗବତର ୧୧ଶ ସ୍କନ୍ଧ ୩୨ ଅଧ୍ୟାୟ ବିଶିଷ୍ଟ)। ଏହାର ପ୍ରତ୍ୟେକ ଅଧ୍ୟାୟ ସ୍ୱତନ୍ତ୍ର ଓ ଅନନ୍ୟ ଭାବାନ୍ତର ସୃଷ୍ଟିକାରୀ। ସାମଗ୍ରିକ ଭାବେ ଏହାର ଲେଶମାତ୍ର ଏଠାରେ ଅବତାରଣା କରାଯାଇପାରେ।

ଶ୍ରୀଏକାଦଶ ପ୍ରାରମ୍ଭରେ ସୂଚନା ଦିଆଯାଇଛି ଯେ ଔଦ୍ଧତ୍ୟର ପରିଣତି ସର୍ବନାଶ। ଏକଦା ଯଦୁବଂଶୀ ବାଳକମାନେ ଶ୍ରୀକୃଷ୍ଣଙ୍କ ପୁତ୍ର ଶାମ୍ବଙ୍କୁ ଏକ ଗର୍ଭବତୀ ନାରୀ ବେଶ କରାଇ ପିଣ୍ଡାରକ କ୍ଷେତ୍ର (ପ୍ରଭାସ ତୀର୍ଥ) ପର୍ଯ୍ୟଟନ କରୁଥିବା ଦୁର୍ବାସା, ଭୃଗୁ, ଅତ୍ରି ଆଦି ପରମ ପୂଜନୀୟ ମୁନିମାନଙ୍କୁ ପ୍ରସବ ସମ୍ବନ୍ଧରେ କପଟ ପ୍ରଶ୍ନ କରିଥିଲେ। ଦିବ୍ୟଦ୍ରଷ୍ଟା ମୁନିମାନେ ଉଚ୍ଛୃଙ୍ଖଳ ବାଳକମାନଙ୍କ ପ୍ରତି ଅଭିଶାପ ଦେଇ କହିଥିଲେ–

ଏହାର ଗର୍ଭେ ହେବ ବାଳ ନିଷ୍ଠୁର ଲୌହର ମୁଷଳ
ଆଜ ଏ ଗର୍ଭ ପ୍ରସବିବ ତୁମ୍ଭର ବଂଶ ବିନାଶିବ
ଭୂମିରେ ଯଦୁବଂଶ ଯେତେ ଏ ଲୌହେ ମରିବେ ସମସ୍ତେ।

(ଭାଗବତ – ୧୧–୧)

ସେହି ମୁଷଳ ଘର୍ଷଣାବଶେଷରୁ ସମୟକ୍ରମେ ସୃଷ୍ଟି ହୋଇଥିଲା ଏରକା ବନ (ଏରକା ଏକ ଶକ୍ତ ଘାସ) ଓ ଜାରା ଶବର ନାରାଚ। ଔଦ୍ଧତ୍ୟର ସୀମା ଲଙ୍ଘନ କରିଥିବା ଯଦୁବଂଶୀମାନେ ମୈରେୟକ ନାମକ ଏକ ଉତ୍କଟ ମଦ୍ୟପାନ କରି ହିତାହିତ ଜ୍ଞାନ ହରାଇ ମୁଠାମୁଠା ଏରକା ଉପାଡ଼ି ପରସ୍ପରକୁ ପ୍ରହାର କରି ବିନାଶ ପ୍ରାପ୍ତ ହୋଇଥିଲେ। ଅଭିମନ୍ୟୁଙ୍କ ପୁତ୍ର ପରୀକ୍ଷିତଙ୍କୁ ବ୍ରହ୍ମାସ୍ତ୍ରରୁ ରକ୍ଷା କରିଥିବା ସର୍ବଶକ୍ତିମାନ ଶ୍ରୀକୃଷ୍ଣଙ୍କ ପାଇଁ ଯଦୁବଂଶକୁ ବ୍ରହ୍ମଶାପରୁ ରକ୍ଷା କରିବା କିଛି ଅସହଜ ନଥିଲା। ମାତ୍ର ସେ ଅନୁଭବ କରିଥିଲେ ଯେ ଗର୍ବୀ ଯାଦବମାନଙ୍କ ବିଶାଳ ବଂଶ ବିନାଶ ବିନା ତତ୍‌କାଳୀନ ସମାଜରେ ଶାନ୍ତି ପ୍ରତିଷ୍ଠା ଅସମ୍ଭବ। ଶେଷରେ ଜାରା ଶବର ନାରାଚରେ ସେ ନିଜେ ବୈକୁଣ୍ଠ ପ୍ରତ୍ୟାବର୍ତ୍ତନ କରିଥିଲେ।

ପୂଜ୍ୟପୂଜାର ବ୍ୟତିକ୍ରମ ଯୋଗୁଁ ଯେ ବିନାଶର କାଳ ଢେଉ ମାଡ଼ିଆସେ, ଏହା ଶ୍ରୀଏକାଦଶରେ ସର୍ବ ପ୍ରଥମେ ସୂଚନା ଦିଆଯାଇଛି।

ଶ୍ରୀଏକାଦଶର ପରବର୍ତ୍ତୀ ନିର୍ଦ୍ଦେଶ ହେଉଛି ସମୟୋଚିତ କର୍ମରେ ଆତ୍ମନିୟୋଜନ କରିବା। ମଣିଷ ଆପଣେଇ ନେଉଥିବା କର୍ମସମୂହକୁ ତିନି ଭାଗରେ ବିଭକ୍ତ କରାଯାଇଛି, ଯଥା– କର୍ମ (ଶାସ୍ତ୍ରବିହିତ କର୍ମ), ଅକର୍ମ (ଶାସ୍ତ୍ରନିଷିଦ୍ଧ କର୍ମ) ଏବଂ ବିକର୍ମ (ବିହିତ କର୍ମର ଉଲ୍ଲଙ୍ଘନ) (ସଂସ୍କୃତ ଭାଗବତ ୧୧–୩–୪୩)। ପୁନଶ୍ଚ ବିହିତ କର୍ମ ସମ୍ପାଦନରେ ପ୍ରତିବନ୍ଧକ ସୃଷ୍ଟି କରୁଥିବା ଶତ୍ରୁମାନେ ହେଲେ କାମ (ପାଇବା ଲାଳସାରେ ବର୍ତ୍ତମାନ ସମୟର ଅପ୍ରାସଙ୍ଗିକ ଅପଚୟ), କ୍ରୋଧ (ଅନ୍ୟର ତ୍ରୁଟି ପାଇଁ ନିଜ ଶରୀର ଉତ୍ତେଜିତ କରି ମାରାତ୍ମକ ରୋଗକୁ

ନିମନ୍ତ୍ରଣ), ଲୋଭ (ଅନିଶ୍ଚିତ ସୁଖ ଭୋଗ ନିମିତ୍ତ ଶରୀର କ୍ଲେଶ), ମୋହ (ମରୀଚିକା ପଛରେ ଧାଇଁ ନିଜେ ହଜିଯିବା), ମଦ (ବାସ୍ତବତାଠାରୁ ନିଜକୁ ଅଧିକ ତଉଲି ଅଧଃପତନକୁ ଆପଣେଇବା) ଓ ମାତ୍ସର୍ଯ୍ୟ (ଅନ୍ୟର ପ୍ରଗତିରେ ଆତ୍ମଦାହ/ପରଶ୍ରୀକାତରତା)। ଏହି ଷଡ଼ ଅରିଙ୍କୁ ପ୍ରତିହତ କରିବା ପାଇଁ ଭାଗବତରେ ଗୁରୁ ଆଶ୍ରିତ ହେବା ଓ ସତ୍‌ସଙ୍ଗ କରିବା ପାଇଁ କୁହାଯାଇଛି।

ଗୁରୁ ନିର୍ଣ୍ଣୟ– ପଙ୍କରେ ଲୋଟୁଥିବା ଘୁଷୁରିଟିଏ ଯେଉଁ ଆନନ୍ଦର ସ୍ୱାଦ ଚାଖୁଥାଏ, ସମ୍ପଦର ପ୍ରାଚୁର୍ଯ୍ୟ ମଧ୍ୟରେ ଥିବା ବ୍ୟକ୍ତିଟିଏ ହୁଏତ ଜୀବନରେ ତା'ର କଣିକାଏ ଅନୁଭବ କରିପାରେ ନାହିଁ। ତଥାପି ମନୁଷ୍ୟ ଜନ୍ମ ଦୁର୍ଲଭ ବୋଲି ଶ୍ରୀମଦ୍ ଭାଗବତ ସମେତ ସମସ୍ତ ଧର୍ମଶାସ୍ତ୍ରରେ କୁହାଯାଇଛି। ଏହାର ଏକମାତ୍ର କାରଣ ହେଉଛି ମନୁଷ୍ୟ ବ୍ୟତୀତ ଅନ୍ୟ କୌଣସି ଜନ୍ମରେ ଈଶ୍ୱର ଉପାସନାର ସୁଯୋଗ ଦିଆଯାଇନାହିଁ। ଅନେକ ଜନ୍ମର ସଫଳ ସାଧନା ପରେ ମନୁଷ୍ୟ ଜନ୍ମ ମିଳି ମୁକ୍ତିର ମାର୍ଗ ମିଳିଥାଏ। ଏହି ମାର୍ଗରୁ ବିଚ୍ୟୁତ ହେଲେ ବହୁ ପଛକୁ ଫେରିଯିବାକୁ ହୁଏ। ମାର୍ଗଚ୍ୟୁତ ନହେବା ପାଇଁ ଗୁରୁଆଶ୍ରା ଏକାନ୍ତ ଆବଶ୍ୟକ।

ସମସ୍ତ ଧର୍ମ ଓ ଶାସ୍ତ୍ରରେ ଗୁରୁଙ୍କୁ ସ୍ୱତନ୍ତ୍ର ସମ୍ମାନର ଅଧିକାର ଦିଆଯାଇଛି। ଭାଗବତରେ କୁହାଯାଇଛି–

ସାକ୍ଷାତେ ଗୁରୁ ଯେ ଈଶ୍ୱର ଗୁରୁଙ୍କୁ ନମଣିବ ନର।
(ଭାଗବତ ୧୧–୧୮)
ଗୁରୁଙ୍କୁ ବିଷ୍ଣୁ ପ୍ରାୟେ ମଣି ସେବାକରିବ ଦୃଢ଼େ ପୁଣି।
(ଭାଗବତ ୧୧–୧୯)

ଗୁରୁବନ୍ଦନାରେ ଆହୁରି ମଧ୍ୟ କୁହାଯାଇଛି ଯେ–

'ଗୁରୁ ବ୍ରହ୍ମା, ଗୁରୁ ବିଷ୍ଣୁଃ ଗୁରୁଦେବ ମହେଶ୍ୱରଃ
ଗୁରୁ ସାକ୍ଷାତ୍ ପରଂବ୍ରହ୍ମଃ ତସ୍ମୈଶ୍ରୀ ଗୁରବେ ନମଃ॥'

ଏଠାରେ ପ୍ରଶ୍ନ ଉଠେ, ଏ ସଂସାରରେ ଏପରି ଗୁରୁ କିଏ, ଯେ କି ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କ ସହ ସମାନ ତଥା ସ୍ୱୟଂ ସାକ୍ଷାତ୍ ପରଂବ୍ରହ୍ମ ବିଷ୍ଣୁଙ୍କ ପରି ପୂଜା ପାଇବାର ଅଧିକାରୀ ଅଟନ୍ତି ?

ଶାସ୍ତ୍ରମତେ ଗୁରୁ ଶବ୍ଦର ସଂଜ୍ଞା ଏହିପରି। ଯଥା–

'ଗୁ' କାରଶ୍ଚ ଅନ୍ଧକାରୋ 'ରୁ' କାରଃ ତେଜ ଉଚ୍ୟତେ
ଅଜ୍ଞାନ ଗ୍ରାସକଂବ୍ରହ୍ମ ଗୁରୁରେବ ନ ସଂଶୟଃ॥

(ଅଜ୍ଞାନ ରୂପକ ଅନ୍ଧକାରକୁ ଯେ ନିଜର ଜ୍ୟୋତିରେ ଦୂର କରିପାରନ୍ତି ସେ ହିଁ ଗୁରୁ ପଦବାଚ୍ୟ)

ବିଭିନ୍ନ ଶାସ୍ତ୍ରରେ ଭିନ୍ନ ଭିନ୍ନ ଗୁରୁଙ୍କର ପରିଚୟ ରହିଛି। ଯଥା–

'ଗୁରୁରଗ୍ନି ଦ୍ୱିଜାତିନାଂ ବର୍ଣ୍ଣାନାଂ ବ୍ରାହ୍ମଣ ଗୁରୁଃ
ପତିରେକୋ ଗୁରୁଃସ୍ତ୍ରୀଣାଂ ସର୍ବତ୍ରାଭ୍ୟାଗତେ ଗୁରୁଃ॥'

(ଅଗ୍ନି ବ୍ରାହ୍ମଣମାନଙ୍କର, ବ୍ରାହ୍ମଣ ସମସ୍ତ ଜାତିର, ସାଧ୍ୱୀ ପତ୍ନୀର ସ୍ୱାମୀ ଓ ଅତିଥି ସମସ୍ତଙ୍କର ଗୁରୁ ଅଟନ୍ତି)

କିବା ବିପ୍ର କିବା ନ୍ୟାସୀ ଶୂଦ୍ର କେନେ ନୟ
ଯେଇ କୃଷ୍ଣ ତତ୍ତ୍ୱ ବେତ୍ତା ସେଇ 'ଗୁରୁ' ହୟ।

(ଚୈତନ୍ୟ ଚରିତାମୃତ ମ–୮–୧୨୭)

(ବିପ୍ର, ସନ୍ନ୍ୟାସୀ, ଶୂଦ୍ର ନିର୍ବିଶେଷରେ କେବଳ କୃଷ୍ଣତତ୍ତ୍ୱ ଜାଣିଥିବା ବ୍ୟକ୍ତି ଗୁରୁ ପଦବାଚ୍ୟ)

'ଶିକ୍ଷାକଳ୍ପଦ୍ରୁମଃ' ମତେ ଜୀବନର ବିଭିନ୍ନ କ୍ଷେତ୍ରରେ ଛ' ଜଣ ବ୍ୟକ୍ତି ଗୁରୁଭାବେ ଗ୍ରହଣୀୟ ବା ଜୀବନରେ ମୋଟ୍ ୬ ପ୍ରକାର ଗୁରୁ ରହିଛନ୍ତି । ଯଥା–

'ଦୀକ୍ଷାଦାନେ ସାଧୁନାଂଚ ବିଦ୍ୟାୟାଂ ଦୈବଜ୍ଞଃ ଗୁରୁଃ
ସାବିତ୍ରୀମନ୍ତ୍ର ଦାନେନ ଗୁରୁଃଭବତି ସାଗ୍ନିକଃ
ସତ୍‌ଶିକ୍ଷା ଉପଦେଶେଚ ପୁତ୍ରାଂଣାଂ ଜନକଃ ଗୁରୁଃ
ମାତା ଗୁରୁଃହିତାୟଚ ଶିକ୍ଷାୟାଂ ଶିକ୍ଷାବିତ୍ ଭବେତ୍।'

(ଦୀକ୍ଷାଗୁରୁ – ସାଧୁ/ସନ୍ଥ, ବିଦ୍ୟାଗୁରୁ– ଦୈବଜ୍ଞ/ଗ୍ରହବିପ୍ର, ମନ୍ତ୍ରଗୁରୁ – ଅଗ୍ନିହୋତ୍ରୀ/ନିୟତ ଯଜ୍ଞକାରୀ, ନିତ୍ୟଗୁରୁ (ସତ୍‌ଶିକ୍ଷାଦାତା) – ଜନକ, ଆଦିଗୁରୁ/ହିତଗୁରୁ – ଜନନୀ, ଶିକ୍ଷାଗୁରୁ – ଶିକ୍ଷାବିତ୍/ଶିକ୍ଷାଦାତା)

ଶ୍ରୀଏକାଦଶରେ ଚର୍ଚ୍ଚିତ ଚରିତ୍ର ସନ୍ଥ ଅବଧୂତ ୨୪ ଜଣଙ୍କୁ ଗୁରୁ ଭାବେ ଗ୍ରହଣ କରିଥିବା ବର୍ଣ୍ଣନା ରହିଛି।



ସେମାନେ ହେଲେ ପୃଥିବୀ, ବାୟୁ, ଆକାଶ, ଜଳ, ଅଗ୍ନି, ଚନ୍ଦ୍ର, ସୂର୍ଯ୍ୟ, କପୋତ ପକ୍ଷୀ, ଅଜଗର, ସମୁଦ୍ର, ପତଙ୍ଗ, ଭ୍ରମର ବା ମହୁମାଛି, ହାତୀ, ମଧୁ ସଂଗ୍ରହକାରୀ, ହରିଣ, ମାଛ, ପିଙ୍ଗଳା ନାମକ ବେଶ୍ୟା, କୁରର ପକ୍ଷୀ, ବାଳକ, କୁମାରୀ କନ୍ୟା, ଶରନିର୍ମାତା, ସର୍ପ, ବୁଢ଼ିଆଣୀ ଓ ଭୃଙ୍ଗୀକୀଟ (କୁମ୍ଭାର ପୋକ)।

ଅବଧୂତ ଯଦୁରାଜା ସମ୍ବାଦରେ ୨୪ ଗୁରୁଙ୍କ ଅବତାରଣା କରାଯାଇ ପରୋକ୍ଷରେ ଦର୍ଶାଯାଇଛି ଯେ ଜଡ଼, ଚେତନ, କୀଟ, ପତଙ୍ଗ ନିର୍ବିଶେଷରେ ସାରା ବିଶ୍ୱ ଗୁରୁମୟ। ଯାହାଠାରୁ କିଛି ଶିଖିବାର ଅଛି ସେ ଜଣେ ଗୁରୁ। ବନିଶୀ କଣ୍ଟାରେ ଲାଗିଥିବା ଥୋପ ଗିଳିଦେଇ ମାଛ ପ୍ରାଣ ହରାଏ। ଏଥିରୁ ଏହି ଶିକ୍ଷା ମିଳେ ଯେ ନିଜ ରସନା (ଜିଭ)କୁ ସଂଯତ କରିନଥିବା ଅବିବେକୀ ମନୁଷ୍ୟ ରସନାର ଦାସ ହୋଇ ମୃତ୍ୟୁବରଣ କରେ। ଏହି ଶିକ୍ଷା ପାଇ ଅବଧୂତ ମାଛକୁ ଗୁରୁଭାବେ ଗ୍ରହଣ କରିଛନ୍ତି । ଏଠାରେ ସାମାନ୍ୟ ମାଛଟିଏକୁ ଗୁରୁ କୁହାଯାଇନପାରେ, ବରଂ ମାଛ ମଧ୍ୟରେ ଥିବା ଉପାଦେୟ ତତ୍ତ୍ୱକୁ ଆବିଷ୍କାର କରି ଗ୍ରହଣ କରିବା ପାଇଁ ଯିଏ ନିର୍ଦ୍ଦେଶ ଦେଲେ, ସେ ହିଁ ପ୍ରକୃତ ଗୁରୁ । ସେହି ଗୁରୁ ହେଉଛି ନିଜର ବିବେକ ବା ଆତ୍ମା । ପୁନଶ୍ଚ ଭାଗବତରେ କାହାରିକୁ ଗୁରୁ ହେବା ପାଇଁ କୁହାଯାଇନାହିଁ, ବରଂ ସମସ୍ତଙ୍କୁ ଶିଷ୍ୟ ଭାବ ପୋଷଣ କରିବା ପାଇଁ ନିର୍ଦ୍ଦେଶ ଦିଆଯାଇଛି। ଅର୍ଥାତ୍ ପ୍ରତ୍ୟେକ ଘଟଣାରେ ସଦ୍‌ଗୁଣ ଅନ୍ୱେଷଣ କରି ନିଜକୁ ସଂସ୍କାରିତ କରିବା ପାଇଁ ଭାଗବତରେ କୁହାଯାଇଛି। ଯେକୌଣସି ଗୁରୁଙ୍କର ନିର୍ଦ୍ଦେଶ ବା ଶିକ୍ଷା ଅଯୌକ୍ତିକ ମନେହେଲେ ତାହାକୁ ପ୍ରତ୍ୟାଖ୍ୟାନ କରିବା ପାଇଁ ମଧ୍ୟ ପରାମର୍ଶ ଦିଆଯାଇଛି। ସମୟକ୍ରମେ ଗୁରୁଙ୍କୁ ପ୍ରତ୍ୟାଖ୍ୟାନ କରି ସଫଳତା ଲାଭ କରିଥିବା ଅନେକ ବ୍ୟକ୍ତିଙ୍କୁ ମଧ୍ୟ ଆଦର୍ଶ ଭାବେ ଗ୍ରହଣ କରାଯାଇଛି, ଯଥା: ରାଜା ବଳୀ ଗୁରୁ 'ଶୁକ୍ର'ଙ୍କ ଉପଦେଶକୁ ପ୍ରତ୍ୟାଖ୍ୟାନ କରି ବାମନଙ୍କୁ ଦାନ ଦେଇଥିଲେ। ପ୍ରହ୍ଲାଦ ନିଜ ପିତା ହିରଣ୍ୟକଶିପୁଙ୍କ ନିର୍ଦ୍ଦେଶ ପାଳନ କରୁନଥିଲେ। ଭରତ ତାଙ୍କ ମାତା କୈକେୟୀଙ୍କ ଇଚ୍ଛାକୁ ଅବମାନନା କରି ରାଜା ହେବା ପରିବର୍ତ୍ତେ ସନ୍ନ୍ୟାସୀ ଜୀବନ ଅତିବାହିତ କରୁଥିଲେ।

ଉପରୋକ୍ତ ଆଲୋଚନାରୁ ଏହା ସୁସ୍ପଷ୍ଟ ଯେ, ଜଣେ ଗୁରୁ ହୁଏତ ଜଣେ ଦିବ୍ୟ ଗୁଣଧାରୀ ମହାପୁରୁଷ ହୋଇପାରନ୍ତି ମାତ୍ର 'ସାକ୍ଷାତ୍ ପରଂବ୍ରହ୍ମ' ପଦବାଚ୍ୟ ହେବା ଅସମ୍ଭବ। ଏହାର ସମାଧାନରେ ଶ୍ରୀଏକାଦଶରେ କୁହାଯାଇଛି ଯେ, ପ୍ରତ୍ୟେକ ବ୍ୟକ୍ତିର ଆତ୍ମା ବା ବିବେକ ହେଉଛି ତାଙ୍କ ପାଇଁ ଉପଯୁକ୍ତ ଗୁରୁ। ଏହି ଗୁରୁ ସର୍ବଦା ପାଖେ ପାଖେ ରହି ପ୍ରତ୍ୟେକ ବସ୍ତୁରୁ, ପ୍ରତ୍ୟେକ ଘଟଣାରୁ ଉପଯୁକ୍ତ ତଥ୍ୟ ଗ୍ରହଣ ପାଇଁ ପରାମର୍ଶ ଦେଉଥାଆନ୍ତି । ବ୍ୟକ୍ତି ଏହି ଗୁରୁଙ୍କୁ ଚିହ୍ନିବା ଆବଶ୍ୟକ। ପ୍ରତ୍ୟେକ ବ୍ୟକ୍ତିର ଆତ୍ମାରେ ସ୍ୱୟଂ ଭଗବାନ ଅବସ୍ଥାନ କରନ୍ତି ବୋଲି ଶ୍ରୀଏକାଦଶରେ କୁହାଯାଇଛି। ଆତ୍ମା ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କର ସମ୍ମିଳିତ ରୂପ ଓ ସାକ୍ଷାତ୍ ପରଂବ୍ରହ୍ମ।

ଆତ୍ମୈବ ତଦିଦଂ ବିଶ୍ୱଂ ସୃଜ୍ୟତେ ସୃଜତି ପ୍ରଭୁଃ
ତ୍ରାୟତେ ତ୍ରାତି ବିଶ୍ୱାତ୍ମା ହ୍ରିୟତେ ହରତୀଶ୍ୱରଃ ॥

(ଭାଗବତ ୧୧–୨୮–୬)

(ସକଳ ବିଶ୍ୱର ଆତ୍ମା ଅଦ୍ୱିତୀୟ, ସେ ବ୍ରହ୍ମା ହୋଇ ନିଜକୁ ନିର୍ମାଣ କରେ, ବିଷ୍ଣୁ ହୋଇ ପାଳନ କରେ ଓ ରୁଦ୍ର ରୂପରେ ନିଜକୁ ସଂହାର ବି କରେ।)

ଏ ଆତ୍ମା ହର୍ତ୍ତାକର୍ତ୍ତା ତ୍ରାତା ଆତ୍ମା ଈଶ୍ୱର ପିତାମାତା
ସୃଷ୍ଟି ପାଳନ ସଂହାରଣ ଏ ସର୍ବ ଆତ୍ମାର ଭିଆଣ ॥

(ଭାଗବତ ୧୧–୨୯)

ପ୍ରତ୍ୟକ୍ଷ ପ୍ରମାଣ ଓ ଅନୁମାନ ଦ୍ୱାରା ନିଜର ହିତ ଅହିତ ବିଚାର କରିବା ଜ୍ଞାନ ଥିବା ହେତୁ ମନୁଷ୍ୟ ନିଜେ ନିଜର ଗୁରୁ ବୋଲି ଶ୍ରୀଏକାଦଶରେ ଭଗବାନ ଶ୍ରୀକୃଷ୍ଣ ଉଦ୍ଧବଙ୍କୁ କହିଛନ୍ତି (ସଂସ୍କୃତ ଭାଗବତ ୧୧–୭–୨୦)। ଅର୍ଥାତ୍, ଆତ୍ମା ବା ବିବେକ ହେଉଛି ପ୍ରତ୍ୟେକଙ୍କର ପ୍ରକୃତ ଗୁରୁ। ଏହା ହିଁ ଗୁରୁ ଗ୍ରହଣର ନିଷ୍କର୍ଷ।

ଭଗବତ ଜିଜ୍ଞାସା ଓ ଜୀବନାନୁଭବର ପୁଣ୍ୟ ଗଙ୍ଗୋତ୍ରୀ 'ଶ୍ରୀଏକାଦଶ' ହେଉଛି ନୀତିଶିକ୍ଷାର ଏକ ଅସରନ୍ତି ଗନ୍ତାଘର। ଜୀବନ ଦର୍ଶନ ସମ୍ୱଳିତ ଅଶେଷ ପରାମର୍ଶ ମଧ୍ୟରେ ସତ୍‌ସଙ୍ଗ ଉପରେ ଭାଗବତରେ ପ୍ରଧାନ ଗୁରୁତ୍ୱ ଦିଆଯାଇଛି।



ଆତ୍ମସମୀକ୍ଷା ଓ ଆତ୍ମନିୟନ୍ତ୍ରଣ ପାଇଁ ସତ୍‌ସଙ୍ଗ ଏକ ବଳିଷ୍ଠ ମାଧ୍ୟମ। ସତ୍‌ସଙ୍ଗ ସମ୍ବନ୍ଧେ ଉଦ୍ଧବ ଗୀତାରେ ଭଗବାନ କହିଛନ୍ତି–

ଏ ଜୀବ ସାଧୁ ସଙ୍ଗ ବିନୁ ଲଭି ନପାରେ ମୋର ତନୁ
ସର୍ବ କୁସଙ୍ଗ ଦୋଷ ହରେ ଯେ ନିତ୍ୟ ସାଧୁ ସଙ୍ଗ କରେ॥
(ଭାଗବତ ୧୧–୧୩)

ଅନ୍ଧବିଶ୍ୱାସ, କୁସଂସ୍କାର ଓ ପଶୁବଳି ପ୍ରଥାକୁ ଭାଗବତରେ ଘୋର ବିରୋଧ କରାଯାଇଛି।

'ନତୁ ଶ୍ରୌତେନ ପଶୁନା ମାଂ ଯଜେତ ବନାଶ୍ରମୀ।'

(ଭାଗବତ ୧୧–୧୮–୭)

(କେବେହେଲେ ପଶୁବଳି ଦ୍ୱାରା ମୋର ପୂଜନ କରିବେ ନାହିଁ ବୋଲି ଶ୍ରୀକୃଷ୍ଣ କହିଛନ୍ତି।

ପଶୁମାରଣ କର୍ମ ଯେତେ କେବେହେଁ ନ କଳ୍ପିବ ଚିତ୍ତେ।

(ଭାଗବତ ୧୧–୧୯)

ସୁସ୍ଥ ଶରୀର ଗଠନ ପାଇଁ ଶ୍ରୀଏକାଦଶ ହେଉଛି ଅମୋଘ ଔଷଧ। କୌଣସି ଅପରିଚିତ ବ୍ୟକ୍ତିଠାରୁ ଅତ୍ୟାବଶ୍ୟକ ନହେଲେ ଖାଦ୍ୟ ପାନୀୟ ଗ୍ରହଣ, କୌଣସି ବି ପରିସ୍ଥିତିରେ ପଚାସଢ଼ା ପଦାର୍ଥ ସେବନକୁ ଭାଗବତରେ ଘୋର ବିରୋଧ କରାଯାଇଛି। (ସଂସ୍କୃତ ଭାଗବତ ୧୧–୧୮)

ଆତ୍ମସଂଯମ, ଇନ୍ଦ୍ରିୟ ନିୟନ୍ତ୍ରଣ, ବାକ୍‌ସଂଯମ, ବ୍ୟାୟାମ, ଯୋଗାସନ, ପୂରକ, କୁମ୍ଭକ ଓ ରେଚକ ଦ୍ୱାରା ପ୍ରାଣବାୟୁର ପଥ ଶୋଧନ (ପ୍ରାଣାୟମ) ତଥା ପଦ୍ମାସନରେ ଅଣ୍ଟା ସିଧାକରି ବସି ଦୃଷ୍ଟିକୁ ନାସିକାର ଅଗ୍ର ଭାଗରେ ନିବଦ୍ଧ କରଣ ଆଦି ଦ୍ୱାରା ମାନସିକ ତଥା ଶାରୀରିକ ସୁସ୍ଥତା ହାସଲ ପାଇଁ ସାଧନାର ମାର୍ଗ ଏହି ଗ୍ରନ୍ଥର ଏକ ବଳିଷ୍ଠ ଅଂଶ। (ସଂସ୍କୃତ ଭାଗବତ ୧୧–୧୪–୩୨/୩୩)

ଅଭୀଷ୍ଟ ଲକ୍ଷ୍ୟସ୍ଥଳରେ ପହଞ୍ଚିବା ପାଇଁ କଠୋର ସାଧନା ଆବଶ୍ୟକ। ଏହି ସାଧନାର ଶୈଳୀକୁ ଯେ ଯେତେ ସୁଗମ କରିପାରିଛି ସେ ସେତେ ଅଧିକ ସଫଳତା ପାଇଛି। ଶ୍ରୀଏକାଦଶ ତତ୍ତ୍ୱ ହେଉଛି ଏହି ସୁଗମ ସାଧନା ଶୈଳୀର ସୂତ୍ରସମୂହ। ଏହି ସୂତ୍ରକୁ ଅଭ୍ୟାସ କଲେ ମଣିଷ ଅନାୟାସରେ ସଂସାର ସାଗର ଅତିକ୍ରମ କରିପାରିବ। ଭାଗବତ କେବଳ ପଠନ ପାଇଁ ନୁହେଁ, ଏଥିମଧ୍ୟସ୍ଥ ସୂତ୍ରର ଅଭ୍ୟାସ ପାଇଁ ହିଁ ସର୍ବାଦୌ ଉଦ୍ଦିଷ୍ଟ। ତେଣୁ କୁହାଯାଇଛି–

'ପରମ ଶାସ୍ତ୍ର ଭାଗବତ ଅଭ୍ୟାସ କରୁଥିବ ନିତ୍ୟ॥'

(ଭାଗବତ ୧୧–୪)

ଉପବିଭାଗ ଅଧିକାରୀ
ମତ୍ସ୍ୟ ଓ ପ୍ରାଣୀ ସମ୍ପଦ ବିକାଶ ବିଭାଗ
ରାଜ୍ୟ ସଚିବାଳୟ, ଭୁବନେଶ୍ୱର

# ଜଗନ୍ନାଥ

ଗୁରୁକଲ୍ୟାଣ ମହାପାତ୍ର



ତମ ଘଟଣାର ଗାଥା କେବଳ
ଇତିହାସ କିମ୍ବା କିମ୍ବଦନ୍ତୀ ନୁହେଁ
ତମରି ଦର୍ଶନ ମାତ୍ରେ
ସକଳ ଇତିହାସ ଆଉ କିମ୍ବଦନ୍ତୀ
ରୂପାନ୍ତରିତ ହୋଇଯାଏ ଅପୂର୍ବ ଦର୍ଶନରେ ।
ଭାବବିହ୍ୱଳିତ ହୋଇ
ତମକୁ ପ୍ରାର୍ଥନା କଲାବେଳେ
ଭକ୍ତଗଣ ଆନନ୍ଦ ସାଗରରେ
ଅବଗାହନ କରି
ତମର ପରମ ରସକୁ ଆସ୍ୱାଦନ କରନ୍ତି
ତମେ ପ୍ରକୃତରେ ଅନନ୍ୟ
ବିନୟ ପୁରଃସର ପ୍ରଣିପାତ
ତେଣୁ ତମକୁ ହେ ପୁରୁଷୋତ୍ତମ ।

ଘର ନଂ– ଭି.ଏ–୨୯/୩
ୟୁନିଟ୍–୨, ଭୁବନେଶ୍ୱର–୭୫୧୦୦୯



# ଓଡ଼ିଶା ଇତିହାସରେ ଶ୍ରୀଜଗନ୍ନାଥ

ଡକ୍ଟର ତ୍ରିନାଥ ପଟ୍ଟନାୟକ

ପୁରାଣ ଇତିହାସ ହୋଇପାରେ ମାତ୍ର ପୁରାଣରେ ସଠିକ ସମୟ ନିରୂପଣ କରିବା ଦୂରୂହ ବ୍ୟାପାର । କାହିଁକି ନା ପୁରାଣ ସହିତ ଲୋକକଥା ଓ କିମ୍ବଦନ୍ତୀର ମିଶ୍ରଣ ଘଟିଥାଏ । ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତି ନିର୍ମାଣ ମନ୍ଦିର ପ୍ରତିଷ୍ଠା କଥା କିମ୍ବଦନ୍ତୀ ଅନୁସାରେ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କଠାରୁ ଆସିଛି । ପୁରୀରେ ସବୁଜିମା ଭରା ଛୋଟ ପାହାଡଟିଏ ଥିଲା । ଯାହାର ଉଚ୍ଚତା ପ୍ରାୟତଃ ଦେଢଶହ ଫୁଟ । ରାଜା ଇନ୍ଦ୍ରଦ୍ୟୁମ୍ନ ପାହାଡର ଉପର ଅଂଶକୁ କାଟି ଏକ ବିଶାଳ ବେଦୀ ପ୍ରସ୍ତୁତ କଲେ । ସେହି ସ୍ଥାନରେ ଏକ ହଜାର ହାତର ମନ୍ଦିର ନିର୍ମାଣ କରି ଦାରୁ ନିର୍ମିତ ଚତୁର୍ଦ୍ଧାମୂର୍ତ୍ତି ସ୍ଥାପନ କଲେ । ଇତିହାସ ନବମ ଶତାବ୍ଦୀଠାରୁ କିଛି କିଛି କୁହେ । କାହିଁକି ନା ପ୍ରାୟତଃ ନବମ ଶତାବ୍ଦୀ ଆରମ୍ଭରୁ ସମଗ୍ର ଭାରତବର୍ଷରେ ଶ୍ରୀଜଗନ୍ନାଥ ବା ଶ୍ରୀକ୍ଷେତ୍ର ବିଶିଷ୍ଟ ତୀର୍ଥ ରୂପରେ ସୁନାମ ଅର୍ଜନ କରିଥିଲା । କାରଣ ଶିବ ଅବତାର ଶ୍ରୀଶଙ୍କରାଚାର୍ଯ୍ୟ ଜଗନ୍ନାଥଧାମକୁ ଆସି ଶ୍ରୀବିଦ୍ୟା ଅନୁସାରେ ଶ୍ରୀମନ୍ଦିରରେ ପୂଜା ପଦ୍ଧତି ପ୍ରଚଳନ କରାଇଥିଲେ । ହୁଏତ ସେହି ସମୟରୁ ଶ୍ରୀବିଦ୍ୟାର ପ୍ରଭାବରେ ଶ୍ରୀଜଗନ୍ନାଥ କ୍ଷେତ୍ର ଶ୍ରୀକ୍ଷେତ୍ର ରୂପେ ପରିଚିତ ହୋଇଅଛି । ସେହି ସମୟରେ ଶଙ୍କରାଚାର୍ଯ୍ୟ ପୁରୀଠାରେ ଯେଉଁ ମଠ ପ୍ରତିଷ୍ଠା କରିଥିଲେ ତା'ର ନାମ ଗୋବର୍ଦ୍ଧନ ମଠ, ଯାହାକି ଏ ପର୍ଯ୍ୟନ୍ତ ଅଛି । ଉକ୍ତ ମଠର ପରଂପରା ଅନୁସାରେ ଯେଉଁମାନେ ମଠାଧୀଶ ହୁଅନ୍ତି, ସେମାନଙ୍କୁ ଶଙ୍କରାଚାର୍ଯ୍ୟ ପଦବୀରେ ଭୂଷିତ କରାଯାଏ । ଶ୍ରୀମନ୍ଦିରରୁ ତାଙ୍କୁ ସ୍ୱତନ୍ତ୍ର ସମ୍ମାନ ମିଳେ ଓ ସେ ହିଁ ମୁକ୍ତି ମଣ୍ଡପ ପଣ୍ଡିତ ସଭାର ସଭାପତି ରୂପେ କାର୍ଯ୍ୟ କରନ୍ତି ।



କିମ୍ବଦନ୍ତୀ କୁହେ ଶ୍ରୀକୃଷ୍ଣଙ୍କର ଅପୋଡା ଦେହାବଶେଷକୁ ଏକ ଡବା ଭିତରେ ରଖି ରାଜା ଇନ୍ଦ୍ରଦ୍ୟୁମ୍ନ ରଖିଥିଲେ । ତାହା ଶ୍ରୀଜଗନ୍ନାଥଙ୍କ ଦାରୁବିଗ୍ରହରେ ବ୍ରହ୍ମରୂପେ ସ୍ଥାପନ କରାଯାଇଛି । ସେଥିପାଇଁ ଶ୍ରୀଜଗନ୍ନାଥ 'ଦାରୁବ୍ରହ୍ମ' । କିନ୍ତୁ ବହୁଦିନ ପର୍ଯ୍ୟନ୍ତ ବଳଭଦ୍ର ଓ ସୁଭଦ୍ରାଙ୍କ ଦାରୁ ବିଗ୍ରହରେ ସେଭଳି କିଛି ପଦାର୍ଥ ନଥିଲା । ଜଗତଗୁରୁ ଶଙ୍କରାଚାର୍ଯ୍ୟ ଆଜକୁ ଏଗାରଶହ ବର୍ଷ ତଳେ ନେପାଳରୁ ଦୁଇଗୋଟି ମହାମୂଲ୍ୟ ଶାଳଗ୍ରାମ ଅଣାଇ ବଳଭଦ୍ର ଓ ସୁଭଦ୍ରାଙ୍କ ଦାରୁବିଗ୍ରହରେ ସ୍ଥାପନ କରାଇଥିଲେ । ସେହି କାରଣରୁ ଶ୍ରୀଜଗନ୍ନାଥ ମନ୍ଦିରରେ ନେପାଳ ନରେଶଙ୍କର ବିଶେଷତ୍ୱ ଅଛି । ଓଡିଶାର ଗଜପତି ମହାରାଜାଙ୍କ ଭଳି ସେ ମଧ୍ୟ କେତେକ ସ୍ୱତନ୍ତ୍ର ସୁବିଧା ପାଇଆସୁଛନ୍ତି ।

ଶ୍ରୀମନ୍ଦିର ଓ ଶ୍ରୀଜଗନ୍ନାଥଙ୍କ ସମ୍ବନ୍ଧରେ ଧାରାବାହିକ ଇତିହାସ ଲେଖାଯାଇ ନାହିଁ । କେତେକ ଶିଳାଲିପି, ତାମ୍ରଲିପି ତଥା ଛାମୁ ଚିଟାଉକୁ ପାଥେୟ କରି ତଥା ମାଦଳାପାଞ୍ଜିର ସହାୟତାରେ ଇତିହାସ ସଂଗ୍ରହ କରାଯାଇଛି । ମାଦଳାପାଞ୍ଜି କେବଳ କେତେକ ଐତିହାସିକ କିମ୍ବଦନ୍ତୀର ସମାହାର ।



ଓଡ଼ିଶାର ରାଜା ଶୋଭନ ଦେବ (ଷଷ୍ଠ ଶତାବ୍ଦୀ)ଙ୍କ ସମୟରେ ରକ୍ତବାହୁ ନାମକ ଜଣେ ସେନାଧ୍ୟକ୍ଷ ପୁରୀ ଆକ୍ରମଣ କରିଥିଲେ । ବୈଦେଶିକ ଶତ୍ରୁର ଆକ୍ରମଣରୁ ଠାକୁରମାନଙ୍କୁ ରକ୍ଷା କରିବାକୁ ଯାଇ ଶୋଭନ ଦେବ ଠାକୁରମାନଙ୍କୁ ସୋନପୁର ନେଇ ମାଟିତଳେ ପାତାଳି କରି ଦେଇଥିଲେ । ତା'ରି ଉପରେ ଗୋଟିଏ ବରଗଛ ଚାରା ରୋପଣ କରିଦେଇଥିଲେ ଚିହ୍ନ ସ୍ୱରୂପ । ସେଠାରେ ବହୁ ବର୍ଷ ଧରି ଠାକୁରମାନେ ଅଜ୍ଞାତବାସରେ ରହିଲେ । ମାଦଳାପାଞ୍ଜିରେ ନିମ୍ନ ମତେ ବର୍ଣ୍ଣନା କରାଯାଇଅଛି–

ଏହି ମହାରାଜାଙ୍କ ଅ୨ଙ୍କେ ଦିଲ୍ଲୀରୁ ରକ୍ତବାହୁ ଆସିବା ବାରତାରୁ ପରମେଶ୍ୱରଙ୍କୁ ସୁନୁପୁର ଗୋପଲୀ ଘେନିଗଲେ । ଏଥି ଉତ୍ତାରେ ମୁଗଲେ ପ୍ରବଳ ହୋଇଲାକୁ ସେବକ ସେଠାରେ ପରମେଶ୍ୱରଙ୍କୁ ପାତାଳି କରି ଉପରେ ଗଛ ଲଗାଇ ରାଜ୍ୟ ଅନ୍ତର ହୋଇଗଲେ ।

ଶୋଭନଦେବଙ୍କ ପରେ ବିଦେଶୀମାନେ ଉତ୍କଳରେ ରାଜତ୍ୱ କଲେ । ଠାକୁରମାନେ ସୋନପୁରଠାରେ ପାତାଳି ହୋଇ ୧୪୪ ବର୍ଷ ରହିଲେ । ଯଯାତିକେଶରୀ ବିଦେଶୀମାନଙ୍କ କବଳରୁ ଉତ୍କଳକୁ ମୁକ୍ତ କଲେ । ସେ ଖ୍ରୀ.ଅ.୫୫୨ ରୁ ୫୯୮ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଯଯାତି ଅନୁସଂଧାନ କରି ଠାକୁରମାନଙ୍କୁ ସୋନପୁରଠାରୁ ଅଣାଇ ପୁନର୍ବାର ପ୍ରତିଷ୍ଠା କରାଇଥିଲେ । ଏହି କାର୍ଯ୍ୟ ଯୋଗୁଁ ତାଙ୍କୁ ଜନମାନସରେ ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ବୋଲି ପରିଚୟ ମିଳିଲା । ଯଯାତି ସୋମବଂଶୀ ବା କେଶରୀ ବଂଶର ରାଜା ଥିଲେ । ସେ ଶ୍ରୀଜଗନ୍ନାଥଙ୍କ ନିମନ୍ତେ ଶହେହାତରୁ କମ୍ ଉଚ୍ଚତାର ଗୋଟିଏ ମନ୍ଦିର ନିର୍ମାଣ କରାଇଥିଲେ । ଆଜି ଆମେ ଯେଉଁ ଶ୍ରୀମନ୍ଦିରର ନାଟ ମନ୍ଦିର (ଗରୁଡ ଖମ୍ଭ ଥିବା ସ୍ଥାନ) ଏବଂ ଭୋଗମଣ୍ଡପ ଦେଖୁଛେ, ସେତେବେଳେ ତାହା ନଥିଲା । ସେସବୁ ସ୍ଥାନ ଖାଲି ପଡିଥିଲା । ଯଯାତିକେଶରୀ ଶ୍ରୀଜଗନ୍ନାଥଙ୍କଠାରେ ଅନ୍ନ ମହାପ୍ରସାଦ ପୂଜାବିଧି ବିଧାନ କରିଥିଲେ । ସେହି ନୀତି ଏବେ ବି ଚାଲୁଛି ।

କେଶରୀ ବଂଶର ରାଜା ମତ୍ସ୍ୟକେଶରୀ ପୁରୀ ନିକଟରେ ଜଗନ୍ନାଥ ସଡକରେ ଅଠରନଳା ନାମରେ ଏକ ବିରାଟ ସେତୁ ନଦୀ ଉପରେ ବନ୍ଧାଇ ଥିଲେ । ଏବେ ସେ ସେତୁ ଅକ୍ଷୁଣ୍ଣ ଅଛି । ଏଠାରେ ପ୍ରଥମ ଖିଲଣ କାମ ହୋଇଥିଲା ।

ଦ୍ୱାଦଶ ଶତାବ୍ଦୀରେ ଚୋଡଗଙ୍ଗ ଦେବ ଓଡ଼ିଶା ଶାସନ କଲେ । ସେତେବେଳକୁ ଯଯାତି ନିର୍ମାଣ କରିଥିବା ଶ୍ରୀଜଗନ୍ନାଥ ମନ୍ଦିରକୁ ପ୍ରାୟ ଦେଢଶହବର୍ଷ ହୋଇଗଲାଣି । ମନ୍ଦିର ମଧ୍ୟ ଦୁର୍ବଳ ହୋଇଯାଇଥାଏ । ଚୋଡଗଙ୍ଗ ଦେବ ସେହି ସ୍ଥାନରେ ଆଉ ଏକ ବିରାଟ ମନ୍ଦିର ନିର୍ମାଣ କଲେ । ଅନୁମାନ ୧୧୨୦ ଖ୍ରୀ.ଅରେ ଚୋଡଗଙ୍ଗ ଦେବ ଉକ୍ତ ମନ୍ଦିର ନିର୍ମାଣ କରିଥିବେ । କେତେକ କୁହନ୍ତି ଆମେ ଯେଉଁ ଶ୍ରୀମନ୍ଦିର ଦେଖୁଛେ, ତାହା ଚୋଡଗଙ୍ଗଦେବଙ୍କ କୀର୍ତ୍ତି । କିନ୍ତୁ ଏତେବଡ ମନ୍ଦିର କଦାପି ଗୋଟିଏ ପୁରୁଷରେ ସଂପୂର୍ଣ୍ଣ ବୋଧହୁଏ ହୋଇ ପାରି ନଥିବ । ଅନେକ ଐତିହାସିକ କୁହନ୍ତି ଅସଂପୂର୍ଣ୍ଣ ଦେଉଳକୁ ମହାରାଜା ଅନଙ୍ଗଭୀମଦେବ ସଂପୂର୍ଣ୍ଣ କରିଥିଲେ । ଚୋଡଗଙ୍ଗଦେବ ଶ୍ରୀମନ୍ଦିର ରାଜଭୋଗ ବିବରଣୀ ଲେଖିବା ନିମନ୍ତେ ମାଦଳାପାଞ୍ଜିର ପ୍ରବର୍ତ୍ତନ କରିଥିଲେ । ଆଉ ମଧ୍ୟ ସେ ଜଗନ୍ନାଥ ମନ୍ଦିର ବେଢା ଭିତରେ ମହାଲକ୍ଷ୍ମୀଙ୍କ ମନ୍ଦିର ନିର୍ମାଣ କରିଥିଲେ । ଏହାଙ୍କ ସମୟରେ ବୈଷ୍ଣବ ଧର୍ମର ଶ୍ରୀ ସଂପ୍ରଦାୟର ପ୍ରଚାରକ ଶ୍ରୀରାମାନୁଜ ଶ୍ରୀକ୍ଷେତ୍ରକୁ ଆସି ନିଜ ମତ ପ୍ରଚାର କରିଥିଲେ ।

ଆଜିର ସ୍ୱୟଂ ସଂପୂର୍ଣ୍ଣ ବଡ ଦେଉଳର ନିର୍ମାଣ ଅନଙ୍ଗଭୀମଦେବ ୨ୟ ହିଁ କରିଛନ୍ତି । ତାଙ୍କ ସମୟର ବହୁ ନୀତିରୀତି ଶ୍ରୀମନ୍ଦିରରେ ଚଳି ଆସୁଛି । ସେ ଖ୍ରୀ.ଅ ୧୨୧୬ରେ ମନ୍ଦିର ନିର୍ମାଣ କରିଥିଲେ । ମାଦଳାପାଞ୍ଜିରେ ଅନଙ୍ଗଭୀମ ଦେବଙ୍କ ପ୍ରତିଜ୍ଞା କଥା ଉଲ୍ଲେଖ ଅଛି ।

ଏଥୁଁ ଆମ୍ଭେ ଥୋକାଏ ପରମେଶ୍ୱରଙ୍କ ଆଡତିରେ ଲଗାଇବାକୁ ଏଥିକୁ ଆମ୍ଭେମାନେ ଏମନ୍ତ କଳ୍ପନା କରିଅଛୁ ଯଯାତି ରାଜା ଯେଉଁ ପାଟଳି ତୋଳାଇ ପରମେଶ୍ୱରଙ୍କୁ ବିଜେ କରାଇଛନ୍ତି, ସେ ପାଟଳ ତିନିଗୋଟି ଅତି ବଇଷମ ହୋଇଥିଲା ଏହା ଭାଙ୍ଗି ଶହେହାତ ଉଚ୍ଚ ପ୍ରାସାଦ ଗୋଟାଏ ତୋଳାଇବା ଆତୟତ ଭିତରେ ଦେବତାମାନଙ୍କ ଦେଉଳ ଗୋଟାମାନ ଆନକରି ତୋଳାଇବା । ଏଥକୁ ଥୋକାଏ ସୁନା ଦବା ।



ମନ୍ଦିର ନିର୍ମାଣ ପରେ ରାଜା ଅନଙ୍ଗଭୀମ ଦେବ ହିଁ ଶ୍ରୀମନ୍ଦିରକୁ ପ୍ରତିଷ୍ଠା କରାଇଥିଲେ । ସେ ବିଷୟରେ ମାଦଳାପାଞ୍ଜି କୁହେ– ପନ୍ଦର ଅଙ୍କ (ଅନ୍ୟ ପାଞ୍ଜିରେ ୧୮ ଅଙ୍କ) ଫଗୁଣ ଶୁକ୍ଳ ଦଶମୀ ତତ୍‌କାଳ ଏକାଦଶୀ ଗୁରୁବାର ବେଳ ଚଉଦ ଦଣ୍ଡ ସରି ପରମେଶ୍ୱରଙ୍କୁ ସଂପୂର୍ଣ୍ଣେ ବୃଷଲଗ୍ନେ ଅଭିଜିତ ମୁହୂର୍ତ୍ତେ ତୋଳାଇ ଦେଉଳ ପ୍ରତିଷ୍ଠା ବିଜେ କରାଇ ଭୋଗମଢଫୁଲି ଭିଆଇଲେ । ରାଜା ଛତିଶା ନିଯୋଗ ଭିଆଇଲେ ।

ଅନଙ୍ଗଭୀମ ଦେବଙ୍କ ହିସାବରେ ବଡ ଦେଉଳର ଉଚ୍ଚତା ୧୨୦ ହାତ । ମନ୍ଦିର ନିର୍ମାଣ ଦାୟିତ୍ୱ ନୀଳକଣ୍ଠ ରାଜଗୁରୁ ମହାପାତ୍ର ପରମହଂସ ବାଜପେୟୀଙ୍କ ଉପରେ ନ୍ୟସ୍ତଥିଲା । ମନ୍ଦିର ନିର୍ମାଣ ନିମନ୍ତେ ୧୨ଲକ୍ଷ ୫୦ ହଜାର ମାଢ ସ୍ୱର୍ଣ୍ଣ ଓ ଅଢେଇ ଲକ୍ଷ ମାଢ଼ ମୂଲ୍ୟର ରତ୍ନାଦି ବ୍ୟୟ କରାଯାଇଥିଲା । ୧୫ ବର୍ଷରେ ଅର୍ଥାତ ୧୨୦୫ ଖ୍ରୀ.ଅ.ରେ ମନ୍ଦିର ନିର୍ମାଣ ଶେଷ ହୋଇଥିଲା (ଉତ୍କଳ ଇତିହାସ – କୃପାସିନ୍ଧୁ ମିଶ୍ର)

ବର୍ତ୍ତମାନ ଜଗନ୍ନାଥ ମନ୍ଦିର ବେଢା ମଧ୍ୟରେ ଯେତେ ପାର୍ଶ୍ୱଦେବତା ମନ୍ଦିରମାନ ଅଛି ସେ ସମସ୍ତଙ୍କୁ ଅନଙ୍ଗଭୀମ ଦେବ ମହାରାଜା ତୋଳାଇ ଥିଲେ । ବିମଳା ମନ୍ଦିର ମଧ୍ୟ ସେ ନିର୍ମାଣ କରାଇଥିଲେ । ମନ୍ଦିର ବେଢାରେ ଭୈରବ ମୂର୍ତ୍ତି ସ୍ଥାପନ କରାଇଥିଲେ । ଶ୍ରୀଜଗନ୍ନାଥଙ୍କ ପହୁଡ ସମୟରେ ଯୁବତୀ ନର୍ତ୍ତକୀମାନଙ୍କୁ ନୃତ୍ୟ ପରିବେଷଣ କରିବା ନିମନ୍ତେ ନିଯୁକ୍ତ କରାଇଥିଲେ ।

ମହାରାଜା ଭାନୁଦେବ (ଖ୍ରୀ.ଅ୧୨୫୬–୧୨୭୪)ଙ୍କ ସମୟରେ ତିନି ରଥ ବ୍ୟବସ୍ଥା ସେ କରାଇଥିଲେ । ଆଗରୁ ରଥଯାତ୍ରା ନିମନ୍ତେ ଛଅ ଗୋଟି ରଥ ନିର୍ମାଣ କରାଯାଉଥିଲା । କାରଣ ପୁରୀ ବଡଦାଣ୍ଡରେ ଗୁଣ୍ଡିଚା ଘର ନିକଟରେ ଗୋଟିଏ ନଦୀ ବହିଯାଇ ସମୁଦ୍ରର ବାଙ୍କି ମୁହାଣରେ ପଡିଥିଲା । ଭାନୁଦେବ ସେହି ନଦୀ ଉପରେ ସେତୁ ନିର୍ମାଣ କରାଇଥିଲେ ।

ଶ୍ରୀଜଗନ୍ନାଥଙ୍କ ପରମ ଭକ୍ତ କପିଳେନ୍ଦ୍ର ଦେବ (ଖ୍ରୀ.ଅ ୧୪୩୫–୧୪୬୫) ଉତ୍କଳର ଶାସନଭାର ଗ୍ରହଣ କଲେ । ସେ ଶ୍ରୀଜଗନ୍ନାଥଙ୍କୁ ଉତ୍କଳର ପ୍ରକୃତ ଶାସକ ସେ ପ୍ରଭୁଙ୍କ ପ୍ରତିନିଧି ରାଉତ ବୋଲି ଘୋଷଣା କଲେ । ଭାରତବର୍ଷର ବିଭିନ୍ନ ରାଜ୍ୟ ମାଳବ, ଗୌଡ, ଦିଲ୍ଲୀ, କର୍ଣ୍ଣାଟକ ଆଦି ଜୟ କଲେ । ସମଗ୍ର ଦାକ୍ଷିଣାତ୍ୟ ତାଙ୍କ କବଳରେ ଥିଲା । ଓଡିଶାର ସୀମାକୁ ଗଙ୍ଗାଠାରୁ ରାମେଶ୍ୱର ପର୍ଯ୍ୟନ୍ତ ବିସ୍ତୃତ କରାଇଥିଲେ । ନବକୋଟି କର୍ଣ୍ଣାଟକ କଳବର୍ଗେଶ୍ୱର ଉପାଧିରେ ଭୂଷିତ ହୋଇଥିଲେ । ଶହ ଶହ ହାତୀ ପିଠିରେ ଲଦି ଆଣିଥିବା ସ୍ୱର୍ଣ୍ଣ ଓ ରତ୍ନକୁ ଶ୍ରୀମନ୍ଦିର ରତ୍ନ ଭଣ୍ଡାରକୁ ଦାନ କରି ଦେଇଥିଲେ । ତାଙ୍କ ସମୟରେ ଶ୍ରୀଜଗନ୍ନାଥଙ୍କ ସୁନାବେଶ ପ୍ରଚଳନ ହେଲା । ଗୋପୀନାଥପୁର ଶିଳାଲିପିରୁ ଜଣାଯାଏ– ଶ୍ରୀମନ୍ଦିରରେ ଦେବଦାସୀ ନୃତ୍ୟ ପରିବେଷଣ ପ୍ରଥା କପିଳ ଦେବଙ୍କ ନିର୍ଦ୍ଦେଶରେ ପ୍ରଚଳିତ ହୋଇଥିଲା ଓ ଦେବଦାସୀ ଚୟନ ଓ ଥଇଥାନର ନିୟମ ସେ ପ୍ରଣୟନ କରିଥିଲେ ।

ଶ୍ରୀଜଗନ୍ନାଥଙ୍କ କୃପାରୁ ପୁରୁଷୋତ୍ତମ ଦେବ ଦାସୀପୁତ୍ରରୁ ଓଡିଶାର ଗଜପତି ମହାରାଜା ହୋଇ ପାରିଥିଲେ । ଜଗନ୍ନାଥଙ୍କର ପରମ ଭକ୍ତ ଥିଲେ ପୁରୁଷୋତ୍ତମ । ସେ ଖ୍ରୀ.ଅ. ୧୪୬୫ରୁ ୧୪୯୭ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ରାଜା ଶ୍ରୀମନ୍ଦିରରେ ଭୋଗମଣ୍ଡପ ଓ ଖ୍ରୀ.ଅ. ୧୪୭୦ରେ କୂର୍ମ ବେଢା ନିର୍ମାଣ କରାଇଥିଲେ । କାଞ୍ଚି ଅଭିଯାନ କରି ସେଠାକାର ରାଜା ଶାଲ୍ୱ ନରସିଂହଙ୍କୁ ପୁରୁଷୋତ୍ତମ ଦେବ ପରାଜିତ କରିଥିଲେ । ଏହି ଯୁଦ୍ଧରେ ସ୍ୱୟଂ ଶ୍ରୀଜଗନ୍ନାଥ ଓ ବଳଭଦ୍ର କଳା ଧଳା ଘୋଡାରେ ବସି ଯୁଦ୍ଧକ୍ଷେତ୍ରକୁ ଯାଇଥିଲେ ବୋଲି କିମ୍ବଦନ୍ତୀ ଅଛି । କାଞ୍ଚି ରାଜଜେମା ରୂପାମ୍ବିକାଙ୍କୁ ପୁରୁଷୋତ୍ତମଦେବ ବିବାହ କରିଥିଲେ । ମାଦଳା ପାଞ୍ଜିରେ ଉଲ୍ଲେଖ ଅଛି –

ପୁରୁଷୋତ୍ତମ ଦେଉଳେ ଏ ରାଜାଙ୍କ ୩୭ଅଙ୍କେ ଭୋଗ ମୋଣ୍ଡୋଅ ତୋଳାଇଲେ । ୩୯ଙ୍କେ ମଝିକୁରୁମ ବେଢା ଗଢାଇଲେ । ଅ୧୧ଙ୍କେ ରାଜା କାଞ୍ଚି କାବେରୀ ମାଇଲେ । କାଞ୍ଚୀ ଶାସନରୁ ସତ୍ୟବାଦୀ ଗୋପୀନାଥଙ୍କୁ ଆଣି ନଗର ଚୌଦ୍ୱାର ନବରରେ ବସାଇଲେ । ଏ ରାଜା ଭୋଗକଲେ ବ୩୦/୧ମାସ ।

କାଞ୍ଚନରେଶ, ଉତ୍କଳର ଗଜପତି ରାଜା ପ୍ରଭୁଙ୍କ ରଥଯାତ୍ରା ସମୟରେ ଛେରା ପହଁରା ରଥ ଉପରେ କରୁଥିବା ଯୋଗୁଁ, ରାଜା ଚାଣ୍ଡାଳର କାମ କରୁଛନ୍ତି ବୋଲି ଆକ୍ଷେପ କଲେ ।



ଓଡିଶାର ଜାତୀୟତାର ଟେକ ରଖିବା ନିମନ୍ତେ ପୁରୁଷୋତ୍ତମ ଦେବ କାଞ୍ଚି ଅଧିକାର ନିମନ୍ତେ ଯାତ୍ରା କରିଥିଲେ ଓ ସଫଳ ମଧ୍ୟ ହେଲେ । କାଞ୍ଚି ରାଜଜେମା ରୂପାମ୍ବିକାଙ୍କୁ ପୁରୁଷୋତ୍ତମ ଦେବ ବିବାହ କରିଥିଲେ ଓ ବିବାହ ପରେ ରୂପାମ୍ବିକାଙ୍କ ନାମ ପଦ୍ମାବତୀ ହୋଇଗଲା । ସେଥିନିମନ୍ତେ ପ୍ରତିବର୍ଷ ଶ୍ରୀପଞ୍ଚମୀ ଦିନ ଶ୍ରୀଜଗନ୍ନାଥ କାଞ୍ଚି କବେରୀ ବେଶ ହୁଅନ୍ତି । କାରଣ ସ୍ୱୟଂ ଜଗନ୍ନାଥ ଓ ବଳଭଦ୍ର ଘୋଡା ଚଢି ଯୁଦ୍ଧଯାତ୍ରା କରିଥିଲେ ।

ଏଥୁ ଅନନ୍ତରେ ଜଗମୋହନରେ ଦେଖିବ ବେନି ଭାଇଙ୍କି
ବିଜେ ଘୋଡାରେ ଚଢିଣ ସତ୍ୱରେ କାଞ୍ଚିକାବେରୀ ପାଇଁକି ।

(ବଳରାମ ଦାସ)

ପୁରୁଷୋତ୍ତମ ଦେବ କାଞ୍ଚିରାଜ୍ୟରୁ ଗଣେଶ ମୂର୍ତ୍ତି ଆଣି ବଡ ଦେଉଳ ବେଢାରେ ସ୍ଥାପନ କରିଥିଲେ । ଏହି ଗଣେଶ କାଞ୍ଚି ଗଣେଶ ନାମରେ ପୂଜା ପାଉଛନ୍ତି । ଇତିହାସ କୁହେ ଗଜପତି ପୁରୁଷୋତ୍ତମ ଦେବଙ୍କ ପୁତ୍ର ତଥା ଜଗନ୍ନାଥଙ୍କ ପରମଭକ୍ତ ପ୍ରତାପରୁଦ୍ରଦେବ ଖ୍ରୀ.ଅ.୧୪୯୭–୧୫୩୪ ପର୍ଯ୍ୟନ୍ତ ଓଡିଶା ଶାସନ କରୁଥିଲେ । ଶ୍ରୀମନ୍ଦିର ଜଗମୋହନର ଜୟ ବିଜୟ ଦ୍ୱାରଠାରେ ଥିବା ଶିଳାଲେଖ (ଖ୍ରୀ.ଅ.୧୪୯୯)ରୁ ଜଣାପଡେ ସେ ଶ୍ରୀମନ୍ଦିରରେ ଜୟଦେବକୃତ ଗୀତଗୋବିନ୍ଦ ବୋଲା ଯିବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ଏହାଙ୍କ ସମୟରେ ଶ୍ରୀଚୈତନ୍ୟ ଖ୍ରୀ.ଅ.୧୫୧୦ରେ ଶ୍ରୀକ୍ଷେତ୍ରକୁ ଆସିଥିଲେ । ଗଜପତି ଶ୍ରୀଚୈତନ୍ୟଙ୍କ ମତରେ ଦୀକ୍ଷିତ ହୋଇଥିଲେ । ଏହାଙ୍କ ସମୟରେ ଖ୍ରୀ.ଅ. ୧୫୦୯ରେ ଶ୍ରୀମନ୍ଦିର ପ୍ରତି ବିଦେଶୀ ଆକ୍ରମଣ କରିଥିଲେ । ଠାକୁରମାନଙ୍କୁ ଚିଲିକାରେ ଲୁଚାଇ ରଖା ଯାଇଥିଲା ।

**ମାଦଳାପାଞ୍ଜିରେ ଉଲ୍ଲେଖ ଅଛି**

ଏ ରାଜା ସତର ଅଙ୍କେ ଗଉଡ ନଗରରୁ ମୁଗଲ ବାହିଲେ । ପରମେଶ୍ୱରଙ୍କୁ ଚକା ଛଡାଇ ଚାପରେ ବସାଇ ଚଢେଇଗୁହା ପର୍ବତେ ବିଜେ କରାଇଲେ । ଶ୍ରୀପୁରୁଷୋତ୍ତମେ ଆସି ଗୌଡପାତିସା ଅମୁରା ସୁରଥାନ ପ୍ରବେଶ ହୋଇଲେ । ବଡ ଦେଉଳେ ଯେତେ ପିତୁଳାମାନ ଥିଲେ ସବୁକୁ ହିଁ ଖୁଣ କଲେ ।

ଗଜପତି ମୁକୁନ୍ଦଦେବ (ଖ୍ରୀ.ଅ.୧୫୬୮) ସମୟରେ କଳାପାହାଡ ଶ୍ରୀମନ୍ଦିର ଆକ୍ରମଣ କରି ଠାକୁରମାନଙ୍କୁ ନେଇ ଯାଇଥିଲା । ଇତିହାସ କୁହେ ମନ୍ଦିର ଭିତରେ ତିରିଶ ମହଣ ସୁନାର ଏକ ପ୍ରତିମା ଥିଲା, ଏ ପ୍ରତିମାର ଆଖି ଦୁଇଟି ହୀରାର ଥିଲା । ଏହି ପ୍ରତିମା ଚାରିପାଖରେ ସାତ ମହଣ ସୁନାରେ ତିଆରି ଅନ୍ୟାନ୍ୟ ପ୍ରତିମା ଥିଲେ । ଏ ସବୁକୁ କଳାପାହାଡର ସୈନ୍ୟମାନେ ନେଇ ଯାଇଥିଲେ । ବାଉନ କୋଟି ଭଣ୍ଡାର ଜୁର କରିଥିଲେ । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ନେବାବେଳେ ବିଶର ମହାନ୍ତି ଯାଇଥିଲା । ବ୍ରହ୍ମଖୋଳ କରି ମୃଦଙ୍ଗରେ ପୂରେଇ ଘେନି ଅଇଲା । କୁଜଙ୍ଗ ଗଡରେ ଆଣି ପ୍ରବେଶ କଲା । ଖଣ୍ଡାଏତ ଓଳିଆରେ ଦୁଇଠାକୁର ରହିଲେ । (ମାଦଳାପାଞ୍ଜି)

ଗଜପତି ରାମଚନ୍ଦ୍ର ଦେବ (ଖ୍ରୀ.ଅ.୧୫୭୫)ଙ୍କ ଅମଳରେ କୁଜଙ୍ଗରୁ ପ୍ରଭୁଙ୍କ ବ୍ରହ୍ମଙ୍କୁ ଆଣି ନୂତନ ମୂର୍ତ୍ତି ଗଠନ କରି ଶ୍ରୀମନ୍ଦିରରେ ଠାକୁରମାନଙ୍କୁ ପୁନଃ ପ୍ରତିଷ୍ଠା କଲେ । ସଂଖୁଡିଭୋଗର ପ୍ରବର୍ତ୍ତନ ମଧ୍ୟ କରାଯାଇଥିଲା ।

ଇତିହାସ କୁହେ ଶ୍ରୀମନ୍ଦିର ବାରମ୍ବାର ବିଦେଶୀମାନଙ୍କ ଦ୍ୱାରା ଲୁଣ୍ଠନ କରାଯାଇଛି । ଠାକୁରମାନଙ୍କୁ ଗୋପନରେ ବିଭିନ୍ନ ସ୍ଥାନରେ ରଖାଯାଇ ପୁଣି ଠାକୁରମାନଙ୍କୁ ଶ୍ରୀମନ୍ଦିରକୁ ଅଣାଯାଇ ପ୍ରତିଷ୍ଠା କରାଯାଇଛି ।

ଗଜପତି ମୁକୁନ୍ଦଦେବ (ଖ୍ରୀ.ଅ.୧୭୯୫–୧୮୧୭)ଙ୍କ ଅମଳରୁ ଶ୍ରୀମନ୍ଦିର ପରିଚାଳନା ଦାୟିତ୍ୱ ଇଂରେଜ ସରକାର ବହନ କଲେ । ୧୮୦୩ ମସିହା ଅକ୍ଟୋବର ମାସରେ ଇଂରେଜମାନେ ମରହଟ୍ଟାମାନଙ୍କ ହାତରୁ ଓଡିଶାକୁ ଛଡାଇ ନେଇ ନିଜେ ଶାସନ କଲେ । ସେହି ବର୍ଷ ଇଂରେଜମାନେ ପୁରୀ ଜଗନ୍ନାଥ ମନ୍ଦିରର ପରିଚାଳନା ଭାର ଗ୍ରହଣ କଲେ । ଶ୍ରୀମନ୍ଦିର ରକ୍ଷା ନିମନ୍ତେ ନଗଦ ଟଙ୍କା ଦେବାର ବନ୍ଦୋବସ୍ତ କରନ୍ତେ ଉତ୍କଳୀୟମାନେ ଅତ୍ୟନ୍ତ ଆନନ୍ଦିତ ହେଲେ । ଇଂରେଜ ସେନାପତି ହାଇକୋଟ୍ ଖୁବ୍ ଚତୁରତାର ସହିତ ପ୍ରଜାମାନଙ୍କୁ ଅଭୟବାଣୀ ଶୁଣାଇଥିଲେ ଯେ ଇଂରେଜ ରାଜତ୍ୱରେ ପ୍ରଜାମାନଙ୍କର କୌଣସି ଅସୁବିଧା ହେବ ନାହିଁ । ଏହା ୧୮୦୩ ସେପ୍ଟେମ୍ବର ମାସ ଶେଷ ଓ ଅକ୍ଟୋବର ମାସ ପ୍ରଥମ ସପ୍ତାହ



ଘଟଣା । (ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ – ସୂର୍ଯ୍ୟନାରାୟଣ ଦାସ)

ରାଜା ମୁକୁନ୍ଦଦେବ ଇଂରେଜମାନଙ୍କ ବିରୁଦ୍ଧରେ ଖ୍ରୀ.ଅ. ୧୮୦୮ରେ ବିଦ୍ରୋହ କଲେ । ଇଂରେଜମାନେ ରାଜାଙ୍କୁ ଅଟକ ରଖିଲେ । ଖୋର୍ଦ୍ଧା ରାଜବଂଶର ଉପାଧି ଲୋପ ପାଇଲା । ୧୮୦୯ ଆଇନ ବଳରେ ମୁକୁନ୍ଦଦେବଙ୍କୁ ପୁରୀ ରାଜା ଉପାଧି ଇଂରେଜମାନେ ଦେଲେ । ରାଜାଙ୍କୁ କେବଳ ନାମକୁ ମାତ୍ର ବଡ ଦେଉଳ ପରିଚାଳକ ରୂପେ ନିଯୁକ୍ତି କଲେ । ତାଙ୍କର ପଦବୀ ରହିଲା ମନ୍ଦିର ସୁପରିନ୍‌ଟେଣ୍ଡେଣ୍ଟ୍ । ଏହି ପଦବୀ ମୌରସୀ ସୂତ୍ରରେ ଦିଆ ଯାଇଥିଲା । ମନ୍ଦିର ଉପରେ ରାଜାଙ୍କର ମାଲିକତ୍ୱ ସ୍ୱୀକାର କରାଯାଇ ନଥିଲା ।

୧୮୩୨ ମସିହାରେ ଖ୍ରୀଷ୍ଟିୟାନ ସଂପ୍ରଦାୟ ଶ୍ରୀମନ୍ଦିର ପରିଚାଳନା ଦାୟିତ୍ୱ ଇଂରେଜ ସରକାର ପ୍ରତ୍ୟକ୍ଷ ଭାବେ ଗ୍ରହଣ କରୁଥିବାରୁ କ୍ଷୁବ୍ଧ ହେଲେ । କ୍ରମେ ବିଲାତରେ ଆନ୍ଦୋଳନ ହେଲା । ୧୮୩୨ ମସିହାରେ ଏହି ଆନ୍ଦୋଳନ ହୋଇଥିଲା । ଫଳରେ ୧୮୪୦ ମସିହାରେ ପୁରୀରୁ ଯାତ୍ରୀକର ଆଦାୟ ଇଂରେଜ ସରକାର ବନ୍ଦ କରିଦେଲେ । ସେହି ବର୍ଷ ନଂ ୧୦ ଆଇନରେ ମନ୍ଦିରର ପର୍ଯ୍ୟବେକ୍ଷଣ ଭାର ପୁରୀ ରାଜାଙ୍କ ହାତରେ ରହିଲା । ଖ୍ରୀ୧୮୯୧ରେ ପୂର୍ବ ଆଇନ ସବୁ ରଦ୍ଦ ହୋଇ ଖ୍ରୀ ୧୮୯୭ରେ ପୁରୀ ରାଜା ମୁକୁନ୍ଦଦେବ ସରକାରଙ୍କ ସହିତ ଏକ ଚୁକ୍ତି ବଳରେ ଶ୍ରୀମନ୍ଦିରର ସୁପରିନ୍‌ଟେଣ୍ଡେଣ୍ଟ୍ ନିଯୁକ୍ତି ହେଲେ । ଗଜପତି ମୁକୁନ୍ଦଦେବଙ୍କ ରାଜତ୍ୱ ସମୟ ଖ୍ରୀ୧୭୯୮–୧୮୧୭ । ତା'ପରେ ତାଙ୍କ ପୁତ୍ର ଗଜପତି ରାମଚନ୍ଦ୍ରଦେବ ତୃତୀୟ (୧୮୧୭–୧୮୫୪) ତାଙ୍କ ପୁତ୍ର ଗଜପତି ବୀର କିଶୋର ଦେବ ୨ୟ (ଖ୍ରୀ୧୮୫୪–୧୮୫୯) ଏହାଙ୍କ ଦେହାନ୍ତ ପରେ ଗଜପତି ଦିବ୍ୟସିଂହ ଦେବ ୩ୟ (ଖ୍ରୀ୧୮୫୯–୧୮୮୮), ଗଜପତି ମୁକୁନ୍ଦଦେବ ୩ୟ (ଖ୍ରୀ୧୮୮୮ – ତା୧୪.୨.୧୯୨୬) ଶ୍ରୀମନ୍ଦିରର ସୁପରିନ୍‌ଟେଣ୍ଡେଣ୍ଟ୍ ହୋଇଥିଲେ । ଏହାଙ୍କ ମୃତ୍ୟୁ ପରେ ଗଜପତି ରାମଚନ୍ଦ୍ରଦେବ ୪ର୍ଥ ତା୧୪.୨.୧୯୨୬ଠାରୁ ତା ୧୫.୧୧.୧୯୫୬ ପର୍ଯ୍ୟନ୍ତ ଶ୍ରୀମନ୍ଦିର ପରିଚାଳନା ଦାୟିତ୍ୱ ଗ୍ରହଣ କରି ସୁପରିଚାଳନା କରିଥିଲେ । ଏହାଙ୍କ ମୃତ୍ୟୁପରେ ତାଙ୍କର ଏକମାତ୍ର ପୁତ୍ର ଗଜପତି ବୀରକେଶରୀ ଦେବ ୩ୟ ତା୧୫.୧୧.୧୯୫୬ରୁ ୧୯୭୦ ଯାଏଁ ଶ୍ରୀଜଗନ୍ନାଥ ମନ୍ଦିର ପରିଚାଳନା ଆଇନ ଅନୁସାରେ ପରିଚାଳନା କମିଟର ସଭାପତି ହେଲେ । ଠାକୁର ରାଜା ହିସାବରେ ରଥଯାତ୍ରା ପରିଚାଳନା କଲେ । ୧୯୭୦ ମସିହାରେ ତାଙ୍କର ଦେହାନ୍ତ ହୋଇଯିବା ଯୋଗୁଁ ତାଙ୍କ ପୁତ୍ର ଗଜପତି ଦିବ୍ୟସିଂହ ଦେବ ୧୯୭୦ ମସିହାରୁ ଏ ପର୍ଯ୍ୟନ୍ତ ଶ୍ରୀମନ୍ଦିର ପରିଚାଳନା କମିଟିର ସଭାପତି ରହି ସୁଚାରୁ ରୂପେ ଶ୍ରୀମନ୍ଦିର ନୀତି ଓ ପୂଜା ବିଧିକୁ ପରିଚାଳନା କରିଆସୁଛନ୍ତି ।

ବର୍ତ୍ତମାନର ଗଜପତି ଶ୍ରୀ ଦିବ୍ୟସିଂହଦେବ ଜଣେ ଉଚ୍ଚ ଶିକ୍ଷିତ, ନମ୍ର ଓ ଶାନ୍ତଶିଷ୍ଟ ବ୍ୟକ୍ତିତ୍ୱ । ଶ୍ରୀଜଗନ୍ନାଥ ସଂସ୍କୃତିର ଜଣେ ସୁବକ୍ତା । ଶ୍ରୀଜୀଉମାନଙ୍କର ୩ଗୋଟି ନବକଳେବର ତାଙ୍କରି ପରିଚାଳନାରେ ସଂପନ୍ନ ହୋଇଗଲାଣି । ଉତ୍କଳର ଗଜପତିମାନେ ହେଉଛନ୍ତି ଆଦି ସେବକ । ୧୯୭୩ ମସିହା କଥା । ଅଧୁନା ଗଜପତି ଦିବ୍ୟସିଂହଙ୍କ ଅମଳ । ରଥଯାତ୍ରା ସମୟ । ଶତଚେଷ୍ଟା କଲେ ସୁଦ୍ଧା ଶ୍ରୀଜଗନ୍ନାଥଙ୍କୁ ରଥ ଉପରକୁ ଉଠାଇ ହେଉ ନାହିଁ । ହଟିଆ ଦିଅଁ ସେମିତି ସିଂହଦ୍ୱାର ନିକଟରେ ଅଟକି ଯାଇଛନ୍ତି । ଏ ଆଶ୍ଚର୍ଯ୍ୟ ଘଟଣା ଲୋକମାନଙ୍କୁ ଚିନ୍ତିତ କରିଦେଲା । ସେତେବେଳେ ଟିଭିର ପ୍ରଚଳନ ନଥିଲା । ରେଡିଓ ମାଧ୍ୟମରେ ଏ ବାର୍ତ୍ତା ସମସ୍ତଙ୍କୁ ଶୁଣାଇ ଦିଆଗଲା ସେତେବେଳେ ଏବର ଗଜପତି ଦିବ୍ୟସିଂହଦେବଙ୍କର କିଶୋରାବସ୍ଥା । ସେ ଜଣେ ଜଗନ୍ନାଥ ପ୍ରାଣ ବ୍ୟକ୍ତି ଓ ଆଦି ସେବକ ସହିତ ପରମ ଭକ୍ତ । ସମସ୍ତ ନୀତି ନିୟମକୁ ପଛରେ ପକାଇ ଶ୍ରୀମନ୍ଦିର ଦ୍ୱାରକୁ ଶ୍ରୀନଅରରୁ ଦୌଡି ଆସିଲେ । ଶ୍ରୀଜଗନ୍ନାଥଙ୍କୁ ଯୋଡ ହସ୍ତରେ କ୍ଷମା ମାଗିଲେ । ସମସ୍ତ ଦୋଷ ମାର୍ଜନା ନିମନ୍ତେ ନିଉଛାଳି ହେଲେ । ଶ୍ରୀବିଗ୍ରହରେ କର ମାରି ଯେମିତି କହିଛନ୍ତି ଉଠ ହେ ମହାବାହୁ, ମୁହୂର୍ତ୍ତକ ମଧ୍ୟରେ ଶ୍ରୀଜଗନ୍ନାଥ ରଥ ଉପରକୁ ଉଠି ଯାଇଥିଲେ । ଲକ୍ଷ ଲକ୍ଷ ଲୋକଙ୍କ ଉପସ୍ଥିତିରେ ଏ ଘଟଣା ଘଟିଥିଲା ।

ସଂପାଦକ, ପୁରାଣ ପତ୍ରିକା
ନିଆଳୀ – ୭୫୪୦୦୪, ଜି –କଟକ





# ଶ୍ରୀମନ୍ଦିରରେ ଶିଳାବ୍ରହ୍ମ

ଡକ୍ଟର ରଜତ କୁମାର କର

ଶ୍ରୀମନ୍ଦିର କଳ୍ପବଟ ଆଡ଼କୁ ପ୍ରବେଶ କଲାବେଳେ କଳ୍ପବଟ ତଳେଥିବା ଦୁଇ କୋଠରି ରହିଛି । ଗୋଟିଏ କୋଠରି ସେବାୟତଙ୍କ ବ୍ୟବହାରରେ ଲାଗୁଥିବା ବେଳେ ଅନ୍ୟ ଗୋଟିଏ କୋଠରି ତାଲାପଡ଼ି ରହିଥାଏ ଓ ତା'ର ଚାବି ଜଣେ ସେବାୟତଙ୍କ ପାଖରେ ରହେ । ସେ ଘରେ ମାଟି କୁଡୁଆ ସବୁ ଭର୍ତ୍ତି ହୋଇଛି । କୋଠରିଟି ବେଳେବେଳେ ଖୋଲା ରହିଥାଏ । ସେତିକିବେଳେ ଦର୍ଶନ ହୁଏ ଗୋଟିଏ ପ୍ରସ୍ତରରେ ଖୋଦିତ ଚତୁର୍ଭୁଜ ତ୍ରିମୂର୍ତ୍ତି । ଗୋଟିଏ ପଥରରେ ଖୋଦିତ ହୋଇଥିବା ଏହି ତ୍ରିମୂର୍ତ୍ତିଙ୍କ ସମ୍ବନ୍ଧରେ ଏହି ଲେଖକ ବହୁକାଳ ଧରି ଚିନ୍ତା କରିଛି ଓ ଏ ବିଷୟରେ କିଛି ଚିନ୍ତା ପ୍ରକଟ କରିବାକୁ ଇଚ୍ଛା କରିଥିଲେ ହେଁ ଆଜି ଯାଏଁ ତାହା ହୋଇ ନଥିଲା । ଏବେ ଦିନେ ଶ୍ରୀଜଗନ୍ନାଥଙ୍କ ଭୋଗ ହେଉଥିବା ବେଳେ ଏହି କୋଠରିର ବାରଣ୍ଡାରେ ବସି କଳ୍ପବଟଙ୍କର ବିସ୍ତାରିତ ଶୋଭା ଦର୍ଶନ କରିବାର ସୁଯୋଗ ମିଳିଥିଲା । ପୃଥିବୀର ନାଭିକେନ୍ଦ୍ର ସ୍ୱରୂପ ନୀଳାଚଳରେ ରହିଛନ୍ତି ଏହି କଳ୍ପବଟ । କୋଣାର୍କ ସମ୍ବନ୍ଧରେ କହିବାକୁ ଯାଇ ସାରଳା ଦାସ କହିଛନ୍ତି ଏ ସ୍ଥଳ ପୃଥିବୀର ନାଭି ସ୍ୱରୂପ । କୋଣାର୍କ ନିକଟସ୍ଥ ପୁରୀର ଦକ୍ଷିଣ ମହୋଦଧି ବା ପୁରୁଷୋତ୍ତମ କ୍ଷେତ୍ର ନିଶ୍ଚିତ ଭାବେ ଏହି ନାଭିମଣ୍ଡଳ ଭିତରେ ଅବସ୍ଥିତ । କେତେକ ପୁରାଣରେ ତାମିଲନାଡୁର ଚେନ୍ନାଇଠାରୁ ୫୦ କି.ମି. ଦୂରରେ ଥିବା କାଞ୍ଚିକୁ ପୃଥିବୀର ନାଭିସ୍ଥଳ ବୋଲି କୁହାଯାଇଛି । ଏହିଥିରୁ ଜଣାପଡ଼େ ଯେ ଭାରତର ପୂର୍ବଦିଗଠାରୁ ଆରମ୍ଭ କରି ଦକ୍ଷିଣ ପର୍ଯ୍ୟନ୍ତ ବ୍ୟାପିଥିବା ସମୁଦ୍ରର ମଧ୍ୟସ୍ଥଳରେ ରହିଛି ପୃଥିବୀର ନାଭିକେନ୍ଦ୍ର । ରାମେଶ୍ୱରଠାରୁ ଅଳ୍ପ କିଛି ଦୂରରେ ଥିବା ସମୁଦ୍ର ଉପର ଦେଇ ପୃଥିବୀର ବିଷୁବ ରେଖା କଳ୍ପନା କରାଯାଇଛି । ଏହି ଭୌଗୋଳିକ ସ୍ଥିତିକୁ ଅନୁଧ୍ୟାନ କଲେ ଜଣାପଡ଼ିବ ଯେ, ପୃଥିବୀର ନାଭିସ୍ଥଳରେ ହିଁ ଉତ୍କଳର ନୀଳାଚଳ ଅବସ୍ଥିତ । ସମୁଦ୍ରରୁ ଉତ୍ଥିତ ବାଲୁକାରାଶି ଅନ୍ୟାନ୍ୟ ଉଦ୍ଭିଦଜ ପଦାର୍ଥ ତଥା ମୃତ ଜୀବଜନ୍ତୁମାନଙ୍କର ଅବଶେଷ ବହନ କରି ପର୍ବତାକାର ହୋଇଛି ଓ ଅନନ୍ତ କାଳରୁ ଏହା ବୃକ୍ଷ, ଲତା, ଗୁଳ୍ମ ଆଚ୍ଛାଦିତ ହୋଇ ନୀଳ ପର୍ବତ ରୂପ ଧାରଣ କରିଛି । ଏହି ନୀଳ ପର୍ବତର କୌଣସି ଏକ ଗୁହାରେ ଅନନ୍ତ କାଳରୁ ପ୍ରଭୁ ପୂଜା ପାଉଛନ୍ତି ବୋଲି ପୁରାଣମାନଙ୍କରେ ବର୍ଣ୍ଣିତ ହୋଇଛି ।

ଯେତେବେଳେ ମୂର୍ତ୍ତିପୂଜା ନଥିଲା ପ୍ରଭୁ କେବଳ ଶୂନ୍ୟ-ସ୍ୱରୂପ ଓ ଅବ୍ୟକ୍ତ ଥିଲେ, ସେତେବେଳେ ସେ ଏହି ସ୍ଥାନରେ ଯୋଗୀଋଷିମାନଙ୍କର ଧ୍ୟାନ ମଧ୍ୟରେ ପ୍ରକାଶିତ ହେଉଥିଲେ । ଏହାକୁ ସ୍ତୋତ୍ରମାନଙ୍କରେ କୁହାଯାଇଛି ଯେ ପ୍ରଭୁ ଯୋଗୀନାଂ ଧ୍ୟାନଗମ୍ୟ । କଣ୍ଡୁ ନାମକ ଜଣେ ସତ୍ୟ ଯୁଗର ଋଷି ଏହି ସ୍ଥାନରେ ତପସ୍ୟା କରି ଶ୍ରୀପ୍ରଭୁଙ୍କୁ ନିଜ ମଧ୍ୟରେ ଅନୁଭବ କରିଥିଲେ । ପ୍ରମୋଚା ନାମରେ ଇନ୍ଦ୍ରଙ୍କ ପ୍ରେରିତ ଏକ ଅପ୍‌ସରା ତାଙ୍କୁ ପ୍ରଲୋଭିତ କଲା ଓ ସେ ତା' ପ୍ରଭାବରେ ତପସ୍ୟା ପରିତ୍ୟାଗ କରି ବହୁକାଳ ସେହି ଅପ୍‌ସରୀ ସାଙ୍ଗରେ ରହିଲେ । କିଛିକାଳ ପରେ ତାଙ୍କର ମୋହ ଭଙ୍ଗ ହେଲା । ସେ ବ୍ରହ୍ମପାର ମନ୍ତ୍ର ଜପକରି ସିଦ୍ଧିଲାଭ କରିଥିଲେ । ପୁରାଣମାନଙ୍କରେ କୁହାଯାଇଛି ଯେ କଣ୍ଡୁମୁନୀ ପୁରୁଷୋତ୍ତମ ନାମକ ଦେବାୟତନ ଆସି ଏଠାରେ ମନ୍ତ୍ର ସାଧନ କରି ସିଦ୍ଧ ହୋଇଥିଲେ । ପ୍ରଭୁ ଏଠାରେ ମନ୍ତ୍ର ସ୍ୱରୂପରେ ଥିଲେ । ସିଦ୍ଧ ଋଷିମାନେ ଅବ୍ୟକ୍ତ ଓ ପରମ ଶୂନ୍ୟ ପୁରୁଷଙ୍କୁ ମନ୍ତ୍ର ରୂପରେ ନିଜର ଜ୍ଞାନ ଚକ୍ଷୁରେ ଦେଖିପାରନ୍ତି । ଚିରନ୍ତନ କାଳରୁ ଥିବା ମନ୍ତ୍ର ସବୁ ଅଦୃଶ୍ୟ



ଭାବରେ ଅବସ୍ଥାନ କରୁଥିଲେ । ଋଷିମାନେ ତାହାକୁ ଅନ୍ତର୍ଦୃଷ୍ଟିରେ ଦେଖିଲେ । ତେଣୁ କୁହାଯାଇଛି ଋଷୟଃ ମନ୍ତ୍ରଦ୍ରଷ୍ଟାୟଃ – ଅର୍ଥାତ୍ ଋଷିମାନେ ମନ୍ତ୍ରକୁ ଦେଖନ୍ତି । ଚିରନ୍ତନ ମନ୍ତ୍ରସମୂହ ଋଷିମାନଙ୍କୁ ବିଦିତ ହେବାରୁ ଏମାନଙ୍କ ସାମଗ୍ରିକ ନାମ ବେଦ ହୋଇଛି । ଏହି ମନ୍ତ୍ର ରୂପରେ ନୀଳାଚଳରେ ଥିଲେ । ପରେ ବିଭିନ୍ନ ପ୍ରତୀକ ଭାବରେ ସେ ଭକ୍ତମାନଙ୍କୁ ଦର୍ଶନ ଦେଲେ । ହୁଏତ ପ୍ରଭୁ ଇନ୍ଦ୍ର ନୀଳମଣିରୂପୀ ଅପ୍ରାକୃତ ବସ୍ତୁଭାବେ ଭକ୍ତଙ୍କୁ ପ୍ରଥମେ ଦେଖାଦେଲେ ଓ ତାଙ୍କର ଦର୍ଶନରେ ଏ ସ୍ଥାନର ଅଧିବାସୀମାନେ ଅମର ହୋଇଗଲେ । ଏହାଦ୍ୱାରା ଯମଙ୍କର କାର୍ଯ୍ୟରେ ବାଧା ଆସିଲା । ଯମଙ୍କ ପ୍ରାର୍ଥନାରେ ସେହି ଇନ୍ଦ୍ର ନୀଳମଣି ଅପ୍ରାକୃତିକ ମୂର୍ତ୍ତି ବାଲୁକାଝଡ଼ରେ ଅଦୃଶ୍ୟ ହୋଇଗଲେ । ବ୍ରହ୍ମ ପୁରାଣ ଅନୁସାରେ ବାଲୁକାଝଡ଼ରେ ପୋତି ହୋଇଥିବା ଇନ୍ଦ୍ରନୀଳମଣି ସ୍ଥାନଟି ଶ୍ରୀମନ୍ଦିରର ନୃସିଂହ ମନ୍ଦିର ନିକଟରେ ଅବସ୍ଥିତ । ନୃସିଂହ ମନ୍ଦିର ନିକଟରେ ଇନ୍ଦ୍ରନୀଳମଣିଙ୍କୁ ଧ୍ୟାନ କରିବା ପାଇଁ ବ୍ରହ୍ମପୁରାଣରେ ନିର୍ଦ୍ଦେଶ ରହିଛି । ଏହି ଲେଖକ ମନେ କରୁଛି ଯେ ଈଶ୍ୱରଙ୍କର ଅବତାର ସ୍ୱରୂପ ଶଙ୍କରାଚାର୍ଯ୍ୟ ଧ୍ୟାନ ବଳରେ ଏହି ଇନ୍ଦ୍ରନୀଳମଣିଙ୍କର ଅବସ୍ଥିତି ଜାଣି ତାଙ୍କୁ ଉଦ୍ଧାର କରିଥିଲେ ଓ ତାଙ୍କୁ ବର୍ତ୍ତମାନର ମାଧବ ମୂର୍ତ୍ତି ଭଳି ଏକକ ଦାରୁମୂର୍ତ୍ତି ଗର୍ଭରେ ରଖାଇଥିଲେ । ସେ ଦାରୁମୂର୍ତ୍ତି ବୌଦ୍ଧସ୍ତୂପର ମୂର୍ତ୍ତି ଭଳି ଗଠିତ ହେଲେ ।

ସ୍ତୂପମାନଙ୍କର ବୁଦ୍ଧଦେବ ମହାଶୂନ୍ୟ ଜଗନ୍ନାଥ ରୂପରେ ଦୁଇ ଗୋଲାକାର ପ୍ରସ୍ତରର ସଂଯୁକ୍ତ ମୂର୍ତ୍ତି ଭାବେ ଚିହ୍ନିତ ହୋଇଛନ୍ତି । ସେହି ମହାଶୂନ୍ୟ ସ୍ୱରୂପ ଆଦି ବୁଦ୍ଧଙ୍କୁ ସେମାନେ ଜଗନ୍ନାଥ ବୋଲି ଆଖ୍ୟା ଦେଇଥିଲେ । ଶଙ୍କରାଚାର୍ଯ୍ୟ ସେହି ରୂପକୁ ସନାତନ ଧର୍ମର ମହାବିଷ୍ଣୁ ଜଗନ୍ନାଥ ଆଖ୍ୟା ଦେଇ ନୀଳାଚଳରେ ପୂଜା କରାଇଥିଲେ ଓ ପରବର୍ତ୍ତୀ କାଳରେ ସେ ମୂର୍ତ୍ତି କୃଷ୍ଣ ଜଗନ୍ନାଥ ରୂପରେ କ୍ରମେ ତ୍ରିମୂର୍ତ୍ତି ଭାବେ ପୂଜିତ ହେଲେ । ଏକ କୃଷ୍ଣମୂର୍ତ୍ତି ପରବର୍ତ୍ତୀ କାଳରେ ଭାଗବତ ଧର୍ମ ଅନୁଯାୟୀ ରୂପାୟିତ ହୋଇ ପ୍ରଥମେ ହେଲେ ବାସୁଦେବ ଓ ଶଙ୍କର୍ଷଣ ଦୁଇ ମୂର୍ତ୍ତି । ପରବର୍ତ୍ତୀ କାଳରେ ଏହି ଦୁଇ ମୂର୍ତ୍ତି ସଙ୍ଗରେ ଦୁର୍ଗା ଏକାନଂଶା ପୂଜା ପାଇଲେ । ଏକକ ଦାରୁମୂର୍ତ୍ତି ମାଧବ ଭାବେ ଚିହ୍ନିତ ହେଲେ ଓ ପ୍ରସ୍ତରରେ ତ୍ରିମୂର୍ତ୍ତି ଗଠିତ ହେଲେ । ପରମ ପୁରୁଷ ବିଷ୍ଣୁ ଓ ତାଙ୍କ ଶଯ୍ୟା ସ୍ୱରୂପ ଅନନ୍ତ କୃଷ୍ଣ ବଳରାମ ବା ବାସୁଦେବ ସଙ୍କର୍ଷଣ ରୂପରେ ଉତ୍ତର ଭାରତ ଓ ମଧ୍ୟ ଭାରତରେ ପୂଜିତ ହେଲେ । ପରବର୍ତ୍ତୀ କାଳରେ ତାଙ୍କ ମଧ୍ୟରେ ପ୍ରବେଶ କଲେ ଶକ୍ତି ସ୍ୱରୂପିଣୀ ଦୁର୍ଗା । ଅନନ୍ତରୂପୀ ବଳରାମଙ୍କୁ ଦେବକୀଙ୍କ ଗର୍ଭରୁ ନେଇଯାଇ ରୋହିଣୀଙ୍କ ଗର୍ଭରେ ସ୍ଥାପନ କରିବା ପାଇଁ ଯୋଗମାୟା ଦୁର୍ଗାଙ୍କୁ ଆଦେଶ ଦେଇଥିଲେ ଭଗବାନ ବିଷ୍ଣୁ । ତାହାପରେ ତାଙ୍କୁ ନିର୍ଦ୍ଦେଶ ହେଲା ଯଶୋଦା ଗର୍ଭରୁ ଜନ୍ମ ହେବା ପାଇଁ । ବାସୁଦେବ ସଙ୍କର୍ଷଣଙ୍କ ମଧ୍ୟରେ ଭଗିନୀ ଦୁର୍ଗା ରୂପରେ ସେ ପୂଜା ପାଇଲେ । ତାଙ୍କର ଅନ୍ୟନାମ ଏକାନଂଶା । ଏହାର ଅର୍ଥ ହେଲା ସେ ସଂପୂର୍ଣ୍ଣା ବା ଏକା । ସେ କାହାର ଅଂଶ ନୁହଁନ୍ତି (ନ ଅଂଶା) ଓଡ଼ିଶାରେ ତ୍ରିମୂର୍ତ୍ତି ଉପାସନା ବେଳେ ତାଙ୍କୁ ଏକାନଂଶା କୁହା ନଯାଇ, କୁହାଗଲା ସୁଭଦ୍ରା ।

ହରିବଂଶ ଅନୁସାରେ ସୁଭଦ୍ରା ରୋହିଣୀଙ୍କ କନ୍ୟା ଓ ସେହି ହିସାବରେ ବଳଭଦ୍ରଙ୍କର ଭଗିନୀ । ଏହି ହେତୁ ସେ କୃଷ୍ଣଙ୍କର ମଧ୍ୟ ଭଗିନୀ । ସାରଳା ଦାସ କିନ୍ତୁ ସୁଭଦ୍ରାଙ୍କୁ ଯଶୋଦାଙ୍କ କନ୍ୟା ବୋଲି କହିଛନ୍ତି । କୃଷ୍ଣ ବିଦାୟ ନେବାର ବହୁକାଳ ପରେ ଯଶୋଦାଙ୍କ ଏକ କନ୍ୟା ହୋଇଛି ତାହାଙ୍କ ନାମ ସୁଭଦ୍ରା । ଓଡ଼ିଶାରେ ଜଗନ୍ନାଥ, ବଳଭଦ୍ରଙ୍କ ସହ ବିରାଜିତା ମାତୃମୂର୍ତ୍ତି ସୁଭଦ୍ରା ନାମ ପାଇ ପ୍ରସ୍ତରରେ ଓ ଦାରୁ ରୂପରେ ବିଭିନ୍ନ ସ୍ଥାନରେ ପୂଜିତା ହେଉଛନ୍ତି । ବିନ୍ଦୁସାଗର କୂଳରେ ଥିବା ଅନନ୍ତ ବାସୁଦେବ ମନ୍ଦିର ଓ କୋଣାର୍କ, ଭୁବନେଶ୍ୱର ମଧ୍ୟବର୍ତ୍ତୀ ଭିଙ୍ଗାରପୁର ନିକଟସ୍ଥ ତୁରିନ୍ତରା ଓ ଶିଶିଲୋ ଗ୍ରାମରେ ପ୍ରସ୍ତର ତ୍ରିମୂର୍ତ୍ତି ପୂଜା ପାଉଛନ୍ତି । ଲିଙ୍ଗରାଜ ମନ୍ଦିର ଭିତରେ ଅନନ୍ତେଶ୍ୱର ନାମରେ ଅନନ୍ତ ବାସୁଦେବ ଓ ସୁଭଦ୍ରା ତ୍ରିମୂର୍ତ୍ତି ପୂଜା ପାଉଛନ୍ତି । ଭାରତରେ ପ୍ରସ୍ତର ତ୍ରିମୂର୍ତ୍ତି ପୂଜା ପରମ୍ପରାରେ ଏହି ତ୍ରିମୂର୍ତ୍ତିମାନଙ୍କର ଉପାସନା ଏ ପର୍ଯ୍ୟନ୍ତ ଚାଲିଆସିଛି । ଏହି ପରମ୍ପରା ମଧ୍ୟରେ ପୁରୀର କଳ୍ପବଟ ଛାୟାତଳେ ଥିବା କ୍ଷୁଦ୍ର କୋଠରିରେ ଏକ କ୍ଷୁଦ୍ର ପଥରରେ ଖୋଦିତ ଚତୁର୍ଭୁଜ ତ୍ରିମୂର୍ତ୍ତିଙ୍କ ଉପସ୍ଥିତି ନିଶ୍ଚିତ ଭାବେ ରହସ୍ୟମୟ ଓ ଏଥିପାଇଁ ଆଲୋଚନାର ଆବଶ୍ୟକତା ରହିଛି ।



ଭାବଗତ ଧର୍ମ ନାମରେ ପୂର୍ବରୁ ପରିଚିତ ବୈଷ୍ଣବ ଧର୍ମରେ ବିଷ୍ଣୁଙ୍କର ଚତୁର୍ବ୍ୟୂହ ଭାବରେ ଉପାସନା ହେଉଥିଲା। ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧ ନାମରେ ଚାରି ରୂପରେ ବିଷ୍ଣୁ ପୂଜିତ ହେଉଥିଲେ। ଏସବୁ ନାମ ଆସିଛି କୃଷ୍ଣ ପରିବାରରୁ। ବାସୁଦେବ କୃଷ୍ଣ ରୂପରେ ଓ ସଙ୍କର୍ଷଣ ବଳରାମ ଭାବେ ପରିଚିତ ଥିଲେ। କାଳକ୍ରମେ ଏହି ଚାରି ରୂପରୁ କେବଳ ରହିଲେ ବାସୁଦେବ ଓ ସଙ୍କର୍ଷଣ।

ଖ୍ରୀ.ପୂ ୨ୟ ଶତାବ୍ଦୀରେ ପାତଞ୍ଜଳି ଓ ୬ଷ୍ଠ ଖ୍ରୀଷ୍ଟାବ୍ଦରେ ପାଣିନୀ ବାସୁଦେବ ଓ ସଙ୍କର୍ଷଣଙ୍କ ମଧ୍ୟରେ ଦୁର୍ଗା ଏକନଂଶା ରହିବା କଥା କହିଲେ। ୫ମ ଓ ୬ଷ୍ଠ ଶତାବ୍ଦୀରୁ ପ୍ରସ୍ତରରେ ତ୍ରିମୂର୍ତ୍ତି ପୂଜା ଆରମ୍ଭ ହୋଇଛି। ଭୁବନେଶ୍ୱର ବିନ୍ଦୁସାଗର କୂଳରେ ଅନନ୍ତ ବାସୁଦେବ ପୂଜା ସେହି ବାସୁଦେବ ସଙ୍କର୍ଷଣ ଉପାସନା କଥା ସୂଚାଉଅଛି। ପ୍ରଥମେ ଏହି ଦୁଇମୂର୍ତ୍ତି ପୁରୁଣା ହେବା ପରେ ଓ ମନ୍ଦିର ଭଗ୍ନାବସ୍ଥାପ୍ରାପ୍ତ ହେବାରୁ ପୁରାତନ ମୂର୍ତ୍ତି ସବୁ ଇଂରେଜ ଇଂଜିନିୟର ଷ୍ଟୁଆର୍ଟ ସାହେବ ସେମାନଙ୍କୁ ବିନ୍ଦୁ ସରୋବର କୂଳରେ ରଖାଇଥିଲେ। ବିନ୍ଦୁ ସରୋବର ତୀରରେ ଚତୁର୍ଭୁଜ ବାସୁଦେବ ଓ ଦ୍ୱିଭୁଜ ସଙ୍କର୍ଷଣଙ୍କ ସହିତ ଏକକ ସଙ୍କର୍ଷଣ ଓ ପୁରାତନ ଚତୁର୍ଭୁଜ ବାସୁଦେବ ମୂର୍ତ୍ତି ମଧ୍ୟ ରଖା ହୋଇଛନ୍ତି।

ଭଗ୍ନ ମନ୍ଦିରରୁ ବାହାରିଥିବା ପୁରାତନ ଚତୁର୍ଭୁଜ ବାସୁଦେବ ଓ ଦ୍ୱିଭୁଜ ସଙ୍କର୍ଷଣ ମୂର୍ତ୍ତିପାଇଁ ଅନଙ୍ଗଭୀମ ୩ୟଙ୍କ କନ୍ୟା ଓ ଲାଙ୍ଗୁଳା ନରସିଂହ (କୋଣାର୍କ ନିର୍ମାତା)ଙ୍କ ଭଗିନୀ ଚନ୍ଦ୍ରିକା ଦେବୀ ନୂତନ ମନ୍ଦିର ତିଆରି କରିଥିଲେ। ପୁରାତନ ବାସୁଦେବ ଓ ସଙ୍କର୍ଷଣଙ୍କ ମୂର୍ତ୍ତି ସହ ଚନ୍ଦ୍ରିକା ଦେବୀ ରମଣୀୟ। ମୁଗୁନି ପଥର ନିର୍ମିତା ସୁଭଦ୍ରା ମୂର୍ତ୍ତି ଯୋଗ କଲେ। ଏହି ମନ୍ଦିର କାରୁକଳା ଓ ନିର୍ମାଣ ପଦ୍ଧତି କୋଣାର୍କ ମନ୍ଦିର ଦ୍ୱାରା ପ୍ରଭାବିତ ହେଲା। ୭୦ ବର୍ଷ ତଳେ ଏ ମନ୍ଦିର ମୂର୍ତ୍ତିମାନଙ୍କୁ ଏକ କ୍ଷୁଦ୍ର ମନ୍ଦିରରେ ରଖାଯାଇ ଏଠାରେ ମାର୍ବଲ ପ୍ରତିମା ପ୍ରତିଷ୍ଠିତ ହେଲେ। ଶ୍ରୀମନ୍ଦିର ଦାରୁବ୍ରହ୍ମଙ୍କଠାରୁ ସ୍ୱତନ୍ତ୍ର ହୋଇ ଏଠାରୁ ମୂର୍ତ୍ତିତ୍ରୟ ଶିଳାବ୍ରହ୍ମ ଭାବେ ପରିଚିତ। ଏଭଳି ଶିଳାବ୍ରହ୍ମ ଅଛନ୍ତି ତୁରିନ୍ତରା ବାଗଲପୁର ଶାସନର ମନ୍ଦିରରେ। କିମ୍ବଦନ୍ତୀ ଅନୁସାରେ ଜଗନ୍ନାଥ ମନ୍ଦିରକୁ ପଦବ୍ରଜରେ ଯାଉଥିବା ଜୟଦେବ ଅସୁସ୍ଥ ହେବାରୁ ସ୍ୱପ୍ନାଦେଶ ପାଇ ଚୋଡ଼ଗଙ୍ଗ ପୁତ୍ର ୨ୟ ଅନଙ୍ଗଭୀମଙ୍କ ପତ୍ନୀ ବାଗଲଦେବୀ ଏ ତ୍ରିମୂର୍ତ୍ତି ଗଢ଼ାଇଥିଲେ। ଏଥିରୁ ସୂଚିତ ହୁଏ ଯେ ଶ୍ରୀମନ୍ଦିରରେ ପ୍ରଥମେ ପୂଜିତ ହେଉଥିବା ତ୍ରିମୂର୍ତ୍ତି ପ୍ରସ୍ତର ନିର୍ମିତ ଥିଲେ। ପ୍ରସ୍ତର ମୂର୍ତ୍ତି ସ୍ଥାନାନ୍ତରିତ ହେବା ପାଇଁ ଅସୁବିଧା ଉପୁଜିବାରୁ ଦାରୁ ମୂର୍ତ୍ତିମାନଙ୍କ କଥା ଚିନ୍ତା କରାଗଲା।

ପ୍ରସ୍ତର ମୂର୍ତ୍ତିରେ ପ୍ରଭୁଙ୍କ ରୂପ ପାଇଥିବା ବେଳେ ଦାରୁମୂର୍ତ୍ତିରେ ପ୍ରତୀକ ରୂପ ପ୍ରକଟ ହେଲା। ଏହା ଜରିଆରେ ଉପନିଷଦ ବର୍ଣ୍ଣିତ ପରମବ୍ରହ୍ମ ବ୍ୟକ୍ତ ଓ ଅବ୍ୟକ୍ତ ରୂପ ବହନ କରି ଉତ୍କଳର ପରିପକ୍ୱ ଦାର୍ଶନିକ ଚିନ୍ତନ ପ୍ରକାଶ କଲା ।

(କ) ପ୍ରଥମେ ଯଯାତି ନିର୍ମିତ ମନ୍ଦିରରେ ପୁରୁଷୋତ୍ତମ ରୂପେ ଏକକ ପ୍ରସ୍ତର ମୂର୍ତ୍ତି ପୂଜିତ ହେଉଥିଲେ। ପରବର୍ତ୍ତୀ କାଳରେ ମନ୍ଦିର ଏକ ଅଂଶ ଭଗ୍ନ ହେତୁ ମୂର୍ତ୍ତି ବିକଳାଙ୍ଗ ହେବାରୁ ମନ୍ଦିର ଓ ମୂର୍ତ୍ତିଙ୍କ ଭଗ୍ନ ଅଂଶ ପୁନର୍ନିର୍ମିତ ହେଲା। ପୁନର୍ନିର୍ମିତ ପୁରୁଷୋତ୍ତମ ମୂର୍ତ୍ତି ବର୍ତ୍ତମାନ ସତ୍ୟନାରାୟଣ ନାମରେ ଏକ କ୍ଷୁଦ୍ର ମନ୍ଦିରରେ ପୂଜିତ ହେଉଅଛନ୍ତି। ମରାମତି ହୋଇଥିବା ହସ୍ତ ଏବେ ମଧ୍ୟ ସତ୍ୟନାରାୟଣଙ୍କ ବିଗ୍ରହରେ ରହିଛି।

ଚୋଡ଼ଗଙ୍ଗଙ୍କ ନିର୍ମିତ ବିରାଟ ମନ୍ଦିରରେ ଆଉ ଏକକ ତ୍ରିମୂର୍ତ୍ତି ନ ରହି ରହିଲେ ଚତୁର୍ଭୁଜ ତ୍ରିମୂର୍ତ୍ତି ବାସୁଦେବ, ସଙ୍କର୍ଷଣ ଓ ସୁଭଦ୍ରା। ଏହି ତ୍ରିମୂର୍ତ୍ତିଙ୍କ ପାଇଁ ଯେଉଁ ନମୁନା ତ୍ରିମୂର୍ତ୍ତି ନିର୍ମିତ ହୋଇଥିଲେ ସେମାନେ ବୋଧହୁଏ ଏକ ପ୍ରସ୍ତର ଖଣ୍ଡରେ ଖୋଦିତ ତ୍ରିମୂର୍ତ୍ତି।

(ଖ) ବର୍ତ୍ତମାନ ବଟମୂଳର ଏକ କୋଠରିରେ ଅବହେଳିତ ତଥା ସର୍ବସାଧାରଣଙ୍କ ଅଗୋଚରରେ ରହିଛି ଏହି କ୍ଷୁଦ୍ର ପ୍ରସ୍ତର ଖୋଦିତ ତ୍ରିମୂର୍ତ୍ତି। ଏହିଭଳି ଚତୁର୍ଭୁଜ ତ୍ରିମୂର୍ତ୍ତି ବାଗଲଦେବୀ ପ୍ରତିଷ୍ଠିତ ବାଗଲପୁରର ତୁରିନ୍ତରାରେ ରହିଛନ୍ତି। ଏହି ମୂର୍ତ୍ତିମାନଙ୍କ ହସ୍ତ ଭଗ୍ନ ହେବାରୁ ସେମାନଙ୍କୁ ଦ୍ୱିଭୁଜ କରାଯାଇ ମରାମତି କରାଯାଇଛି। ଏହାର ଅଳ୍ପ ଦୂରରେ ଥିବା ଶିଶିଲୋ ଗ୍ରାମର ଏକ ପୁଷ୍କରିଣୀରୁ ଉଦ୍ଧାର କରାଯାଇ ତ୍ରିମୂର୍ତ୍ତିମାନଙ୍କୁ ନୂତନ ମନ୍ଦିରରେ ପ୍ରତିଷ୍ଠା କରାଯାଇଛି।



ଲିଙ୍ଗରାଜ ମନ୍ଦିର ଅଭ୍ୟନ୍ତରରେ ମଧ୍ୟ ଏହି ପ୍ରସ୍ତର ତ୍ରିମୂର୍ତ୍ତି ଚୋଡ଼ଗଙ୍ଗପୁତ୍ର ଅନଙ୍ଗଭୀମ ୨ୟଙ୍କ ଦ୍ୱାରା ପ୍ରତିଷ୍ଠିତ ବୋଲି କୁହାଯାଏ। ତାଙ୍କ ପତ୍ନୀ ସ୍ୱପ୍ନ ପାଇବା ପରେ ଜୟଦେବଙ୍କ ପାଇଁ ତୁରିନ୍ତରାରେ ଶିଳାବ୍ରହ୍ମଙ୍କୁ ସ୍ଥାପନ କରିଛନ୍ତି। ନିକଟରେ ଥିବା ଶିଶିଲୋରେ ତ୍ରିମୂର୍ତ୍ତିଙ୍କ ସହ ରାଜା ପୂଜା କରୁଥିବା ସୂଚିତ ହୋଇଥିବାରୁ ଶିଶିଲୋ ମନ୍ଦିର ଅନଙ୍ଗଭୀମ ୨ୟ ନିର୍ମାଣ କରିଥିବା ଜଣାଯାଉଛି।

ଏହି ବିଭିନ୍ନ ମନ୍ଦିରର ତ୍ରିମୂର୍ତ୍ତିଙ୍କ ବର୍ତ୍ତମାନର ରୂପ ବିଷୟରେ ସାମାଜିକ ବିବରଣ ହେଉଛି। ବିନ୍ଦୁସାଗର ତୀରରେ ଥିବା ପୁରାତନ ଚତୁର୍ଭୁଜ ବାସୁଦେବ ମୂର୍ତ୍ତିଙ୍କର ଉପର ଦକ୍ଷିଣ ହସ୍ତରେ ଗଦା ଓ ତଳ ଦକ୍ଷିଣ ହସ୍ତରେ ପଦ୍ମ ରହିଛି। ଊର୍ଦ୍ଧ୍ୱ ବାମ ହସ୍ତରେ ଶଙ୍ଖ ଓ ତଳ ବାମ ହସ୍ତରେ ଚକ୍ର ଶୋଭା ପାଉଛି। ଏଠାରେ ଥିବା ସଙ୍କର୍ଷଣଙ୍କ ଦକ୍ଷିଣ ହସ୍ତରେ ହଳ ଓ ବାମ ହସ୍ତରେ ମୂଷଳ ସହିତ ଶିରରେ ଶୋଭା ପାଉଛି ସପ୍ତଫେଣୀ ନାଗ। ଏହି ରୂପରେ ଅନନ୍ତ ବାସୁଦେବ ବର୍ତ୍ତମାନର ମନ୍ଦିରରେ ଉପାସିତ ହେଉଛନ୍ତି। ତୁରିନ୍ତରାରେ ହସ୍ତଭଗ୍ନ ହେବା ପରେ ବାସୁଦେବଙ୍କ ଦୁଇହାତରେ ଶଙ୍ଖ, ଚକ୍ର ଓ ସଙ୍କର୍ଷଣଙ୍କ ହସ୍ତରେ ହଳ ଓ ମୂଷଳ ରହିଛି।

କଳ୍ପବଟ ତଳେ ଏକ କ୍ଷୁଦ୍ର କୋଠରିରେ ଏକକ କ୍ଷୁଦ୍ର ପଥରରେ ଖୋଦିତ ତ୍ରିମୂର୍ତ୍ତି ଚତୁର୍ଭୁଜ ହୋଇଥିବାରୁ ସେମାନେ ପୁରାତନ ବୋଲି ମନେ ହେଉଛନ୍ତି । ଏହି କ୍ଷୁଦ୍ର ପ୍ରସ୍ତରରେ ଖୋଦିତ ଚତୁର୍ଭୁଜ ବାସୁଦେବଙ୍କ ଉପର ବାମ ହସ୍ତରେ ପଦ୍ମ ଓ ଦକ୍ଷିଣ ହସ୍ତରେ ଗଦା ରହିଛି। ତାଙ୍କର ତଳ ବାମ ହସ୍ତରେ ଶଙ୍ଖ ଓ ଦକ୍ଷିଣ ହସ୍ତରେ ରହିଛି ଚକ୍ର। ସଙ୍କର୍ଷଣଙ୍କ ଉପର ବାମ ହସ୍ତରେ ଶଙ୍ଖ ଓ ଦକ୍ଷିଣ ହସ୍ତରେ ଚକ୍ର। ତାଙ୍କର ତଳ ବାମ ହସ୍ତରେ ମୂଷଳ ଓ ଦକ୍ଷିଣ ହସ୍ତରେ ରହିଛି ହଳ। ସୁଭଦ୍ରାଙ୍କର ବାମ ଉପର ହସ୍ତରେ ଅଙ୍କୁଶ ତଳ ବାମ ହସ୍ତରେ ପଦ୍ମ ରହିଛି। ଉପର ଦକ୍ଷିଣ ହସ୍ତରେ ପାଶ ଓ ତଳ ଦକ୍ଷିଣ ହସ୍ତରେ ବରଦ ମୁଦ୍ରା ବହନ କରିଛନ୍ତି ଭଗବତୀ ସୁଭଦ୍ରା।

କଳ୍ପବଟ ମୂଳର କ୍ଷୁଦ୍ର ତ୍ରିମୂର୍ତ୍ତିର ନମୁନାରେ ବିରାଟ ତ୍ରିମୂର୍ତ୍ତି ଶ୍ରୀମନ୍ଦିରରେ ଶୋଭା ପାଇଲେ। ଏଭଳି ଭାବରେ ପୁରୁଷୋତ୍ତମଙ୍କ ପ୍ରସ୍ତର ମୂର୍ତ୍ତିର ଏକ ନମୁନା ବିମଳା ମନ୍ଦିର ପାଖରେ ତୁଳସୀ ଚଉରା ଭଳି ଦିଶୁଥିବା ମନ୍ଦିରରେ ରହିଛନ୍ତି। ସେ ମୂର୍ତ୍ତି ଯଯାତି ପ୍ରତିଷ୍ଠିତ ପୁରୁଷୋତ୍ତମ ମୂର୍ତ୍ତିର ନମୁନା ଓ ତୁଳସୀ ଚଉରାଟି ବୋଧହୁଏ ନୃସିଂହ ମନ୍ଦିର ଭାବେ ପରିଚିତ ପ୍ରଥମ ପୁରୁଷୋତ୍ତମ ମନ୍ଦିରର ଏକ ପ୍ରାରମ୍ଭିକ ନମୁନା। ପରିସ୍ଥିତିର ତାଡ଼ନାରେ ଶିଳାବ୍ରହ୍ମ ବଦଳରେ ବିରାଜିଲେ ଦାରୁବ୍ରହ୍ମ।

ଶିଳାବ୍ରହ୍ମ କିନ୍ତୁ ପରମ୍ପରା ଅନୁସରଣ କରି ଦାରୁବ୍ରହ୍ମ ପୁରୁଷୋତ୍ତମଙ୍କ ସହିତ ସମାନ୍ତରାଳ ଭାବରେ ଅବସ୍ଥାନ କରୁଛନ୍ତି।

---

ଅନନ୍ୟ ନିକେତନ
ଏନ୍–୧/୧୮୩
ନୂଆପଲ୍ଲୀ, ଭୁବନେଶ୍ୱର–୧୫







# ଶଙ୍କା ପଞ୍ଚକମ୍

ପଣ୍ଡିତ ସୂର୍ଯ୍ୟନାରାୟଣ ରଥଶର୍ମା

### ଶ୍ରୀ ଶ୍ରୀ ମହାରାଜ ଇନ୍ଦ୍ରଦ୍ୟୁମ୍ନ ଏକା ନୁହନ୍ତି ?

ମହାରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ଛାଡିଦେଲେ ଜଗନ୍ନାଥ ମହାପ୍ରଭୁଙ୍କର ଲୀଳା ବିଷୟରେ କୌଣସି କଥା କହି ହେବ ନାହିଁ । ତେବେ ଇନ୍ଦ୍ରଦ୍ୟୁମ୍ନଙ୍କର ପ୍ରସଙ୍ଗକୁ ଯଦି ବିଚାର କରିବା ତେବେ ଇନ୍ଦ୍ରଦ୍ୟୁମ୍ନ ଏକ ନୁହଁନ୍ତି- ଶତପଥ ବ୍ରାହ୍ମଣରେ ରାଜର୍ଷି ଇନ୍ଦ୍ରଦ୍ୟୁମ୍ନଙ୍କର ନାମ ଆସିଛି, ଯାହାକୁ ଉତ୍ତର ବୈଦିକ କାଳର ବୋଲି ସ୍ୱୀକାର କରିବାକୁ ପଡିବ । ଛାନ୍ଦଗ୍ୟୋପ ନିଷଦରେ ପଞ୍ଚମ ଅଧ୍ୟାୟରେ ଯେଉଁ ଇନ୍ଦ୍ରଦ୍ୟୁମ୍ନଙ୍କର ପ୍ରସଙ୍ଗ ଆସିଛି ଯେ ସେ ବିଶ୍ୱାତ୍ମାଙ୍କର ଉପାସକ ଥିଲେ । ଉଦ୍ଦାଳକ ଏବଂ ତାଙ୍କର ପ୍ରସଙ୍ଗକୁ ଲକ୍ଷ୍ୟ କଲେ ଜଣାଯାଏ ସେ ପ୍ରତୀକବାଦର ଉପାସକ ଥିଲେ, ଯାହାକୁ ପୁରୁଷୋତ୍ତମ କ୍ଷେତ୍ରର ସମ୍ବନ୍ଧିତ ବ୍ୟକ୍ତି ବୋଲି ଗ୍ରହଣ କରାଯାଇଅଛି ।

ମହାଭାରତର ବନପର୍ବରେ ଇନ୍ଦ୍ରଦ୍ୟୁମ୍ନଙ୍କର ନାମ ଆସିଅଛି ଏବଂ ବନପର୍ବର ଏକଶତ ଅନେଶ୍ୱତ ଅଧ୍ୟାୟରେ ଯେଉଁ ବିଷୟ ଉପାଖ୍ୟାନ ଆସିଛି ସେ ଇନ୍ଦ୍ରଦ୍ୟୁମ୍ନ ନିଶ୍ଚିତ ରୂପରେ ଜଗନ୍ନାଥ କ୍ଷେତ୍ର ସହିତ ସଂପୃକ୍ତ ଅଗ୍ନିପୁରାଣ ୧୦୭ ଅଧ୍ୟାୟରେ ବିଷ୍ଣୁପୁରାଣ ୨ୟ ଅଂଶ ପ୍ରଥମ ଅଧ୍ୟାୟରେ ମନୁବଂଶର ବିବରଣୀ ଆସିଛି ଯେ ଇନ୍ଦ୍ରଦ୍ୟୁମ୍ନ ସୁମତିଙ୍କର ପୁତ୍ର ବୋଲି ବର୍ଣ୍ଣିତ ହୋଇଅଛି ।

ସୁମତେ ସ୍ତେଜସସ୍ତସ୍ମା ଇନ୍ଦ୍ରଦ୍ୟୁମ୍ନୋ ବ୍ୟଜାୟତ
ପରମେଷ୍ଠୀ ତତସ୍ତସ୍ମାତ୍ ପ୍ରତିହାରସ୍ତ ଦନ୍ୱୟଃ ।

ସେହି ମନୁବଂଶ ବର୍ଣ୍ଣନାରେ ଆସିଛି ଯେ ନୀଳାଚଳର ପାର୍ଶ୍ୱବର୍ତ୍ତୀ ଭୂମି ରମ୍ୟ ନାମକ ପୁତ୍ରକୁ ଦିଆଯାଇଥିଲା ।
ନୀଳାଚନ୍ଦ୍ରାଶ୍ରିତଂ ବର୍ଷଂ ରମ୍ୟାୟ ପ୍ରବଦୌ ପିତା

ତେଣୁ ଉକ୍ତ ପ୍ରାଚୀନ ବଂଶର କାଳରେ ନୀଳାଚଳ କ୍ଷେତ୍ର ପ୍ରସିଦ୍ଧ ଥିଲା । ତେଣୁ ଇନ୍ଦ୍ରଦ୍ୟୁମ୍ନ ନାମକ ମନୁବଂଶୀୟ ରାଜା ପୁରୁଷୋତ୍ତମ କ୍ଷେତ୍ର ସହିତ ସଂପୃକ୍ତ ଥିଲେ । କୂର୍ମ ପୁରାଣ ବର୍ଣ୍ଣିତ ଇନ୍ଦ୍ରଦ୍ୟୁମ୍ନ ଓ ଶ୍ରୀମଦ୍ ଭାଗବତ ବର୍ଣ୍ଣିତ ଇନ୍ଦ୍ରଦ୍ୟୁମ୍ନ ତେବେ ତତ୍କାଳୀନ ବହୁ ଇନ୍ଦ୍ରଦ୍ୟୁମ୍ନ ମଧ୍ୟରୁ ଏକ ଇନ୍ଦ୍ରଦ୍ୟୁମ୍ନ ନିଶ୍ଚିତ ରୂପରେ ପୁରୁଷୋତ୍ତମ କ୍ଷେତ୍ର ସହିତ ସଂପୃକ୍ତ ଥିଲେ । ମତ୍ସ୍ୟପୁରାଣ ପ୍ରମାଣ ଅନୁସାରେ ନାରଦଙ୍କର ମୁଖରୁ ରାଜା ଇନ୍ଦ୍ରଦ୍ୟୁମ୍ନ ମତ୍ସ୍ୟପୁରାଣ ଶ୍ରବଣ କରିଥିଲେ ।

ତେଣୁ ଇନ୍ଦ୍ରଦ୍ୟୁମ୍ନଙ୍କ ବିଷୟରେ ବୁଝିବାକୁ ହେବ ଯେ ବହୁରାଜା ଉତ୍ତରବୈଦିକ କାଳରେ ଇନ୍ଦ୍ରଦ୍ୟୁମ୍ନ ନାମରେ ବିଦ୍ୟମାନ ଥିଲେ । ଯେଉଁମାନେ କି ଉତ୍କଳଖଣ୍ଡ ବର୍ଣ୍ଣିତ ଗୁଣାଦିରେ ବିଭୂଷିତ ଥିଲେ ଏବଂ ପୁରୁଷୋତ୍ତମ କ୍ଷେତ୍ର ସହିତ ସଂପୃକ୍ତ ଥିଲେ । ରାଜା ଇନ୍ଦ୍ରଦ୍ୟୁମ୍ନ ହିଁ ଶ୍ରୀଜଗନ୍ନାଥ ସଂସ୍କୃତିର ପ୍ରଥମ ସଂସ୍ଥାପକ ଅଟନ୍ତି । ସେ ବେଦକାଳୀନ ହୁଅନ୍ତୁ ବା ପୁରାଣକାଳୀନ ହୁଅନ୍ତୁ ବା ଐତିହାସିକ କାଳର ହୁଅନ୍ତୁ । ଇନ୍ଦ୍ରଦ୍ୟୁମ୍ନଙ୍କୁ ଛାଡି ଜଗନ୍ନାଥଙ୍କର କଥା କୁହାଯାଇ ନପାରେ ।

### ଶ୍ରୀଜଗନ୍ନାଥ କାହାକୁ ଶ୍ରାଦ୍ଧ ଦିଅନ୍ତି ଓ କେବେ ଦିଅନ୍ତି

ଶ୍ରୀଜଗନ୍ନାଥ କଳିଯୁଗରେ ଦାରବୀ ତନୁ ଧାରଣ କରି ମାନବୀୟ ଲୀଳା କରୁଛନ୍ତି । ଆମେ ମନୁଷ୍ୟ ଯେପରି ନିଜର ପିତା ମାତାଙ୍କୁ ମୃତ୍ୟୁ ପରେ ଶ୍ରାଦ୍ଧ ଦେଇଥାଉ, ଠିକ୍ ଜଗନ୍ନାଥ



ମହାପ୍ରଭୁ ଶ୍ରୀମନ୍ଦିରରେ ନିଜର ପିତା ମାତାଙ୍କୁ ଦୀପଦାନ ଶ୍ରାଦ୍ଧ ପ୍ରଦାନ କରନ୍ତି।

ଏହି ଶ୍ରାଦ୍ଧ ମାର୍ଗଶିର କୃଷ୍ଣ ଚତୁର୍ଦ୍ଦଶୀ, ଅମାବାସ୍ୟା, ଶୁକ୍ଳ ପ୍ରତିପଦ, ତ୍ରିଦିବସୀୟ ଶ୍ରାଦ୍ଧ ଦୀପଦାନ କରାଯାଏ, ଯାହାକୁ ଦେବଦୀପାବଳୀ ବୋଲି କୁହାଯାଏ।

### ମାର୍ଗଶିର କୃଷ୍ଣ ଚତୁର୍ଦ୍ଦଶୀ

ପ୍ରଥମ ରାତ୍ରରେ– ସତ୍ୟଯୁଗୀୟ ଅଦିତି, କାଶ୍ୟପାୟ
ବାମନରୂପ ପ୍ରଭବାୟ ନମଃ।
ମାର୍ଗଶିର ଅମାବାସ୍ୟା–
ଦ୍ୱିତୀୟ ରାତ୍ରରେ – ତ୍ରେତୟାଂ କୌଶଲ୍ୟା ଦଶରଥାୟ
ରାମରୂପ ପ୍ରଭବାୟ ନମଃ।
ତୃତୀୟ ରାତ୍ରରେ – ଶୁକ୍ଳ ପ୍ରତିପଦ ଦିନ

ଦ୍ୱାପର ଯୁଗୀୟ ଦେବକୀ ବସୁଦେବାୟ କୃଷ୍ଣରୂପ ପ୍ରଭବାୟ ନମଃ ତଦ୍‌ସହ ବାସୁଦେବ କର୍ମଣେ ଅଶ୍ୱମେଧ ଇନ୍ଦ୍ରଦ୍ୟୁମ୍ନ ଦୀପଦାନ ସଂପାଦୟାମି ମନ୍ତ୍ରରେ ଏହି ନୀତି ଶ୍ରୀଜୀଉଙ୍କର ସନ୍ଧ୍ୟାଧୂପ ବଢ଼ିବା ପରେ ପାଳନ କରାଯାଏ (ଗୁପ୍ତ ଭାବରେ) । ଏହା ସର୍ବସାଧାରଣ ଦେଖିପାରନ୍ତି ନାହିଁ । ସମ୍ପୂର୍ଣ୍ଣ ଶ୍ରୀମନ୍ଦିର ଦୀପରେ ସଜ୍ଜା ଯାଇଥାଏ। ଚତୁର୍ଦ୍ଧାମୂର୍ତ୍ତି ଶ୍ରାଦ୍ଧବେଶରେ ଶୃଙ୍ଗାର ହୁଅନ୍ତି – (୩ଦିନ)।

### ବିଶ୍ୱାବସୁ କେଉଁଯୁଗର ବ୍ୟକ୍ତି

ବିଶ୍ୱାବସୁ କେଉଁ ଯୁଗର ତାଙ୍କ ବିଷୟରେ ଅନେକ କଥା ଶୁଣିବାକୁ ମିଳେ। ବିଶ୍ୱାବସୁ ଯେ କି ପ୍ରଭୁଙ୍କୁ ନିଜର ପ୍ରେମ ଶ୍ରଦ୍ଧା ବଳରେ ନିଜର ହୃଦୟରେ ବାନ୍ଧି ରଖିଥିଲେ। ସେ ଆଦ୍ୟସେବକ ଅଟନ୍ତି। ତାଙ୍କ ବିଷୟରେ ଦେଖିଲେ ଜଣାଯାଏ ଯେ ଋଗ୍‌ବେଦ ୧୦ମ ମଣ୍ଡଳରେ ତୈତ୍ତିରୀୟ ସଂହିତା ୧/୬/୧/୬/୫ ତଥା ଅଥର୍ବ ବେଦର ୨/୨/୪ ବିଶ୍ୱାବସୁ ନାମକ ଏକ ନମସ୍ୟ ବ୍ୟକ୍ତିଙ୍କର ନାମ ଆସିଛି।

ଅଭିୟେ ବିଦ୍ୟୁନ୍ନକ୍ଷ ତ୍ରିୟେ ଯା ବିଶ୍ୱାସୁଂ ଗନ୍ଧର୍ବଂ ସତଧ୍ୱେ । ପୁନର୍ବାର ଚତୁର୍ଦ୍ଦଶ କାଣ୍ଡରେ କୁହାଯାଇଛି, ହେ ବିଶ୍ୱାବସୁ ଜାଗ୍ରତ ହୁଅ ମୁଁ ତୁମ୍ଭଙ୍କୁ ପ୍ରଣାମ ଜଣାଉଛି । ତୁମେ ଜାମିମଙ୍କୁ ନିଜର ଅଂଶ ବୋଲି ଜାଣ । ମୁଁ ତୁମ୍ଭଙ୍କୁ ଓ ଗନ୍ଧର୍ବଗଣଙ୍କ କ୍ରୋଧ ଦୃଷ୍ଟିକୁ ମଧ୍ୟ ନମସ୍କାର କରୁଛି । ଆମର ମନ୍ତ୍ରପ୍ରମାଣ ଘେନ । ତୁମେ ନାରୀର ମର୍ଯ୍ୟାଦା ରକ୍ଷାକର। ବିଶ୍ୱାବସୁ ବ୍ରାହଣାତେ ନମୋଦସ୍ମି । ଏହି ବିଶ୍ୱାବସୁଙ୍କ ମଧ୍ୟ ଏକ ପବିତ୍ର ବ୍ୟକ୍ତି ଭାବରେ ଗ୍ରହଣ କରାଯାଇଥିଲା। ତେଣୁ ସ୍କନ୍ଦପୁରାଣ ଉତ୍କଳଖଣ୍ଡ ବର୍ଣ୍ଣିତ ଇନ୍ଦ୍ରଦ୍ୟୁମ୍ନ ଏବଂ ବିଶ୍ୱାବସୁ ନାମଦ୍ୱୟ ସମକାଳୀନ ଏବଂ ଉତ୍ତରବେଦ ଯୁଗୀୟ । ତେଣୁ ପ୍ରାଚୀନ। ବିଶ୍ୱାବସୁ ବଂଶଜ ଶବରମାନେ ନିଷ୍ଠାବାନ ଥିଲେ ଓ ଇନ୍ଦ୍ରନୀଳମଣିମୟ ଶାଶ୍ୱତ ବିଗ୍ରହଙ୍କର ସେବାରେ ଆନନ୍ଦମୟ ଜୀବନ ଅତିବାହିତ କରୁଥିଲେ। ବିଶ୍ୱାବସୁ ଶବର ରାଜାଙ୍କୁ ଆର୍ଯ୍ୟ, ବ୍ରାତ୍ୟ ଶବରମାନେ ମାନ୍ୟତା କରୁଥିଲେ।

ଆର୍ଯ୍ୟବ୍ରାତ୍ୟ ଶାବରାଣାଂ ସର୍ବେଷାମଭି ବନ୍ଦିତମ୍
ବିଶ୍ୱାବସୁ ପ୍ରଦୁଷ୍ଟାମ୍ନା ନୀଳେନ୍ଦ୍ର ମଣିରକ୍ଷିତମ୍।।

ଶ୍ରୀଜଗନ୍ନାଥଙ୍କର ନବକଳେବର ସମୟରେ ବିଶ୍ୱାବସୁ ଶବର ରାଜାଙ୍କର ଅଭିଷେକ ହୋଇଥାଏ।

(୪) ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ଦୈନନ୍ଦିନ ଆଳତି କେତେଥର ହୁଅନ୍ତି ?

(୧) ପ୍ରଥମ ଆଳତି– ମଙ୍ଗଳ ଆଳତି
ପ୍ରାତଃ ସମୟରେ ଦ୍ୱାରଫିଟା ପରେ, ଖଟଶେଜ ବାହାରିବା ପରେ ।

ପ୍ରଥମ– ଶ୍ରୀ କର୍ପୂର ଆଳତି
ଦ୍ୱିତୀୟ– ଏକୋଇଶି ବତୀ ଆଳତି
ତୃତୀୟ– ଶ୍ରୀ ପିଷ୍ଟକ ଆଳତି

(୨) ଦ୍ୱିତୀୟ– ସକାଳ ଧୂପ ପରେ ପର୍ଯ୍ୟାୟକ୍ରମେ, କର୍ପୂର, ବତି, ପିଷ୍ଟକ ।
(୩) ତୃତୀୟ– ମଧ୍ୟାହ୍ନ ଧୂପ ଆଳତି
(୪) ଚତୁର୍ଥ– ସନ୍ଧ୍ୟା ଆଳତି
(୫) ପଞ୍ଚମ– ସନ୍ଧ୍ୟାଧୂପ ଆଳତି
(୬) ଷଷ୍ଠ– ଜୟମଙ୍ଗଳ ଆଳତି
(୭) ସପ୍ତମ– ପହୁଡ଼ ଆଳତି



ଏତଦ୍‌ବ୍ୟତୀତ ପ୍ରତ୍ୟେକ ଧୂପ, ପୂଜା ଉପଚାର ଆଳତି ମଧ୍ୟ ହୋଇଥାଏ । ସ୍ୱତନ୍ତ୍ର ଦିନରେ ସ୍ୱତନ୍ତ୍ର ଆଳତି ବନ୍ଦାପନା ଅନୁଷ୍ଠିତ ହୋଇଥାଏ । ଆଳତି ସମୟରେ ଘଣ୍ଟି, ଘଣ୍ଟ, ଘଣ୍ଟା ବାଜେ ନାହିଁ ।

**ନକ୍ଷତ୍ର ବନ୍ଦାପନା କଣ ?**

ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥ ଆଦି ବିଗ୍ରହଙ୍କର ଅନେକ ବନ୍ଦାପନା ମଧ୍ୟରୁ ନକ୍ଷତ୍ର ବନ୍ଦାପନା ଏକ ସ୍ୱତନ୍ତ୍ର ନୀତି ଅଟେ । ନକ୍ଷତ୍ର ବନ୍ଦାପନା କ'ଣ ? ଶ୍ରୀବଳଭଦ୍ର, ମା'ସୁଭଦ୍ରା, ଶ୍ରୀଜଗନ୍ନାଥଙ୍କର ରାଶି ଓ ନକ୍ଷତ୍ରଯୁକ୍ତ ଜାତକ ରହିଅଛି । ପ୍ରତ୍ୟେକ ଦିନ ଅବକାଶ ସମୟରେ ଜ୍ୟୋତିଷ ଖୁରି ନାୟକ ଚତୁର୍ଦ୍ଧାମୂର୍ତ୍ତିଙ୍କର ପାଖରେ ଜାତକ ପଢନ୍ତି ।

ଶ୍ରୀବଳଭଦ୍ରଙ୍କର ରାଶି– ମକର
ନକ୍ଷତ୍ର– ଶ୍ରବଣା
ଶ୍ରୀସୁଭଦ୍ରାଙ୍କର ରାଶି– ବିଛା
ନକ୍ଷତ୍ର ଜ୍ୟେଷ୍ଠା
ଶ୍ରୀଜଗନ୍ନାଥଙ୍କର ରାଶି– ବୃଷ
ନକ୍ଷତ୍ର– ରୋହିଣୀ

ଯେଉଁ ବିଗ୍ରହଙ୍କର ଯେଉଁଦିନ ନକ୍ଷତ୍ର ଥିବ ସେହି ଦିନ ସେହି ବାଡରେ ମଧ୍ୟାହ୍ନ ଧୂପ ଆଳତି ପରେ ଏହି ବନ୍ଦାପନା ଶ୍ରୀକର୍ପୂର ଓ ବତୀଆଳତି ଦ୍ୱାରା ହୋଇଥାଏ ।

ଯେଉଁଦିନ ସୁଭଦ୍ରାଙ୍କର ନକ୍ଷତ୍ର ପଡେ ସେହିଦିନ ଶ୍ରୀବଳଭଦ୍ର, ଶ୍ରୀଜଗନ୍ନାଥଙ୍କଠାରେ ମଧ୍ୟ ବନ୍ଦାପନା ହୋଇଥାଏ । ନକ୍ଷତ୍ର ବନ୍ଦାପନା ଦିନ ମଦନ ମୋହନ ଆଜ୍ଞାମାଳ ପାଇ ଶ୍ରୀମନ୍ଦିରରେ ନକ୍ଷତ୍ର ବେଢା କରିଥାନ୍ତି ଓ ଜୟ ବିଜୟ ଦ୍ୱାର ସ୍ୱତନ୍ତ୍ର ନୀତି ମଧ୍ୟ ପାଳନ କରାଯାଏ । (ଅଣସର ସମୟରେ ଏହା ହୋଇନଥାଏ) ।

ଶ୍ରୀ ଶ୍ରୀଜଗନ୍ନାଥ ସଂସ୍କୃତି ପ୍ରଚାରକ, ପୁରୀ

# ନିବେଦନ

**ଶାଶ୍ୱତୀ ସୌମ୍ୟା ମିଶ୍ର**

ଜୀବନ ଚକ୍ରରେ ଛାଟିପିଟି ହୋଇ
ଯେବେ ସେ ନିଜକୁ ଖୋଜେ
ଶୂନ୍ୟ ପଥରେ ଶୂନ୍ୟ ପୁରୁଷ
ମୁରୁକି ମୁରୁକି ହସେ ।
ଅତି ଶରଧାରେ ବୃନ୍ଦାବତୀ ମୂଳେ
ମଥାକୁ ନୁଆଁଇ ଦିଏ
ଜ୍ଞାତି ପରିଜନ ସୁଖ ଖୋଜୁ ଖୋଜୁ
ଦୁଃଖକୁ ତା' ଭୁଲି ଯାଏ ।
କେତେ ନିରିମାଖି ସଂଜର ସଳିତା
ସଂଜରେ ମିଳେଇ ଯାଏ
ନିଜେ ଜଳି ଜଳି ସଂସାର ଯାକର
ଅନ୍ଧାର ଦୂରେଇ ଦିଏ ।
ଅମା ଅନ୍ଧକାରେ ଦୁର୍ବଳ ହୃଦୟେ
ଶରୀର ନିସ୍ତେଜି ଯାଏ



ସତେବା ତୁଳସୀ ମାଟିରେ ଲୋଟିଛି
ଏଭଳି ପ୍ରତୀତ ହୁଏ ।
ଜୟ ଜଗନ୍ନାଥ ଜୟ ଜଗନ୍ନାଥ
ତୁଣ୍ଡରେ ତା' ଫୁଟି ଉଠେ ।
ଗୀତଗୋବିନ୍ଦର ଅପୂର୍ବ ପଂକ୍ତିଟେ
ଚଉଦିଗେ ଖେଳିଯାଏ ।
ଭାବ ରଙ୍କୁଣା ସେ ଭାବରେ ସେ ବନ୍ଧା
ଭାବ ନେଇ ଭାବ ଦିଏ
ଭାବ ଅଛି ବୋଲି ଭବ ସାଗରରୁ
ଆଦରେ ସାଉଁଟି ନିଏ ।

ଦରଖା ପାଟଣା, କଲ୍ୟାଣୀ ନଗର
କଟକ – ୧୩



# ଅମୃତ ଅନୁଭବ

ବଦ୍ରି ମିଶ୍ର

ବଡଙ୍କ କଥାକୁ ମାନୁ ମାନୁ, ସେ କେବେ ବି ପ୍ରଶ୍ନ କରିନଥିଲା ମାନିବାର କାରଣ, ତତ୍ତ୍ୱ କି ରହସ୍ୟ । ବଇଦା ଏକ ଭିନ୍ନ ମଣିଷ । ସମସ୍ତଙ୍କୁ ନମସ୍କାର କରିଦବା ତା'ର ଥିଲା ଏକ ବିଚିତ୍ର ପ୍ରକୃତି । ଚାକିରି କ୍ଷେତ୍ରରେ ପିଅନଠାରୁ ଆରମ୍ଭ କରି ସାମ୍ବାଦିକତା କ୍ଷେତ୍ରରେ କ୍ୟାମେରାମ୍ୟାନଙ୍କୁ ବି ସେ ନମସ୍କାର କରିଦିଏ । ପଚାରିଲେ କହୁଥିଲା– 'ନନା କହିଥିଲେ, ବୟସରେ ବଡ, ମାନ୍ୟରେ ବଡ ଓ ଜାତିରେ ଛୋଟ, କି ବୟସରେ ସାନ ହେଲେ ବି ଯଦି କାହାର ଜ୍ଞାନ ଅଧିକ ଲାଗିବ ନମସ୍କାର କରିଦେବୁ' । ନନା କୁଆଡେ ମରି ହଜିଗଲେଣି, ବଇଦାର ନମସ୍କାର କିନ୍ତୁ ମରି ହଜିଯାଇନି । ଏମିତି ନନାଙ୍କ କହିବା ମୁତାବକ ସେ ପିଲାଦିନର ଚାହାଳି ମାଷ୍ଟରଙ୍କଠାରୁ ଆରମ୍ଭ କରି କଲେଜ ସାର୍‌ଙ୍କ ପାଦ ଛୁଇଁ ପ୍ରଣାମ କରେ । ବିଦ୍ୟାଗୁରୁ, ସଙ୍ଗୀତ ଗୁରୁ, ବାଦ୍ୟଗୁରୁ, ସାହିତ୍ୟଗୁରୁଙ୍କ ମଧ୍ୟରୁ ଅନେକଙ୍କ ବୟସ ସାନ ହେଲେ ବି ପ୍ରଣାମ କରେ । ଏହାଛଡା ସବୁ ଗୁରୁଜନଙ୍କ ପାଦଛୁଇଁ ପ୍ରଣାମ କରିବା ତା'ର ଅଭ୍ୟାସରେ ପରିଣତ ହୋଇଯାଇଥିଲା । ସେହି ନ୍ୟାୟରେ ସାହି ମୁଣ୍ଡରେ ବାହୁଡା ଫେରନ୍ତା ତିନିରଥ ଥୁଆ ହୋଇଗଲା ପରେ ସେ ଅପେକ୍ଷା କରୁଥିଲା ଚାରମାଳ ବନ୍ଧାକୁ । ଗୋଟାଗୋଟା ତାଳଗଛର ପାହାଚ ହେବା ପରେ ପିଲାଦିନେ ସାଙ୍ଗମାନଙ୍କ ସଙ୍ଗେ, ତିନିଦିନ ଧରି ସେ ଠାକୁରଙ୍କ ପେଟୁଆ ପେଟକୁ ଛୁଇଁ ଦେଉଥିଲା ବାରମ୍ବାର । ଠାକୁର ଥିଲେ ତା' ପିଲାଦିନର ସାହି । ବର୍ଷ ବର୍ଷ ଧରି ଠାକୁରଙ୍କ ପେଟକୁ ପ୍ରଥମେ ଛୁଇଁ ଦେଇ ସେ ହେଉଥିଲା ସମସ୍ତଙ୍କ ଭିତରେ ଫାଷ୍ଟ । ସେତେବେଳେ ସିଂହଦ୍ୱାରେ ରଥ ଲାଗିଲେ ନୀଳାଦ୍ରି ବିଜେ ଯାଏଁ ପୂରା ଫାଙ୍କା । ରଥ ଉପରେ ରହୁଥାନ୍ତି ଦୁଇ ଚାରିଜଣ ଦଇତା । ଏମିତି ଏମିତି ବଡ ହୋଇଗଲା ବଇଦା । ତା' ପିଲାମାନେ ବି ତା' ଭଳି ନମସ୍କାର ଓ ପ୍ରଣାମକୁ ସ୍ୱୀକାର କରିନେଇଥିଲେ । ବଡ ହେଲା ପରେ ରଥ ଆସିଲେ ତିନି ଠାକୁରଙ୍କୁ ଛୁଇଁ ଦେବାରେ ସେ





ପାଉଥିଲା ଆନନ୍ଦ । ସାହିର ସେବକ ଓ ଚିହ୍ନା ସେବକମାନେ ତାକୁ ଦେଖି ଡକା ମାରୁଥିଲେ– 'ହେ ମିଶ୍ରେ – ଆହେ ବ୍ରହ୍ମଙ୍କୁ ଛୁଇଁ ଦିଅ ହେ । ରଥ ଗଲେ ପୁଣି ବରଷେ' । ସେବକଙ୍କ ଡାକରେ ବଇଦା କୃତ୍ୟକୃତ୍ୟ ହୋଇ ବିଶ୍ୱଠାକୁରଙ୍କୁ ଛୁଇଁ ଦେଉ ଦେଉ କେତେବେଳେ ମାଗି ଦେଉଥିଲା– 'ହେ ଠାକୁରେ– ମୋ କଣ୍ଠରେ ସ୍ୱର ଭରିଦିଅ, ମୋ କଲମରେ ସାହିତ୍ୟ ଭରିଦିଅ, ମୋ ଦେହରେ ସମାଜ ପ୍ରତି କର୍ତ୍ତବ୍ୟ କରିବାର ଶକ୍ତି ଭରିଦିଅ । ମୋ ସ୍ତ୍ରୀ, ପୁଅ–ବୋହୂ, ଝିଅ–ଜ୍ୱାଇଁ, ନାତି ସମସ୍ତଙ୍କୁ ଦୀର୍ଘାୟୁ କର, ସେମାନଙ୍କୁ ସଦ୍‌ବୁଦ୍ଧି ଦିଅ'... ଏମିତି ଅନେକ । ତେବେ ୧୯୯୬ ମସିହା ପରେ ପରେ ମିଡିଆର ପ୍ରଚାର ପ୍ରସାର ଭିତରେ ଆସ୍ତେ ଆସ୍ତେ ଜଗନ୍ନାଥ ହୋଇଗଲେ ବିଶ୍ୱଦେବତା । ତାଙ୍କ ରଥଯାତ୍ରା ପାଲଟିଗଲା ନନ୍ଦିଘୋଷ ଯାତ୍ରା । ରଥଯାତଠାରୁ ନୀଳାଦ୍ରି ବିଜେ ପର୍ଯ୍ୟନ୍ତ ପୁରୀ ଆସିଲେ ଲକ୍ଷ ଲକ୍ଷ ପର୍ଯ୍ୟଟକ– ଭକ୍ତ । ଶୃଙ୍ଖଳିତ ରଥଯାତ, ରଥଚଢ଼ା ଓ ଠାକୁର ଛୁଆଁ ପାଇଁ ପ୍ରଶାସନ ରଥ ଉପରେ ଲଗାଇଲା ଶିଡି । କିନ୍ତୁ ହଠାତ୍ କ'ଣ ହେଲା କେଜାଣି କିଛି ଗବେଷକ, ପ୍ରଚାରକ, ପ୍ରଶାସକ ନିଜ ମତ ବଦଳେଇବା ଆରମ୍ଭ କଲେ । ଅନେକ କହିଲେ– ରଥ ବି ଦେବତା, ଚକ ବି ଦେବତା ।

କିନ୍ତୁ ହଠାତ୍ ସେଦିନ ହତବାକ ହୋଇପଡିଲା ବଇଦା । ଘୋଷଣା ହେଲା– 'ଠାକୁରଙ୍କୁ ଛୁଇଁବା ମନା' । ତା'ର ଅବୁଝାମନ ଜମାରୁ ବୁଝୁନଥିଲା । ଠାକୁର କ'ଣ ଛୁଆଁ ହୋଇପାରନ୍ତି ? ଠାକୁର କ'ଣ ଭକ୍ତଠାରୁ ଦୂରରେ ରହିପାରନ୍ତି ? ଯଦି ଏହା ଠିକ୍, ତେବେ ସେ ହାତଟେକି ଡାକିବାର ମୁଦ୍ରାରେ ରହିଛନ୍ତି କାହିଁକି ? ତା' ମନରେ ପ୍ରଶ୍ନ ଉଠୁଥିଲା– କାହାର ଔଦ୍ଧତ୍ୟ ଓ ଅହଂକାରକୁ ଭାଙ୍ଗିନପାରି କ'ଣ ଭଗବାନଙ୍କଠାରୁ ଭକ୍ତଙ୍କୁ ଦୂରେଇ ଦିଆଯାଇପାରେ ? ସେ ଭାବୁଥିଲା ଯଦି ପାଳିଆ ସେବକ ବ୍ୟତୀତ ଅନ୍ୟ ସେବକ ଛୁଇଁବେ, ମନ୍ଦିର ପୁଲିସ– କର୍ମଚାରୀ ରଥ ଉପରକୁ ଯାଇପାରିବେ ଓ ପରୋକ୍ଷରେ ଠାକୁରଙ୍କୁ ଛୁଇଁ ପାରିବେ, ତେବେ ସେ କାହିଁକି ନୁହେଁ ? ରଥ ଲାଗିଲା ଗୁଣ୍ଡିଚା ଘର । ସେଦିନ ରାତିରେ 'ରେକର୍ଡସ ଅଫ ରାଇଟ୍‌ସ' ବହିକୁ ଓଲଟାଇ ଚାଲିଲା ବଇଦା । ତା' ଭିତରେ କେତେବେଳେ ସେ ଶୋଇଯାଇଛି । ନିଦ ଭାଙ୍ଗିଲା ବେଳକୁ ରାତି ୪ଟା । ବହିର ୬୯ ପୃଷ୍ଠାରେ ଝିଣ୍ଟିକାଟିଏ ବସି ତାକୁ ଚାହିଁ ରହିଥିଲା । ୬୯ ପୃଷ୍ଠାରେ ଉଲ୍ଲେଖ ଥିଲା– 'ଠାକୁରଙ୍କ ପହଣ୍ଡି ବେଳେ ବାହାର ଲୋକ ଛୁଇଁ ପାରିବେ' । ତା'ର ମନ କୁଣ୍ଢେମୋଟ ହୋଇଗଲା । ଝିଣ୍ଟିକାଟି ସତେ ଯେପରି ହସଟେ ମାରି ଉଡିଗଲା । ଆଜି ଗୁଣ୍ଡିଚା ମନ୍ଦିରକୁ ଗୋଟି ପହଣ୍ଡିରେ ଯିବେ ଠାକୁର । ବଇଦା ସନ୍ଧ୍ୟାରୁ କର୍ଡନ ଭିତରେ ପଶିଗଲା । ଠାକୁରଙ୍କୁ ଚାହିଁଲା । ତାକୁ ଲାଗୁଥିବା ଠାକୁର ଯେପରି କହୁଥିଲେ– 'ମନ ଦୁଃଖ କରନି, ମୁଁ ତଳକୁ ଓହ୍ଲାଇଯାଏ, ତୁ ମତେ ଛୁଇଁ ଦେବୁନି ! ଏଥର ବିଜେ କାହାଳୀ ବାଜିଲା, ଘଣ୍ଟ ବାଜିଲା । ଟାହିଆ ହଲାଇ ରଥ ଉପରୁ ଓହ୍ଲାଇଲେ ଠାକୁର । ଚିହ୍ନା ସେବକମାନେ ବଇଦାର ହାତକୁ ଭିଡି ଆଣି ଠାକୁରଙ୍କୁ ଛୁଆଇଁବା ବେଳକୁ ରୋକିଦେଲା ପୁଲିସ । ପ୍ରଶାସକ କହିଲେ – ଆପଣମାନେ ଯଦି ଏହା କରିବେ ତେବେ ଆମେ ତ ବନ୍ଧା ହେବୁ । ଚାହୁଁ ଚାହୁଁ ଦଶ ଦଶଟା କ୍ୟାମେରା ଗହଳି ଲଗାଇଦେଲେ ଘଟଣା ସ୍ଥଳରେ । ସତେ ଯେପରି କିଏ ଆତ୍ମହତ୍ୟା କରିଛି କି କେହି ହତ୍ୟାକାରୀ ଧରା ହୋଇଛି । ଏହି ଗହଳି ଭିତରେ ଠାକୁରମାନେ କିନ୍ତୁ ପଶି ଯାଉଥିଲେ ଗୁଣ୍ଡିଚା ଘରକୁ । ପଛରେ ରହିଯାଇଥିଲା କାଳିଆ । ମହାପାପ କରି ଦଣ୍ଡାଦେଶକୁ ଅପେକ୍ଷା କରିଥିବା ମଣିଷ ଭଳି, ନିରବରେ ଠାକୁରଙ୍କୁ ହତାଶ ହୋଇ ନିରେଖି ଦେଖୁଥିଲା ବଇଦା । କର୍ଡନଧାରୀ ପୁଲିସ ଓ ଦଇତାମାନଙ୍କ ମେଳରେ ଆସୁଥିଲେ ବଇଦା'ର କାଳିଆ କାହ୍ନୁ । ନା' ଥିଲା ଠାକୁରଙ୍କ ମୁହଁରେ ହସ । ଭଙ୍ଗା ଟାହିଆଟା ମଧ୍ୟ ଆଉ ଦୋହଲି ପାରୁନଥିଲା । ଠିକ୍ ବଇଦା ପାଖେ ଅଟକି ଗଲେ ଜଗତ ଠାକୁର ଜଗନ୍ନାଥ । ହଠାତ୍ ଝିଣ୍ଟିକାଟିଏ କୁଆଡୁ ଉଡି ଆସି ବସିଗଲା ଭଙ୍ଗା ଟାହିଆ ଉପରେ । ଆସ୍ତେ ଆସ୍ତେ ଚାଲି ଆସିଲା ନାକ ଉପରକୁ । ପରେ ପରେ ଖସି ଆସିଲା ପେଟ ଉପରକୁ । ସେଇଠୁ ସେ ସିଧା ଉଡି ଆସିଲା ବଇଦା ଆଡକୁ । ନିମିଷକେ ପଶିଗଲା ପଞ୍ଜାବୀ ଭିତରେ । ନା ଥିଲା ଖଡଖଡ, ନା ଥିଲା ଧଡଧଡ । ବଇଦାକୁ ଲାଗୁଥିଲା ଏକ ଅମୃତ ଅନୁଭବ । ସେ ପାଗଳଙ୍କ ପରି ଦୌଡୁଥିଲା ଘର ଆଡକୁ । ବଇଦା ଆଖିରୁ ଲୁହ ବହି ଯାଉଥିଲା । କୋହରେ ଛାତିଟା ଗୁମୁରୁ ଉଠୁଥିଲା ।



ଘରେ ପହଞ୍ଚି ପହଞ୍ଚି ପତ୍ନୀ କହୁଥିଲେ– କ'ଣ ତୁମ ଦେହଟା–କର୍ପୂର–ଚନ୍ଦନ ବାସୁଛି' । ବଇଦା ହସୁଥିଲା ଆତ୍ମତୃପ୍ତିର ହସ । ଏଥର ସାର୍ଟ ଖୋଲିଦେଲା ବଇଦା । କହିଲା– ଦେଖ ଝିଣ୍ଟିକାଟି ମୋ ସାର୍ଟକୁ କିପରି ଜାବୁଡ଼ି ଧରିଛି । ସେ ଧୀର ହାତରେ ଧରୁ ଧରୁ ଝିଣ୍ଟିକାଟି ଡିଆଁଟେ ମାରି ଉଡିଗଲା ଘର ଦୁଆର ମୁହଁରେ ଥିବା ଚିତ୍ରିତ ଜଗନ୍ନାଥଙ୍କ ଉପରକୁ । ବଇଦା ନିର୍ନିଶେଷ ନୟନରେ ଚାହିଁ ରହିଥିଲା ଝିଣ୍ଟିକାଟିକୁ । ସତେ ଯେପରି ଝିଣ୍ଟିକାଟି କହୁଥିଲା– ଯଦି ମଣିଷ ଛୁଇଁଲେ ଛୁଆଁ ହୋଇଯିବ, ମହାପାପ ହୋଇଯିବ, ତେବେ ମୁଁ ତ ଇତର ପକ୍ଷୀଟିଏ । ମୁଁ କିପରି ବିଶ୍ୱଦେବତାଙ୍କୁ ଛୁଇଁ ପାରିଲି ? ହେଲେ ପୃଷ୍ଠା ୬୯ର ସେହି ଜାଗରଣ ଭିତରେ ତୁମ ଦେହରେ ରହି ଆଜି ତ ଠାକୁରଙ୍କୁ ଛୁଇଁ ଦେଇଛି' । ବଇଦାର ଆଖିରୁ ଲୁହ ଗଡି ଯାଉଥିଲା । ସେହି ପବିତ୍ର ଦିନର ସ୍ମରଣୀୟ ରାତିରେ ଶୋଇଯାଇ ସେ ପ୍ରଶ୍ନ କରୁଥିଲା– 'ମୁଁ ତୁମକୁ କାହିଁକି ଛୁଏଁ ଠାକୁର ? ତୁମ ପେଟରେ ହାତ ଲଗାଇ ଦେଇ, ତୁମ ବାହୁର ସ୍ପର୍ଶ ନେଇ, ମୁଁ କ'ଣ ପାଏ ? ତଥାପି ମୁଁ ଛୁଇଁବାରେ କେତେ ଆନନ୍ଦ ପାଏ ! ତୁମେ କ'ଣ ସତରେ ଭକ୍ତ ଛୁଇଁଲେ ଛୁଆଁ ହୋଇଯାଅ ? ତୁମେ ଛୁଆଁ ହୁଅନି ବୋଲି ତ ତୁମେ 'ଜଗନ୍ନାଥ' ବିଶ୍ୱର ଅନ୍ୟ ଠାକୁରଙ୍କଠାରୁ ଭିନ୍ନ । ତୁମେ ପରା ଗୋପୀ, ଗୋପାଳ, ମୀରା, ଶବରୀ, ଦାସିଆ ଏମିତି ସହସ୍ର ସହସ୍ରଙ୍କୁ ଛୁଇଁଛ । ସତରେ ତୁମେ କ'ଣ ଏମିତି ଲକ୍ଷ ଲକ୍ଷ ଭକ୍ତଙ୍କୁ ସବୁଦିନ ଦୂରେଇ ଦେବ ଠାକୁର ! ଆଦେଶ ଓ ଆଇନ କ'ଣ ତୁମ ନିର୍ଦ୍ଦେଶରେ ଦିନେ ବଦଳି ଯିବନି ? ସତରେ କ'ଣ ବ୍ରହ୍ମଙ୍କୁ ଆତଙ୍କବାଦୀ, ବିଧର୍ମୀ, ମାଓବାଦୀ କିଛି କରିପାରେ ? ତୁମ ନିର୍ଦ୍ଦେଶ ବିନା ପରା ପତ୍ର ହଲେନି, ଫୁଲ ଫୁଟେନି, ବର୍ଷା ଝରେନି ! ତେବେ କାହିଁକି ଏ ନାଟ, ନାଟୁଆ ନଟବର ! ହେ ଠାକୁର ! ଆମେ ନ ଛୁଇଁଲେ ବି ତୁମେ ଏମିତି ଝିଣ୍ଟିକା ଦେହରେ ଚାଲି ଆସି ଆମକୁ ଛୁଇଁଯାଅ, ଆମକୁ ଅମୃତମୟ କର, ଭାବମୟ କର, ଠାକୁରମୟ କର । ବଇଦା'ର କଥାରେ ଝିଣ୍ଟିକା ସତେ ଯେପରି ମୁଣ୍ଡ ଟୁଙ୍ଗାରି ହଁ ମାରୁଥିଲା । ସେ ଯେପରି କହୁଥିଲା– ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ଯେଉଁ ଠାକୁର ରତ୍ନସିଂହାସନ ଛାଡି ବଡଦାଣ୍ଡକୁ ଓହ୍ଲାଇ ଆସନ୍ତି, ତାଙ୍କୁ ଛୁଇଁବାକୁ ମନା କରିବ କିଏ ? ସେ'ତ ସବୁ ଭକ୍ତଙ୍କୁ ଛୁଇଁଯିବେ । ଝିଣ୍ଟିକା କଥାରେ ସତେ ଯେପରି ହସୁଥିଲେ ଚିତ୍ରିତ ଜଗନ୍ନାଥ ।

ଆଶୀର୍ବାଦ, ଗୁଣ୍ଡିଚା ବିହାର, ସର୍ବୋଦୟ ନଗର
ପୁରୀ–୭୫୨୦୦୨

# ନୀଳକନ୍ଦରରେ ନୀଳମାଧବ

ସୌଭାଗିନୀ ରାୟ

ପହିଲେ ପ୍ରଣମି ନୀଳ କନ୍ଦରରେ
ଶ୍ରୀନୀଳମାଧବଠାରେ
ନୀଳାଦ୍ରି ବିହାରୀ ବିଜେ ହୋଇଛନ୍ତି
ନୀଳାଚଳ ଧାମରେ ।
ନୀଳାଚଳନାଥ ନାମ ବହିଛନ୍ତି
ନିବାସ ତ ନୀଳଗିରି
ନୀଳାଦ୍ରୀଶ ନାମେ ବସିଛନ୍ତି ପରା
ସୁଦର୍ଶନ ଚକ୍ର ଧରି
ନୀଳ ପାରାବାର ଧୋଉ ଅଛି ପାଦ
ତା'ନୀଳ ଜଳ ରାଶିରେ
ସୁନୀଳ ଆକାଶ ଖରାଛାଇ ଢାଳେ
ନୀଳଚକ୍ର ବାନାପରେ
ନୀଳପାଟେ ଶୋଭା ଶରୀର ଯାହାର
ତୁଳସୀର ମାଳେ ଶୋଭା
ନୀଳ ପଦ୍ମପରି ନୟନ ତାହାର
ଆହା କେତେ ମନଲୋଭା
ନୀଳାଦ୍ରି କେଶରୀ ନୀଳ ଶଇଳରେ
ନୀଳମଣି ନାମ ବହି
ଶିରୀମନ୍ଦିରରେ ନୀଳ ସମାବେଶ
ଅଧମକୁ କର ତ୍ରାହି ।

ପାଣିଶାଳିଆ, ଚାଟରା, ଜଗତସିଂହପୁର



# ଶ୍ରୀଜୀଉଙ୍କ ରୂପକାନ୍ତିରେ ଟାହିଆର ଭୂମିକା: ଏକ ଅବଲୋକନ

ଶ୍ୟାମ ପ୍ରକାଶ ସେନାପତି

କଳା ମେଘମାଳା ଆକାଶର ଅଗଣା ଛାଡ଼ି ଲମ୍ବି ଆସିଲେ ମାଟିକୁ, ମାଟିହୁଏ ମହୋତ୍ସବମୟ । ବଡ଼ଠାକୁରଙ୍କ ନୀତିକାନ୍ତିରେ ନୂଆ ଅଙ୍ଗରାଗ ସୃଷ୍ଟି ହୁଏ ବିହ୍ୱଳ ଭକ୍ତସମାଜ ପାଇଁ । ଶ୍ରୀମନ୍ଦିର ଛାଡ଼ି ସ୍ନାନମଣ୍ଡପକୁ ବିଜେ କରନ୍ତି ଶ୍ରୀଜଗନ୍ନାଥ । ଗ୍ରୀଷ୍ମର ଉତ୍ତାପକୁ ଦୂରେଇ ଦେବାପାଇଁ ସୁନାକୂଅର ସୁଶୀତଳ ଜଳରେ ମହାପ୍ରଭୁ ସ୍ନାନ କରନ୍ତି । ଧାଡ଼ି ପହଣ୍ଡିରେ ଚତୁର୍ଦ୍ଧାବିଗ୍ରହ ବିଜେ କରନ୍ତି ସ୍ନାନ ମଣ୍ଡପକୁ । ଓଃ, କି ଅପୂର୍ବ ସେ ଦୃଶ୍ୟ ! ଭକ୍ତ ଓ ଭଗବାନଙ୍କର ମିଳନ । ମୁଣ୍ଡ ଉପରେ ଶୋଭା ପାଉଥାଏ ଟାହିଆ । ପରଂପରାକ୍ରମେ ରାଘବଦାସ ମଠ ଶ୍ରୀଜୀଉମାନଙ୍କ ଲାଗି ସୋଲ, ବାଉଁଶପାତିଆ, ଦୁବ, ତୁଳସୀ ଓ ବିଭିନ୍ନ ରଙ୍ଗବେରଙ୍ଗ ଫୁଲମାଳରେ ଟାହିଆ ପ୍ରସ୍ତୁତ କରି ଠାକୁରଙ୍କ ମଥାଲାଗି କରନ୍ତି । ଏ ଟାହିଆ ଦେଖିଲେ ବିହ୍ୱଳିତ ଭକ୍ତଜନ ଲମ୍ବିଯାନ୍ତି ଦ୍ୱାପରକୁ । ମାତା ଯଶୋଦାଙ୍କ କୋଳ ଛାଡ଼ି ଗୋପପୁରର ଦୁଇଭାଇ କୃଷ୍ଣ– ବଳରାମ ଗୋଧନ ପଲ ସହ ଯାଉଥିଲେ ଜଙ୍ଗଲକୁ । ଜଙ୍ଗଲରେ ଖଟା–ମିଠା ଫଳ ଖାଇ ଫୁଲ–ପତ୍ରରେ ସଜାଇ ହେଉଥିଲେ ନିଜକୁ । ପାଚିଲା ଜାମୁଡ଼ାଳ ମଥାରେ ଖୋସୁଥିଲେ । ବନଫୁଲର ବାସ୍ନାରେ ମହକି ଉଠୁଥିଲା ଦେହ । ଗୋଧୂଳିବେଳାର ସୂର୍ଯ୍ୟ ସୁନାରଙ୍ଗ ବିଞ୍ଚିଦେଉଥିଲା ଗୋପଦାଣ୍ଡରେ । ବାଛୁରୀଙ୍କ କଣ୍ଠ ବନ୍ଧା ଘଣ୍ଟିର ନିକ୍ୱଣ ଧ୍ୱନିରେ ସୃଷ୍ଟି ହେଉଥିଲା ଏକ ଅପୂର୍ବ ନାଦ । ପକ୍ଷୀମାନେ ଉଡ଼ିଆସି ଏ ଶୋଭାଯାତ୍ରାରେ ଯୋଗ ଦେଉଥିଲେ । ଆକାଶରେ ଛଳଛଳ ମେଘ, ଗାଁ ଦାଣ୍ଡରେ ଗୋପବାଳାଙ୍କ ପ୍ରତୀକ୍ଷିତ ଆଖି ଓ କୃଷ୍ଣଙ୍କ ଓଠରେ ବାଉଁଶର ବଂଶୀ । ଉଚ୍ଛୁଳି ଉଠୁଛି ଯମୁନା, ତ୍ରିଭଙ୍ଗୀ ଠାଣିରେ ପୀତବସନ ପିନ୍ଧି ନାଚିନାଚି ଆସୁଛନ୍ତି ଶ୍ରୀକୃଷ୍ଣ । କି ଅପୂର୍ବ ସେ ସମ୍ଭାର । ଅଣ୍ଟାଭଙ୍ଗା ନୃତ୍ୟରେ ନଇଁପଡୁଛି ମୁଣ୍ଡର ଜାମୁଡ଼ାଳି । ସପ୍ତଫଣା ଆଚ୍ଛାଦିତ ସର୍ପ ଯେପରି ସୁରକ୍ଷା ଦେଉଛି ଶ୍ରୀବିଷ୍ଣୁଙ୍କୁ କ୍ଷୀର ସମୁଦ୍ରରେ, ଠିକ୍ ସେମିତି ରଙ୍ଗବେରଙ୍ଗର ଜାମୁଡ଼ାଳି ଟାହିଆ ପରି ନାଚି ଉଠୁଛି କୃଷ୍ଣଙ୍କ ମୁଣ୍ଡରେ । ଆଦିବାସୀ ସଂସ୍କୃତିର ନୀଳମାଧବ ଫୁଲଫଳ ପତ୍ରରେ ସୁଶୋଭିତ ହୋଇ ଗିରିକନ୍ଦରରେ ପୂଜା ପାଉଥିଲେ । ସେସମୟର ରଙ୍ଗବେରଙ୍ଗର ଜାମୁଡ଼ାଳି ଆଜି ବଦଳିଯାଇଛି ରାଘବଦାସ ମଠର ଟାହିଆରେ । ବିନା ଟାହିଆରେ କ'ଣ ଶ୍ରୀଜୀଉଙ୍କ ପହଣ୍ଡି କଳ୍ପନା କରିହେବ ?

ପହଣ୍ଡି ସମୟରେ ପ୍ରଭୁ ଶ୍ରୀବଳଭଦ୍ର ଓ ଶ୍ରୀଜଗନ୍ନାଥ ମସ୍ତକରେ ଧାରଣ କରିଥିବା ଟାହିଆର ଗଠନରେ ଉନ୍ନତ କଳାତ୍ମକ ରୁଚିବୋଧର ପରିଚୟ ମିଳିଥାଏ । ଏହି ଟାହିଆ ଭୂଷଣରେ ରହି ମହାପ୍ରଭୁ କୋଟିକୋଟି ଭାବପ୍ରବଣ ହୃଦୟକୁ କାଳକାଳ ଧରି ଆଲୋଡ଼ିତ କରି ଆସିଛନ୍ତି । ମହାପ୍ରଭୁ ଢଳିଢ଼ଳି ପହଣ୍ଡିରେ ଆସିବା ସମୟରେ ଏହି ଟାହିଆ ସତେ ଯେପରି ତାଙ୍କ ସହିତ ଝୁଲିଝୁଲି ତାଳ ଦେଉଥାଏ । ପହଣ୍ଡିକାଳୀନ ଏହି ରୂପକୁ ତ୍ରୈଲୋକ୍ୟ ସୁଖଦାୟକ ବୋଲି 'ନୀଳାଦ୍ରି ମହୋଦୟ'ରେ ବର୍ଣ୍ଣିତ ଅଛି । ପହଣ୍ଡି ସମୟରେ ପ୍ରଭୁ ଶ୍ରୀବଳଭଦ୍ର ଓ ଶ୍ରୀଜଗନ୍ନାଥଙ୍କ ମସ୍ତକ ଉପରେ ଶୋଭା ପାଉଥିବା ଏହି ଦୋଳାୟମାନ ଟାହିଆ ଯେଉଁ ମହାନ୍ ସତ୍ୟ ଘୋଷଣା କରେ, ତାହା ଓଡ଼ିଆ କବିଙ୍କ ଲେଖନୀରେ ଜୀବନ୍ତ ହୋଇଛି । ଯଥା :

ଯାତ୍ରା ବେଳେ ଟାହିଆ ଭାଷଇ
ବ୍ରହ୍ମ ସଂସାରେ ସତ୍ୟ ଅଟଇ ।

ଅର୍ଥାତ୍ – ବ୍ରହ୍ମ ସତ୍ୟ ଓ ଜଗତ୍ ମିଥ୍ୟା । ଏହି ମହାନ୍ ବାଣୀ ଟାହିଆର ଦୋଳନ ଫଳରେ ପ୍ରଚାରିତ ହୋଇଥାଏ ।



ରତ୍ନସିଂହାସନସ୍ଥ ବିଗ୍ରହମାନଙ୍କର ପହଣ୍ଡି ବିଜେ ବର୍ଷ ମଧ୍ୟରେ ଛଅ ଥର ଅନୁଷ୍ଠିତ ହୋଇଥାଏ । ଜ୍ୟେଷ୍ଠ ପୂର୍ଣ୍ଣିମା ତିଥି ପବିତ୍ର ସ୍ନାନପୂର୍ଣ୍ଣିମା ଦିନ ରତ୍ନସିଂହାସନରୁ ସ୍ନାନବେଦୀକୁ ଧାଡ଼ି ପହଣ୍ଡିରେ, ସ୍ନାନପୂର୍ଣ୍ଣିମା ଦିନ ରାତ୍ରରେ ସ୍ନାନବେଦୀରୁ ରତ୍ନସିଂହାସନ ନିକଟ ଅଣସର ପିଣ୍ଡିକୁ ଗୋଟି ପହଣ୍ଡିରେ, ଆଷାଢ଼ ଶୁକ୍ଳପକ୍ଷ ଦ୍ୱିତୀୟା ପବିତ୍ର ଶ୍ରୀଗୁଣ୍ଡିଚା ବା ରଥଯାତ୍ରା ଦିନ ପୂର୍ବାହ୍ଣରେ ଶ୍ରୀମନ୍ଦିର ଗର୍ଭଗୃହସ୍ଥ ଅଣସର ପିଣ୍ଡିରୁ ରଥ ଉପରକୁ ଧାଡ଼ି ପହଣ୍ଡିରେ, ରଥରୁ ଗୁଣ୍ଡିଚା ମନ୍ଦିର ଆଡ଼ପ ସିଂହାସନକୁ ଗୋଟି ପହଣ୍ଡିରେ, ବାହୁଡ଼ାଯାତ୍ରା ଦିନ ଗୁଣ୍ଡିଚା ମନ୍ଦିର ଆଡ଼ପ ସିଂହାସନରୁ ରଥ ଉପରକୁ ଧାଡ଼ି ପହଣ୍ଡିରେ ଏବଂ ନୀଳାଦ୍ରି ବିଜେ ଦିନ ସନ୍ଧ୍ୟାରେ ରଥରୁ ଶ୍ରୀମନ୍ଦିର ରତ୍ନସିଂହାସନକୁ ଗୋଟି ପହଣ୍ଡିରେ ବିଜେ ହୁଅନ୍ତି । ସ୍ନାନ ପୂର୍ଣ୍ଣିମାଠାରୁ ନୀଳାଦ୍ରିବିଜେ ପର୍ଯ୍ୟନ୍ତ ଶ୍ରୀଜୀଉମାନେ ଦଇତାସେବକ (ବିଶ୍ୱାବସୁ ଶବର ବଂଶଜ) ମାନଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ରହୁଥିବାରୁ ସମସ୍ତ ପହଣ୍ଡି ବିଜେ ମୁଖ୍ୟତଃ ସେମାନଙ୍କ ଦ୍ୱାରା ନିର୍ବାହ ହୋଇଥାଏ । ମହାପ୍ରଭୁଙ୍କ ଗୋଟି ପହଣ୍ଡି ଓ ଧାଡ଼ି ପହଣ୍ଡିରେ ଏହି ଟାହିଆ ଲାଗି ହୋଇଥାଏ । ପହଣ୍ଡି ବେଳେ ଟାହିଆରେ ସୁସଜ୍ଜିତ ଠାକୁର ଝୁଲିଝୁଲି ଆସୁଥିବା ଦୃଶ୍ୟ ଭକ୍ତଙ୍କୁ ବିମୁଗ୍ଧ କରିଥାଏ । ମଙ୍ଗଳାର୍ପଣ କରାଯାଇ ଡୋର ଲାଗି ପରେ ପହଣ୍ଡି ଆରମ୍ଭ ହୋଇଥାଏ । ପବିତ୍ର ସ୍ନାନ ପୂର୍ଣ୍ଣିମାରେ ଶ୍ରୀବିଗ୍ରହମାନେ ପହଣ୍ଡି ବିଜେରେ ରତ୍ନସିଂହାସନରୁ କଳାହାଟ ଦ୍ୱାର, ଜୟବିଜୟ ଦ୍ୱାର, ନାଟମଣ୍ଡପ, ସାତପାହାଚ, ପାଟଅଗଣା ଓ ଆନନ୍ଦବଜାର ଦେଇ ସ୍ନାନବେଦୀକୁ ଆସିଥାନ୍ତି । ଶ୍ରୀବିଗ୍ରହମାନଙ୍କୁ ସାତପାହାଚଠାରେ ଟାହିଆ ପିନ୍ଧାଯାଇଥାଏ । ସ୍ନାନ ପୂର୍ଣ୍ଣିମାଠାରୁ ନୀଳାଦ୍ରିବିଜେ ପର୍ଯ୍ୟନ୍ତ ଶ୍ରୀଜୀଉଙ୍କୁ ସମୁଦାୟ ଛଅଥର ପହଣ୍ଡି ଅବସରରେ ଶ୍ରୀଅଙ୍ଗରେ ଏହା ଲାଗି ହୋଇଥାଏ । ଶ୍ରୀଜୀଉମାନଙ୍କ ପାଇଁ ସମସ୍ତ ଯାତ୍ରାରେ ମୋଟ ୨୪ଟି ଟାହିଆ ଲାଗି ହୋଇଥାଏ ।

### ଟାହିଆ ପ୍ରସ୍ତୁତି ଓ ପ୍ରଣାଳୀ

ଟାହିଆ ପ୍ରସ୍ତୁତିରେ ମଧ୍ୟ ସବୁ ଶିଳ୍ପ ଭଳି ପାରଂପରିକ ମାପ, ନିୟମ ଓ କୌଶଳ ନିହିତ ଥାଏ । ଏହି ଟାହିଆ ପ୍ରସ୍ତୁତିରେ ପଇତା ସୂତା ଓ କଦଳୀ ପଟୁକା ବ୍ୟତୀତ ଅନ୍ୟ କୌଣସି ସୂତା ବ୍ୟବହୃତ ହୁଏ ନାହିଁ । ଏଥିରେ ସୋଲ ନିର୍ମିତ ଉପକରଣ ସବୁକୁ ଖଞ୍ଜିବା ପାଇଁ କେବଳ କଇଥ ଅଠା ବ୍ୟବହାର କରାଯାଏ । ମୁଖ୍ୟତଃ ଗୋଚ୍ଛିକାର, ପୁଷ୍ପାଳକ, ସିଂହାରୀ, ପଣ୍ଡା, ରଣା, ଦୀକ୍ଷିତ ପ୍ରଭୃତି ସେବାୟତବର୍ଗର ଶିଳ୍ପୀମାନେ ଏହି କାର୍ଯ୍ୟରେ ନିୟୋଜିତ ଥାନ୍ତି । ଏହି ଟାହିଆର ଗଠନଶୈଳୀ ଅତ୍ୟନ୍ତ ଅଭିନବ ଅଟେ । ରଙ୍ଗ, ଜରି, ବାଉଁଶ, କଦଳୀପଟ, ସୋଲ, ରଙ୍ଗୀନ ସୂତା କନା, କଇଥ ଅଠା, ହିଙ୍ଗୁଳରୁ ଲାଲ ରଂଗ, ହରିତାଳରୁ ହଳଦିଆ ରଂଗ, ମାଧବୀପତ୍ର, ରଙ୍ଗଣି, ଚମ୍ପା, ମଲ୍ଲୀ, ମାଳତୀ, କିଆ, ଟଗର, ପଦ୍ମ, ତୁଳସୀ, ଦୁବ, ଦୟଣା ଇତ୍ୟାଦିର ସୁସମନ୍ୱୟରେ ଏହି ଭୁବନ ବିଦିତ ଟାହିଆ ନିର୍ମିତ ହୁଏ । ଏହି ଟାହିଆର ପ୍ରସ୍ତୁତିକରଣ ପାଇଁ ସାଧାରଣତଃ ପ୍ରାୟ ଅଢ଼େଇରୁ ତିନିମାସ ସମୟ ଲାଗିଥାଏ । ଟାହିଆ ନିର୍ମାଣର ପ୍ରଥମ ସ୍ତରରେ ପ୍ରଥମେ ବାଉଁଶଗୁଡ଼ିକୁ ଚିରି ଆଡ଼ି ପ୍ରସ୍ତୁତ କରାଯାଏ । ତା'ପରେ ନିମ୍ନରେ ପ୍ରାୟ ତିନିହାତ ଲମ୍ବ ଆଡ଼ିର ମଧ୍ୟ ଭାଗରେ ୯୦ ଡିଗ୍ରୀ କୋଣ ସୃଷ୍ଟି କରି ମେରୁ କାଠି ଶକ୍ତ ଭାବରେ ବନ୍ଧାଯାଏ । ସେହି ମେରୁକାଠିର ମୂଳରୁ ପୂର୍ବ ପ୍ରସ୍ତୁତ ସରୁ କାଠି ସବୁ ନିର୍ଦ୍ଦିଷ୍ଟ ସଂଖ୍ୟାରେ ଖଞ୍ଜାଯାଏ । ଅନ୍ୟ କେତୋଟି ବାନ୍ଧୁଣି ସହିତ କେତେକ ପଇତା ସୂତାରେ ସେଗୁଡ଼ିକୁ ବାନ୍ଧି ମେଘ ଭଳି ଏକ ଢାଞ୍ଚା ପ୍ରସ୍ତୁତ କରାଯାଏ । ପ୍ରତି କାଠିରେ ପାନପତ୍ର, ଠିକିରି, କଦମ୍ବ ଫୁଲ, କଡ଼ି ଆଦି କାଗଜ ଓ ଜରି ଫର୍ଦ୍ଦ ସାହାଯ୍ୟରେ ପ୍ରସ୍ତୁତ ହୋଇ ନିୟମାନୁସାରେ ଲାଗିଥାଏ । ବିଭିନ୍ନ ଫୁଲ ସଜ୍ଜୀକରଣ ପରେ ଟାହିଆର ମଝି ମେରୁର ଅଗ୍ରଭାଗରେ ଦୁବ, ଦୟଣା, ମରୁଆ ଓ ଫୁଲ ଗୁଚ୍ଛ ଲଗାଯାଇଥାଏ । ଶ୍ରୀଜଗନ୍ନାଥ ଏବଂ ଶ୍ରୀବଳଭଦ୍ରଙ୍କ ପାଇଁ ଟାହିଆ ପ୍ରସ୍ତୁତ ହେଉଥିବା ବେଳେ ଶ୍ରୀସୁଦର୍ଶନ ଓ ଦେବୀ ସୁଭଦ୍ରାଙ୍କ ନିମନ୍ତେ ଚୂଳକାଠି ପ୍ରସ୍ତୁତ ହୋଇଥାଏ । ସ୍ନାନଯାତ୍ରା କାଳରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଟାହିଆରେ ଖଞ୍ଜା ଯାଇଥାଏ ମୋଟ ୨୫ଟି କାଠି, ବଡ଼ଠାକୁର ଶ୍ରୀବଳଭଦ୍ରଙ୍କ ଟାହିଆରେ ୨୧ଟି କାଠି, ଦେବୀ ସୁଭଦ୍ରାଙ୍କ ଟାହିଆ ଗୋଲେଇ ଆକାରର ବତା ନ ଲାଗି ଖାଲି ଖଣ୍ଡିଏ କାଠିରେ ଦୁବ ଓ ଫୁଲର ଚୂଳ ଏବଂ ଚକ୍ରରାଜ ଶ୍ରୀସୁଦର୍ଶନଙ୍କର ସେଇମିତି ବି ଖଣ୍ଡିଏ କାଠିରେ ଦୁବ



ଆଉ ପୁଷ୍ପରେ ଚୂଳ ଟୋପର ଭଳି ତିଆରି ହୋଇ ଲାଗି କରାଯାଇଥାଏ । ଶ୍ରୀଗୁଣ୍ଡିଚା ଯାତ୍ରାରେ ଶ୍ରୀଜଗନ୍ନାଥଙ୍କ ଟାହିଆରେ ୩୭କାଠି ଲାଗୁଥିବା ବେଳେ ଶ୍ରୀବଳଭଦ୍ରଙ୍କ ଟାହିଆରେ ୩୩କାଠି ଖଞ୍ଜା ଯାଇଥାଏ । ମହାପ୍ରଭୁ ଶ୍ରୀଜଗନ୍ନାଥ ଓ ବଡ଼ଠାକୁର ଶ୍ରୀବଳଭଦ୍ରଙ୍କ ଟାହିଆ ଭିତରେ ମାତ୍ର ୪ଟି କାଠି ଅଧିକ ଥିବାର ଦେଖାଯାଏ । ଟାହିଆ ତିଆରି ସରିଗଲା ପରେ ଜଣେ ସେବକ ଦିହୁଡ଼ି ଜଳାଇ ଆଗରେ ଆସନ୍ତି । ତାଙ୍କ ପଛରେ କାରିଗର ଓ ମାଳି ଟାହିଆ ଧରି ଶ୍ରୀମନ୍ଦିରକୁ ଆସି ଜଗମୋହନରେ ଟାହିଆକୁ ରଖନ୍ତି । ଏହି ଟାହିଆ ତିଆରି ସମୟରେ ସେବକ କାରିଗରମାନେ ହବିଷ୍ୟାନ୍ନରେ ରହନ୍ତି ।

**ରାଘବଦାସ ମଠ :** ଭକ୍ତ ରଘୁ ଅରକ୍ଷିତ ଦାସଙ୍କ ସ୍ମୃତିରେ ରାଘବ ଦାସ ମଠ ପ୍ରତିଷ୍ଠିତ । ପୁରୀରେ ଥିବା ଶ୍ରୀରାମାନୁଜ ସଂପ୍ରଦାୟର ୧୫ଗୋଟି ମଠ ମଧ୍ୟରେ ଏହି ମଠ ଅନ୍ୟତମ । ଶ୍ରୀମନ୍ଦିରର ଦକ୍ଷିଣପଟ ପୂର୍ବକୋଣ ବାଲିସାହିରେ ଏହି ମଠ ଅବସ୍ଥିତ । ଏହି ମଠକୁ କେହିକେହି ରଘୁ ଅରକ୍ଷିତ ମଠ ବୋଲି କହିଥାନ୍ତି । ରାଘବଦାସ ମଠ ପକ୍ଷରୁ ଶ୍ରୀଜୀଉମାନଙ୍କ ନିମନ୍ତେ ଟାହିଆ ପ୍ରସ୍ତୁତ କରାଯିବା ପଛରେ କାରଣଟି ହେଲା– ଗଜପତି ଶ୍ରୀପୁରୁଷୋତ୍ତମ ଦେବଙ୍କ ରାଜତ୍ୱ ସମୟ । ଚନ୍ଦନ ଚାପ ଚାଲିଥିଲା । ହଠାତ୍ ପ୍ରବଳ ଝଡ଼ ତୋଫାନ ହେଲା । ଚନ୍ଦନ ଚାପ ଡଙ୍ଗା ବୁଡ଼ିଗଲା । ତା' ସହିତ ଚଳନ୍ତି ପ୍ରତିମା ମଦନମୋହନ ମଧ୍ୟ ବୁଡ଼ିଗଲେ । କିନ୍ତୁ ବିଗ୍ରହ ନ ମିଳିବାରୁ ଗଜପତି ସମସ୍ତ ମଠ, ମହନ୍ତ ତଥା ପଣ୍ଡିତମାନଙ୍କୁ ନିବେଦନ କଲେ ବୁଡ଼ିଯାଇଥିବା ମୂଳ ବିଗ୍ରହଙ୍କର ବିକଳ୍ପ କିଏ ଦେଇପାରିବ ? ରାଜାଜ୍ଞାରେ ରାଘବ ଦାସ ମଠର ପ୍ରତିମା ମଦନସୁନ୍ଦର ଆସି ଚନ୍ଦନ ଚାପ ସେବାରେ ଲାଗିଥିଲେ । ଏହି ମହତ୍ ସେବା ନିମନ୍ତେ ଗଜପତି ଏହି ଟାହିଆ ସେବାକୁ ରାଘବଦାସ ମଠକୁ ପ୍ରଦାନ କରିଥିଲେ । ଏଣୁ ଶ୍ରୀମନ୍ଦିର ଓ ମହାପ୍ରଭୁଙ୍କ ବିଭିନ୍ନ ନୀତିକାନ୍ତି ସହିତ ଏହି ମଠର ସଂପର୍କ ସହସ୍ରାଧିକ ବର୍ଷର । ଜଣାଯାଏ, ରଘୁ ଦାସଙ୍କୁ ମହାରାଜା 'ସାହିନାୟକ' ଉପାଧିରେ ଭୂଷିତ କରିଥିଲେ । ଏହି ଟାହିଆ ସେବା ବ୍ୟତୀତ ମଠ ପକ୍ଷରୁ ଶ୍ରୀଜୀଉଙ୍କ ଚନ୍ଦନଯାତ୍ରାରେ ପନ୍ତି ଭୋଗ କରାଯିବା ସହିତ ଦେବସ୍ନାନ ପୂର୍ଣ୍ଣିମା ଦିନ ସ୍ନାନମଣ୍ଡପ ଉପରେ ଅନୁଷ୍ଠିତ ହେଉଥିବା ଶ୍ରୀଜୀଉଙ୍କ ଗଜାନନ ବେଶ ମଠ ପକ୍ଷରୁ ଯୋଗାଇ ଦିଆଯାଇଥାଏ । ଏହି ମଠ ଦୈନିକ ଶ୍ରୀମନ୍ଦିରକୁ ବଲ୍ଲଭ ଯୋଗାନ୍ତି । କାର୍ତ୍ତିକ ମାସରେ ବାଳଧୂପ ଯୋଗାନ୍ତି ଏବଂ ଅଣସର ସମୟରେ ଅଣସର ପିଣ୍ଡିରେ ଚକଟା ଭୋଗ କରାନ୍ତି । ଖଳିଲାଗି ଏକାଦଶୀ ଦିନ ସର୍ବାଙ୍ଗ ନୀତି ପାଇଁ ସାଢ଼େ ସାତସେର ଚନ୍ଦନ କାଠ ମଠ ଯୋଗାଇବା ସହିତ ବାହୁଡ଼ାଯାତ୍ରା ପରେ ରଥ ଉପରେ ଅଧରପଣା ଭୋଗ ମଧ୍ୟ କରାନ୍ତି ।

ଟାହିଆ ଆଦିବାସୀ ସଭ୍ୟତାର ଆଦିକାଳର ସୃଷ୍ଟି ବୋଲି ବିଶ୍ୱାସ ରହିଛି । ଶ୍ରୀଜଗନ୍ନାଥ ଓ ଆଦିବାସୀ ସଂପ୍ରଦାୟର ନିବିଡ଼ ସଂପର୍କ ରହିଛି । ପହଣ୍ଡି ବିଜେ ସାଧାରଣତଃ ଏହା ଶାବର ନୃତ୍ୟରେ ହିଁ ପ୍ରତିଫଳିତ ହୋଇଥାଏ । ଶ୍ରୀଜଗନ୍ନାଥ ଧର୍ମ ଓ ସଂସ୍କୃତିରେ ଟାହିଆର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ସପ୍ତଫଣା ବିଶିଷ୍ଟ ସର୍ପର ଶେଯରେ ଅନନ୍ତ ଶୟନରେ ଥିବା ମହାବିଷ୍ଣୁ, ଗୋପଦାଣ୍ଡରେ ଜାମୁଡ଼ାଳି ମଥାରେ ଭିଡ଼ି ନୃତ୍ୟରତ କଳାକାହ୍ନୁ, ବିଶ୍ୱାବସୁ ପୂଜିତ ବଣଫୁଲ ମଥାଧାରୀ ନୀଳମାଧବ– ଏସବୁ ସଂସ୍କୃତିର ଏକ ସମନ୍ୱିତ ସାରାଂଶ ମହାପ୍ରଭୁଙ୍କ 'ଟାହିଆ' । ବଡ଼ଦେଉଳ ଛାଡ଼ି ଚତୁର୍ଦ୍ଧାମୂର୍ତ୍ତି ଯେବେ ବାହାରକୁ ଆସନ୍ତି, ସେତେବେଳେ ଟାହିଆ ଶୋଭିତ ହୋଇ ଭକ୍ତସମାଜକୁ ସ୍ୱାଗତ କରନ୍ତି । କାଳିଆ ଠାକୁରଙ୍କ ମୁଣ୍ଡରେ ହଲୁଥିବା ଟାହିଆ ଦୂରରେ ଠିଆ ହୋଇଥିବା ଭକ୍ତଙ୍କୁ ଡାକେ ଆ, ଆ... । ମିଶିଯାଅ ମହାଭାବର ସମୁଦ୍ରରେ । ପହଣ୍ଡିରେ ମସ୍ତକରେ ନର୍ତ୍ତନ କରୁଥିବା ଟାହିଆ କହେ, ଆସ ଏକାକାର ହୋଇଯାଅ ମୋ ସାଥୀରେ । ବିନା ଟାହିଆରେ ଶ୍ରୀଜଗନ୍ନାଥଙ୍କ ପହଣ୍ଡି କ'ଣ ସୁନ୍ଦର ଦିଶିବ ? ସେ ପରା ରାଜାଧିରାଜ । ହୀରା, ମୋତି, ସୁନାର ମୁକୁଟ ତାକୁ କ'ଣ ସାଜିବ ? କାରଣ ସେ ଟାହିଆ ଭିତରେ ପଞ୍ଚଭୂତ ଏକାକାର । ସେ ଟାହିଆରେ ପ୍ରତିବିମ୍ବିତ ହେଉଛି ସବୁ ମଣିଷର ସ୍ୱପ୍ନ, ଭଲ ପାଇବା ଓ ପାପପୁଣ୍ୟର ପ୍ରତିବିମ୍ବ । 'ଟାହିଆ' ଶ୍ରୀଜଗନ୍ନାଥ ସଂସ୍କୃତି ଓ ଭକ୍ତଙ୍କ ଭାବାବେଗର ଏକ ଗୁରୁତ୍ୱପୂର୍ଣ୍ଣ ନିଦର୍ଶନ ।

ସଂପାଦକ– 'ଅଭିନନ୍ଦନିକା'
ସେନାପତି ଭବନ, ବଡ଼ଦାଣ୍ଡ, ପୁରୀ–୧



# ଶ୍ରୀଜଗନ୍ନାଥଙ୍କ ଅଣସର ଓ ରଥ ଉପର ଭୋଗ

ଡକ୍ଟର ଗଙ୍ଗୋତ୍ରୀ ଦେବୀ

ପରଂବ୍ରହ୍ମ ପରମାତ୍ମା ସମଗ୍ର ଜଗତର କର୍ତ୍ତା ମହାପ୍ରଭୁ ଶ୍ରୀଜଗନ୍ନାଥ ଦାରୁବ୍ରହ୍ମ ରୂପରେ ଶ୍ରୀକ୍ଷେତ୍ରରେ ବିରାଜମାନ କରିଛନ୍ତି । ବିଶ୍ୱାସର ଦୃଢ଼ତାରେ ତାଙ୍କୁ ଅନୁଭବ କରିହୁଏ । ପ୍ରତ୍ୟକ୍ଷ କିମ୍ବା ପରୋକ୍ଷରେ ତାଙ୍କରି କୃପା ବାରିଧିରେ ସିକ୍ତ ହୋଇପଡ଼େ ଏ ମନୁଷ୍ୟ । ମାନବମାନଙ୍କ ଗହଣରେ ବିଜୟ କରି ମାନବୀୟ ଲୀଳାରେ ଦୈନନ୍ଦିନ ପୂଜା ନୀତିରେ ସେ ସାମିଲ ହୋଇଥାଆନ୍ତି । ନିତ୍ୟ ପ୍ରାତଃ କାଳରୁ ନିଦ୍ରାଭଙ୍ଗ ହେବାଠାରୁ ରାତ୍ରୀର ପହଡ଼ ପର୍ଯ୍ୟନ୍ତ ବିବିଧ କର୍ମ ସମ୍ପାଦିତ ହୋଇଥାଏ ସାଧାରଣ ଜନ ଜୀବନ ଭଳି । କିନ୍ତୁ ଏହି ସାଧାରଣରେ ଅସାଧରଣ ସ୍ୱତନ୍ତ୍ର କର୍ମ କର୍ମାଣୀ, ଯାତ୍ରା ପର୍ବ ଆଦି ପାଳନ ମଧ୍ୟରେ ଭକ୍ତ ଓ ଭଗବାନ ଏକ ହୋଇଯାଆନ୍ତି । ଏହି ଯାତ୍ରାମାନଙ୍କ ମଧ୍ୟରୁ ଆଦ୍ୟ ଯାତ୍ରା ବା ସ୍ନାନଯାତ୍ରା ଯାହା ଜ୍ୟେଷ୍ଠ ପୂର୍ଣ୍ଣମୀଠାରୁ ପନ୍ଦର ଦିନ । ଅର୍ଥାତ୍ ଆଷାଢ଼ ଅମାବାସ୍ୟା ପର୍ଯ୍ୟନ୍ତ ଠାକୁରମାନେ ଅଣସରଘରେ ରହିବାର ନିୟମ । ଏହାକୁ ମଧ୍ୟ ନିରୋଧାଳୟ ବା ରୁଦ୍ଧ ଗୃହ ବୋଲି କୁହାଯାଇଥାଏ । କାରଣ ଏହି ନିର୍ଦ୍ଦିଷ୍ଟ ପନ୍ଦରଦିନ ମହାପ୍ରଭୁଙ୍କୁ ତାଙ୍କର ଅଙ୍ଗଲାଗି ସେବକ ଦଇତାମାନେ ଅନାର୍ଯ୍ୟ ପଦ୍ଧତିରେ ଗୁପ୍ତପୂଜା କରିଥାଆନ୍ତି । ଶ୍ରୀମନ୍ଦିରରେ ଅନବସର ନୀତି ପାଳନ ପାଇଁ ରାଜା ସୁପରିଣ୍ଟେଣ୍ଡେଣ୍ଟଙ୍କ ଅଫିସରୁ ଶ୍ରୀକପଡ଼ା, ବାଉଁଶ ତାଟି, ପତନି, ପଞ୍ଚାମୃତ ଯୋଗାଇ ଦେଇଥାଆନ୍ତି । ଭଣ୍ଡାର ମେକାପ ତେଲ, ଗନ୍ଧଣ ମେକାପ ସରଘରୁ ପଣାଭୋଗ ଯୋଗାନ୍ତି । ମହୀପ୍ରକାଶ ମଠ, ଏମାର ମଠ ଓ ରାଘବଦାସ ମଠ ମଇଲମ ଭୋଗ ଯୋଗାନ୍ତି । ଦଇତା ନିଯୋଗ ଚକଟା ଭୋଗ ଯୋଗାଏ ।

ଦଇତାପତିମାନେ ଭଣ୍ଡାର ମେକାପ ସେବକଙ୍କଠାରୁ ତେଲ ବଇଠା (ଦୀପ) ଗ୍ରହଣ କରି ଅଣସର ଗୃହରେ ବସାଇବା ପରେ ଭିତର ଶୋଧ, ମାଳ, ଫୁଲ, ମଇଲମ କରିଥାଆନ୍ତି । ଅଣସର ତାଟି ସମ୍ମୁଖରେ ବିରାଜିତ ଦଶାବତାର ଠାକୁରଙ୍କ ମଧ୍ୟାହ୍ନ ଧୂପନୀତି ସମାପ୍ତ ଉପରାନ୍ତେ ଅଣସର ଘର ତାଟି ଖୋଲାଯାଇ ମନ୍ଦିର ପ୍ରଶାସନ ତରଫରୁ ପ୍ରଥମେ ଚକଟା ଭୋଗ କରାଯାଇଥାଏ । ଏହି ଭୋଗ ଖର୍ଚ୍ଚ ତୁଲାଇବା ପାଇଁ ଦଇତାପତିମାନଙ୍କୁ ଜମି ଖଞ୍ଜା ଦିଆଯାଇଛି । ଏହାବାଦ୍ ମହୀପ୍ରକାଶ ମଠ, ଏମାର ମଠ, ରାଘବଦାସ ମଠ, ଓଡ଼ିଆ ମଠ ଓ ସୁନା ଗୋସେଇଁ ମଠଙ୍କଠାରୁ ଖଞ୍ଜା ମୁତାବକ ନିୟମିତ ରୂପେ ଚକଟା ଭୋଗ ଦିଆହୁଏ । ଏହି ଚକଟାଭୋଗ ଆସି ମୁକ୍ତି ମଣ୍ଡପ ନିକଟସ୍ଥ ନୃସିଂହ ମନ୍ଦିରରେ ଥାଏ । ଏହି ଭୋଗରେ ଧୁଆ ମୁଗ, ନଡ଼ିଆ, ପଣସ, ଆମ୍ବ, କଦଳୀ ଚକଟା ଆଦି ନୈବେଦ୍ୟ ହୋଇଥାଏ । ପତି ମହାପାତ୍ର ସେବକ ଏହି ସେବା କରିଥାଆନ୍ତି । ପ୍ରତ୍ୟହ ଦୁଇଥର ଚକଟା ଭୋଗ ହୋଇଥାଏ । ଚକଟା ଭୋଗ ପରେ ଦୁଇଥର ପଣାଭୋଗ ହୋଇଥାଏ । ଶ୍ରୀମନ୍ଦିର ପ୍ରଶାସନ ପକ୍ଷରୁ କୋଠଭୋଗ ବ୍ୟବସ୍ଥା ଅନୁଯାୟୀ ୧୪ଟି ପଖାଳ ଓଳି ଓ ୧୪ଟି ଅଙ୍ଗବାସ ଓଳି ପଣା ଭୋଗ ଯୋଗାଇ ଦିଆଯାଏ । ଏହାଛଡ଼ା ରାଘବ ଦାସ ମଠ, ଏମାର ମଠ, ଓଡ଼ିଆ ମଠ ଓ ଦଇତାପତିମାନେ ମଧ୍ୟ ପଣା ଭୋଗ କରିଥାଆନ୍ତି । ଏହା ଗନ୍ଧଣ ମେକାପ ସରଘର ପରିସରରେ ତିଆରି ହୋଇଥାଏ । ଅଣସର ସୁଧସୁଆର ପାଣି ପକାଇ ପୂଜା ଠା' କରି ସାରିବା ପରେ ଦକ୍ଷିଣ ଦ୍ୱାର ପ୍ରତିହାରୀ ପଧାନିସହ ଗନ୍ଧଣ ମେକାପ ସରଘର ପାଖକୁ ପଣା ଭୋଗ ଡ଼ାକିଯାଆନ୍ତି ।



ପତି ମହାପାତ୍ର ପଣାଭୋଗ ପୂଜାରେ ବସି ପୂଜା କରିଥାଆନ୍ତି । ପ୍ରଣିଧାନଯୋଗ୍ୟ ଯେ, ପ୍ରଥମ ଦିନଠାରୁ ପଞ୍ଚମୀ ଦିନ ପର୍ଯ୍ୟନ୍ତ କେବଳ ମଠମାନଙ୍କର ଚକଟା ମଇଲମ ଭୋଗ ହୋଇଥାଏ । ଦଇତାପତି ଓ ଭକ୍ତମାନଙ୍କ ପକ୍ଷରୁ ଷଷ୍ଠୀଠାରୁ ଦଶମୀ ପର୍ଯ୍ୟନ୍ତ ବିଭିନ୍ନ ଫଳ, ଯଥା କଦଳୀ, ସପୁରୀ, ପଣସ, ଆମ୍ବ, ଛେନା ରାବିଡ଼ି, ଖୁଆ, ସର, ଛେନାକଟା, ଛେନାଖଇ, ଖୁଆପେଡ଼ା, ଖୁଆ ବରଫି, ଲିଆଛତୁ, ଗୁଡ଼ଖଇ, ଲିଆ ଇତ୍ୟାଦି ଅଣସର ଘରେ ଭୋଗ ହୋଇଥାଏ । ପ୍ରଥମ ଦିନଠାରୁ ଦଶମୀ ପର୍ଯ୍ୟନ୍ତ ଉକ୍ତ ଭୋଗ ପତିମହାପାତ୍ରଙ୍କ ଦ୍ୱାରା ସର୍ପାମଣୋହି କରାଯାଇଥାଏ । ଏକାଦଶୀ ଦିନଠାରୁ ଘଣ୍ଟି, ଶଙ୍ଖ, ପୂଜା ଠା'ରେ ଚକଟାଭୋଗ କରିଥାନ୍ତି । ଏକାଦଶୀ ଦିନ ଭୋଗରେ ତୁଳସୀ ପଡ଼ି ଭୋଗ ହୋଇଥାଏ । ତେଣୁ ବାସ୍ତବରେ ଏକାଦଶୀଠାରୁ ହିଁ ଅଣସର ଗୃହରେ ତୁଳସୀର ବ୍ୟବହାର ହୋଇଥାଏ । ଏକାଦଶୀଠାରୁ ଠାକୁରଙ୍କୁ ବିଭିନ୍ନ ସୁସ୍ୱାଦୁ ଫଳ, କିସ୍‌ମିସ୍, ଖୁଆପେଡ଼ା, ଖୁଆମଣ୍ଡା ଏବଂ କ୍ଷୀର ଜାତୀୟ ମିଠା ସମେତ ବୈଦ୍ୟ ସେବକଙ୍କ ଘରୁ ଆସିଥିବା ଦଶମୂଳ ମୋଦକ ଭୋଗ ହୋଇଥାଏ । ସମ୍ପ୍ରତି ଶ୍ରୀମନ୍ଦିର ପ୍ରଶାସନ ପକ୍ଷରୁ ଅଣସର ସମୟରେ ଚକଟା ଭୋଗ ନିମନ୍ତେ ପ୍ରତ୍ୟହ ଦେଢ଼ କ୍ୱିଣ୍ଟାଲ ଛେନା, ୧୦୦ କେଜି ସର, ପ୍ରାୟ ୭ କେଜି ଓଜନର ଚିନି ଯୋଗାଇ ଆସୁଛନ୍ତି ।

ଅଣସର ପଣାର ସ୍ୱାଦ ହିଁ ନିଆରା । ପ୍ରଭୁଙ୍କ ପାଖରେ ସମର୍ପଣ ହେବା ପରେ ଏହାର ବାସ୍ନା ଓ ସ୍ୱାଦ ମହାପ୍ରଭୁଙ୍କ ନିକଟକୁ ଟାଣି ନେଇଯାଏ । ବିଭିନ୍ନ ବ୍ୟକ୍ତି, ଶ୍ରଦ୍ଧାଳୁ ଓ ଭକ୍ତ ଏହି ଅଣସର ପଣା ଆସ୍ୱାଦନକୁ ଅପେକ୍ଷା କରିଥାଆନ୍ତି । ପ୍ରଭୁଙ୍କ କରୁଣା ରସରେ ଆପ୍ଳୁତ ଅଣସର ପଣା ଦଇତାପତିଙ୍କ ଦ୍ୱାରା ବଣ୍ଟନ କରାଯାଇଥାଏ ଭକ୍ତମାନଙ୍କୁ ।

**ରଥ ଉପରେ ଭୋଗ ପରମ୍ପରା :** ସନାତନ ଧର୍ମାବଲମ୍ବୀ ହିନ୍ଦୁମାନଙ୍କର ପରମ ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥ ଓ ପ୍ରସିଦ୍ଧ ଉତ୍ସବ ହେଉଛି ରଥଯାତ୍ରା । କେଉଁ ପ୍ରାଚୀନ କାଳରୁ ମହାପ୍ରଭୁଙ୍କର ଏହି ରଥୋତ୍ସବ ଦର୍ଶନ ନିମିତ୍ତ ଦେଶବିଦେଶରୁ ଲକ୍ଷ ଲକ୍ଷ ଭକ୍ତଙ୍କର ଶ୍ରୀକ୍ଷେତ୍ରରେ ସମାଗମ ହୋଇଥାଏ । ଶ୍ରୀଗୁଣ୍ଡିଚା ଯାତ୍ରାର ଅନ୍ୟ ଏକ ଆକର୍ଷଣ ହେଲା, ରଥ ଉପରେ ଶ୍ରୀବିଗ୍ରହମାନଙ୍କର ଭୋଗ ପରମ୍ପରା ମାଦଳା ପାଞ୍ଜି, ଶ୍ରୀମନ୍ଦିର ସ୍ୱତ୍ୱଲିପି ଏବଂ ଶ୍ରୀମନ୍ଦିର ପଞ୍ଜିକା ଇତ୍ୟାଦିରୁ ଗଜପତି ମହାରାଜା ରାମଚନ୍ଦ୍ର ଦେବଙ୍କ ସମୟରେ ପୂର୍ବରୁ କରାଯାଉଥିବା ବିଭିନ୍ନ ପ୍ରକାର ଭୋଗମାନ ବନ୍ଦ କରାଯାଇଥିଲା । କାରଣ ଗଜପତି ମହାରାଜା ରଥ ଉପରେ ହେଉଥିବା ଭୋଗଗୁଡ଼ିକ ଯଥା : ବଡ଼ସାନ ମନୋହର, ପଶୁପାଳକ କାକରା, ନାଡ଼ି, ଗଜା, ଟାକୁଆ, ଫେଣି, ଡ଼ାଳିମ୍ବ, ସୁଆର ନଡୁ, କାକରା ଇତ୍ୟାଦି ଭୋଗର ଖର୍ଚ୍ଚ ତୁଲାଇବାକୁ ଅସାମର୍ଥ୍ୟ ପ୍ରକାଶ କରିଥିଲେ । ଏହା ବଦଳରେ ରଥଭୋଗ ଆକାରରେ କେବଳ ବିଭିନ୍ନ ଆକୃତିର କୋରା, ଖଇ ଓ ଫଳ ଇତ୍ୟାଦିରେ ସୀମିତ ରହିଯାଇଥିଲା । ଶ୍ରୀମନ୍ଦିର ସ୍ୱତ୍ୱଲିପି ଅନୁଯାୟୀ ଶ୍ରୀଗୁଣ୍ଡିଚା ଦିନ ରଥ ଉପରେ ଘଣ୍ଟଛତା ଅଧିକ ଭୋଗ ମଧ୍ୟରେ କୋରା, ଖଇ, ବଡ଼ କାକରା, ଉଠା କାକରା, ମହା ପ୍ରସସ୍ତ ମନହର, ବଡ଼ ଅମାଲୁ, ସାନ ଅମାଲୁ, ଝଡ଼େଇ ନେଦା, ମାଣ୍ଡୁଆ, ଏକବଡ଼ ଟାକୁଆ, ରଥ ମନହର, ମରିଚି ଲଡୁ ଇତ୍ୟାଦି ଭୋଗ ଦ୍ରବ୍ୟାଦି କୋଠଭୋଗ ସୂପକାରଙ୍କ ଦ୍ୱାରା ପ୍ରସ୍ତୁତ ହେଉଥିଲା । ଭିତରଛୁ ମଧୁସୂଦନ ମହାପାତ୍ରଙ୍କଠାରୁ ଜଣାଯାଏ ଯେ, ଏହି ଭୋଗ ଶ୍ରୀମନ୍ଦିର ଆନନ୍ଦବଜାରସ୍ଥିତ ପାଣିଘରଠାରେ ପ୍ରସ୍ତୁତ ହେଉଥିଲା । ଏହାଛଡ଼ା ରଥ ଉପରେ ଅନୁଷ୍ଠିତ ଭୋଗମାନ ମାଜଣା ଯାଗା, ଦଶାବତାର ମଠ, ଚାଉଳିଆ ମଠ, ବଡ଼ଛତା ମଠ ଓ ଜଗନ୍ନାଥ ବଲ୍ଲଭ ମଠଠାରେ ପ୍ରସ୍ତୁତ ହେଉଥିଲା । କିନ୍ତୁ ପ୍ରାୟ ୮୦ ବର୍ଷ ଧରି ଏହି ଭୋଗ ବନ୍ଦ ହୋଇଯିବାରୁ ରଥ ଉପରେ ଆଉ ଉପର ବର୍ଣ୍ଣିତ ଭୋଗ ହେଉନାହିଁ । ବର୍ତ୍ତମାନ କେବଳ ମାଜଣା ଜାଗା ପକ୍ଷରୁ ଶ୍ରୀମନ୍ଦିର ସୂପକାର ସେବକମାନଙ୍କ ଦ୍ୱାରା ଖେଚଡ଼ି ଓ ଡ଼ାଲମା ଇତ୍ୟାଦି ରନ୍ଧନ ହୋଇ ଯାଗାର ବିଜେସ୍ଥଳୀଠାରେ ଠାକୁରମାନଙ୍କ ଉଦ୍ଦେଶ୍ୟରେ ପୂଜାପଣ୍ଡା ସେବକଙ୍କ ଦ୍ୱାରା ଭୋଗ କରାଯାଉଛି । ସମ୍ପ୍ରତି ରଥ ଉପରେ ଦୁଇ ପ୍ରକାର ବଡ଼କୋରା, ଧୁଆମୁଗ, ଗଜାମୁଗ, ପାଟି ନଡ଼ିଆ, ଭଲ ଘିଅ, ବଲ୍ଲଭ ଖଇ, ସେଓ, କଦଳୀ, କମଳା, ଚାଉଳିଆ, କାକୁଡ଼ି ଇତ୍ୟାଦି ଫଳ ଭୋଗ ହେଉଅଛି । ତିନି ରଥ ଉପରେ ଶ୍ରୀବିଗ୍ରହମାନଙ୍କୁ ସକାଳ ଧୂପରେ ମୋଟରେ



୭୪ଟି କୋରା, ୨୧ ଓଳି ଖଇ ନୈବେଦ୍ୟ କରାଯାଉଛି । ସେଥିମଧ୍ୟରୁ ତାଳଧ୍ୱଜ (ବଡ଼ ବାଡ଼ରେ) ୨୬ଟି କୋରା, ୭ ଓଳି ଖଇ, ଗଜାମୁଗ, ଫଳ ଇତ୍ୟାଦି ।

ନନ୍ଦିଘୋଷ (ମହାପ୍ରଭୁଙ୍କ ବାଡ଼) – ୨୮ଟି କୋରା, ୭ ଓଳି ଖଇ, ଗଜାମୁଗ, ଫଳ ନଡ଼ିଆ ପାତି ଇତ୍ୟାଦି ।

ଦେବଦଳନ (ମଝି ବାଡ଼) –୨୦ଟି କୋରା, ୭ ଓଳି ଖଇ, ଗଜାମୁଗ, ନଡ଼ିଆ ପାତି, ସେଓ, କମଳା, କଦଳୀ, କାକୁଡ଼ି ଆଦି କଟା ଫଳ ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ, ସକାଳ ଧୂପ, ମଧ୍ୟାହ୍ନ ଓ ସନ୍ଧ୍ୟା ଧୂପରେ ଉପରଲିଖିତ ଭୋଗମାନ ହୋଇଥାଏ । କିନ୍ତୁ ବଡ଼ସିଂହାର ଭୋଗରେ ତିନିରଥ ଉପରେ ୨୪ଟି ସାନ ନଡ଼ିଆ କୋରା, ୧୨ ଓଳି ସାଧା ଖଇ ଭୋଗ ହୋଇଥାଏ । ଏଥିମଧ୍ୟରୁ ଶ୍ରୀଜଗନ୍ନାଥଙ୍କ ରଥରେ ୮ଟି କୋରା, ୪ ଓଳି ଖଇ ଓ ଦେବୀ ସୁଭଦ୍ରାଙ୍କ ରଥରେ ୮ଟି କୋରା ଓ ୪ଓଳି ଖଇ ବଳଭଦ୍ରଙ୍କ ରଥରେ ୮ଟି କୋରା ଓ ୪ ଓଳି ଖଇ ଭୋଗ କରାଯାଇଥାଏ । ରଥ ଉପରେ ଗୋପାଳ ବଲ୍ଲଭ ଭୋଗରେ ଖଇ, ଖୁଆମଣ୍ଡା, ନଡ଼ିଆ ପାତି, କୋରା, ଦହି, ଫଳମୂଳ ଆଦି ସର୍ପାମଣୋହି କରାଯାଏ ।

ସର୍ବଶେଷରେ ଏତିକି କୁହାଯାଇପାରେ, ଯେଉଁ ସାତ୍ତ୍ୱିକ ଆହାର ରସଯୁକ୍ତ, ସ୍ନିଗ୍ଧ, ଘୃତାଦି ସ୍ନେହଗୁଣ ସମ୍ପନ୍ନ, ସାରଯୁକ୍ତ ଏବଂ ହୃଦୟ ପ୍ରୀତିକର, ଯାହା ମହାପ୍ରଭୁଙ୍କ ନିକଟରେ ସମର୍ପିତ ସେହି ଦିବ୍ୟ ଗୁଣାଧାରୀ ‘‘ଭୋଗ’’ ଆସ୍ୱାଦନରେ ଭକ୍ତମଣ୍ଡଳୀ କୃତାର୍ଥ ହୁଅନ୍ତୁ । ପୂର୍ବ ପ୍ରଚଳିତ ବର୍ତ୍ତମାନ ବିସ୍ମୃତ ଭୋଗ ପୁନଃପ୍ରଚଳନ ହେଉ ଏହା ହିଁ କାମନା ।

କ୍ୱାର୍ଟର ନଂ–୨ଆର୍‌ବି ୧୭/୪
ୟୁନିଟ୍–୮, ଭୁବନେଶ୍ୱର–୧୨

# ସ୍ୱୟଂ ଲୀଳା

**ନିବେଦିତା ଭଞ୍ଜ**

କଳା ବଦନ ହେ ଜଗତ ନାଥ
ସ୍ୱୟଂ ଲୀଳା ପାଇଁ ଗୁଣ୍ଡିଚା ଯାତ ॥
କୋଟି କୋଟି ଭକ୍ତ ଆତୁର ହୋଇ
ତୁମ ଦର୍ଶନକୁ ଆସନ୍ତି ଧାଇଁ ॥
ବାଟରେ ଦାସିଆ ଭାଙ୍ଗେ ନଡ଼ିଆ
ରଥେ ବସି ଘେନ ପ୍ରସାରୀ ବାହା ॥
ବଳରାମ ଦାସ ବାଲିରଥକୁ ଗଲ
ତୁଚ୍ଛ କରି ନନ୍ଦିଘୋଷକୁ ॥
ଡାକିଲା ଯବନ ଅନେକ ଦୂରୁ
ନ ଯାଅ ହେ ନାଥ ମୋ ଯିବା ଆଗରୁ ॥

ଅସ୍ତୁ କହି ରହିଗଲ ସେଇଠି
ଭକ୍ତ ସାଲବେଗ ମଠ ଯେଉଁଠି ॥
ପୋଡ଼ପିଠା କରି ମାଉସୀ ମା
ଡାକଇ ଧନରେ ବେଇଗି ଆ ॥
ଶରଧା ବାଲିରେ ଅନେକ ଗୋପୀ
ଦହି, ଦୁଧ, ସର ପସରା ରଖି ॥
ତୋ’ବାଟକୁ ଚାହିଁ ବସିଛି ରାଧା
ଚମ୍ପକ ଗଜରା ଗୁନ୍ଥିଛି ଅଧା ॥
ମାତା ମହାଦେଈ ଗୁଣ୍ଡିଚା ରାଣୀ
ଡାକନ୍ତି ଆସରେ ମୁରଲୀ ପାଣି ॥

ବିତିଛି ବରଷ ନ ଦେଖି ପରା
ଆସ ଧନମଣି ଦୁଃଖ ପାଶୋରା ॥
ସକଳ ଐଶ୍ୱର୍ଯ୍ୟ, ମାଧୁର୍ଯ୍ୟ ଘେନି
ସଙ୍ଗେ ଧରି ଆସ ଭାଇ ଭଉଣୀ ॥
ଆଡପ ମନ୍ଦିରେ ସପତ ଦିନ
ବିଜେ କରି ଦିଅ ଦିବ୍ୟ ଦର୍ଶନ ।

୮୬/ ସତ୍ୟନଗର
ଭୁବନେଶ୍ୱର





# ମଣିକାଞ୍ଚନର ଅପୂର୍ବ ମିଳନ

**ପଣ୍ଡିତ ଅକ୍ଷୟ କୁମାର ପତି**

ମାନବ ପୃଥିବୀ ବଗିଚାର ମାଳିଟିଏ । ଗଛଟିଏ ଲଗାଇଲେ ଫୁଲଟିଏ ଫୁଟେ । ଫୁଲଟିଏ ଫୁଟିଲେ ଅବସନ୍ତେ ବସନ୍ତର ପ୍ରବାହ ପ୍ରବାହିତ ହୁଏ । ଫୁଲଟି ପାଖକୁ ଆଉ ଗୋଟିଏ ଅର୍ଦ୍ଧ ମୁକୁଳିତ ପୁଷ୍ପର ପାଖୁଡ଼ା ମୁକୁଳିତ ହେଲେ ମଳୟ ଖୋଜି ଖୋଜି ଆସେ, କେଉଁ ଏକ ଅଜଣା ରାଇଜରୁ । ପୁଷ୍ପର ହାସ୍ୟ, ଲାସ୍ୟମୟୀ ମାଧୁର୍ଯ୍ୟ ଯେପରି ବିଲକ୍ଷଣାକ୍ରାନ୍ତ ସୌରଜଗତକୁ ବିଗଳିତ କରି ଅବସନ୍ତେ ବସନ୍ତକୁ ଆହ୍ୱାନ କରିପାରେ, ସେହିପରି ସଂସ୍କୃତି ସଂହତି ସଂସ୍ପର୍ଶରେ ବିବର୍ତ୍ତନବାଦ ସମାଜର ଅଦ୍ଭୁତପୂର୍ବ ପରିବର୍ତ୍ତନ ଆଣିପାରେ । ଏହା ଆମ ସମାଜ ଓ ସଂସ୍କୃତିର ମାପକାଠି । ସୁତରାଂ ସଂସ୍କୃତି ହେଉଛି ମାନବ ସଭ୍ୟତା ଓ ସଫଳତାର କେନ୍ଦ୍ରବିନ୍ଦୁ । ସଫଳତା ସୌରଭ କର୍ମବାସନାର ବକ୍ଷ ଚିରି ମାନବ ଜନ୍ମର ମାଧୁର୍ଯ୍ୟ ଗୁଞ୍ଜନ କରେ । ପ୍ରତିଭା ମଉଳିଗଲେ ସମାଜ ଗଂଗା ରୂପରେ ଭଗୀରଥର ବାତ୍ସଲ୍ୟ ବିଳାପ କରି ଘୁମୁରା ସ୍ୱରଝଙ୍କାର ତୋଳେ । ଏହିଠି ମିଳେ ଆମ ସମାଜର ଦେବମାନବର ସମନ୍ୱୟ ଭାବନାର ନିଷ୍କର୍ଷତା ।

ଉପରୋକ୍ତ ପଦ୍ୟାବଳୀ ଲେଖି ଭଞ୍ଜକବି ଓଡ଼ିଆ ସାହିତ୍ୟରେ ଆତ୍ମିକତାର ଜୈତ୍ରକେତନ ଉଡ଼ାଇଛନ୍ତି ତାଙ୍କ ଲେଖନୀ ମୁନରେ । ଆତ୍ମିକ ରସସମ୍ୱଳିତ, ଭାବଗମ୍ଭୀର, ଭାଷାର ମଧୁଝରାଛାନ୍ଦ ଲାଳିତ୍ୟ ଅପରୂପ ଶବ୍ଦବିନ୍ୟାସ ଅମର କରି ତୋଳିଛି ଭଞ୍ଜକବିଙ୍କୁ ।

କ୍ଷୁଦ୍ରାତିକ୍ଷୁଦ୍ର କଥାବସ୍ତୁ ଉପରେ ଆଧାରିତ ତାଙ୍କ କାବ୍ୟ ବ୍ୟଞ୍ଜନା । ବିଶ୍ୱାମିତ୍ରଙ୍କ ସହିତ ରାମଲକ୍ଷ୍ମଣ ମିଥିଳା ଗମନ ସମୟରେ ଗଂଗା ସାଜିଛି ପ୍ରତିବନ୍ଧକ । ଗଂଗାକୂଳରେ ଉପନୀତ ହୋଇ ନୌକାରେ ନଦୀପାର ହେବା ପାଇଁ ଧୀବରକୁ ଆହ୍ୱାନ କରିଛନ୍ତି ବିଶ୍ୱାମିତ୍ର । ଏହିଠାରେ ଘଟିଛି ମଣି ଓ କାଂଚନର ଅପୂର୍ବ ମିଳନ । ଭକ୍ତ ଭଗବାନଙ୍କ ସାନ୍ନିଧ୍ୟ ଲାଭ କରିବାକୁ ବ୍ୟାକୁଳ । ଅପରପକ୍ଷରେ ଭଗବାନ ପତିତପାବନ ବାନା ଉଡ଼ାଇବାକୁ ଆତ୍ମଖୋଲା ଅପେକ୍ଷାରତ ।

ଜନ୍ମଜନ୍ମାନ୍ତର ତପସ୍ୟା ସାର୍ଥକ ହୋଇଛି ଭକ୍ତ ଧୀବରଙ୍କର । ଅହେତୁକ ଆଶୀର୍ବାଦ ଝରିଯାଉଛି ପ୍ରଭୁ ଶ୍ରୀରାମଙ୍କ କଣ୍ଠରୁ । ସୁତରାଂ ଧୀବରଙ୍କର ଚିନ୍ତାଧାରା ପଙ୍କରୁ ପଦ୍ମଫୁଲର ମହକଭରା ସ୍ୱପ୍ନବିଭୋର ବ୍ୟକ୍ତିତ୍ୱ ନେଇ ପ୍ରତିଷ୍ଠିତ । ଏହି ଆଧାରରେ ଜନ୍ମଲାଭ କରିଛି ଆତ୍ମିକ ଚିନ୍ତାଧାରାର ଚିତ୍ରଣ ।

ଦୀନହୀନ ଧୀବରର ନୟନ ଯୁଗଳ ଆପ୍ଳୁତ ହୋଇଛି ଭକ୍ତିରସରେ, ଷଡ଼ଚକ୍ର ଭେଦକରି । ଚେତା ଚିନ୍ତନ, ଚୈତନ୍ୟ ଏକାକାର ହୋଇଯାଇଛି ଭଗବାନଙ୍କୁ ନିକଟରେ ପାଇ ।

ସେ' କହୁଛି ହେ ବୀର ! ମୁଁ ବିଧିର ନୁହେଁ । ଶୁଣିଲିଣି ତୋ' ଚରଣ ଧୂଳିପଡ଼ି ବାଟରେ ପଥର ମୂର୍ତ୍ତି ଅବଳା ପାଲଟି ଯାଇଛି । ଏଣୁ ମୋ' ମନରେ ଭୟ ଜାତ ହେଉଛି । କାଳେ ଯଦି ମୋର କ୍ଷୁଦ୍ର ନୌକାଟି ନାୟିକା ପାଲଟିଯାଏ ତେବେ ମୋର ଭେଳା ବୁଡ଼ିଯିବ । କାରଣ ନୌକା ଚଳାଇବା ମୋର ବୃତ୍ତି ଏବଂ ଏହି ନୌକାଟି ମୋର ବୃତ୍ତ ଅଟେ । ଏହାଦ୍ୱାରା ମୋର କୁଟୁମ୍ବ ପ୍ରତିପାଳିତ ହେଉଛନ୍ତି । ଏଣୁ ହେ ଭକ୍ତ ବତ୍ସଳ ପ୍ରଭୁ ! ଆପଣଙ୍କ କୁହୁକ ସ୍ପର୍ଶୀ ପାଦ ନ ଧୋଇ ନାବରେ କେବେ ବସାଇବାକୁ ଦେବି ନାହିଁ । ଧୀବରର ମର୍ମସ୍ପର୍ଶୀ ବାକ୍ୟ ବିଗଳିତ କରିଦେଇଛି ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କ ହୃଦୟକୁ । ଶ୍ରୀରାମଚନ୍ଦ୍ର ଭୁଲିଯାଇଛନ୍ତି ଧୀବରର ଜାତି, ଧର୍ମ, ବର୍ଣ୍ଣ ବୈଷମ୍ୟତାକୁ ।



ପତିତପାବନୀ ଗଂଗା ତାଙ୍କ ହୃଦୟକୁ ପ୍ରେରଣା ଦେଇଛନ୍ତି ସ୍ୱୟଂ ପତିତପାବନ ରୂପରେ ଦଣ୍ଡାୟମାନ ହେବାକୁ। ଫଳରେ ଅକୁଣ୍ଠିତ ଚିତ୍ତରେ ଭକ୍ତ ପାଇଁ କରସେବା ଉପଲବ୍ଧି କରି ବଢାଇ ଦେଇଛନ୍ତି ପାଦପଦ୍ମକୁ।

କବି ସମ୍ରାଟ ଏହି ଭାବନାକୁ ଚିତ୍ରିତ କରିଛନ୍ତି ତାଙ୍କ ଲେଖନୀ ତୂଳିକାରେ। ଏହିଠାରେ ଘଟିଛି ଆତ୍ମିକତାର ପରିପ୍ରକାଶ। ଧୀବର ପବିତ୍ର ଗଂଗାଜଳରେ ଶ୍ରୀପାଦ ପଙ୍କଜ ଧୋଇଦେଇ ନିଜ ବସନରେ ସାଦରେ ପୋଛି ଦେଇଛି। ନୟନ ଯୁଗଳରୁ ଆନନ୍ଦାଶ୍ରୁ ଅବିରତ ଗତିରେ ବୋହି ଚାଲିଛି। ହୃଦୟ କନ୍ଦରରୁ ଝରି ଆସୁଛି ଶୁଦ୍ଧ ନବଧାଭକ୍ତି ଧାରା।

ଏହି ଅବସରରେ ପରଂବ୍ରହ୍ମ ରାମଚନ୍ଦ୍ର ଭକ୍ତକୁ ପାଦଧୌତ କରିବାର ସୁଯୋଗ ଦେଇ ନିଜେ ପତିତପାବନ ଶ୍ରୀଜଗନ୍ନାଥ ପାଲଟି ଯାଇଛନ୍ତି।

**ଜଗନ୍ନାଥ ସଂସ୍କୃତିର ଭକ୍ତମାନଙ୍କ ବୈଶିଷ୍ଟ୍ୟ**

**୧) ଗୀତାପଣ୍ଡା ଉପାଖ୍ୟାନ–** ଭକ୍ତର ଭଗବାନ । ଶ୍ରୀଜଗନ୍ନାଥ କଳିଯୁଗର ଗୀତାପଣ୍ଡାର ମର୍ଯ୍ୟାଦା ରକ୍ଷାପାଇଁ ମର୍ମୋଦ୍ଘାଟକ, ମର୍ଯ୍ୟାଦାବନ୍ତ ପୁରୁଷ ରୂପରେ ଭକ୍ତର ପରିବାରଙ୍କ କ୍ଷୁଧାମୁକ୍ତି ପାଇଁ କୈବଲ୍ୟଭାର ନିଜ କାନ୍ଧରେ ଆଣି ଯୋଗାଇ ଦେଇଥିଲେ। ସୁତରାଂ ଜଗନ୍ନାଥ ଗୋପାଳ ବେଶରେ ବ୍ରଜରାଜଙ୍କ ସାନପୁଅର ପରିଚୟ ଦେଇ ଗୀତାପଣ୍ଡାଙ୍କ ସ୍ତ୍ରୀ ନିକଟରୁ କୈବଲ୍ୟଭାର ପ୍ରଦାନ ପୂର୍ବକ ମେଲାଣି ଘେନା ହୋଇଥିଲେ। ଭାଉଆଙ୍କୁ ଭୋଜନ ଅନୁରୋଧ ହେବାରୁ ସେ' ନିଜର ଜିଭ ଖଣ୍ଡିଆ ହୋଇଛି ଓ ରକ୍ତ ବାହାରୁଛି ବୋଲି ଦେଖାଇ ଗୀତା ପଣ୍ଡାଙ୍କ ସ୍ତ୍ରୀଙ୍କଠାରୁ ମେଲାଣି ନେଇଥିଲେ। ଏହା ହିଁ ଗୀତା ପଣ୍ଡାଙ୍କ ଭକ୍ତିର ଅମୂଲ୍ୟ ଏବଂ ଶୁଦ୍ଧ ଭକ୍ତିର ନମୁନା ଅଟେ। ଅପର ପକ୍ଷରେ ଗୀତା ପଣ୍ଡାଙ୍କ ସ୍ତ୍ରୀ ସ୍ୱହସ୍ତରେ ଗୀତା ଶ୍ଳୋକକୁ କ୍ରୋଧାନ୍ଧ ହୋଇ ଲେଖନୀ ମୁନରେ କାଟିଥିବାରୁ ପ୍ରଭୁଙ୍କର ଖଣ୍ଡିତ ଜିଭ ଦର୍ଶନ ପୂର୍ବକ ଏହା ଏକ ଶକ୍ତ ଚାପୁଡା ଅଟେ।

**୨) ଯାଜପୁରିଆ ବନ୍ଧୁ ମହାନ୍ତି**

ଏକଦା ଦୈବଯୋଗକୁ ଯାଜପୁର ଅଞ୍ଚଳରେ ମରୁଡ଼ି ପଡ଼ିବାରୁ ଲୋକେ ଖାଦ୍ୟ ଅଭାବରୁ ପୋକମାଛି ପରି ମୃତ୍ୟୁ ମୁଖରେ ପଡ଼ିଲେ। ହେଲେ ଭିକ୍ଷାଂ ଦେହି ବଂଧୁ ମହାନ୍ତିଙ୍କ ପରିବାରକୁ ପଚାରେ କିଏ? ବିଚରା ଅନ୍ୟଗତି ନପାଇ ଅନନ୍ୟଶରଣ ଜଗନ୍ନାଥଙ୍କୁ ଶ୍ରେୟଃ ମନେକରି ଭୋକଉପାସରେ ସପରିବାର ଶ୍ରୀକ୍ଷେତ୍ର ଚାଲିଗଲେ । ସେଠାରେ ସିଂହଦ୍ୱାରରେ ପଣ୍ଡା ପ୍ରତିହାରୀମାନଙ୍କ ବେତମାଡ଼ ଦେଖି ପରିବାରବର୍ଗଙ୍କୁ ଶ୍ରୀମନ୍ଦିର ଦକ୍ଷିଣପଟ ପେଜନାଳ ପାଖରେ ପେଜପିଆଇ ଆଜି ରାତିକ ପରେ କାଲିକୁ ବନ୍ଧୁଙ୍କୁ ଭେଟିବା ପ୍ରଲୋଭନ ଦେଖାଇ ଶୋଇ ପକାଇଲେ। ଠିକ୍ ରାତ୍ରି ଦଶଘଡ଼ିକୁ ପ୍ରଭୁ ସହିପାରିଲେ ନାହିଁ ଭକ୍ତର ଆରତ ନିବେଦନକୁ । ସେ ରତ୍ନଥାଳିରେ ଶାଳିଅନ୍ନ, ଅମାଲୁ, ଗଜା ଇତ୍ୟାଦି ଭୋଗସାମଗ୍ରୀ ଧରି ଦକ୍ଷିଣଦ୍ୱାରକୁ ଆଡ଼ମେଲା କରି ବ୍ରାହ୍ମଣ ବେଶରେ ଡ଼ାକିଲେ ଆହେ ଯାଜପୁରିଆ ବନ୍ଧୁ ! ବନ୍ଧୁ ମହାନ୍ତି । ଏତିକି ନେଇ ଆନନ୍ଦରେ ଖାଇ ସୁସ୍ଥହୋଇ ଶୋଇପଡ଼। କାଲି ସକାଳ ହେଲେ ମୁଁ ତୁମ୍ଭମାନଙ୍କ ସମସ୍ତ ବ୍ୟବସ୍ଥା କରିଦେବି। ଆଉ ଚିନ୍ତା କର ନାହିଁ। ଏଥିରୁ ଭକ୍ତ ପାଇଁ ଭଗବାନଙ୍କର ଅଲୌକିକ ସଂପର୍କ ସୁସ୍ପଷ୍ଟ ପ୍ରମାଣ ମିଳେ। ଭକ୍ତ ସମର୍ପଣ କରିଦେଇଛି ନବଧାଭକ୍ତି ଭାବର ଅର୍ଘ୍ୟ ପ୍ରଭୁପାଦତଳେ। ଆଉ ପ୍ରଭୁ ଅଭିନବ ରୂପରେ ଉପସ୍ଥିତ ହୋଇ ଭକ୍ତବତ୍ସଳତାର ଭକ୍ତିମାର୍ଗ ପ୍ରଦର୍ଶନ କରାଇଛନ୍ତି।

**୩) ଭକ୍ତ ମାଧବ ଦାସ –** ବିଶ୍ୱାସ ଆତ୍ମିକ ଜୀବନର ଶ୍ରେଷ୍ଠ ଦର୍ଶନତତ୍ତ୍ୱ ଅଟେ। ନାମବ୍ରହ୍ମ ହିଁ ବ୍ରହ୍ମମୟ ଜଗତର ବାସ୍ତବତାର ପ୍ରତୀକ। ଶୁଦ୍ଧ ମନପ୍ରାଣ ହରିଭକ୍ତି ରସାୟନ ବିଶ୍ୱମୈତ୍ରୀ ସ୍ଥାପନ, ବିଶ୍ୱପ୍ରେମ, ସୁଧାସିନ୍ଧୁପ୍ଲାବନ ଧାରାର ଅପ୍ରମେୟ ଅପ୍ରାକୃତ ରଚନିକା ଅଟେ।

ମନ ଏକ ମରିଚିକାର ମୃଗତୃଷ୍ଣା। ସୁତରାଂ ଆଶା ରୂପକ ତୃଷ୍ଣାକୁ ତୃପ୍ତିଲାଭ କରାଇବା ଏକ ଦୁରୁହ ବ୍ୟାପାର ଅଟେ। ସେହିପରି ଐଶ୍ୱରିକ ସାନ୍ନିଧ୍ୟତା ପ୍ରାପ୍ତି ଅଭିଳାଷ ଯାହା ମନରେ ଥରେ ଜାଗ୍ରତ ହୋଇଛି କିମ୍ବା କିଂଚିତ୍ ମାତ୍ର ପ୍ରାପ୍ତହୋଇଛି ତାହାର ମନର ଆନନ୍ଦତା କ୍ରମବର୍ଦ୍ଧିଷ୍ଣୁ ଧାରାରେ ପରମାନନ୍ଦ ପ୍ରାପ୍ତିରୁ ବ୍ରହ୍ମାନନ୍ଦ ଲାଭ ହେବା ପର୍ଯ୍ୟନ୍ତ ସୁଦୂରପ୍ରସାରି ହୋଇଥାଏ। ଏହା ଏକ ମନସ୍ତାତ୍ତ୍ୱିକ ଭାବଧାରା ଅଟେ।

ଏ ମନ ଖୋଜୁଥାଇ ଯାହା, କାଳେ ପ୍ରାପତ ହୁଏ ତାହା। ଜଣେ ହରିଭକ୍ତ ହରିନାମ ଭଜିଭଜି ଦେବତ୍ୱ ପ୍ରାପ୍ତହେବାକୁ





ସମର୍ଥ ହୋଇଥାଏ । ନୈତିକତା ଓ ନୀତିନିଷ୍ଠ ଜୀବନଯାପନ ହିଁ ବ୍ରହ୍ମଦର୍ଶନ ମିଳନର ଅବିନଶ୍ୱର ବାସ୍ତବତାର ପ୍ରତୀକ ଅଟେ । ଅବିନାଶୀ ମନ ଯେତେବେଳେ ନୈରାଶ୍ୟ ଉଦ୍ୟାନରେ ଭ୍ରମର ସାଜି ଘୂରିବୁଲେ ସେତେବେଳେ ତା'ର ନୈସର୍ଗିକ ଅତି ଭୌତିକ ପଞ୍ଚଭୂତାତ୍ମା ମହାନ ଆତ୍ମାର ସାନ୍ନିଧ୍ୟତା ଲାଭ କରିବାକୁ ସମର୍ଥ ହୋଇଥାଏ । ଭକ୍ତ ମାଧବ ଦାସ ଏହାର ଜ୍ୱଳନ୍ତ ଉଦାହରଣ ଅଟନ୍ତି । 'ଫଳାହାରୀ ବୃଦ୍ଧ ମାଧବଦାସ ଶତାୟୁ ପର୍ଯ୍ୟନ୍ତ ହରିଭକ୍ତି ରସରେ ଆପ୍ଳୁତ ହୋଇ ଶେଷ ଜୀବନରେ ଶ୍ରୀଜଗନ୍ନାଥଙ୍କ ସାନ୍ନିଧ୍ୟତା ପ୍ରାପ୍ତ ହୋଇ ଅଜର ଅମର ହୋଇ ରହିଗଲେ ଜନମାନସର ମଧୁଛନ୍ଦା ମହିମାର୍ଣ୍ଣବରେ । ବୃଦ୍ଧ ମାଧବ ଦାସ ଥିଲେ 'ଫଳାହାରୀ ମଠର ମହନ୍ତ ସନ୍ନ୍ୟାସୀ । ସେ ଶତାୟୁ ବୟସରେ ଅତିସାର ରୋଗରେ ପୀଡ଼ିତ ଥିଲେ । ମୃତ୍ୟୁଫାଶ ତାଙ୍କୁ ଯନ୍ତ୍ରଣା ଯନ୍ତାରେ କବଳିତ କରୁଥିବା ଅବସ୍ଥାରେ ହରିନାମ ରସାୟନକୁ ମହୋଷଧି ରୂପେ ବ୍ରତୀ ଥିଲେ । ଭକ୍ତର ଡ଼ାକରାରେ ଶ୍ରୀଜଗନ୍ନାଥ ବଳଭଦ୍ର କଳାଗୋରା ବାଳକ ବେଶରେ ଆସି ମାଧବ ଦାସଙ୍କ ସେବା ଶୁଶ୍ରୂଷା କରୁଥିଲେ । ମାଧବ ଦାସ ପରମାର୍ଥି ହୋଇଥିବାରୁ ସେ ଦୁଇ ଭାଇଙ୍କୁ ଚିହ୍ନିବା ପାଇଁ ଚେଷ୍ଟାକରି ସଫଳ ହେଲେ । ସେ ନମ୍ର କଣ୍ଠରେ କହିଲେ – ପ୍ରଭୁ ! କାହିଁକି ଆଉ ଛଳନା କରୁଛନ୍ତି । ମୋତେ ଆରୋଗ୍ୟ କରାନ୍ତୁ ନଚେତ ସଂସାରରୁ ବିଦାୟ ଦିଅନ୍ତୁ । ତାଙ୍କୁ ଉତ୍ତର ମିଳିଲା, ନାହିଁ ନାହିଁରେ ଭକ୍ତ, ସେ ଶକ୍ତି ଆମର ନାହିଁ । ସଂସାରରେ ଯାହାର ଯେତେଦିନ ଭୋଗିବାର ଅଛି ତାହାକୁ ବ୍ୟତିକ୍ରମ କରିବା କ୍ଷମତା ଆମର ନାହିଁ । କିନ୍ତୁ ତମର ରୋଗ ଯନ୍ତ୍ରଣା ଆମ୍ଭେମାନେ ଭୋଗ କରିପାରିବୁ ? ଏହା କହି ବାଳକ ଦୁଇଜଣ ଅନ୍ତର୍ଦ୍ଧାନ ହୋଇଗଲେ । ସେବେଠାରୁ ମାଧବ ଦାସ କ୍ରମଶଃ ଆରୋଗ୍ୟ ପ୍ରାପ୍ତ ହେଲେ । ସଂପୂର୍ଣ୍ଣ ରୋଗମୁକ୍ତ ପରେ ମହୋଦଧି ସ୍ନାନସାରି ଶ୍ରୀମନ୍ଦିରରେ ଉପସ୍ଥିତ ହେଲେ । ଶ୍ରୀମନ୍ଦିରରେ ସେତେବେଳକୁ ଭିତର କାଠ ବନ୍ଦ ହୋଇଯାଇଥିବାର ଦେଖି ବଡ଼ ପାଟିରେ ଡ଼ାକ ଛାଡ଼ିଲେ । ହେ କାଳିଆ ବଳିଆ ଠାକୁର ଅଧମ ଭକ୍ତକୁ ଦର୍ଶନ ଦେବା ହେଉ । ବଡ଼ପଣ୍ଡା ଭିତରୁ ଉତ୍ତର ଦେଲେ ଶ୍ରୀଜୀଉଙ୍କୁ ଜ୍ୱର ହୋଇଛି । ସୁତରାଂ ଦର୍ଶନ ସମ୍ଭବ ନୁହେଁ । ବଡ଼ପଣ୍ଡାଙ୍କ ଉତ୍ତର ଏବଂ ମହାପ୍ରଭୁଙ୍କ ପୂର୍ବ ଉତ୍ତର ପ୍ରତିଧ୍ୱନିତ ହେଲା ମାଧବ ଦାସଙ୍କ ସ୍ମୃତି କନ୍ଦୁକରେ । ସେ ହଠାତ୍ ମୂର୍ଚ୍ଛିତ ହୋଇ ପଡ଼ିଲେ ଏବଂ ଭାବିଲେ ନୀଳାଦ୍ରିନାଥ ତାଙ୍କୁ ଉପଶମ କରାଇ ଜ୍ୱରାକ୍ରାନ୍ତ ହୋଇଛନ୍ତି । ସେହି ମୂର୍ଚ୍ଛା ଅବସ୍ଥାରେ ପନ୍ଦର ଦିନ ପରେ ମାଧବ ଦାସ ଇହଲୀଳା ସମ୍ବରଣ କଲେ । ଏହି ପନ୍ଦର ଦିନକୁ ଅନବସର ପାଳନ କରାଗଲା । ଭକ୍ତର ରୋଗଯନ୍ତ୍ରଣା ଉପଶମ ପାଇଁ ଶ୍ରୀଜଗନ୍ନାଥ ନିଜେ ଜ୍ୱରାକ୍ରାନ୍ତ ହୋଇ ଭକ୍ତର ଆନୁଗତ୍ୟ ସ୍ୱୀକାର କରିଥିବାର କିମ୍ବଦନ୍ତୀ ଏବେ ସୁଧା ଜନମାନସକୁ ଆପ୍ଳୁତ କରିଥିବାର ପ୍ରମାଣ ଅଛି । ସେହିଦିନଠାରୁ ଅଦ୍ୟାବଧି 'ଅନବସର' ପାଳନ ହୋଇ ଆସୁଅଛି । ଏହି 'ଅନବସର ପର୍ବ ଶ୍ରୀମନ୍ଦିର ଦେବନୀତି ଧାରାରେ ସ୍ନାନପୂର୍ଣ୍ଣିମାଠାରୁ ବିଜେ ଅମାବାସ୍ୟା ପର୍ଯ୍ୟନ୍ତ ପାଳନ ହୋଇଥାଏ । ଉକ୍ତ ସମୟରେ ଭକ୍ତମାନେ ପଟିଦିଅଁ ଏବଂ ଅଲାରନାଥଙ୍କୁ ଦର୍ଶନ କରି କୃତାର୍ଥ ହୋଇଥାନ୍ତି ।

**୪) ଆଲ୍ଲାବନ୍ଦରାଚାର୍ଯ୍ୟ–** ଭକ୍ତ ଭଗବାନଙ୍କର ଗଣ୍ଠିଧନ । ରଙ୍କ–ଟଙ୍କ ପିତୃମାତୃ ହୃଦୟ ବାତ୍ସଲ୍ୟ ମଧୁଚନ୍ଦ୍ରିକା ମାୟାମୃଗର ମର୍ଯ୍ୟାଦା ମନ୍ଦିର । ଏଠାରେ ପ୍ରହେଳିକାର ପ୍ରଶ୍ନବାଚୀ ନାହିଁ । ଅଛି କେବଳ ମମତାର ସାହାରା । ଭକ୍ତି ଏକ ଆତ୍ମିକ ଚେତନାର ମୂଳାଧାର । ଭଗବାନ ଭକ୍ତର ମାର୍ଗଦର୍ଶକ ଅଟନ୍ତି । ପିତାମାତା ଯେପରି ତାଙ୍କର ଉତ୍ତରଦାୟାଦକୁ ଅବସାୟର ଦିଗ୍‌ଦର୍ଶନ ଦେଇ ହାତଧରି ଗଢି ତୋଳନ୍ତି, ଠିକ୍ ସେହିପରି ଭଗବାନ ଭକ୍ତକୁ ଅଲକ୍ଷ୍ୟରେ ପ୍ରେରଣା ଦେଇ ଶେଷକୁ କୋଳାଇ ନେଇଥାନ୍ତି । ଅଧୁନା ଅଲାରନାଥଙ୍କ ପରିପ୍ରକାଶ ବନାମ ଆଲ୍ଲାବନ୍ଦରାଚାର୍ଯ୍ୟ କହିଲେ ଅତ୍ୟୁକ୍ତି ହେବନାହିଁ ।

ଏକଦା ସୁଦୂର ଦାକ୍ଷିଣାତ୍ୟର ସିଦ୍ଧସାଧକ ଆଲ୍ଲାବନ୍ଦରାଚାର୍ଯ୍ୟ ଶ୍ରୀଜଗନ୍ନାଥଙ୍କ ଦର୍ଶନାଭିଳାଷ ରଖି ପଦବ୍ରଜରେ ଧାଇଁ ଆସିଥିଲେ ପୁଣ୍ୟକ୍ଷେତ୍ର ଶ୍ରୀକ୍ଷେତ୍ର ଧାମକୁ । ଭଗବାନ ଭକ୍ତର ଭକ୍ତିର ପରାକାଷ୍ଠା ପାଇଁ ବାରମ୍ବାର ପରୀକ୍ଷାର ସମ୍ମୁଖୀନ କରିଥାନ୍ତି ସମାର୍ଜନ ଭକ୍ତି ପୀୟୁଷ ଟୋପାକ ଲାଗି । ତାହା ହିଁ ଘଟିଥିଲା ଆଲ୍ଲାବନ୍ଦରାଚାର୍ଯ୍ୟଙ୍କ ଜୀବନରେ । କ୍ଲାନ୍ତ–ଆଲ୍ଲାବନ୍ଦରାଚାର୍ଯ୍ୟ ସୁଦୀର୍ଘ ପଥଶ୍ରମ ସହି ଶ୍ରୀକ୍ଷେତ୍ର ପଦାର୍ପଣ କରିବା ବେଳକୁ ଅନବସର ପର୍ବ ଶ୍ରୀପ୍ରଭୁଙ୍କର ଆରମ୍ଭ ହୋଇ



ଯାଇଥାଏ । ଏଣୁ ଶ୍ରୀମନ୍ଦିର ନୀତି ଅନୁସାରେ ଶ୍ରୀଜୀଉଙ୍କ ଦର୍ଶନ ସମ୍ଭବ ନୁହେଁ । ଏହା ଅନୁଭବ କରି, ପ୍ରଭୁଙ୍କଠାରେ ଅଭିମାନ ପ୍ରକୃତି ସମ୍ପନ୍ନ ଉକ୍ତି ପ୍ରଦର୍ଶନ କରିବାକୁ ଭୁଲିନଥିଲେ ସେ। ତାଙ୍କ ହୃଦୟକୁ ବାରମ୍ୱାର ଦଂଶନ କରୁଥିଲା ପ୍ରଭୁ ଚେତନା । ଶେଷକୁ ନିଷ୍ପତ୍ତି ନେଲେ ପ୍ରଭୁ ଦର୍ଶନ ଯଦି ସମ୍ଭବ ନହେଲା, ତେବେ ଏ କଳୁଷିତ ଜୀବନକୁ ମହୋଦଧିରେ ବିସର୍ଜନ କରିବା ଶ୍ରେୟସ୍କର। ସେ ଶ୍ରୀମନ୍ଦିର ଅତିକ୍ରମ କରି ଦକ୍ଷିଣାଭିମୁଖୀ ହୋଇ ବାଲିସାହି ରାସ୍ତାରେ ଚାଲିବାକୁ ଲାଗିଲେ । ବର୍ତ୍ତମାନର ମଶାଣି ମହାବୀର ମନ୍ଦିର ନିକଟରେ ଏକ ଦୀର୍ଘକାୟ ହନୁମାନ ତାଙ୍କୁ ପଥଭ୍ରଷ୍ଟ କରାଇ ପଶ୍ଚିମାଭିମୁଖୀ କରାଇଲା । ଫଳରେ ରାତ୍ରୀ ଶେଷ ପର୍ଯ୍ୟନ୍ତ ଦୀର୍ଘ ୧୪କି.ମି. ଦୂରବର୍ତ୍ତୀ ବ୍ରହ୍ମଗିରି ନିକଟରେ ଉପସ୍ଥିତ ହେଲେ । ସେଠାରେ ଶବରଙ୍କ ଗୁପ୍ତପୂଜା ହେଉଥିବା ପ୍ରତିମୂର୍ତ୍ତିରେ ଦର୍ଶନ ଏବଂ ଜନସମାଗମ ଦେଖି ବିଭ୍ରାନ୍ତ ମନକୁ ସାନ୍ତ୍ୱନା ଦେବାକୁ ଲାଗିଲେ। ସେହିଦିନଠାରୁ ଅନବସର ସମୟରେ ଯେଉଁମାନେ ଶ୍ରୀଜଗନ୍ନାଥ ଦର୍ଶନ ଇଚ୍ଛା କରନ୍ତି, ସେମାନେ ସେହି ବିଗ୍ରହ ଦର୍ଶନ କରି ସାକ୍ଷାତ ଜଗନ୍ନାଥଙ୍କ ସାନ୍ନିଧ ପ୍ରାପ୍ତ ହୁଅନ୍ତି ବୋଲି ପ୍ରଚାରିତ ହେଲା । ଉକ୍ତ ତତ୍ତ୍ୱ ଆଲ୍ଲାବନ୍ଦରାଚାର୍ଯ୍ୟଙ୍କଠାରୁ ଜନମାନସକୁ ଆସିଥିବାରୁ ଅଲାରନାଥ ନାମରେ ପୂଜା ପାଇ ଆସୁଛନ୍ତି ।

**୫) ମନୋହର ଦାସ ବାବା –** ମହେନ୍ଦ୍ର ପର୍ବତରେ ତପସ୍ୟା ସିଦ୍ଧ ବାବା ମନୋହର ଦାସ ଶ୍ରୀଜଗନ୍ନାଥଙ୍କ ଦର୍ଶନାଭିଳାଷି ହୋଇ ଶ୍ରୀକ୍ଷେତ୍ର ଯାତ୍ରା କରିବା ସମୟରେ ଗୋଟିଏ ପୁଷ୍କରିଣୀରୁ ଏକଭାର ଶତଦଳ ପଦ୍ମ ତୋଳି କାନ୍ଧରେ ଭାର କରି ଆସି ଶ୍ରୀକ୍ଷେତ୍ରରେ ପହଞ୍ଚିବା ବେଳକୁ ପୌଷ ପୂର୍ଣ୍ଣିମା ହୋଇଯାଇଥିଲା। ଫୁଲସବୁ ଶୁଖି ଯାଇ କଳା ପଡ଼ିଯାଇଥାଏ। ଏହି ବାସିଫୁଲ ଠାକୁରଙ୍କୁ ଲାଗି ହୋଇପାରିବ ନାହିଁ ବୋଲି କହି ବେଶକାରୀ ପ୍ରତ୍ୟାଖ୍ୟାନ କରିଦେଲେ । ଫଳରେ ସାଧୁଙ୍କ ମନ ବିଷର୍ଣ୍ଣ ହୋଇଗଲା। ପରିଶ୍ରମର ମୂଲ୍ୟ ଏବଂ ଭକ୍ତିର ନିରର୍ଥକ କଥା ଚିନ୍ତାକରି ମୂର୍ଚ୍ଛିତ ହୋଇଗଲେ ସାଧୁଜୀ। ପରେ ଖଣ୍ଡିଏ କଳାକନାରେ ପଦ୍ମଫୁଲକୁ ଆଚ୍ଛାଦିତ କରି ଆକୁଳ ହୃଦୟରେ ଶ୍ରୀଜଗନ୍ନାଥଙ୍କୁ ପ୍ରାର୍ଥନା କରିବାକୁ ଲାଗିଗଲେ। ଦୁଇ ସପ୍ତାହ ପରେ ଫୁଲଗୁଡ଼ିକ ସତେଜ ହୋଇଉଠିଲା। ଏହି ଦୃଶ୍ୟରେ ସେବକମଣ୍ଡଳୀ ବିସ୍ମିତ ହୋଇ ପଡ଼ିଲେ ଏବଂ ସେହିଦିନଠାରୁ ପ୍ରତ୍ୟେକ ବର୍ଷ ମାଘ ତ୍ରିବେଣୀ ଅମାବାସ୍ୟା ପରେ ବସନ୍ତ ପଞ୍ଚମୀ ପୂର୍ବରୁ ପଡୁଥିବା ବୁଧବାର ଏବଂ ଶନିବାର ଦିନ ଭକ୍ତ କଳାକନା ଏବଂ ପଦ୍ମ ଠାକୁରଙ୍କୁ ଲାଗି କରାଯାଉଛି ।

**୬) ଭକ୍ତ ସାଲବେଗ –** ଭକ୍ତ ସାଲବେଗଙ୍କ ଭକ୍ତି ପ୍ରମାଣ ଦିଏ ଯେ ଜଗନ୍ନାଥ, ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସାର୍ବଭୌମ ଦେବତା ଅଟନ୍ତି। ଶ୍ରୀଜଗନ୍ନାଥ ସଂସ୍କୃତିର ବ୍ୟାପକତା ପ୍ରତୀକ ସର୍ବଧର୍ମ ସମନ୍ୱୟ ଭାବରେ ମହତ୍ତ୍ୱପୂର୍ଣ୍ଣ ଉପାଖ୍ୟାନ ହିଁ ସାଲବେଗଙ୍କ ଭକ୍ତିର ନମୁନା ଅଟେ। ୧୬୦୫ ଖ୍ରୀଷ୍ଟାବ୍ଦରେ ଆକବରଙ୍କ ରାଜତ୍ୱ କାଳରୁ ଲାଲବେଗର ଶ୍ରୀକ୍ଷେତ୍ର ଆକ୍ରମଣ ସମୟରେ ବିଧବା ବ୍ରାହ୍ମଣୀଙ୍କ ଗର୍ଭଜାତ ସନ୍ତାନ ସାଲବେଗ ଏକ ନିଆରା ଭକ୍ତି ପରଂପରା ସୃଷ୍ଟି କରିଗଲେ। । ଯେପର୍ଯ୍ୟନ୍ତ ଶ୍ରୀଜଗନ୍ନାଥ ଅଛନ୍ତି ସାଲବେଗଙ୍କ ଭକ୍ତି ସଂଗୀତ – ଏକା ତୋ ଭକତ ଜୀବନ, ଭକତ ନିମନ୍ତେ ତୋର / ଶଙ୍ଖଚକ୍ର ଚିହ୍ନ / ଭକତ ତୋ ମାତା ପିତା / ଭକତ ତୋ ବନ୍ଧୁ/ ଭକତ ହିତରେ ତୋର / ନାମ କୃପାସିନ୍ଧୁ / ସଂଗୀତ ତାଙ୍କୁ ବଂଚାଇ ରଖିବ, ଏଥିରେ ସନ୍ଦେହ ନାହିଁ। ବିଧର୍ମୀ ସାଲବେଗ ଶ୍ରୀଜଗନ୍ନାଥଙ୍କ ଉପରେ ଅଟଳ ବିଶ୍ୱାସ ରଖି ଯେଉଁ ବ୍ରହ୍ମବାଦ, ବ୍ରହ୍ମଭୂତ, ବ୍ରହ୍ମସାଯୁଜ୍ୟ, ବ୍ରହ୍ମାକ୍ଷର, ଦର୍ଶନ ପରଂପରା ସୃଷ୍ଟି କରିଗଲେ, ତାହା ସାରା ବିଶ୍ୱ ପାଇଁ ସ୍ମରଣୀୟ ହୋଇ ରହିଗଲା।

**୭) ବିଦଗ୍ଧ ଭକ୍ତକବି, ଗୀତଗୋବିନ୍ଦ ରଚୟିତା ଶ୍ରୀଜୟଦେବ –** ଭକ୍ତି, ଜ୍ଞାନ, ବୈରାଗ୍ୟର ପ୍ରତୀକ ଶ୍ରୀଜୟଦେବ ପରଂବ୍ରହ୍ମ ପୂର୍ଣ୍ଣାନନ୍ଦ, ଶ୍ରୀଜଗନ୍ନାଥଙ୍କ ଭକ୍ତି ଚନ୍ଦ୍ରିକାରେ ଜଣେ ବିଦଗ୍ଧ ଭକ୍ତପ୍ରବର – ଏକଥା ସର୍ବସମ୍ମତ ତତ୍ତ୍ୱ ଅଟେ । ଗୀତଗୋବିନ୍ଦ ରଚନା କରି ସେ ପ୍ରମାଣ କରିଗଲେ ଯେ– ଯେଉଁଠି ଗୀତଗୋବିନ୍ଦ, ସେଇଠି ଶ୍ରୀଜଗନ୍ନାଥ ଆବିର୍ଭାବ। ଦ୍ୱାଦଶ ଶତାବ୍ଦୀର କବି ଶ୍ରୀଜୟଦେବ ରାଗାତ୍ମିକା ଭାବଧାରାରେ ଆଧାରିତ ଗୀତଗୋବିନ୍ଦ ରଚନା କରି ଭକ୍ତ ଓ ଭଗବାନଙ୍କ ତ୍ରିବେଣୀ ପ୍ରୟାଗର ପ୍ଲାବନ ସୃଷ୍ଟି କରିଗଲେ । ମାଳିନୀ କନ୍ୟାଙ୍କ ଗୀତଗୋବିନ୍ଦ ନୃତ୍ୟଗୀତରେ ବିଭୋର ହୋଇ ଶ୍ରୀଜଗନ୍ନାଥ ବାଇଗଣ ବାଡ଼ିରେ ପୀତାମ୍ବରୀ ବସ୍ତ୍ର ଚିରିବାଠାରୁ ଆରମ୍ଭ କରି–



ସ୍ମର ଗରଳ ଖଣ୍ଡନଂ, ମମଶିରସି ମଣ୍ଡନଂ
ଦେହି ପଦ ପଲ୍ଲବ ମୁଦାରମ ।
'ଭକ୍ତ କବି ଜୟଦେବ ଗୀତଗୋବିନ୍ଦ ରଚନା' (୧୦/୮)

ଗୀତଗୋବିନ୍ଦ କାଳରେ ସଠିକ ପଦ ପୂରଣ କରିବାକୁ ଅସମର୍ଥ ହୋଇଥିଲାବେଳେ ଶ୍ରୀଜଗନ୍ନାଥ ଜୟଦେବଙ୍କ ଅନୁପସ୍ଥିତିରେ ଉପଯୁକ୍ତ ଶବ୍ଦ ବିନ୍ୟାସକୁ ସ୍ୱୟଂ ପଦପୂରଣ 'ଦେହି ପଦପଲ୍ଲବ ମୁଦାରମ' ପ୍ରସଙ୍ଗକୁ ଗୀତଗୋବିନ୍ଦ ରଚନା କାଳୀନ ଆଲୋଚନା ପର୍ଯ୍ୟାୟଭୁକ୍ତ କଲେ ଜଣାଯାଏ, ଦେବରାୟ (ଶ୍ରୀଜଗନ୍ନାଥ) ସ୍ୱୟଂ ଭକ୍ତବତ୍ସଳ ଅଟନ୍ତି। ଆଉଥରେ ଜଣେ ଯବନ ସେନାପତି ଶୁଣିଲେ ଯେ –ଗୀତଗୋବିନ୍ଦ ଗାନ କଲେ ସ୍ୱୟଂ ଜଗନ୍ନାଥ ଆସନ୍ତି । ଏହି ଉକ୍ତିର ପ୍ରଚାରର ସତ୍ୟତା ପ୍ରମାଣ କରିବାକୁ ଯାଇ ଘୋଡ଼ାରେ ଛଡ଼ି ଗୀତଗୋବିନ୍ଦ ଗାନ କରିବାକୁ ଲାଗିଲେ । ହଠାତ୍ ଦେଖିବାକୁ ପାଇଲେ ଗାନ ସମୟରେ ଭାବଗ୍ରାହୀ ସତ୍ୟ ସୁନ୍ଦର–ରମଣୀୟ ଶ୍ୟାମଳ ରୂପକାନ୍ତି ଧାରଣ କରି ତାଙ୍କ ସମ୍ମୁଖକୁ ଆସି ଅନ୍ତର୍ଦ୍ଧାନ ହୋଇ ଯାଉଛନ୍ତି। ଏଣୁ ସେ ସିଦ୍ଧାନ୍ତ ପରୀକ୍ଷାରେ ଉପନୀତ ହେଲେ ଯେ ତାଙ୍କୁ (ପ୍ରଭୁଙ୍କୁ) ଯିଏ ଭଜେ, ସେ ତାହାର । ତାଙ୍କଠାରେ ନାହିଁ ଜାତି ଭେଦ, ବର୍ଣ୍ଣ ବୈଷମ୍ୟତାର ଅବକାଶ)

୮) **ଦାସିଆ ବାଉରି** – ଚିଲିକା କୂଳ (ବାଲିଗ୍ରାମ) ଅଧମ ଜାତି ବାଉରି ଦାସିଆ ପ୍ରେରିତ ନଡ଼ିଆ ଶ୍ରୀଜଗନ୍ନାଥ ସ୍ୱହସ୍ତରେ ଗ୍ରହଣ କରି ଯୁଗାନ୍ତକାରୀ ବାର୍ତ୍ତା ଦେଇଗଲେ ସମାଜକୁ । ମୁଁ ପଣ୍ଡା, ପ୍ରତିହାରୀ, ରାଜା, ମଠାଧୀଶମାନଙ୍କର ନୁହେଁ । ଭକ୍ତ ପାଇଁ ସଦା ସର୍ବଦା ସଜାଗ ପ୍ରହରୀ ।

ଜୀବନଦର୍ଶନ ପରିଷଦ
ସରସପୁର, ଆନନ୍ଦବଜାର, ଭଦ୍ରକ

# ଡରିବି କାହାକୁ କିଆଁ କୁହ ପ୍ରଭୁ

**ଡକ୍ଟର ଗୌରହରି ରାଉତ**

ଡରିବି କାହାକୁ କିଆଁ କୁହ ପ୍ରଭୁ
ଡାକୁଥିବି ଯଦି ତୁମକୁ,
ଯେବେ ଅଛ ତୁମେ ପାଶେ ପାଶେ ମୋର
ଭୟ ବା କରିବି କାହାକୁ, ପ୍ରଭୁ
ଡାକୁଥିବି ଯଦି ତୁମକୁ ।
ତୁମେ ମହାବାହୁ ଆଶାର ଆଧାର
ଅସୀମ ଆଲୋକ ଜ୍ୟୋତି,
ସବୁ ଶକତିର ଶିଖରେ ଉଡ଼ଇ
ତୁମ ଧ୍ୱଜା ଦିନ ରାତି ।
କୁହ ପ୍ରଭୁ ତୁମ ବିରାଟ ବିତାନେ
ଡରିବି କିଆଁ ମୁଁ କାହାକୁ, ପ୍ରଭୁ
ଡାକୁଥିବି ଯଦି ତୁମକୁ ।



ନିଖିଳ ଜୀବନେ ନିତି ଛୁଆଁଉଛ
ପ୍ରୀତିର ପରଶ ତୁମେ
ଇଶାରାରେ ତୁମ ହସେ ଶଶୀତାରା
ଏଇ ମରତର ଧାମେ ।
ଏଡ଼େ ବିରାଟର ବାହୁତଳେ ରହି
ଡରିବି କିଆଁ ମୁଁ କାହାକୁ
ତୁମେ ଯଦି ମୋର ପ୍ରାଣ ପବନରେ
ଭିତରେ ବାହାରେ
ଭୟ ବା କରିବି କାହାକୁ, ପ୍ରଭୁ
ଡାକୁଥିବି ଯଦି ତୁମକୁ ।

ଏଲ୍. ପି. ୮୨୦, ପ୍ରଶାନ୍ତି ବିହାର, ଭୁବନେଶ୍ୱର

# ଶ୍ରୀଜଗନ୍ନାଥ : ସର୍ବଜନ ତ୍ରାଣକର୍ତ୍ତା

ପରୀକ୍ଷିତ ମିଶ୍ର

ପୁରୁଷୋତ୍ତମ ଶ୍ରୀକ୍ଷେତ୍ରରେ ଦାରୁବ୍ରହ୍ମ ଶ୍ରୀଜଗନ୍ନାଥଙ୍କ କୈବଲ୍ୟ ଶୁଦ୍ଧ ଏବଂ ପବିତ୍ର। ଏହାକୁ ଭକ୍ତିପୂତ ଭାବରେ ଆବ୍ରାହ୍ମଣ ଚଣ୍ଡାଳ ସେବନ କରିଥାନ୍ତି। ଏହା ହିଁ ଏ କ୍ଷେତ୍ରର ବୈଶିଷ୍ଟ୍ୟ। ପୁନଶ୍ଚ ଜୀବନର ଅନ୍ତିମ ସମୟରେ ନିର୍ମାଲ୍ୟର କଣିକାଏ ପ୍ରାଣୀକୁ ମୋକ୍ଷ ପ୍ରଦାନ କରେ। ଏହି କ୍ଷେତ୍ରରେ ଏକ କାକ ପବିତ୍ର ରୋହିଣୀ କୁଣ୍ଡରେ ସ୍ନାନ କରିବାରୁ ଚତୁର୍ଭୂଜ ପ୍ରାପ୍ତ କରି ବୈକୁଣ୍ଠକୁ ଗମନ କଲା। ଏ କ୍ଷେତ୍ରକୁ ମର୍ତ୍ତ୍ୟ ବୈକୁଣ୍ଠ କୁହନ୍ତି। ତନ୍ତ୍ର ଯାମଳରେ କୁହାଯାଇଛି।

ଭାରତଚୋତ୍କଳ ଦେଶେ ଭୂସ୍ୱର୍ଗ ପୁରୁଷୋତ୍ତମେ
ଦାରୁରୂପୀ ଜଗନ୍ନାଥୋ ଭକ୍ତାନାମଭୟପ୍ରଦଃ।

ଅର୍ଥାତ୍ ଭାରତବର୍ଷର ଉତ୍କଳ ଭୂଖଣ୍ଡ ପୁରୁଷୋତ୍ତମ କ୍ଷେତ୍ର ଭୂସ୍ୱର୍ଗରେ ଶ୍ରୀଜଗନ୍ନାଥ ଦାରୁ ରୂପରେ ଭକ୍ତମାନଙ୍କୁ ଅଭୟ ପ୍ରଦାନ କରୁଛନ୍ତି।

ସାଧାରଣ ମତରେ ସପ୍ତମରୁ ନବମ ଶତାବ୍ଦୀ ମଧ୍ୟରେ ପୁରୁଷୋତ୍ତମ ଚିନ୍ତାକଳ୍ପର ବ୍ୟାପୃତି ହେଲା ସମସାମୟିକ ବୈଷ୍ଣବ ଧର୍ମ ଉପାସନା ପ୍ରବୃତ୍ତିକୁ ନେଇ। ପୁରୁଷୋତ୍ତମ ବିଷ୍ଣୁଙ୍କ ସମସ୍ତ ବୈଶିଷ୍ଟ୍ୟ ଏବଂ ଲକ୍ଷଣ ପରିପ୍ରକାଶ ହେଲା। ଶ୍ରୀକୃଷ୍ଣ ଏବଂ ପୁରୁଷୋତ୍ତମଙ୍କ ପ୍ରେମ ଦର୍ଶନ ଏକ ଏବଂ ଅଭିନ୍ନ।

ଲ୍ୟାଣ୍ଡ ଅଫ୍ ଲର୍ଡ ବିଷ୍ଣୁ ନିବନ୍ଧରେ ଗବେଷକ ଜଗବନ୍ଧୁ ପାଢୀ ଆଲୋକପାତ କରନ୍ତି ଯେ ଯଦିଓ ମହାଭାରତ ମହାକାବ୍ୟରେ ପୁରୁଷୋତ୍ତମ ବା ଶ୍ରୀଜଗନ୍ନାଥଙ୍କ ନାମ ଉଲ୍ଲେଖ ନାହିଁ, ବିଦ୍ୱାନ ପଣ୍ଡିତଗଣ ରତ୍ନବେଦୀ ବା ରତ୍ନସିଂହାସନକୁ ଚିହ୍ନଟ କରିଛନ୍ତି, ଯାହା ଶ୍ରୀମନ୍ଦିରରେ ଅବସ୍ଥିତ। ଏହି ସିଂହାସନରେ



ଚାରି ଦାରୁଦେବତା ଶ୍ରୀବଳଭଦ୍ର, ଦେବୀ ସୁଭଦ୍ରା, ଶ୍ରୀପୁରୁଷୋତ୍ତମ (ଜଗନ୍ନାଥ) ଏବଂ ସୁଦର୍ଶନ ବିରାଜିତ। ବେଦୀ ବା ଅନ୍ତର୍ବେଦୀ ସମ୍ବନ୍ଧରେ ସର୍ବପ୍ରଥମେ ଇଞ୍ଜିନିୟର ଏମ୍. ଏମ୍. ଗାଙ୍ଗୁଲୀ କହିଥିଲେ ଯେ ବର୍ତ୍ତମାନର କୋଇଲି ବୈକୁଣ୍ଠ ମହାଭାରତର ବେଦୀ ବୋଲି ସୁରେନ୍ଦ୍ର ମହାନ୍ତି ତାଙ୍କ ରଚନାରେ ଉଦ୍ଧାର କରିଥିଲେ। କେ.ସି.ମିଶ୍ର କେତେକ କାରଣ ଦର୍ଶାଇ ଏହାକୁ ସମର୍ଥନ କରିନଥିଲେ। ଅନୁସନ୍ଧିତ୍ସୁଗଣ ଏହି ବେଦୀର



ବାସ୍ତବ ତଥ୍ୟ ଅନୁସନ୍ଧାନରେ ବ୍ରତୀ କିନ୍ତୁ ବର୍ତ୍ତମାନ ରୂପରେ ଚତୁର୍ଦ୍ଧାମୂର୍ତ୍ତିଙ୍କ ନିର୍ଦ୍ଦିଷ୍ଟ ପ୍ରକଟ କାଳ ଅନିରୂପିତ।

ସ୍କନ୍ଦ ପୁରାଣର ପୁରୁଷୋତ୍ତମ ମାହାତ୍ମ୍ୟରେ ବର୍ଣ୍ଣନା କରାଯାଇଛି ଏହିପରି ଯେ ଏକଦା ବ୍ରହ୍ମା ବିଶ୍ୱର ପ୍ରାଣୀମାନଙ୍କର କିପରି ମୋକ୍ଷ ପ୍ରାପ୍ତି ହେବ ଜାଣିବା ପାଇଁ ବିଷ୍ଣୁଙ୍କୁ ସ୍ତୁତି କଲେ। ବିଷ୍ଣୁ ସଦୟ ପ୍ରକଟ ହୋଇ ପବିତ୍ର ପୁରୁଷୋତ୍ତମ କ୍ଷେତ୍ରର ଭଗବାନ ମାଧବଙ୍କ ଗୌରବ ବଖାଣିଲେ। ଏଥୁ ଅନ୍ତେ ବ୍ରହ୍ମା ସେହି କ୍ଷେତ୍ର ଦେଖିବାକୁ ଆସିଲେ। ସେଠାରେ ଗୋଟିଏ କାକ ଅକସ୍ମାତ ପବିତ୍ର ରୋହିଣୀ କୁଣ୍ଡ ଜଳରେ ପଡ଼ିଯିବାରୁ ଚତୁର୍ଭୁଜ ଧାରଣ କରି ସ୍ୱର୍ଗପୁରକୁ ଗମନ କଲା। ପିତାମହ ଏହା ଦେଖି ଆଶ୍ଚର୍ଯ୍ୟ ଚକିତ ହେଲେ। ସେ ଏହି କ୍ଷେତ୍ରର ଐଶ୍ୱରିକ ଶ୍ରେଷ୍ଠତା ଉପଲବ୍ଧ କଲେ। ଏଠାରେ ମୃତ୍ୟୁଦେବତା ଯମ ମଧ୍ୟ ନିଜର ଅଧିକାର, କ୍ଷମତା ଏବଂ ବିଶେଷ ସୁବିଧାରୁ ବଞ୍ଚିତ ହୋଇଥିଲେ। ଯମଙ୍କ ପ୍ରାର୍ଥନାରେ ମହାଲକ୍ଷ୍ମୀ କହିଥିଲେ ଯେ ସେ ଏବଂ ବିଷ୍ଣୁ କେବେ ହେଁ ଏ ସ୍ଥାନ ପରିତ୍ୟାଗ କରିବେ ନାହିଁ, କେବଳ ମାଧବ ମୂର୍ତ୍ତି ଅନ୍ତର୍ହିତ ହେବେ। ମାଳବ ରାଜ୍ୟ ଏବଂ ଅବନ୍ତୀ ନଗରର ରାଜା ଇନ୍ଦ୍ରଦ୍ୟୁମ୍ନ ଏଠାରେ ଦାରୁ ମୂର୍ତ୍ତି ସ୍ଥାପନା କରିବେ।

ପରମ ବିଷ୍ଣୁଭକ୍ତ ଏବଂ ବ୍ରହ୍ମାଙ୍କ ପଞ୍ଚମ ପୁରୁଷ ରାଜର୍ଷି ଇନ୍ଦ୍ରଦ୍ୟୁମ୍ନ ଜଣେ ଜଟାଧାରୀଙ୍କଠାରୁ ପୁରୁଷୋତ୍ତମ କ୍ଷେତ୍ର ଏବଂ ପ୍ରଭୁ ନୀଳମାଧବଙ୍କ ମହିମା ଶୁଣିଲେ। ତାଙ୍କ ଚିତ୍ତ ଆକର୍ଷିତ ହେଲା ସେହି ପବିତ୍ର କ୍ଷେତ୍ର ଏବଂ ଦେବତାଙ୍କ ଦର୍ଶନ ପାଇଁ। ସେ ଅନୁସନ୍ଧାନ ନିମନ୍ତେ ନିଜ ରାଜ ପୁରୋହିତଙ୍କ ଅନୁଜ ବିଦ୍ୟାପତିଙ୍କୁ ପ୍ରେରଣ କଲେ। ବିଦ୍ୟାପତି ପୁରୁଷୋତ୍ତମ କ୍ଷେତ୍ରରେ ପହଞ୍ଚି ଶବର ରାଜା ବିଶ୍ୱାବସୁଙ୍କ ସହିତ ବନ୍ଧୁତା ସ୍ଥାପନ କଲେ ଏବଂ ତାଙ୍କର ଏକମାତ୍ର କନ୍ୟା ଲଳିତା ସହିତ ବିବାହ ବନ୍ଧନରେ ଆବଦ୍ଧ ହୋଇ ବିଶ୍ୱାସ ଜନ୍ମାଇଲେ। ବିଦ୍ୟାପତି ଇନ୍ଦ୍ରନୀଳମଣି ବିଗ୍ରହ ନୀଳମାଧବଙ୍କୁ ଦର୍ଶନ କରି ଅଭିଭୂତ ହୋଇପଡିଲେ। ଘଟଣାମାନ ଶୀଘ୍ର ଘଟୁଥିଲା। ବିଦ୍ୟାପତି ଅବନ୍ତୀ ନଗରକୁ ପ୍ରତ୍ୟାବର୍ତ୍ତନ କଲେ ଏବଂ ରାଜାଙ୍କୁ ସମସ୍ତ ତଥ୍ୟ ପ୍ରଦାନ କଲେ। ଇନ୍ଦ୍ରଦ୍ୟୁମ୍ନ ଆବଶ୍ୟକ ପ୍ରସ୍ତୁତି ପରେ ପାତ୍ରମନ୍ତ୍ରୀ ଏବଂ ଅନ୍ୟମାନଙ୍କ ସହିତ ପୁରୁଷୋତ୍ତମ କ୍ଷେତ୍ରକୁ ଯାତ୍ରା ଆରମ୍ଭର ଅବ୍ୟବହିତ ପୂର୍ବର ଦେବର୍ଷି ନାରଦଙ୍କର ଆବିର୍ଭାବ ହେଲା। ତାଙ୍କରି ଦିଗ୍‌ଦର୍ଶନରେ ପୁରୁଷୋତ୍ତମ କ୍ଷେତ୍ରରେ ଯାତ୍ରା ସମାପନ ହେଲା, କିନ୍ତୁ ସେଠାରେ ପହଞ୍ଚିବା ପୂର୍ବରାତ୍ରିରୁ ପ୍ରଭୁ ନୀଳମାଧବ ଭୀଷଣ ବାଲୁକା ଝଡରେ ଅନ୍ତର୍ହିତ ହୋଇ ଯାଇଥିଲେ।

ନାରଦ ରାଜାଙ୍କୁ କହିଲେ ଯେ ଯାହା ଘଟିଲା ତାହା ଭଗବାନଙ୍କ ଇଚ୍ଛା ଥିଲା। ଭଗବାନ ବର୍ତ୍ତମାନ ନୂତନ ରୂପ ଧାରଣ କରିବେ। ଇନ୍ଦ୍ରଦ୍ୟୁମ୍ନ ସହସ୍ର ଅଶ୍ୱମେଧ ଯଜ୍ଞର ଆୟୋଜନ କଲେ। ଶୂନ୍ୟବାଣୀ ଏହାକୁ ସ୍ୱୀକୃତି ଦେଲା, ଭଗବାନ ପ୍ରକଟ ହେବେ।

ନାରଦଙ୍କ ଉପଦେଶରେ ରାଜା ନୀଳକଣ୍ଠେଶ୍ୱରଙ୍କୁ ଦର୍ଶନ କଲେ। ନାରଦ ରାଜାଙ୍କୁ କହିଲେ ଯେ ଭଗବାନ ନୃସିଂହ ହିଁ ପୁରୁଷୋତ୍ତମଙ୍କ ଆଦିମୂର୍ତ୍ତି। ରାଜା ଅଶ୍ୱମେଧ ଯଜ୍ଞ କରାଇଲେ। ନୀଳଗିରି ପର୍ବତରେ ଏକ ମନ୍ଦିର ଗଢାଇ ବିଶ୍ୱକର୍ମାଙ୍କ ଦ୍ୱାରା ନିର୍ମିତ ନୃସିଂହ ମୂର୍ତ୍ତି ପ୍ରତିଷ୍ଠା କଲେ।

ଇତିମଧ୍ୟରେ ରାଜାଙ୍କର ଚତୁର୍ଦ୍ଧାମୂର୍ତ୍ତିଙ୍କର ସ୍ୱପ୍ନ ଦର୍ଶନ ହେଲା। ପରଦିନ ଶଙ୍ଖ ଚକ୍ର ଚିହ୍ନ ଥିବା ଅଦୃଷ୍ଟପୂର୍ବ ଏକ ଲାଲ୍‌-ପିଙ୍ଗଳ ବର୍ଣ୍ଣର ବୃକ୍ଷ ବା ଦାରୁ ସମୁଦ୍ର (ମହୋଦଧି) କୂଳରେ ଲାଗିଲା । ନାରଦ କହିଲେ ଯେ ଏପରି ବୃକ୍ଷ ଶ୍ୱେତଦ୍ୱୀପରେ ପ୍ରଭୁଙ୍କ ଲୋମରୁ ଉତ୍ପନ୍ନ ହୁଏ ଏବଂ ଏହାକୁ ଆଂଶିକ ଅବତାର କୁହାଯାଏ।

ଦାରୁଙ୍କୁ ପଟୁଆରରେ ଯଜ୍ଞ ବେଦୀକୁ ଅଣାଗଲା। ସ୍ୱୟଂ ଭଗବାନ ବୃଦ୍ଧ ବିଶ୍ୱକର୍ମା ରୂପରେ ମୂର୍ତ୍ତି ଗଠନ କଲେ। ରାଜା ପଥରର ଏକ ବିଶାଳ ମନ୍ଦିର ଗଢାଇ ବ୍ରହ୍ମ ଲୋକକୁ ଗମନ କଲେ ମନ୍ଦିର ଓ ଶ୍ରୀବିଗ୍ରହଙ୍କ ପ୍ରତିଷ୍ଠା କରିବା ପାଇଁ ପ୍ରଜାପ୍ରତି ବ୍ରହ୍ମାଙ୍କୁ ସଙ୍ଖୋଳିବାକୁ ସାଥିରେ ଥିଲେ ଦେବର୍ଷି ନାରଦ । ପିତାମହ ବ୍ରହ୍ମା ଶ୍ରୀଜଗନ୍ନାଥ ପ୍ରକଟ ହେଉଥିବା ଜାଣି ମନ୍ଦିର ଓ ଦେବତାଙ୍କୁ ପ୍ରତିଷ୍ଠା କରିବା ପାଇଁ ସମ୍ମତି ଜଣାଇଲେ। ବ୍ରହ୍ମାଙ୍କ ସହିତ ଦେବତାଗଣ ଏବଂ ଋଷି ଭରଦ୍ୱାଜ ମଧ୍ୟ ଆସିଲେ। ସେମାନେ ମର୍ତ୍ତ୍ୟପୁରରେ ପଦାର୍ପଣ କଲାବେଳକୁ ଦୀର୍ଘ ବର୍ଷ



ଅତିବାହିତ ହୋଇଥିଲା। ରାଜା ଗାଲମାଧବ ମନ୍ଦିରର ସତ୍ତ୍ୱାଧିକାର ଦାବି କଲେ। ବ୍ରହ୍ମାଙ୍କ ଦ୍ୱାରା ଏ ବିବାଦର ସମାଧାନ ହେଲା ଏବଂ ଇନ୍ଦ୍ରଦ୍ୟୁମ୍ନ ତାଙ୍କ ଅଧିକାର ଫେରି ପାଇଲେ।

ବ୍ରହ୍ମା ଚତୁର୍ଦ୍ଧାମୂର୍ତ୍ତିଙ୍କର ସ୍ତବ ପାଠ କଲେ। ବିଗ୍ରହମାନେ ରଥରେ ଆସି ମନ୍ଦିର ପ୍ରବେଶ କଲେ। ପୁରୁଷୋତ୍ତମ ଜଗନ୍ନାଥଙ୍କ ପ୍ରତିଷ୍ଠା ପାଇଁ ବ୍ରହ୍ମା ମନ୍ତ୍ରରାଜ ମନ୍ତ୍ର ଉଚ୍ଚାରଣ କରି ବିଗ୍ରହମାନଙ୍କ ହୃଦୟ ସ୍ପର୍ଶ କଲେ। ପ୍ରଭୁ ନୃସିଂହ ଅକସ୍ମାତ ଭୟଙ୍କର ରୂପରେ ପ୍ରକଟ ହେଲେ। ବ୍ରହ୍ମା ନାରଦଙ୍କୁ ନୃସିଂହ ମନ୍ତ୍ରରେ ଜଗନ୍ନାଥଙ୍କୁ ଜୀବନ୍ୟାସ ଦିଆଯାଏ ବୋଲି କହିଲେ। ନଚେତ୍ ଲୋକେ ଶ୍ରୀ ବିଗ୍ରହଙ୍କୁ ସାଧାରଣ କାଠ ଭାବି ଅବମାନନା କରିବେ। ନୃସିଂହ ଅଟନ୍ତି ବିଷ୍ଣୁଙ୍କର ଜ୍ୱଳନ୍ତ ପ୍ରତିମା । ବ୍ରହ୍ମା ନୃସିଂହ ମନ୍ତ୍ରରେ ପୁରୁଷୋତ୍ତମଙ୍କୁ ପୂଜା କରିବା ପାଇଁ ରାଜାଙ୍କୁ, ମନ୍ତ୍ର ଦୀକ୍ଷା ଦେଲେ। ରାଜା ସେହି ମନ୍ତ୍ରରେ ପୂଜା କଲାବେଳକୁ ଚତୁର୍ଦ୍ଧାମୂର୍ତ୍ତି ଅନ୍ତର୍ଦ୍ଧାନ ହୋଇଗଲେ। ନୃସିଂହ କୋଳରେ ଲକ୍ଷ୍ମୀଙ୍କୁ ପିନାକ ଧନୁ ଏବଂ ସୁଦର୍ଶନ ଚକ୍ର ଦୁଇହାତରେ ଧାରଣ କରି ପ୍ରକଟ ହେଲେ। ବ୍ରହ୍ମା କହିଲେ ନୃସିଂହ ହିଁ ଆଦି ଦେବତା। ବେଦ ପ୍ରଥମେ ଏକ ଥିଲା, କିନ୍ତୁ ପରେ ଚାରି ସଂହିତାରେ ବିଭାଜିତ ହେଲା। ସେହିପରି ମାତ୍ର ଏକ ବିଗ୍ରହ ଚତୁର୍ଦ୍ଧାମୂର୍ତ୍ତିରେ ପରିଣତ ହେଲେ। ସେ ଇନ୍ଦ୍ରଦ୍ୟୁମ୍ନଙ୍କୁ ନୃସିଂହ ମନ୍ତ୍ରରେ ପ୍ରଭାବଶାଳୀ ଢଙ୍ଗରେ ଜଗନ୍ନାଥ ପୁରୁଷୋତ୍ତମଙ୍କୁ ପୂଜିବା ପାଇଁ ଉପଦେଶ ଦେଲେ। ପରିଣାମତଃ ରାଜା ରତ୍ନବେଦୀରେ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଦର୍ଶନ କରି କୃତକୃତ୍ୟ ହେଲେ।

ଅନନ୍ତ କୋଟି ବ୍ରହ୍ମାଣ୍ଡ ଠାକୁରଙ୍କ ଲୀଳା ଅନନ୍ତ । ଦାରୁବ୍ରହ୍ମ ଜଗନ୍ନାଥ ଶ୍ରୀମନ୍ଦିରର ରତ୍ନବେଦୀରେ ଅଗ୍ରଜ ବଡଠାକୁର ବଳଭଦ୍ର, ଭଗିନୀ ଦେବୀ ସୁଭଦ୍ରା ଏବଂ ଚକ୍ରରାଜ ସୁଦର୍ଶନଙ୍କ ସହିତ ବିରାଜିତ।

ଅପାଣିପାଦୋ ଜବନୋ ଗ୍ରହୀତା
ପଶ୍ୟତ୍ୟ ଚକ୍ଷୁଃ ସ ଶୃଣୋତ୍ୟ କର୍ଣ୍ଣଃ
ସ ବେତ୍ତି ବେଦ୍ୟଂ ନ ଚ ତସ୍ୟାସ୍ତି ବେତ୍ତା
ତମାହୁରଗ୍ର୍ୟଂ ପୁରୁଷଂ ମହାନ୍ତମ୍

ଅର୍ଥାତ୍ ଯାହାଙ୍କର ହସ୍ତ ପଦ ନ ଥାଇ ମଧ୍ୟ ସର୍ବ ଶକ୍ତିମାନ, ଚକ୍ଷୁ ନ ଥାଇ ସର୍ବଦ୍ରଷ୍ଟା, କର୍ଣ୍ଣ ନ ଥାଇ ସର୍ବଶ୍ରୋତା ସେ ସର୍ବ ବ୍ୟାପକ, ସର୍ବଜ୍ଞାତା ଏବଂ ସେ ହିଁ ପରଂବ୍ରହ୍ମ ପରମେଶ୍ୱର।

ପୁରୁଷୋତ୍ତମ କ୍ଷେତ୍ରରେ ମହାପ୍ରଭୁଙ୍କ ଲୀଳା ସମ୍ବନ୍ଧରେ ସ୍କନ୍ଦ ପୁରାଣ କହନ୍ତି :

ଶ୍ରୀପୁରୁଷୋତ୍ତମ କ୍ଷେତ୍ର ସର୍ବତୀର୍ଥେ ସାର
ଇତି ପୂର୍ବେ କହୁଅଛି ଆହେ ମୁନିବର
ମନୁଷ୍ୟ ଲୀଳା କରିବା ପାଇଁ ନାରାୟଣ
ନୀଳାଚଳେ ଦାରୁବ୍ରହ୍ମ ରୂପେ ବିଦ୍ୟମାନ ।

ସେହି ଦାରୁ ଦେବତା ହିଁ ପୂର୍ଣ୍ଣବ୍ରହ୍ମ ଅବତାରୀ ପୁରୁଷୋତ୍ତମ, ଗତିମୁକ୍ତି ଦାତା।

**ସହାୟକ ଗ୍ରନ୍ଥସୂଚୀ**


୧. ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ
ଲେ: ପଣ୍ଡିତ ସୂର୍ଯ୍ୟ ନାରାୟଣ ଦାଶ (ପୃ:୧୮)
୨. ଦାରୁବ୍ରହ୍ମଙ୍କର ନବକଳେବର
ଲେ: ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର
3. Cultural Heritage of Odisha
Sri Jagannath Special Volume
4. The Cult of Jagannath and the Regional Tradition of Orissa By A. Eschmann H. Kulke G. C. Tripathy
୫. ଶ୍ରୀଜଗନ୍ନାଥ ଲେ: ମହୀମୋହନ ତ୍ରିପାଠୀ
୬. ସ୍କନ୍ଦ ପୁରାଣ


ରାଜେନ୍ଦ୍ର ନଗର, କଟକ

# ଶ୍ରୀମନ୍ଦିରର ରତ୍ନଭଣ୍ଡାର

**ଦେବପ୍ରସାଦ ମିଶ୍ର**

ଏବେ ଚାରିଆଡେ ପୁରୀ ଶ୍ରୀମନ୍ଦିରରେ ମହାପ୍ରଭୁ ଜଗନ୍ନାଥଙ୍କ ରତ୍ନଭଣ୍ଡାର ଖୋଲିବାକୁ ନେଇ ଚର୍ଚ୍ଚା । ମହାପ୍ରଭୁଙ୍କ ଆସ୍ଥାନ ଶ୍ରୀମନ୍ଦିର ଓ ନିଜେ ମହାପ୍ରଭୁ ବଡ ରହସ୍ୟପୂର୍ଣ୍ଣ ଓ ବୈଚିତ୍ର୍ୟମୟ, ୧୯୮୪ ମସିହା ପରେ ଏବେ ମାନ୍ୟବର ଉଚ୍ଚ ନ୍ୟାୟାଳୟଙ୍କ ନିର୍ଦ୍ଦେଶରେ ପୁଣି ରତ୍ନଭଣ୍ଡାରକୁ ପ୍ରବେଶ କରିବାକୁ ନେଇ ଆଲୋଚନା । ପ୍ରକୃତରେ ଇତିହାସ ମାଦଳା ପାଞ୍ଜି ଅନୁସାରେ ୧୯୨୭ରେ ଗଜପତି ରାମଚନ୍ଦ୍ର ଦେବଙ୍କ ସମୟରେ ରତ୍ନଭଣ୍ଡାର ଖୋଲାଯାଇ ସବୁ ପ୍ରକାର ସୁନା, ରୂପା, ମୋତି, ମାଣିକ, ହୀରା, ନୀଳା ଆଦିର ଏକ ତାଲିକା ପ୍ରସ୍ତୁତ କରାଯାଇଥିଲା । ସେତେବେଳେ କଲେକ୍ଟର ଥିଲେ ଶ୍ରୀ ଦୟାନିଧି ଦାସ ଆଉ ଥରେ ୧୯୬୨ ମସିହାରେ ତତ୍କାଳୀନ ମନ୍ଦିର ପ୍ରଶାସକ ଏଲ, ମିଶ୍ରଙ୍କ ଅଧ୍ୟକ୍ଷତାରେ ରତ୍ନଭଣ୍ଡାର ନିରୀକ୍ଷଣ ଓ ତନଖି ଆରମ୍ଭ କରିଥିଲେ, ଯାହା ଅଗଷ୍ଟ ୧୯୬୪ ଯାଏଁ ଚାଲିଥିଲା, ପରେ ଏହାକୁ ପୁଣି ୧୯୬୬ରେ ମନ୍ଦିର ପରିଚାଳନା କମିଟି ରତ୍ନଭଣ୍ଡାରକୁ ଏକ ସବ୍‌କମିଟି ଜରିଆରେ ତନଖି କରିବା ପାଇଁ ସୁପାରିଶ କରାଯାଇଥିଲା, କିନ୍ତୁ ନାନା ପ୍ରକାର କଥା ହେବାରୁ ଏ କାମ ଆଉ ଆଗକୁ ଆଗେଇ ପାରି ନ ଥିଲା । ପୁଣି ୧୯୭୮ରେ ମୁଖ୍ୟମନ୍ତ୍ରୀ ନୀଳମଣି ରାଉତରାୟଙ୍କ ସମୟରେ ଶ୍ରୀମନ୍ଦିରକୁ ନେଇ ଏକ ଉଚ୍ଚସ୍ତରୀୟ କମିଟି ବସିଥିଲା । ଏ କମିଟି ୧୯୭୯ରେ ମୁଖ୍ୟମନ୍ତ୍ରୀଙ୍କୁ ରିପୋର୍ଟ ଦେଇଥିଲେ, ଏ କମିଟି ତତ୍ତ୍ୱାବଧାନରେ ୧୯୭୮ ମେ ମାସରେ ରତ୍ନଭଣ୍ଡାରରେ ଥିବା ସୁନା, ରୂପା, ହୀରା, ମୋତି ଅଳଙ୍କାରର ସୂଚୀ ପ୍ରସ୍ତୁତି କାମ ଆରମ୍ଭ ହୋଇଥିଲା । ଏ କାମ ଜୁଲାଇ ୧୯୭୮ରେ ସରିଥିଲା, ଶେଷଥର ୧୯୮୪ ମସିହାରେ ରତ୍ନଭଣ୍ଡାର ଖୋଲିବା ପାଇଁ ପ୍ରତ୍ନତତ୍ତ୍ୱ ବିଭାଗ ଚେଷ୍ଟା କରିଥିଲା । କିନ୍ତୁ ଏ କାମ ବିଶେଷ କାରଣ ବଶତଃ ଆଗେଇ ପାରିନଥିଲା । ଏବେ ଦୀର୍ଘ ବର୍ଷ ପରେ ଏବେ ମାନ୍ୟବର ଉଚ୍ଚ ନ୍ୟାୟାଳୟଙ୍କ ନିର୍ଦ୍ଦେଶରେ ମନ୍ଦିର ପ୍ରଶାସନ ପ୍ରତ୍ନତତ୍ତ୍ୱ ବିଭାଗ ଏ ରତ୍ନଭଣ୍ଡାର ଖୋଲିବା କାମ ହାତକୁ ନେଇଛନ୍ତି । ମନ୍ଦିର ମେକାପଙ୍କ ବୟାନ ଅନୁଯାୟୀ ରତ୍ନଭଣ୍ଡାରରୁ ପାଣି ଗଳିବା କଥାକୁ ନେଇ ରତ୍ନଭଣ୍ଡାର ଖୋଲିବାକୁ ଉଦ୍ୟମ ହେଉଛି, ରେକର୍ଡ ଅଫ ରାଇଟ୍‌ସ୍ ଅନୁସାରେ ପ୍ଲଟ ନଂ ୫ ଓ ୬ରେ ରତ୍ନଭଣ୍ଡାର ରହିଛି । ତେବେ ଏହା କେତେ କୋଠରୀ ବିଶିଷ୍ଟ ତାହା ନେଇ ଭିନ୍ନ ଭିନ୍ନ ଆଲୋଚନା, କିଏ କହେ ଏଥିରେ ୩ଟି ଆଉ କିଏ କହେ ୯ଟି, ଆହୁରି କେତେକ ଗୁପ୍ତ ସୁଡଙ୍ଗ ଓ କୂଅ କଥା କହନ୍ତି, ବିଦେଶୀ ଆକ୍ରମଣ ବେଳେ ବିଗ୍ରହମାନଙ୍କୁ ଲୁଚାଇ ନେଇ ସମୁଦ୍ର କୂଳ ପର୍ଯ୍ୟନ୍ତ ଓ ବାଙ୍କି ମୁହାଣ ରାମଚଣ୍ଡି ପର୍ଯ୍ୟନ୍ତ ଓ ତାଳବଣିଆ ପାଖାପାଖି ଅଞ୍ଚଳ ପର୍ଯ୍ୟନ୍ତ ଅନେକ ସୁଡଙ୍ଗ ଥିଲା । ସୁଡଙ୍ଗ ପାଖରେ ଅରିଆ ସେବକ ଡଙ୍ଗା ଧରି ଥାନ୍ତି ବିଗ୍ରହମାନଙ୍କୁ ଗୁପ୍ତରେ ନେଇ ସମୁଦ୍ରକୁ ନଚେତ ଚିଲିକାକୁ ନେଇଯାନ୍ତି । ଗଜପତି ରାଜାମାନେ ବିଭିନ୍ନ ରାଜ୍ୟଜୟ କରି ଆଣିଥିବା ଧନ ରତ୍ନକୁ ରଖିବା ପାଇଁ ମନ୍ଦିର ଭିତରେ ଥିବା କୂଅ, ଅଣଓସାରିଆ ସୁଡଙ୍ଗ ସଦୃଶ ସ୍ଥାନମାନଙ୍କରେ ସୁନା, ହୀରା, ନୀଳା, ମୋତି, ମାଣିକ୍ୟକୁ ଲୁଚାଇ ରଖୁଥିଲେ । ଏବେ କଥା ହେଉଛି ବାହାର ରତ୍ନଭଣ୍ଡାର ଓ ଭିତର ରତ୍ନଭଣ୍ଡାରକୁ ନିର୍ଦ୍ଦିଷ୍ଟ କରାଯାଉ ଓ ଅନ୍ୟାନ୍ୟ ସ୍ଥାନର ତଲାସୀ ନିଆଯାଉ । ଅନଙ୍ଗଭୀମ ଦେବଙ୍କ ସମୟରେ ଜଗନ୍ନାଥ ମନ୍ଦିରର ରୀତିନୀତି ସେବା ପୂଜା ଯାହା





ବି ହେଉଥିଲା ସବୁ ସୁନାରେ ମାଢ ଜରିଆରେ, ମାଦଳାପାଞ୍ଜି ଓ ପ୍ରଖ୍ୟାତ ଐତିହାସିକ ଓ ଗବେଷକ ସ୍ୱର୍ଗୀୟ ଜଗବନ୍ଧୁ ସିଂହଙ୍କ ୧୯୨୯ରେ ତାଙ୍କର ପ୍ରାଚୀନ ଉତ୍କଳ ପୁସ୍ତକରେ ମନ୍ଦିର ଶାସନ ପ୍ରଣାଳୀରୁ ମନ୍ଦିର ଦେବା ଦେବୀ ମା'ଙ୍କ ପୂଜା ପର୍ବପର୍ବାଣି ଯାନିଜାତକୁ କିପରି ମାଢ ମାଢ ସୁନା ଦେଉଥିଲେ ଏବଂ ଅଜସ୍ର ଭୂସଂପତ୍ତି ମଧ ମହାପ୍ରଭୁଙ୍କ ପାଇଁ ଖଞ୍ଜିଥିଲେ । ଏଠାରେ ବିଗ୍ରହମାନଙ୍କ ପାଇଁ ବିଭିନ୍ନ ଆଭୂଷଣ ପାଇଁ ଯେଉଁ ସୁନା ଦେଇଥିଲେ, ସେ ସବୁ ଏବେ ବାହାର ହେଉ ବା ଭିତର ରନ୍ ଭଣ୍ଡାରରେ ଅଛିତ !

କେତେ କାଳ ହେଲାଣି, କେତେ ରାଜା ଗଲେଣି, କେତେ କାଳ ବାତ୍ୟା ଦେଉଳ ଉପର ଦେଇ ବହିଗଲାଣି, କେତେ ବିଦେଶାଗତ ଆକ୍ରମଣକାରୀମାନେ ଦେଉଳ ଉପରେ ଦୃଷ୍ଟି ପକାଇ ସାରିଲେଣି  କିନ୍ତୁ ଦେଉଳର ଶାସନ ପ୍ରଣାଳୀ ଅକ୍ଷୁଣ୍ଣ ଭାବରେ ଚଳି ଆସୁଅଛି । ଏହା ହିଁ ମନ୍ଦିର ଶାସନ ପ୍ରଣାଳୀର ଦୃଢତା ବିଷୟରେ ଅକାଟ୍ୟ ପ୍ରମାଣ । ଇନ୍ଦ୍ରଦ୍ୟୁମ୍ନ ମହାରାଜାଙ୍କ ଅମଳରୁ ଯେ ଶାସନ ନୀତି ପ୍ରଚଳିତ ହୋଇଥିଲା ଏବଂ ଯଯାତି, ଅନଙ୍ଗଭୀମ ପ୍ରଭୃତି ଯାହାକୁ ସୁଦୃଢ କରି ଯାଇଥିଲେ ତାହା ଆଜି ପର୍ଯ୍ୟନ୍ତ ଅକ୍ଷୁଣ୍ଣ ଭାବରେ କଳ ପରି ଚଳୁଥିବା ବିଷୟ ଭାବିଲେ ଟିକିଏ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ହୁଏ । ଏହି ଶାସନ ପ୍ରଣାଳୀ ବିଷୟ ଟିକିଏ ଭାବିଲେ ଏବଂ ଆଲୋଚନା କଲେ, କଥାଟା ସାଧାରଣ ଲୋକେ ବୁଝି ପାରିବେ । ଅନଙ୍ଗଭୀମ ଦେବ ବଡ ଦେଉଳ ନିର୍ମାଣ କାର୍ଯ୍ୟ ଶେଷ କରି ଦିଅଁଙ୍କୁ ଦେଉଳରେ ବିଜେ କରାଇବା ପରେ ଧନରନ୍ ଓ ଭୂସମ୍ପତ୍ତି ଜଗନ୍ନାଥ ଦେବଙ୍କୁ ଦାନ କରି ପରମହଂସ ବାଜପେୟୀଙ୍କୁ ପ୍ରଭୁଙ୍କର ଭୋଗ ନିଯୋଗ କରି ସମସ୍ତ ଆଡତି ଭିଆଣ କରିବା ଲାଗି ଆଦେଶ ଦେଇଥିଲେ । ଦେଉଳ ତୋଳାଇବା ଭାର ମଧ୍ୟ ତାଙ୍କ ହସ୍ତରେ ନ୍ୟସ୍ତ ଥିଲା । ଯଯାତିକେଶରୀଙ୍କ ଦେଉଳ ବୈତମ ହୋଇଥିବାରୁ ଚୂଡଙ୍ଗ ଦେବଙ୍କ ଅମଳରୁ ନୂତନ ଦେଉଳ ତୋଳା କାର୍ଯ୍ୟ ଆରମ୍ଭ ହୋଇଥିଲା । ପ୍ରଥମେ ସ୍ଥିର ହୋଇଥିଲା ଯେ, ଦେଉଳର ଉଚ୍ଚତା ୧୦୦ ହାତ ହେବ । ଅନଙ୍ଗଭୀମ ଦେବ ରାଜସିଂହାସନରେ ଅଭିଷିକ୍ତ ହେଲା ବେଳକୁ ଦେଉଳ ନିର୍ମାଣ କାର୍ଯ୍ୟ ଶେଷ ହୋଇ ନଥିଲା । ୧୦୦ ହାତ ଦେଉଳ ତୋଳିବା ବହୁ କାଳସାପେକ୍ଷ ଥିବାର ଭାବି ଦେଉଳ ଉଚ୍ଚତା ୯୦ ହାତ ହେବାର ସ୍ଥିର ହେଲା । ଶ୍ରୀବସ୍ ଖଣ୍ଡାଶାଳ ପ୍ରାସାଦ ବିଷ୍ଣୁଙ୍କର ପ୍ରିୟ ଥିବା ହେତୁ ସେହି ପ୍ରକାର ଦେଉଳ ହେଲା । ମୁଖ ଶିଆଳି ବରାହ ନୃସିଂହଙ୍କ ଦେଉଳ, ତ୍ରିବିକ୍ରମ ଦେବଙ୍କର ୩ ଦେଉଳ । ଜଗମୋହନ ଈଶାନମୋଡ କରିବା ଲାଗି ପ୍ରତିଖ୍ୟାତ ଦୁଇ ନକ୍ଷତ୍ର ସଳଖରେ ଦେଉଳ ଆଗରେ ମାଠରେଖ ଦେଉଳ, ୧ ନୃସିଂହନାଥ ଖଣ୍ଡାଶାଳ ଗଣପତି ପରୀକ୍ଷା ଭୋଗନିଯୋଗ ଘେନିବା ଲାଗି କାଠ କାମ ପାଷାଣ ଥାଇ ଅଛାଳୀ, ମଣ୍ଡପ, ବିମଳାକ୍ଷୀ ଦେବୀଙ୍କ ଦେଉଳ, ସରସ୍ୱତୀଙ୍କ କଳା ପାଷାଣ ଦେଉଳ, ନଳଣାଘଟଣରେ ମହାଲକ୍ଷ୍ମୀଙ୍କ ଦେଉଳ, ଇନ୍ଦ୍ରଷଣ୍ଡଦେବ, ଦେବସ୍ନାନମଣ୍ଡପ, ଈଶାନେଶ୍ୱର ଦେଉଳ, କୈଳାସ ଆକୃତି ବିଶିଷ୍ଟ ଉତ୍ତରାଇ ଦେବୀ ଦେଉଳ, ବଟେଶ୍ୱର ବାଟମଙ୍ଗଳା ଗଣପତି ଅନନ୍ତ ପୁରୁଷୋତ୍ତମ ଦେବ କାମଦେବ କ୍ଷେତ୍ରପାଳମାନଙ୍କ ଦେଉଳ, ବଟବୃକ୍ଷର ପାଷାଣ ଚଉରା ଚାରିଦ୍ୱାରେ ୨୨,୨.୨୧ ଓ ୨୯ ପାହାଚ ମେଘନାଦ ପ୍ରାଚୀର ଚାରିଦ୍ୱାରରେ ଚାରି ଚାରି ଗୁମୁଟ ଦେଉଳ, ଜୟ ବିଜୟ, ଚଣ୍ଡ ପ୍ରଚଣ୍ଡ, କୁମୁଦ କୁମୁଦାସ, ନନ୍ଦ ସୁନନ୍ଦ ଏପରି ଅଷ୍ଟ ପାର୍ଶ୍ୱ ଦେବତାଙ୍କର ୮ ଦେଉଳ ବଡ ବଡ ସିଂହ ଚାର ଗଣପତି ଦେଉଳ ତୋଳାଇଲେ । କନକ ମୁଣ୍ଡାଇ, ସୁନା ଆଭରଣ ବିଶିଷ୍ଟ ଭିତର ଗମ୍ଭିରାଦ୍ୱାର, ଭୂପାଳ କବାଟ, ସୁନାଚକା ଶିକୁଳି ମଞ୍ଚନାରାଜକୁ ଅଙ୍ଗାଭରଣ, ସର୍ବାଭରଣ ତ୍ରିକାଳ ପୂଜାକୁ ଧୂପ ଷୋଡଶୋପଚାର ପାତ୍ର ରଜୋପଚାର ଯୋଗାଡ ଖଟଣି ଲାଗି ସୁନା ରୂପା ଯୋଗାଡ ଖଟପଲଙ୍କ ବିମାନ ଖଟଦୋଳୀ ଖଟୁଲି କନକ ଦଣ୍ଡଛତ୍ର ରାଜନୀତି ବିଧିଛତ୍ର ଚାମର ପ୍ରଭୃତି ନିର୍ମିତ ହେଲା । ଏ ସମସ୍ତ ବ୍ୟୟ ଲାଗି ରାଜାଜ୍ଞା ପ୍ରମାଣେ ନୀଳକଣ୍ଠ ରାଜଗୁରୁ ମହାପାତ୍ର ପରମହଂସ ବାଜପେୟୀଙ୍କ ଜିମାରେ ୧୨୫୦୦୦୦ ମାଢ ସୁବର୍ଣ୍ଣ ଦେଲେ । ଏ ସମସ୍ତ କାର୍ଯ୍ୟ ତଦାରଖ କରିବା ଲାଗି ୧୦୦ ଅଶ୍ୱାର ୧୦୦୦ ବାଣୁଆ ପାଇକ ନିଯୁକ୍ତ ଥିଲେ । ବାଜପେୟୀ ସାଢୀ ପାଇ ଦେଉଳରେ ପରିଛା ହେଲେ । ସକଳ କାର୍ଯ୍ୟ ଶେଷରେ ବାଜପେୟୀ ମହାଦାନ ପାଇଲେ । ଶାସନ ବସାଇବାକୁ ବେଶ ପାଇଲେ ।



ସୁନାକୁମ୍ଭ ପଲଙ୍କ ପାଇଲେ । ମହାପାତ୍ରେ ଶାଢୀ ପାଇ ପୁରୁଷୋତ୍ତମ ଦେଶ ଲୋକଙ୍କୁ ନିମ୍ନଲିଖିତ ମତେ ତୋପଖଣ୍ଡୁଆତି ଦେଲେ । ଶ୍ରୀ ପୁରୁଷୋତ୍ତମ କ୍ଷେତ୍ର ୫୨ ମଠ ସନ୍ୟାସୀ ଉଭୟ ଖଣ୍ଡ ମୁଦୀରଥ ଉଭୟଖଣ୍ଡ ଗ୍ରାମର ୧୩୦୦ ମହାଜନ ଶ୍ରୀଜଗନ୍ନାଥ ଦେବଙ୍କ ସେବକ ବ୍ରାହ୍ମଣ ଶୁଦ୍ର ୧୪୦୦ମାନେ ପରମହଂସ ବାଜପେୟୀ ପରୀକ୍ଷାଙ୍କୁ ନେଇ ପରମେଶ୍ୱରଙ୍କ ଭୋଗ ନିଯୋଗ କରାଇବ । ଯଥାବିଧି ପ୍ରମାଣେ ଭୋଗରାଗ ପର୍ବ ଯାତ୍ରାମାନ କରାଇବ । ପୁରୁଣା ପାଟଳ ଭାଙ୍ଗି ୯୦ ହାତ ଦେଉଳ କରାଇବେ । ଅନ୍ୟାନ୍ୟ ଦେବତାମାନଙ୍କ ଦେଉଳ ତୋଳାଇବେ । ମଳୟ ମଣ୍ଡପ କରାଇବେ ଇତ୍ୟାଦି । ପରୀକ୍ଷା ଶାଢୀ ପାଇଲେ ଖଣ୍ଡୁଆ ୧ କର୍ଣ୍ଣଙ୍କୁ ତଡାପ ୧ ଚନ୍ଦନ ୧ ବଡ଼ା ଦହି ୧ ପଟୋଇ ବଡ ସାକର ୧ ପଟ ପୁଷ୍ପାଞ୍ଜଳି ମୁଣ୍ଡାଚୂଳ ଧୂପ ପାଦୁକ ପାନ–ଗୁଆ ପ୍ରସାଦ ଝରି ହାତପୋଛା ଖଦି ଇତ୍ୟାଦି ମୁଦୁଲି ଗଉଡ ବିଶୋଇ ଗୁଡିଆ ବିଶୋଇ ଭଣ୍ଡାର ମେକାପ ପାତ୍ରୀବଡୁ ହଡପନାଏକ ପଣ୍ଡା ପଶୁପାଳକ ଖୁଣ୍ଟିଆ ଚାରାବଡୁ ମେକାପ ଲେଙ୍କା ପାଇକମାନେ ପରୀକ୍ଷାଙ୍କୁ ଦେଇ ଖଟିଲେ । ପରୀକ୍ଷା ପରମେଶ୍ୱରଙ୍କୁ ଦର୍ଶନ କଲାପରେ ଲେଙ୍କା ପରିବାର ମଣିମା ଡାକ ଡାକିଲେ । ଆସ୍ଥାନ ପଢିଆରୀ ପଟୁଆର କଲା । ତଳି ପାଳିଆ ପଢିଆରୀ ପରିଛାଙ୍କ ପଛେ ଥାଇ ତାଙ୍କ ହାତରୁ ପ୍ରସାଦ ନେଲା । ପରେ ପରିଛା ଅଟି ମଣ୍ଡପରେ ବେହରଣ କରି ଖଡି ବିଛଣା ପକାଇ ସମସ୍ତ ପ୍ରକରଣମାନଙ୍କଠାରୁ ଭିଆଣ ନିଯୋଗ ବିଶୋଇମାନଙ୍କଠାରୁ ଭୋଗ ନିଯୋଗ ଭଲ ମନ୍ଦ ବୁଝି ଭିୟାଣ ପ୍ରମାଣେ ତୁଳ ପଳ ମାପକରି ନିଯୋଗ ଦର୍ଶାଇଲା । ପରିଛା ସମସ୍ତ ବୁଝି ନିମ୍ନଲିଖିତ ମତେ ଜମାବନ୍ଦୀ କଲେ ।

୧– ଦେଉଳ ସୁଆଁ ସ କାର୍ଯ୍ୟ ସୁନା ୧୦୦୦୦୦ ମାଢ

୨– ଖମ୍ଭ ଆଭରଣ ସୁନା ୧୦୦୦୦୦ ମାଢ

୩– ଛାମୁକବାଟ ରୂପା ଆଭରଣ ସୁନା ୩୦୦୦୦ ମାଢ

୪– ଅନସର ସମୟରେ ଶ୍ରୀଅଙ୍ଗରେ ଚନ୍ଦନ ପାଣିଲାଗି ହେବା ଲାଗି ସୁନା ୬୦୦୦ ମାଢ

୫– ସୁନାପକ୍ଷିଆ ୪ ଠାକୁରଙ୍କର ସୁନା ୩୧୦୮ ମାଢ

୬– ଚକା ସିଂହାସନ ମୁଗୁନିପାଷାଣ ସୁନା ୨୪୦୩ ମାଢ

୭– ସୁନା ଶିକୁଳି ୭, ୫ ଓ ୯ ସରିଆ ସୁନା ୨୧୬୦ ମାଢ

୮– ଲଲାଟପାଟୀ ଖଞ୍ଜା ହେବାଲାଗି ସିଂହାସନ ବାଡରେ ଲାଗିବ କୁଞ୍ଚନ ନାରାଚ ସୁନା ୪୫୦ ମାଢ

୯– ଅଙ୍ଗାଭରଣ ବଡଠାକୁରଙ୍କର ସୁନା ୪୦୦ ମାଢ

( ସୁନା ମାଠ ରାହୁରେଖା ପାଟୀ ୧୦୦ ମାଢ ହରିତାଳ ରେଖା ୨୬୧୫୦ ମାଢ ନୀଳନା ଏକ ମାଣିକ୍ୟ ଅନୁନାୟକ ରନ୍‌ଜଡିତ ଅ ଅଶୋକ ପଲ୍ଲବ ହାତୀ ୧–୮୦ ମାଢ ମାଠମକରକୁଣ୍ଡଳ ୨ ଯୋଡାକୁ ୭୦ ମାଢ )

**ସୁଭଦ୍ରାଦେବୀ –** ( ଢୋଉ ମା ୭୦ ହରିତାଳ ମା ୮୦ ମାଣିକ୍ୟ ନାୟକ ମା ୭୦ ମାଠ ତଡାକି ମା ୬୦ କୁଚ ୨ଟାକୁ ମା ୬୦ ଢ – ମା ୩୩୦ । ବଳରାମଙ୍କ ଚୂଳ ୧କୁ ମା ୭୦ ସୁନା କେତକୀ ଝରା ୧୨କୁ ମା ୧୦୦ ସପ୍ତଫଣା ରନ୍ ଜଡିତ ମା ୧୫୦୦ ପଞ୍ଚଶଖା ମୁକୁଟ ମା ୮୦୦ ଅଳକାପାଟୀ ମା ୧୦୦ ରନ୍‌ଜଡିତ ଅର୍ଦ୍ଧଚନ୍ଦ୍ର ମା ୬୦ ଅଳକାପାଟୀ ଦୁଇପାଖେ ତରାଟ ଫୁଲ ମା ୬୦ କର୍ଣ୍ଣାବତଂସ ମା ୮୦ ମାଠ କର୍ଣ୍ଣାଞ୍ଚଳ ମା ୫୦ ନରାଜ ପଶିକର୍ଣ୍ଣଫୁଲ ମା ୮୦ ଟାକୁ ମକରକୁଣ୍ଡଳ ୨୦ ମା ୧୧୦ ବଡ ମୁକ୍ତା ୮କୁ ମା ୨୦ କଣ୍ଠିମାଳ ହାରମାଳ ଚାପସରି ପଦକମାନ ସଳଖ ହୋଇ ରହିବା ଲାଗି ସୁନା ମାଠ ହୃଦୟ ଭୂଷଣ ମା ୪୦୦ ଅଧର ତଳେ ମୁକ୍ତା ଚାପସରି ମା ୮୦ ସୁନା ବାଘନଖ ହରିଡା କଣ୍ଠିମାଳ ମା ୧୦୦ ଦୋସରି କଣ୍ଠିମାଳ ମା ୬୦ ଦଶପଦକ ଇନ୍ଦ୍ରନୀଳ ମର୍କତ ନବଗ୍ରହ ପଦକ ବଡହୀରା ନାଏକ ସୂର୍ଯ୍ୟମଣ୍ଡଳ ପଦକ ଗୋମେଧ ନାଏକ ମଣିନାଏକ ମୁକୁଟ ଜାଲି ପଦକ ମାଣିକ୍ୟ ନାଏକ ପଦ୍ମକେଶର ହୀରାସାର ଅର୍ଦ୍ଧଚନ୍ଦ୍ର ଅଙ୍ଗାକ୍ରୋଡ ପଦକ ମା ୧୦୦୦ । ଜଗନ୍ନାଥ ଦେବଙ୍କ ଅଙ୍ଗାଭରଣ ୫୧୦ ମାଢ । ( ଲକ୍ଷ୍ମୀ ପ୍ରତିମା ମା ୮୦ ଢ ଶ୍ରୀଖଣ୍ଡ ଓଡିଆଣୀ ମା ୨୪୦ ଘଣ୍ଟିଘାଗୁଡି ଲାଗିବାକୁ କଟୀମେଖଳା ମା ୩ କଦମ୍ବମାଳ ମା ୪୦୦ ବୈଜୟନ୍ତୀ ପଦ୍ମମାଳ ମା ୪୦୦ ଭୁଜମୂଳରେ



ମୁକ୍ତାସରବଳା ମା ୩୦୦ ଗନ୍ଧର୍ବ ବଳା ମା ୪୦୦ ବାହୁଟୀ ମା ୧୨୦୦ ମୁଦି ମା ୫୦ ସୁନାମାଠ ପଦ୍ମହସ୍ତ ୩୦୦୦ ଶ୍ରୀପୟର ୧୮୦୦ ଯାଉଁଳି ପାହୁଡ ୫୦୦ )। ତଡାଉ ୭୧ ମା ୧୨୭୦୦ ଆୟୁଧ ମା ୪୦୦ ସୌନନ୍ଦ ମୂଷଳ ମା ୪୦୦ ଛୁରିଖଣ୍ଡା ମା ୧୫୦ ସୁନାଖୁଆ ୨ ଟାକୁ ମା ୭୫୦ ସୁଭଦ୍ରାଙ୍କ ତଡାଉ ୫୧ ମା ୪୧୪୦ ଶ୍ରୀଜଗନ୍ନାଥ ଦେବଙ୍କର ତଡାଉ ୩୫୧୪୦ ମାଢ ଓ ରନ୍ ୪୦୦୦୦ ମାଢ । ଷୋଡଶ ଉପଚାର ପୂଜାବିଧିକି ସରଞ୍ଜାମ ୨୯୧୨ ମାଢ ସୁନା (ଅଷ୍ଟ ପାଖୁଡା ସୁବର୍ଣ୍ଣ ପଦ୍ମ ପାତ୍ର, ସ୍କନ୍ଦକପାତ୍ର, ଅର୍ଘ୍ୟପାତ୍ର, ପାଦ୍ରୀ ମଧୁପକପାତ୍ର ପୁନରାଚମନ ପାତ୍ର, କଡାଢାଳ, ସ୍ନାନ ଗରିଆ, ରୂପାବେଣ୍ଟ କଂସା ଦର୍ପଣ, ସୁନା ବଟା, ଚତୁସମ ସୁନା ଡାଟିଆ, ଫୁଲଥୁଆ ସୁନାପାତ୍ର, ଧୂପପାତ୍ର ଆଳତୀ, ଦୀପପାତ୍ର ସୁନା ଆଳତୀ ରୂପା ବଇଠା, ଦୀପରୂଖା, ନୈବେଦ୍ୟପାତ୍ର, ସୁନାଥାଳି, ସୁଦର୍ଶନ ମୁଣୋହୀ ଥାଳି ବନ୍ଦାପନା ସୁନା ସାତବତୀ ପୂଜାଶଙ୍ଖ ରୂପାବୈଠକୀ ପୂଜାକଂସା ଘଣ୍ଟିମୁଠିଆ ପୂଜାରେ ପାଣିଇଡାକୁ ସୁନାପରିଖ ଖୋରା ସୁନାଗଡୁ ସୁନା କୁହୁଣ୍ଡା ଓ ବେଣ୍ଟ ଲାଗିବା ଛତି ଧ୍ୱଜ ଚାମର ଆଲଟ ଧୂପକାଠି ବେତ କର୍ପୂର ଆଳତି ପାନହଡପ ପାନପରିକ୍ଷ । ) ରାଜୋପଚାର ଜିନିଷ – ୧୧୬ ମୃତିକୁ ୧୦୦୦୦ ମାଢ ସୁନା ( ଖଟଣୀ ଯୋଗାଡ ଯୋଗାଡି ଓରିଆ ମୁଣୋହୀ କି ସୁନା ପଲମ ୪ ପଟ ଡିଅଣମାନ ହାଣ୍ଡିରେ ଓ କୁଡୁଆମାନଙ୍କରେ ପୂରାଇବା ଓ ନାଡୀ ସରସ୍ୱତୀ ଏଣ୍ଡୁରୀ ବଡ ଡାଳିମ୍ବ ମରିଚ ଲଡୁ ବଢାହେବାକୁ ସୁନା ଥାଳି ୨୦ ପଟ ଗୋଟିକା ତାଡ କୁଣ୍ଡ ବାସଘିଅ କୁଡୁକି ଅଦା ପାଚିଲା ଫାଳିଚଭା ଖରଚଲୀଣ ସୁନାବଢା ସୁନାଗରିଆ ଡାବରଖୋର ଚଉସମ ରହିବାକୁ ଗନ୍ଧଭରଣୀ କୋଟା ଡଙ୍କ ଜିହ୍ୱାଚଞ୍ଚି ଆଖଣ୍ଡଳ ଦୀପ ସରା ସୁନା ଶିକୁଳୀ ରତ୍ନଜଡିତ ସୁନାଖଟ ଖଟଦୋଳି ପାଲିଙ୍କି ବିମାନ ପୂଜା ଖଟୁଳି ଶ୍ରୀମୁଣ୍ଡ ୭ ଉପରେ କେତେପା ଚାନ୍ଦୁଆରେ ଖଞ୍ଜାଥିବା ସୁନାଫୁଲ ପଦ୍ମ ଦେବସ୍ନାନ ଗରିଆ ୨୭ ଟି ପୁଷ୍ୟାଭିଷେକ କନକଦଣ୍ଡଛତ୍ର ସୁନାଦିହୁଡି ୨ଟି ନାଲୁଆ ୨ଟି । ବୀରଛଡ ଧବଳଛତ୍ର ଚାମର କଂସା ସର୍ବାଙ୍ଗଦର୍ପଣ ସୁନାବେଣ୍ଟ ଉପଚାର ଛେରାପୟରାକୁ ସୁନାଖଡିକା ଚନ୍ଦନ ପାଣି କପୋରା ସୁନାଶିକୁଳି ସୁନାକର୍ପୂର ଆରତୀ ସୁବର୍ଣ୍ଣଲକ୍ଷ୍ମୀ ପ୍ରତିମା ରତ୍ନଜଡିତ ଗୋପୀନାଥ ପୁଷ୍ପାଞ୍ଜଳି ବିଜେ ଅର୍ଦ୍ଧନାରାୟଣ ଗୋବିନ୍ଦ ଦେବ ରାମକୃଷ୍ଣ ରାମଚନ୍ଦ୍ର ଦେବ ଲକ୍ଷ୍ମଣ ଦେବ ସୀତା ଠାକୁରାଣୀ ହନୁମନ୍ତ ଦେବ ଲକ୍ଷ୍ମୀନୃସିଂହ ଦେବ ବାମନ ଦୁର୍ଗାଦେବୀ ଭୁବନେଶ୍ୱରୀ ଜ୍ୟୋଷ୍ଣ ବେଢାପଞ୍ଚମୁହାଚୂଳ ଏ ଦେବତାମାନଙ୍କ ଅଳଙ୍କାର ମୁଦମୁଦୀ ୬ ମଧ୍ୟରୁ ପରୀକ୍ଷା ହାତମୁଦ ମୁଦରସ୍ତ ମୁଦ ବେହେରାମୁଦ ତଳଛୋ ହାତମୁଦ ରୋଷସେଠମୁଦ ମହସୁଆର ମୁଦ ତରକାରିଆ ଲେଙ୍କା ସୁନାଚକ୍ର ରୂପାଚକ୍ର ୩୯୮୬୨ ମାଢ ସୁନା । ଏହା ବାଦ୍ ଅନ୍ୟାନ୍ୟ ଦେବାଦେବୀଙ୍କର ଆଭୂଷଣ ପାଇଁ ସୁନାର ତାଲିକା ଓ ଭୂସମ୍ପତିର ତାଲିକା ମଧ୍ୟ ରହିଛି।

ବରିଷ୍ଠ ସାମ୍ବାଦିକ
ସାମ୍ବାଦିକ କଲୋନୀ, ତୁଳସୀପୁର, କଟକ–୮





# ଆହେ ନୀଳାଦ୍ରି ବିହାରୀ

ଡକ୍ଟର ଜନ୍ମେଜୟ ଚୌଧୁରୀ

ଖୋର୍ଦ୍ଧା ଭୋଇ ରାଜବଂଶର ୧୧ତମ ରାଜା ଗଜପତି ଦିବ୍ୟସିଂହ ଦେବ ଦ୍ୱିତୀୟ (୧୭୯୩-୧୭୯୮ ଖ୍ରୀଷ୍ଟାବ୍ଦ)ଙ୍କ ମୃତ୍ୟୁ ପରେ ଖୋର୍ଦ୍ଧା ସିଂହାସନ ଅଧିକାର ପାଇଁ ତାଙ୍କ ପୁତ୍ର ମୁକୁନ୍ଦଦେବ ଦ୍ୱିତୀୟ ଓ ବୀରକେଶରୀ ଦେବଙ୍କ ଦ୍ୱିତୀୟ ପୁତ୍ର ଶ୍ୟାମ ସୁନ୍ଦର ଦେବ ମଧ୍ୟରେ ବିବାଦ ଆରମ୍ଭ ହେଲା। ଦିବ୍ୟସିଂହ ଦେବଙ୍କ ଶାସନ ସମୟରେ ଶ୍ୟାମ ସୁନ୍ଦର କଟକରେ ଅବସ୍ଥାନ କରୁଥିଲେ। ପରେ ସେ ଦକ୍ଷିଣକୁ ଯାଇ ଜନୈକ ଜମିଦାରଙ୍କର ଆଶ୍ରୟ ନେଲେ। ଦିବ୍ୟସିଂହ ଦେବଙ୍କ ମୃତ୍ୟୁ ପରେ ଜଣେ ଇଂରେଜ ଅଫିସରଙ୍କଠାରୁ କେତେକ ସୈନ୍ୟମାନଙ୍କ ସାହାଯ୍ୟ ପାଇ ଖୋର୍ଦ୍ଧା ଆକ୍ରମଣ କରି ବଳପୂର୍ବକ ସିଂହାସନ ଅଧିକାର ପାଇଁ ଅଗ୍ରସର ହେଲେ। କଟକର ମରହଟ୍ଟା ସୁବାଦାର ସଦାଶିବ ରାଓ ଏ ସମ୍ବାଦ ପାଇ ଜଣେ ପଳାତକଙ୍କୁ ମରହଟ୍ଟା ରାଜ୍ୟ ଆକ୍ରମଣ ପାଇଁ ସାହାଯ୍ୟ ଦିଆଯାଉଥିବାରୁ ବଙ୍ଗଳା ସରକାରଙ୍କ ନିକଟରେ ଭୀଷଣ ପ୍ରତିବାଦ ଜଣାଇଲେ। ଫଳରେ ଇଂରେଜ ସରକାର ଏଥିରୁ ନିବୃତ୍ତ ହେଲେ ଏବଂ ଶ୍ୟାମ ସୁନ୍ଦରଙ୍କ ଉଦ୍ୟମ ବିଫଳ ହେଲା। ମୁକୁନ୍ଦ ଦେବ ଦ୍ୱିତୀୟ ମରହଟ୍ଟା ଓ ଇଂରେଜମାନଙ୍କ ସମର୍ଥନ ପାଇ ନିରାପଦରେ ଖୋର୍ଦ୍ଧା ରାଜ ସିଂହାସନରେ ଅଧିଷ୍ଠିତ ହେଲେ (Translation of Peredon Records No.398,6th September, 1798) ।



କିନ୍ତୁ ମୁକୁନ୍ଦ ଦେବ ଦ୍ୱିତୀୟ ନାବାଳକ ଥିବାରୁ ଜୟକୃଷ୍ଣ ରାଜଗୁରୁ ମହାପାତ୍ର(ଜୟୀ ରାଜଗୁରୁ) ତାଙ୍କର ଅଭିଭାବକ ରୂପେ ନିଯୁକ୍ତି ପାଇ ଶେଷ ଜୀବନ ପର୍ଯ୍ୟନ୍ତ ନାବାଳକ ରାଜାଙ୍କୁ ସୁରକ୍ଷା ଦେଇ ଆସିଥିଲେ। ରାଜା ନାବାଳକ ଥିବାରୁ ତାଙ୍କୁ ରାଜ୍ୟ ଶାସନର ସମସ୍ତ ଦାୟିତ୍ୱ ବହନ କରିବାକୁ ପଡିଥିଲା। ଏ ସମୟରେ ଚକ୍ରାନ୍ତ କରି ଇଂରେଜମାନେ ଖୋର୍ଦ୍ଧା ରାଜା ମୁକୁନ୍ଦ ଦେବ ଦ୍ୱିତୀୟଙ୍କ ସହ ସନ୍ଧି ସ୍ଥାପନ କରି ଖୋର୍ଦ୍ଧାକୁ ନିଜ ଶାସନାଧୀନ କରିବା ପାଇଁ ଚେଷ୍ଟା କରିଥିଲେ। ମାତ୍ର ବିଜ୍ଞ ଜୟୀ ରାଜଗୁରୁଙ୍କ ନିକଟରେ ଇଂରେଜମାନଙ୍କର ସମସ୍ତ ଯୋଜନା ବିଫଳ ହେବାରୁ ଆରମ୍ଭ ହେଲା ଖୋର୍ଦ୍ଧାର ମହାନ ରାଜା ବିଦ୍ରୋହ। ଖୋର୍ଦ୍ଧା ଦୁର୍ଗ ଆକ୍ରମଣ ପାଇଁ ୭୦୦୦ ସୈନ୍ୟଙ୍କୁ ନେଇ ମୁକୁନ୍ଦପ୍ରସାଦ ଗ୍ରାମ ନିକଟରେ ଇଂରେଜମାନେ ଛାଉଣୀ ପକାଇଲେ। ଖୋର୍ଦ୍ଧା ରାଜା ଇଂରେଜମାନେ ଏତେ ସଂଖ୍ୟକ ସୈନ୍ୟ ସହ ଏପରି ଅତର୍କିତ



ଓ ପ୍ରବଳ ଆକ୍ରମଣ କରିବେ ବୋଲି ପୂର୍ବରୁ କଳନା କରି ନ ଥିଲେ । ତେଣୁ ସେ ଯୁଦ୍ଧ ପାଇଁ ପୂର୍ବରୁ ଯଥେଷ୍ଟ ରସଦ ସଂଗ୍ରହ କରିନଥିଲେ କିମ୍ବା ପାଇକମାନଙ୍କୁ ଶୃଙ୍ଖଳାବଦ୍ଧ ଓ ସୁସଜ୍ଜିତ କରିନଥିଲେ । ତଥାପି ଶହ ଶହ ରଣୋନ୍ମତ୍ତ ସାହସୀ ପାଇକ ସୁଗଠିତ, ସୁନିୟନ୍ତ୍ରିତ ଓ ବିଚକ୍ଷଣ ସେନାପତିଙ୍କ ଦ୍ୱାରା ପରିଚାଳିତ କମ୍ପାନୀର ଫୌଜକୁ ଦୁର୍ଗ ମଧ୍ୟରେ ରହି ପ୍ରବଳ ପ୍ରତିରୋଧ କରିଥିଲେ । ପାଇକମାନେ ଏତେକାଳ ଆତ୍ମରକ୍ଷା ନ କରି ଯଦି ମୁକୁନ୍ଦପ୍ରସାଦଠାରେ ଡେରା ପକାଇଥିବା କମ୍ପାନୀ ଫୌଜକୁ ପ୍ରଥମରୁ ହଠାତ୍ ଆକ୍ରମଣ କରିଥାନ୍ତେ, ତେବେ ଯୁଦ୍ଧର ଗତି ଭିନ୍ନ ଆକାର ଧାରଣ କରିଥାନ୍ତା କିନ୍ତୁ ସେ ଦୂରଦୃଷ୍ଟି ମୁକୁନ୍ଦଦେବ ବା ଜୟୀ ରାଜଗୁରୁଙ୍କର ନଥିଲା । କମ୍ପାନୀ ଫୌଜ ନିଜକୁ ସମ୍ପୂର୍ଣ୍ଣ ରୂପେ ପ୍ରସ୍ତୁତ କରି ଭୀଷଣ ଆକ୍ରମଣ ଚଳାଇଲେ ଏବଂ ତୋପମୋଡରେ ଖୋର୍ଦ୍ଧା ଦୁର୍ଗକୁ ଧୂଳିସାତ୍ କରିଦେଲେ । ଅନାହାରକ୍ଲିଷ୍ଟ, ରଣୋନ୍ମତ୍ତ ପାଇକମାନେ ପ୍ରାଣମୂର୍ଚ୍ଛା ସଂଗ୍ରାମ ଚଳାଇ ମଧ୍ୟ ଶତ ଶତ ସଂଖ୍ୟାରେ ରଣାଙ୍ଗନରେ ପ୍ରାଣତ୍ୟାଗ କଲେ । ପରେ ପରାଜୟ ସୁନିଶ୍ଚିତ ଜାଣିପାରି ରାଜା ମୁକୁନ୍ଦଦେବ ପ୍ରାଣରକ୍ଷା ପାଇଁ ଦୁର୍ଗ ଭିତରୁ ଲୁଚିକରି ପଳାଇଗଲେ । ରାଜା ସେଠାରୁ ପଳାଇ ଆସି ଚକାଆମ୍ବଠାରୁ 'ବିକାସାଇ' ଯାଏଁ ବିସ୍ତୃତ ଝାଡ ଜଙ୍ଗଲରେ ବୁଲିଲେ । ତାଙ୍କର କୌଣସି କର୍ମଚାରୀ ଚିନ୍ତାମଣି ଇଂରେଜମାନଙ୍କ ଚକ୍ରାନ୍ତ ବୁଝି ପାରି ନ ଥିଲେ । ରାଜାଧି ପଣ୍ଡିତ ନାମକ ମରହଟ୍ଟା କର୍ମଚାରୀ ବିଶ୍ୱାସଘାତକତା କରି ଇଂରେଜମାନଙ୍କ ହସ୍ତରେ ରାଜାଙ୍କୁ ଧରାଇ ଦେବାରୁ ରାଜା ଆତ୍ମସମର୍ପଣ କଲେ ଏବଂ ବାରବାଟୀ ଦୁର୍ଗରେ ବନ୍ଦୀ ହେଲେ । ବନ୍ଦୀଶାଳାରେ ରାଜା ସୁପାତ୍ର ହରିହରଙ୍କୁ ସ୍ମରଣ କଲେ ଓ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଭଣ୍ଡାରରୁ ଖଣ୍ଡା ବାହାର କରି ଓଡିଶା–ଶତ୍ରୁ ଇଂରେଜମାନଙ୍କୁ ସଂହାର କରିବା ପାଇଁ ପ୍ରାଣ ବିକଳରେ ନିବେଦନ ମଧ୍ୟ କଲେ କିନ୍ତୁ ରାଜାଙ୍କ ବିକଳ ଅନୁରୋଧ ପ୍ରଭୁ ଶୁଣିଲେ ନାହିଁ ।

ରାଜା ସିନା ଆତ୍ମସମର୍ପଣ କଲେ, କିନ୍ତୁ ଖୋର୍ଦ୍ଧା ରାଜ୍ୟରେ ଇଂରେଜ ଆଧିପତ୍ୟ ପ୍ରତିଷ୍ଠାର ଘୋର ବିରୋଧୀ ଜୟୀ ରାଜଗୁରୁ ଶେଷ ପର୍ଯ୍ୟନ୍ତ ଯୁଦ୍ଧ ଚଳାଇ ଶେଷରେ ପରାଜିତ ହେଲେ ଏବଂ ବନ୍ଦୀ ହେଲେ । ଇଂରେଜମାନଙ୍କ ବିଚାରରେ ତାଙ୍କୁ ଫାଶୀ ଦିଆଗଲା । ତାଙ୍କର ମୃତ୍ୟୁ ସଙ୍ଗେ ସଙ୍ଗେ ଖୋର୍ଦ୍ଧା ସ୍ୱାଧୀନତା ଯୁଦ୍ଧର ଦୀପ୍ତିମନ୍ତ ଅଗ୍ନିଶିଖା ଲିଭିଗଲା । ମୋଗଲ ଓ ମରହଟ୍ଟା ଶକ୍ତି ବାରମ୍ବାର ପ୍ରତିରୋଧ କରିଥିବା ସୁଦୃଢ଼ ଖୋର୍ଦ୍ଧା ଦୁର୍ଗର ପତନ ପରେ ପରେ ଖୋର୍ଦ୍ଧା ରାଜ୍ୟର ଗୌରବ–ରବି ଚିରଦିନ ପାଇଁ ଅସ୍ତମିତ ହୋଇଗଲା । ରାଜା ମୁକୁନ୍ଦ ଦେବଙ୍କୁ ଓଡିଶାରେ ରଖିଲେ କାଳେ ପୁନର୍ବାର ବିଦ୍ରୋହ ହେବ, ଏହି ଆଶଙ୍କାରେ ୧୮୦୪ରେ ରାଜାଙ୍କୁ ମେଦିନୀପୁରରେ ବନ୍ଦୀ ଗୃହରେ ରଖାଗଲା । ଏଠାରେ ରାଜା ନିଜର ସମସ୍ତ ଦୋଷକୁ ରାଜଗୁରୁଙ୍କ ଉପରେ ଲଦି ଦେବାରୁ ଜୟୀ ରାଜଗୁରୁ ଫାଶୀ ପାଇଲେ ସତ କିନ୍ତୁ ରାଜାଙ୍କୁ ବନ୍ଦୀମୁକ୍ତ କରାଯାଇ ଆଉ ଖୋର୍ଦ୍ଧାଗଡ ପ୍ରଦାନ କରାଯାଇ ନ ଥିଲା । ସେ ପୁରୀର ବାଲିସାହିରେ ଥିବା 'ନଅର'ରେ ବାସ କରିବାକୁ ଆଦେଶ ଦିଆଗଲା । ପୁରୀର ବାଲିସାହି ନଅର ବର୍ତ୍ତମାନ ଭାଙ୍ଗିଯାଇଛି ତଥାପି ତାହା ଅଦ୍ୟାପି 'ପୁରୁଣା ନଅର' ଭାବେ ପରିଚିତ ଏବଂ ରାଜାମାନଙ୍କର ଅଭିଷେକ ସେହି ପୁରୁଣା ନଅରରେ ଅନେକ ବର୍ଷ ଧରି ହେଉଥିଲା । ୧୮୦୯ର ୪ ନମ୍ବର ରେଗୁଲେସନ ଦ୍ୱାରା ରାଜାଙ୍କୁ ପୁରୀ ଜଗନ୍ନାଥ ମନ୍ଦିରର ତତ୍ତ୍ୱାବଧାରକ ରୂପେ ନିଯୁକ୍ତି କରାଗଲା କିନ୍ତୁ ତାଙ୍କ ଖୋର୍ଦ୍ଧା ରାଜ୍ୟ ଇଂରେଜମାନଙ୍କ ଖାସମାହଲ ହେଲା । ପୁରୀ ରାଜା ଓ ତାଙ୍କର ବଂଶଧରମାନେ ମାଲିକାନା ସ୍ୱରୂପ ମାସିକ ଟ୨୧୩୩.୪ ପାହୁଲା ପାଇବା ପାଇଁ ଧାର୍ଯ୍ୟ ହେଲା । ମେଜର ଫ୍ଲେଚର୍‌ଙ୍କ ହସ୍ତରେ ଖୋର୍ଦ୍ଧା ଖାସମାହଲ ପରିଚାଳନା ଭାର ନ୍ୟସ୍ତ ହେଲା । ସେହିଦିନଠାରୁ ଖୋର୍ଦ୍ଧା ରାଜା ଖୋର୍ଦ୍ଧା ରାଜା ନ ହୋଇ ପୁରୀ ରାଜା ବା ପୁରୀର ଠାକୁର ରାଜା ରୂପେ ପରିଚିତ ହେଲେ । ସେ ପୁରୀର ବାଲିସାହି ପୁରୁଣା ନଅରରେ ରହି ଶ୍ରୀମନ୍ଦିର ଦାୟିତ୍ୱ ତୁଲାଉ ଥିଲେ ।

ଜୟୀ ରାଜଗୁରୁଙ୍କ ମୃତ୍ୟୁ ପରେ ଇଂରେଜମାନଙ୍କର ଖୋର୍ଦ୍ଧାରେ ଅକଥନୀୟ ଅତ୍ୟାଚାର, ଶୋଷଣକୁ ଅସହ୍ୟ ମନେକରି ଖୋର୍ଦ୍ଧା ରାଜାଙ୍କର ସେନାପତି ବକ୍ସି ଜଗବନ୍ଧୁ ବିଦ୍ୟାଧର ବିଦ୍ରୋହକୁ ବନ୍ଦ ନ କରିବାକୁ ଅଗ୍ରସର ହେଲେ । ତେଣୁ ବକ୍ସି ରାଜାଙ୍କୁ ପୁରୀର ସେହି ପୁରୁଣା ନଅରରେ ୧୮୧୭ ମସିହାରେ ସାକ୍ଷାତ କରି ରାଜା ଅନିଚ୍ଛା ସତ୍ତ୍ୱେ ବିଦ୍ରୋହକୁ ପରିଚାଳନା କଲେ । କିନ୍ତୁ ଏଥର ମଧ୍ୟ ବିଦ୍ରୋହର ସୂତ୍ରଧର ଭାବେ ରାଜାଙ୍କୁ ମନେକରି ତାଙ୍କୁ ବନ୍ଦୀ କରି ବାରବାଟୀ ଦୁର୍ଗରେ ନଜର ବନ୍ଦୀ ଭାବେ ରଖାଗଲା ।

ଗଜପତି ମୁକୁନ୍ଦ ଦେବ କଟକରେ ଅଟକ ଥିବା ସମୟରେ ନୀଳାଦ୍ରିବିହାରୀ ଜଗନ୍ନାଥଙ୍କୁ ନିଜର ଦୁଃଖ ଜଣାଇ ଏକ ହୃଦୟସ୍ପର୍ଶୀ ଜଣାଣ ରଚନା କରିଥିଲେ । ପଣ୍ଡିତ ଶ୍ରୀ ସୂର୍ଯ୍ୟନାରାୟଣ ଦାଶଙ୍କ ଦ୍ୱାରା ସଂଗୃହୀତ ଏହି ଐତିହାସିକ ରଚନାଟି ଉଦ୍ଧାର କରାଯାଇଥିଲା :

'ଆହେ ନୀଳାଦ୍ରି ବିହାରୀ !
କଟକେ ଅଟକ ହେବାରୁ ମୋ ଦିନ
ସରୁନାହିଁ ଝୁରି ଝୁରି ।

ଏହି ଦୁର୍ଗ ମଧ୍ୟରେ ରାଜାଙ୍କ ପୁତ୍ର ରାମଚନ୍ଦ୍ର ଦେବଙ୍କର ଅଭିଷେକ ହୋଇଥିଲା । ମୁକୁନ୍ଦ ଦେବ ଏହି ବନ୍ଦୀ ଗୃହରେ ମୃତ୍ୟୁବରଣ କରିଥିଲେ ୩୦ ନଭେମ୍ବର ୧୮୧୭ ମସିହାରେ । ଏହି ଦିନୁ ଦ୍ୱିତୀୟ ମୁକୁନ୍ଦ ଦେବଙ୍କ ପୁତ୍ର ରାମଚନ୍ଦ୍ର ଦେବ (ତୃତୀୟ)ଙ୍କୁ ପୁରୀ ରାଜ ଉଆସରେ ବାସ କରିବା ପାଇଁ ଅନୁମତି ଦିଆଗଲା ଓ ତାଙ୍କୁ ବାର୍ଷିକ ୨୪,୦୦୦ ଟଙ୍କା ଭତ୍ତା ପ୍ରଦାନ କରାଗଲା । ସେ ପୁରୀରେ ଶ୍ରୀମନ୍ଦିର ଶାସନ ପରିଚାଳନା ଦାୟିତ୍ୱ ବହନ କରିଥିଲେ । ବନ୍ଦୀଶାଳରେ ମୁକୁନ୍ଦ ଦେବଙ୍କ ମୃତ୍ୟୁ ପରେ ଖୋର୍ଦ୍ଧା ରାଜ୍ୟର ବୀରତ୍ୱ ଗୌରବମୟ ଇତିହାସରେ ଯବନିକାପାତ ଘଟିଲା ।

ଅଧ୍ୟାପକ, ଇତିହାସ ବିଭାଗ
ଶ୍ରୀଜଗନ୍ନାଥ ମହାବିଦ୍ୟାଳୟ
କାଇପଦର, ଖୋର୍ଦ୍ଧା

# ଜଗନ୍ନାଥ ହୋ ! କିଛି ମାଗିବିନି ତୋତେ

ଶରତ ଚନ୍ଦ୍ର ମୂଳିଆ

ଜଗନ୍ନାଥ ହୋ ! କିଛି ମାଗିବିନି ତୋତେ
ମାଗିବିନି ତୁମ ଶରଧାବାଲିରୁ ଦିଅ ବୋଲି ମୋତେ ଚାଖଣ୍ଡେ ହାତେ ।।
ଡରିଯିବ ନାହିଁ ମାଗିଦେବି କାଲେ ତୁମ ଗଳାହାର କୌସ୍ତୁଭ ମଣି
ମାଗିବିନି ବିତ୍ତ ଦେଇଥିଲ ଯାହା ସୁଦାମା ସଖାକୁ ଭାରରେ ଆଣି ।।
ସେ ଥିଲେ ତୁମର ମିତ୍ର ସହପାଠୀ ପାଇବାଟା ନ୍ୟାଯ୍ୟ ଦାବି ତାଙ୍କର
ମୋତେ କିଆଁ ଦେବ ମୁଁ କିଏ ତୁମର ରିକ୍ତ ଯେ ଲଲାଟପଟ୍ଟ ମୋହର ।।
ତୁମ ପୂଜା ଲାଗି ତୋଳି ନାହିଁ ଫୁଲ ଯାଇନାହିଁ ତୁମ ଦେଉଳେ ଦିନେ
ତୁମ ପାଇଁ କିଛି କରିନି ଏ ଦାସ ହରି-ଗୁଣ-ଗାନ ଶୁଣିନି କର୍ଣ୍ଣେ ।।
ମୋତେ କିମ୍ପା ପ୍ରଭୁ ଗଢ଼ିଲ ଏପରି କହିଦିଅ ଆହେ କମଳା ସାଇଁ
ମୁଁ କାହିଁକି ତୁମ ସେବା ଅର୍ଚ୍ଚନାରେ ନିଜକୁ ସମର୍ପି ପାରିଲି ନାହିଁ ।।
ଯେତିକି ଦେଇଛ ଯାହାବି ଦେଇଛ ତହିଁରେ ଲଭିବା ପାଇଁ ସନ୍ତୋଷ
ପର ସମୃଦ୍ଧିରେ ନହେବି ପ୍ରଲୁବ୍ଧ ଏହି ଶକ୍ତି ଦିଅ ହେ ହୃଷୀକେଶ ।।
ଅକିଞ୍ଚନ ପ୍ରତି କିଞ୍ଚିତ କରୁଣା ଥିବ ଯେବେ ପ୍ରଭୁ ହେ ବିଶ୍ୱେଶ୍ୱର
ଅନ୍ତିମ କାଳରେ ତୁମ ନାମ ଜପି ପାରି ହୋଇଯିବି ଭବସାଗର ।।



ସାଆନ୍ତ ସାହି, କଟକ–୭୫୩୦୦୧



# ଶ୍ରୀଜଗନ୍ନାଥ ତତ୍ତ୍ୱ ଓ ଦର୍ଶନରେ ଭକ୍ତଶ୍ରେଷ୍ଠ ହନୁମାନ

**ସୁରେଶ କୁମାର ପ୍ରଧାନ**

କୋଟି କୈବଲ୍ୟନାଥ ଶ୍ରୀଜଗନ୍ନାଥ ହେଉଛନ୍ତି ସର୍ବଧର୍ମ, ଦର୍ଶନ ଓ ତତ୍ତ୍ୱର ସାର ଓ ସମନ୍ୱୟ ଚେତନାର ପ୍ରତିଭୂ। ତେତ୍ରିଶକୋଟି ଦେବତାଙ୍କ ମଉଡମଣି ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ହିଁ ଏକମାତ୍ର ଉପାସ୍ୟ ଦେବତା ରୂପେ ଯୁଗେ ଯୁଗେ ପୂଜିତ। ସେହି ପରମ ପୁରୁଷ ଅବତାରୀ ପୁରୁଷ ସକଳ ଘଟରେ ବିରାଜିତ ହୋଇ ସୃଷ୍ଟି–ସ୍ଥିତି–ଲୟର ତ୍ରାଣକର୍ତ୍ତା ଭାବେ ମହିମାନ୍ୱିତ। ଯୁଗେ ଯୁଗେ ସେ ବିଭିନ୍ନ ରୂପ ଓ ନାମରେ ସଂସାରରେ ନିତ୍ୟନୀଳାରେ ନିମଗ୍ନ। ସେ ନିର୍ଗୁଣ, ନିର୍ଲିପ୍ତ ଓ ନିରାକାର ତତ୍ତ୍ୱରେ ପ୍ରତିଷ୍ଠିତ ହୋଇ ଅନାଦି, ଅନନ୍ତ, ଅବ୍ୟକ୍ତ, ଅଚିନ୍ତ୍ୟ, ଅକ୍ଷୟ, ଅବିନଶ୍ୱର ମହିମାରେ ଚିତ୍ରିତ। ସର୍ବ ଦେବଦେବୀଙ୍କ ମିଳିତ ଘନୀଭୂତ ବିଗ୍ରହ ମହାଦେବତା ଶ୍ରୀଜଗନ୍ନାଥ ଯୁଗେ ଯୁଗେ ଭିନ୍ନ ଭିନ୍ନ ତତ୍ତ୍ୱକୁ ଆଧାର କରି ସ୍ୱମହିମା ପ୍ରକଟିତ କରିବା ସହ ବିଶ୍ୱବ୍ରହ୍ମାଣ୍ଡକୁ ଚାଳନା କରୁଛନ୍ତି। ସର୍ବାନ୍ତର୍ଯ୍ୟାମୀ ଓ ସର୍ବଶକ୍ତିମାନ ପୂର୍ଣ୍ଣବ୍ରହ୍ମ ଶ୍ରୀଜଗନ୍ନାଥ ଦାରୁବ୍ରହ୍ମ ରୂପେ ନୀଳାଚଳ ଧାମରେ ବିଦ୍ୟମାନ। ସେ ସର୍ବବ୍ୟାପି ହେତୁ ବିଷ୍ଣୁ, ସେ ମଙ୍ଗଳମୟ ହେତୁ ଶିବ। ସେ ସର୍ବୋତ୍କୃଷ୍ଟ ଲକ୍ଷଣ ହେତୁ ସେ ଲକ୍ଷ୍ମୀ, ଅସୀମ ବଳଶାଳୀ ହେତୁ ବାୟୁ, ସେ ପଥପ୍ରଦର୍ଶକ ହେତୁ ଅଗ୍ନି। ସେ ଅଖିଳ ପ୍ରଜାଙ୍କ ପାଳକ ହେତୁ ବରୁଣ, ସେ ପରମ ଐଶ୍ୱର୍ଯ୍ୟଶାଳୀ ହେତୁ ଇନ୍ଦ୍ର। ସର୍ବ କାର୍ଯ୍ୟରେ ବରଣୀୟ ହେତୁ ବରୁଣ। ସେ ସକଳ ବ୍ରହ୍ମାଣ୍ଡକୁ କଳନ ବା ଗ୍ରାସ କରୁଥିବାରୁ କାଳୀ। ସେହି ଅବତାରୀ ପୁରୁଷ ଯୁଗ ପରିବର୍ତ୍ତନ ପରିପ୍ରେକ୍ଷୀରେ ଧର୍ମ ସଂସ୍ଥାପନାର୍ଥେ ନାନା ରୂପରେ ଅବତାର ନେଇଥାନ୍ତି। ସେ ଦ୍ୱାପର ଯୁଗରେ ଶ୍ରୀକୃଷ୍ଣ, ସାଥିରେ ଭାଇ ବଳରାମ, ଭଗିନୀ ସୁଭଦ୍ରା ଓ ଚକ୍ର। ତ୍ରେତୟା ଯୁଗରେ ସେ ପୁରୁଷୋତ୍ତମ ଶ୍ରୀରାମ ଓ ସାଥିରେ ଭାଇ ଲକ୍ଷ୍ମଣ, ଦେବୀ ସୀତା ଓ ହନୁମାନ। ଠିକ୍ ସେହିପରି କଳିକାଳରେ ସେ ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ସାଥିରେ ଭାଇ ବଳଭଦ୍ର, ଭଗିନୀ ସୁଭଦ୍ରା ଓ ଶ୍ରୀସୁଦର୍ଶନ ଶ୍ରୀମନ୍ଦିରସ୍ଥ ରତ୍ନବେଦୀରେ ପୂଜିତ ଚତୁର୍ଦ୍ଧାମୂର୍ତ୍ତି ହେଉଛନ୍ତି ତ୍ରେତୟା ଯୁଗର ରାମ, ଲକ୍ଷ୍ମଣ, ସୀତା ଓ ହନୁମାନ। ଦ୍ୱାପର ଯୁଗରେ ଶ୍ରୀକୃଷ୍ଣଙ୍କ ହସ୍ତର ଚକ୍ର ହିଁ ରତ୍ନବେଦୀରେ ପୂଜିତ ଶ୍ରୀସୁଦର୍ଶନ। ଶ୍ରୀସୁଦର୍ଶନ ହିଁ ଭକ୍ତଶ୍ରେଷ୍ଠ ମହାବୀର ହନୁମାନ ରୂପେ ଯୁଗେ ଯୁଗେ କୋଟିଜନବନ୍ଦ୍ୟ। ଶ୍ରୀମନ୍ଦିରସ୍ଥ ରତ୍ନବେଦୀର ଶ୍ରୀସୁଦର୍ଶନଙ୍କ ବ୍ୟତୀତ ଚତୁର୍ଦ୍ଧାମୂର୍ତ୍ତି ଯେପରି ଅସମ୍ପୂର୍ଣ୍ଣ, ତତ୍‌ପରି ଶ୍ରୀହନୁମାନଙ୍କ ବ୍ୟତୀତ ରାମ, ଲକ୍ଷ୍ମଣ ଓ ସୀତା ତତ୍ତ୍ୱ ଅର୍ଥହୀନ। ଏ ଦୃଷ୍ଟିରେ ଶ୍ରୀଜଗନ୍ନାଥ ତତ୍ତ୍ୱ ଓ ଦର୍ଶନରେ ମହାବୀର ଉପାସନା ସର୍ବଶ୍ରେଷ୍ଠ। ଜଗନ୍ନାଥ ସଂସ୍କୃତିରେ ହନୁମାନଙ୍କ ଅର୍ଚ୍ଚନ ଅବିଚ୍ଛେଦ୍ୟ ଅଙ୍ଗ ରୂପେ ଏକ ସ୍ୱତନ୍ତ୍ର ଧାରା ସୃଷ୍ଟିକରି ପ୍ରମାଣିତ କରିଛି ଯେ ପୁରୁଷୋତ୍ତମ ଶ୍ରୀରାମ ସେହିଁ ପୁରୁଷୋତ୍ତମ ଶ୍ରୀଜଗନ୍ନାଥ, ତତ୍ତ୍ୱ ତଃ ଶ୍ରୀସୁଦର୍ଶନ ଓ ଶ୍ରୀହନୁମାନ ଶ୍ରେଷ୍ଠ ଭକ୍ତର ଉଜ୍ଜ୍ୱଳ ଉଦାହରଣ।

ସଙ୍କଟମୋଚନ, ଅତ୍ୟନ୍ତ ପରାକ୍ରମୀ ଓ ବଳଶାଳୀ ଶ୍ରୀହନୁମାନ ଯେପରି ପ୍ରଭୁ ଶ୍ରୀରାମଙ୍କ ସହ ଅଙ୍ଗୀଭୂତ, ଠିକ୍ ସେହିପରି ତେଜରୂପୀ ଚକ୍ରାୟୁଧ ଶ୍ରୀସୁଦର୍ଶନ ଶ୍ରୀଜଗନ୍ନାଥଙ୍କ ସହ ସମ୍ବନ୍ଧିତ। 'ନୀଳାଦ୍ରି ଅର୍ଚ୍ଚନ ଚନ୍ଦ୍ରିକା'ର ରାମନବମୀ କଳ୍ପରେ ଜଗନ୍ନାଥ ତତ୍ତ୍ୱ ସହ ଶ୍ରୀରାମ ଓ ହନୁମାନ ତତ୍ତ୍ୱର ଅଭେଦତ୍ୱ ବେଶ୍ ପ୍ରତିପାଦିତ।

ଜଗନ୍ନାଥଂ ମହାବାହୁଂ ପ୍ରତ୍ୟକ୍ଷ ରଘୁନନ୍ଦନଂ
ସୌମିତ୍ରୀଂ ବଳଦେବଞ୍ଚ ଭଦ୍ରାଂମୈଥିଳୀମେବଚ।
ପୁରତୋ ତେଜରଯଞ୍ଚାୟୁଧ ଭୀମଂ ମହାବଳଂ
ବାତଜାତଂ ସହ ବନ୍ଦ୍ୟଂ ରେଫାରୂଢ଼ ଚତୁର୍ବ୍ୟୂହମ୍।



ଉକ୍ତ ଶ୍ଳୋକ ଅବଲମ୍ୱନରେ ଜାଣିହୁଏ ଯେ, ତେଜରୂପୀ ଶ୍ରୀସୁଦର୍ଶନଙ୍କ ସ୍ୱରୂପ ହିଁ ମହାବୀର ହନୁମାନ। ହନୁମାନ ଯୁଗେ ଯୁଗେ ଅମର ଓ ଜିତେନ୍ଦ୍ରିୟ। ଆଦିକବି ବାଲ୍ମୀକିଙ୍କ ମହାନ୍ ରଚନା 'ଶ୍ରୀରାମ କଥା ଶତକମ୍'ର ୫୮ତମ ଶ୍ଳୋକରେ ସର୍ବପ୍ରଥମେ ହନୁମାନଙ୍କ ସମ୍ବନ୍ଧରେ ବର୍ଣ୍ଣିତ ହୋଇଛି ।

ଶବର୍ଯ୍ୟା ପୂଜିତଃ ସମ୍ୟଗ୍ରାମୋ ଦଶରଥାତ୍ମଜଃ
ପଂପାତୀରେ ହନୁମତା ସଂଗତୋ ବାନରୈଃସହ।

ସର୍ବପ୍ରଥମେ ପୁରୁଷୋତ୍ତମ ଶ୍ରୀରାମଙ୍କ ସାକ୍ଷାତ୍ ହନୁମାନଙ୍କ ସହ ହୋଇଥିଲା ପମ୍ପା ସରୋବର ନିକଟରେ। ଦଶରଥ ନନ୍ଦନ ପ୍ରଭୁ ରାମ କପିମାନଙ୍କ ଗହଣରେ ହନୁମାନଙ୍କୁ ଭେଟିଥିଲେ। ହନୁମାନଙ୍କ ଅକଳ୍ପନୀୟ ଓ ଧୈର୍ଯ୍ୟ ସମ୍ପର୍କରେ 'ଶ୍ରୀରାମ କଥା ଶତକ'ର ୭୨ତମ ଶ୍ଳୋକରେ ଉଲ୍ଲେଖ କରାଯାଇଛି। ଶତଯୋଜନ ସମୁଦ୍ରବକ୍ଷକୁ ଲଙ୍ଘନ କରିବାର ସାମର୍ଥ୍ୟ କେବଳ ହନୁମାନଙ୍କର ଥିଲା। ତ୍ରେତୟା ଯୁଗରେ ପ୍ରଭୁ ଶ୍ରୀରାମ ଧର୍ମ ସଂସ୍ଥାପନାରେ ହନୁମାନଙ୍କ ସହଯୋଗ ଲୋଡିଥିଲେ।

ଆଦିକବି ବାଲ୍ମୀକି ତାଙ୍କ ରଚିତ ରାମାୟଣରେ ପ୍ରଭୁ ଶ୍ରୀରାମ ହିଁ ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ବୋଲି ବର୍ଣ୍ଣନା କରିଛନ୍ତି। ତ୍ରେତୟା ଯୁଗର କଥା – ପ୍ରଭୁ ଶ୍ରୀରାମ ଯେତେବେଳେ ଅସୁରମାନଙ୍କ ନିଧନକାର୍ଯ୍ୟ ସାରି ସଂସାରରୁ ବିଦାୟ ଗ୍ରହଣ କଲାବେଳେ ସରଯୂ ତଟରେ ଭକ୍ତ ହନୁମାନ ଓ ବିଭୀଷଣ ମଧ୍ୟ ଉପସ୍ଥିତ ଥିଲେ। ତତ୍କାଳେ ହନୁମାନ ଓ ବିଭୀଷଣ ଭକ୍ତଦ୍ୱୟ କାହାକୁ ଆଉ ଦର୍ଶନ କରିବେ ଭାବି ବିଚଳିତ ହୋଇପଡିଲେ। ପ୍ରଭୁଙ୍କୁ ମନକଥା ଜଣାଇବାରୁ ପ୍ରଭୁ ରାମଚନ୍ଦ୍ର ଉତ୍ତର ଦେଲେ–

ଆରାଧୟ ଜଗନ୍ନାଥ ମିକ୍ଷ୍ୱାକୁ କୁଳଦୈବତଂ
ଆରାଧନୀୟଃ ସଃ ସାକ୍ଷାତ୍ ଇନ୍ଦ୍ରାଦି ଦୈବତୈଃସହ।

(ଲଙ୍କାକାଣ୍ଡ ବାଲ୍ମୀକି ରାମାୟଣ)

ସକଳ ଦେବ–ଦେବୀଙ୍କ ଆରାଧିତା ଦାରୁବ୍ରହ୍ମ ଶ୍ରୀଜଗନ୍ନାଥଙ୍କ ଦର୍ଶନ ହିଁ ମୋ ଦର୍ଶନ ବୋଲି ପ୍ରଭୁ ଶ୍ରୀରାମ ସ୍ୱମୁଖେ ପ୍ରକାଶ କଲେ। କଥିତ ଅଛି ଯେ, ଚାରିଯୁଗେ ଅମର ଥିବା ବିଭୀଷଣ ପ୍ରତ୍ୟହ ଶ୍ରୀମନ୍ଦିରକୁ ଜଗନ୍ନାଥଙ୍କ ଦର୍ଶନ ନିମିତ୍ତ ଆସିଥାନ୍ତି। କିମ୍ବଦନ୍ତୀକୁ ଆଧାର କରି ଜାଣିହୁଏ ଯେ, ଲଙ୍କପତି ବିଭୀଷଣଙ୍କ ପ୍ରଦତ୍ତ ଏକ ସ୍ୱର୍ଣ୍ଣକଙ୍କଣ ଜଗନ୍ନାଥଙ୍କ ପ୍ରଧାନ ସେବକ ଛତିଶାନିଯୋଗ ନାୟକ ପଟ୍ଟଯୋଷୀ ମହାପାତ୍ରଙ୍କ ନିକଟରେ ରହିଥିବା ବିଶ୍ୱାସ କରାଯାଏ।

ସ୍ମରଣୀୟ ସନ୍ଥ ଗୋସ୍ୱାମୀ ତୁଳସୀ ଦାସ ଏକଦା ଶ୍ରୀକ୍ଷେତ୍ରକୁ ଆଗମନ କରିଥିଲେ ଶ୍ରୀଜଗନ୍ନାଥଙ୍କ ଦର୍ଶନ ନିମିତ୍ତ। ତୁଳସୀ ନିଜର ଆରାଧ୍ୟ ଦେବତା ପ୍ରଭୁ ଶ୍ରୀରାମଙ୍କ ଅଦର୍ଶନେ ଫେରିଯାଇ ଶ୍ରୀକ୍ଷେତ୍ରସ୍ଥ 'ତୁଳସୀ ଚଉରା' ଗ୍ରାମରେ ରାତ୍ରିକାଳୀନ ବିଶ୍ରାମ ନେଲେ। ସେହିଦିନ ରାତ୍ରିରେ ପ୍ରଭୁ ଶ୍ରୀରାମ ସ୍ୱପ୍ନରେ କହିଲେ– 'ତୁଳସୀ ତୁମେ ଜଗନ୍ନାଥ ଆଉ ମୋ ଭିତରେ ଭିନ୍ନା ଭିନ୍ନ ଅନୁଭବ କରୁଛ କି?' ଏତିକିରେ ତାଙ୍କ ନିଦ ଭଙ୍ଗ ହେଲା। ତୁରନ୍ତ ସେ ଶ୍ରୀମନ୍ଦିର ଅଭିମୁଖେ ଗମନ କଲେ। ଆଉ ଯାହା ଦେଖିଲେ ସେଥିରେ ତାଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ। ତୁଳସୀ ରତ୍ନବେଦୀରେ ଚତୁର୍ଦ୍ଧାମୂର୍ତ୍ତି– ରାମ, ଲକ୍ଷ୍ମଣ, ସୀତା ଓ ହନୁମାନଙ୍କୁ ଦର୍ଶନ କଲେ। ତୁଳସୀ ଦାସଙ୍କ କଣ୍ଠରୁ ବାହାରି ଆସିଲା –

'ଦକ୍ଷିଣେ ଲକ୍ଷ୍ମଣୋ ଯସ୍ୟ ବାମେ ଚ ଜନକାତ୍ମଜା।
ପୁରତୋମାରୁତିର୍ଯ୍ୟସ୍ୟ ତଂ ବନ୍ଦେ ରଘୁନନ୍ଦନମ୍।'

ଭକ୍ତଶ୍ରେଷ୍ଠ ହନୁମାନ ହେଉଛନ୍ତି କଠୋର ବ୍ରହ୍ମଚର୍ଯ୍ୟ ଓ ସଂଯମର ମୂର୍ତ୍ତ ବିଗ୍ରହ। ନିଷ୍କାମ ଦାସ୍ୟଭାବର ଜ୍ୱଳନ୍ତ ମୂର୍ତ୍ତି ହନୁମାନଙ୍କ ଆବିର୍ଭାବ ସମୟ ହେଉଛି ମହାବିଷୁବ ସଂକ୍ରାନ୍ତି। ଏହି ପୁଣ୍ୟଲଗ୍ନରେ ଶ୍ରୀମନ୍ଦିରରେ ହନୁମାନ ଜୟନ୍ତୀ ପାଳନ ନିମିତ୍ତ ପୂଜାପଣ୍ଡା ସେବକ ପ୍ରଭୁଙ୍କ ଆଜ୍ଞାମାଳ ପ୍ରାପ୍ତ ହୋଇ ଦକ୍ଷିଣ ଘରେ ବିରାଜିତ ହନୁମାନଙ୍କୁ ଝୁଲଣ ମଣ୍ଡପକୁ ନେଇ ସେଠାରେ ସଜ୍ଜିତ ବିମାନରେ ବିଜେ କରାନ୍ତି। ଶ୍ରୀମନ୍ଦିରସ୍ଥ ଚତୁଃଦ୍ୱାରରେ ବିରାଜିତ ମହାବୀର ଓ ଦକ୍ଷିଣ ପାର୍ଶ୍ୱ ବେଢାରେ ଥିବା ମହାବୀରଙ୍କୁ ଭକ୍ତିପୂତ ଭାବେ ଘଣ୍ଟ ଘଣ୍ଟା ଧ୍ୱନିର ତାଳେ ତାଳେ ଜଗନ୍ନାଥ ବଲ୍ଲଭ ମଠକୁ ନେଇଥାନ୍ତି। ସେଠାରେ ମଧ୍ୟ ଯେଉଁ ମହାବୀର ଥା'ନ୍ତି ତାଙ୍କର ମଧ୍ୟ ଯଥାରୀତି ଲାଗି ହୋଇଥାଏ। ଉକ୍ତ ଲାଗିକାର୍ଯ୍ୟ ସମାପନାନ୍ତେ ଏକ ମନୋଜ୍ଞ ପଟୁଆରରେ ଦରିଆପାରି ହନୁମାନଙ୍କ ଲାଗି ନିମିତ୍ତ ଯାଆନ୍ତି। ପରେ ଜଗନ୍ନାଥବଲ୍ଲଭ ମଠରେ ବିଶେଷ ଭୋଗ ବ୍ୟବସ୍ଥା ସମ୍ପନ୍ନ ହୋଇଥାଏ।



ଶ୍ରୀମନ୍ଦିର ଓ ଜଗନ୍ନାଥ ମହାପ୍ରଭୁଙ୍କ ସକଳ ତତ୍ତ୍ୱ ଓ ଦର୍ଶନ ସହ ହନୁମାନଙ୍କ ମହିମା ସମନ୍ୱିତ । ମହାପ୍ରଭୁଙ୍କ କୃପାଲାଭ କରି ଭକ୍ତଶ୍ରେଷ୍ଠ ହନୁମାନ ନୀଳାଚଳ ଧାମରେ ସର୍ବତ୍ର ଉପାସିତ । ପବିତ୍ର ଘୋଷଯାତ୍ରା (ଶ୍ରୀଗୁଣ୍ଡିଚା) ଅବସରରେ ଅନୁଷ୍ଠିତ ଝୁଲଣ ଯାତ୍ରା – ଚନ୍ଦନ ଯାତ୍ରା ବିମାନରେ ନବକଳେବର ଦାରୁ ସନ୍ଧାନ ବେଳେ କପିକେତନ ନେବା ପରମ୍ପରା ପ୍ରଚଳିତ । ଦ୍ୱାପର ଯୁଗରେ ମହାଭାରତ ଯୁଦ୍ଧରେ ପ୍ରଭୁ କୃଷ୍ଣଙ୍କ ବ୍ୟବହୃତ ନନ୍ଦିଘୋଷ ରଥରେ କପିଶ୍ରେଷ୍ଠ ହନୁମାନ ନେତରେ ବିରାଜମାନ କରି ରଥକୁ ସୁରକ୍ଷା ଦେଉଥିବା ପୁରାଣ ଓ ଗ୍ରନ୍ଥ ସମୂହରେ ବର୍ଣ୍ଣନା ରହିଛି । ଠିକ୍ ସେହିପରି ପୁରୁଷୋତ୍ତମ କ୍ଷେତ୍ର ଦିବ୍ୟ ନୀଳାଚଳ ଧାମରେ କପିଶ୍ରେଷ୍ଠ ବଜରଙ୍ଗବଲୀ ବିରାଜିତ ହୋଇ ଶ୍ରୀମନ୍ଦିରର ସୁରକ୍ଷା କରୁଛନ୍ତି । ଶ୍ରୀମନ୍ଦିରର ଚତୁଃଦ୍ୱାର ଯଥା– ସିଂହଦ୍ୱାର, ବ୍ୟାଘ୍ରଦ୍ୱାର, ହସ୍ତିଦ୍ୱାର ଓ ଅଶ୍ୱଦ୍ୱାର ଚାରିଦ୍ୱାରରେ ହନୁମାନ ମହାରାଜ ବିରାଜିତ ହୋଇଛନ୍ତି । ପୂର୍ବଦ୍ୱାରରେ ଥିବା ହନୁମାନଙ୍କୁ ଫତେ ମହାବୀର କୁହାଯାଉଥିବାବେଳେ ପଶ୍ଚିମ ଦ୍ୱାରରେ ଥିବା ହନୁମାନଙ୍କୁ କାନପତା କୁହାଯାଏ । ସେହିପରି ଦକ୍ଷିଣଦ୍ୱାର ହନୁମାନ ବାରଭାଇ ଓ ଉତ୍ତର ଦ୍ୱାର ରକ୍ଷକଭାବେ ତପସ୍ୱୀ ମହାବୀର ରହିଛନ୍ତି । ଶ୍ରୀମନ୍ଦିରସ୍ଥ ଆନନ୍ଦବଜାରରେ କୋଠଭୋଗ, ଭକ୍ତ–ଭଗବାନଙ୍କ ଅପୂର୍ବ ମିଳନ ଓ ମହାପ୍ରସାଦର ମାହାତ୍ମ୍ୟ ରକ୍ଷା ସହ ଶୃଙ୍ଖଳା ନିମିତ୍ତ ହନୁମାନ ବିରାଜମାନ କରିଛନ୍ତି । ଶ୍ରୀମନ୍ଦିରର ସ୍ୱତନ୍ତ୍ର ସୁରକ୍ଷାରେ ଷୋଳମୂର୍ତ୍ତି ହନୁମାନ ବିରାଜମାନ କରିଥିବା ଶ୍ରୀଜଗନ୍ନାଥଙ୍କ ଗ୍ରନ୍ଥ ଓ ଭକ୍ତମାନଙ୍କ ନିକଟରୁ ଜାଣିହୁଏ । ଶ୍ରୀମନ୍ଦିରର ନାଟମଣ୍ଡପରେ ମଧ ବଜରଙ୍ଗବଲୀଙ୍କ ବିଗ୍ରହ ସ୍ଥାପିତ । ଶ୍ରୀମନ୍ଦିରକୁ ଆଗମନ କରୁଥିବା ଦର୍ଶନାର୍ଥୀ, ସାଧୁସନ୍ଥ, ମହାପୁରୁଷମାନେ ଯେପରି ଶ୍ରୀଜଗନ୍ନାଥଙ୍କ ଦର୍ଶନ ସାରି ଆନନ୍ଦରେ ଫେରି ପାରିବେ ତାହା ନାଟମଣ୍ଡପ ହନୁମାନଙ୍କ ଦାୟିତ୍ୱ । ଶ୍ରୀମନ୍ଦିରସ୍ଥ ପଶ୍ଚିମ ପାର୍ଶ୍ୱ ବାହାର ବେଢାରେ ଦେବଦ୍ୱାରପାଳ ପଞ୍ଚମୁଖୀ ହନୁମାନ ବିରାଜମାନ କରିଛନ୍ତି । 'ଶ୍ରୀବିଦ୍ୟାର୍ଣ୍ଣବ ତନ୍ତ୍ର'ରେ ହନୁମାନଙ୍କର ପଞ୍ଚମୁଖୀ ଅବତାର ସମ୍ପର୍କରେ ବର୍ଣ୍ଣନା ରହିଛି । ହନୁମାନଙ୍କ ଉକ୍ତ ପଞ୍ଚମୁଖ– ବାନର, ଗରୁଡ, ସିଂହ, ଅଶ୍ୱ ଓ ବରାହ ହେଉଛି ପଞ୍ଚପ୍ରାଣ ବାୟୁର ପ୍ରତୀକ । ସର୍ବଶକ୍ତିମାନ ଓ ସର୍ବବ୍ୟାପୀ ଶ୍ରୀବିଷ୍ଣୁଙ୍କ ସହ ଉକ୍ତ ତତ୍ତ୍ୱ ଗଭୀରଭାବେ ଜଡିତ । ପଞ୍ଚମୁଖୀ ହନୁମାନଙ୍କ ଗରୁଡ ମୁଖ ହେଉଛି ଅଣ୍ଡଜମାନଙ୍କ ପ୍ରତୀକ, ସିଂହ ମାଂସାହାରୀ ପ୍ରତୀକ ବରାହ ସମସ୍ତ ତୃଣଭୋଜି ଓ ସ୍ୱେଚ୍ଛାଚାରୀ ପ୍ରାଣୀଙ୍କ ପ୍ରତୀକ, ଅଶ୍ୱ ତୃଣଭୋଜି ପ୍ରାଣୀ ତଥା ଗୃହପାଳିତ ପ୍ରାଣୀଙ୍କ ପ୍ରତୀକ । ଚତୁର୍ଦ୍ଧାମୂର୍ତ୍ତିଙ୍କ ଦର୍ଶନ କାମନା କରି ଶ୍ରୀମନ୍ଦିରକୁ ଆଗମନ କରିଥିବା ଭକ୍ତ ଯଦି ମୁକ୍ତ ହସ୍ତରେ ହୁଣ୍ଡିରେ ଅର୍ଥଦାନ କରନ୍ତି, ତେବେ ନିଶ୍ଚିତ ଭାବରେ ସେ ହନୁମାନଙ୍କ ଶୁଭାଶୀର୍ବାଦ ପ୍ରାପ୍ତ ହୋଇଥାନ୍ତି । ଶ୍ରୀମନ୍ଦିର ପରିସର ମଧ୍ୟରେ ଯଥା– ନାଟମଣ୍ଡପ, ସରଘର, କୂର୍ମବେଢା, ବିଭିନ୍ନ ସ୍ତମ୍ଭ ଆଦି ସ୍ଥାନରେ ମହାବୀର ବିରାଜମାନ କରି ଦର୍ଶନାର୍ଥୀଙ୍କ ମଙ୍ଗଳ କାମନା କରିଥାନ୍ତି ।

ବ୍ରହ୍ମଅଗ୍ନିକୁ କପାଳରେ ଧାରଣ କରିଥିବା ମହାବୀରଙ୍କର ଦ୍ୱାଦଶ ନାମ ପୁରାଣ ଓ ଗ୍ରନ୍ଥ ସମୂହରେ ବର୍ଣ୍ଣିତ । ଏ ସମ୍ପର୍କରେ ଏକ ଶ୍ଳୋକ –

ହନୁମାନ ଅଞ୍ଜନା ସୂନୁଃ, ବାୟୁପୁତ୍ରୋ ମହାବଳଃ
ରାମାଂଶୁ ଫାଲ୍‌ଗୁନିସଖଃ ପିଙ୍ଗାକ୍ଷୋଦ୍ଧମିତ ବିକ୍ରମଃ ।
ଉଦଧି କ୍ରମଣ ଶ୍ଚୈବ ସୀତାଶୋକ ବିନାଶକଃ ।।
ଲକ୍ଷ୍ମଣ ପ୍ରାଣଦାତା ଚ ଦଶଗ୍ରୀବସ୍ୟ ଦର୍ପହ ।
ଦ୍ୱାଦଶୈତାନି ନାମାନି କପୀନ୍ଦ୍ରସ୍ୟ ମହାତ୍ମନଃ ।।

ପଞ୍ଚଭୂତର ଐକ୍ୟବ୍ରହ୍ମ ସ୍ୱରୂପ ଶ୍ରୀହନୁମାନ ହେଉଛନ୍ତି ଯୁଗେ ଯୁଗେ ଚିରଞ୍ଜିବୀ ହୋଇ ପ୍ରଭୁଙ୍କ ଦାସ ରୂପେ ଲୀଳା ସହଚର ହୋଇଛନ୍ତି । ତ୍ରେତୟାରେ ସେ ହନୁମାନ, ଦ୍ୱାପରରେ ଚକ୍ରରାଜ, କଳିଯୁଗରେ ଶ୍ରୀସୁଦର୍ଶନ ରୂପରେ ରତ୍ନବେଦୀରେ ପୂଜିତ । ପଞ୍ଚଭୂତର ମହାନ୍ ପ୍ରତୀକ ହନୁମାନ ବାୟୁ, ଜଳ, ଅଗ୍ନି, ଆକାଶ ଓ ପୃଥିବୀରେ ଅଣୁ ରୂପରେ ବିରାଜମାନ କରିଅଛନ୍ତି । ଶ୍ରୀମନ୍ଦିର ସଂସ୍କୃତି ସହ ମହାବୀରଙ୍କ ନାମ ଉପାସନା ଏକ ଭବ୍ୟ ପରମ୍ପରା ସୃଷ୍ଟି କରି ଭାରତୀୟ ଆଧ୍ୟାତ୍ମିକ ଚେତନାକୁ ବେଶ୍ ମହିମାମୟ କରିପାରିଛି ।

ଖୁଣ୍ଟୁଣୀ, ଆଠଗଡ, ଜି– କଟକ
ପିନ୍–୭୫୪୦୨୯



# ପାତାଳି ଶ୍ରୀକ୍ଷେତ୍ର

**ଶ୍ରୀନିବାସ ଆଚାର୍ଯ୍ୟ**

ବହୁ ଆବହମାନ କାଳରୁ ଓଡ଼ିଶାର ଶ୍ରୀକ୍ଷେତ୍ର ଗୋଟିଏ ପ୍ରଧାନ ଧର୍ମପୀଠ, ତୀର୍ଥସ୍ଥାନ ଓ ପର୍ଯ୍ୟଟନ କ୍ଷେତ୍ର ରୂପେ ଭାରତ କାହିଁକି ସମଗ୍ର ବିଶ୍ୱରେ ସୁବିଦିତ। ମାଦଳାପାଞ୍ଜିର ପୃଷ୍ଠା ଉନ୍ମୋଚନ କଲେ ଜଣାଯାଏ ଭାରତରେ ଥିବା ଚାରୋଟି ଧାମ ମଧ୍ୟରେ ଓଡ଼ିଶାର ପୁରୀ ଜିଲ୍ଲାରେ ଥିବା ଶ୍ରୀକ୍ଷେତ୍ରଧାମଟି ସର୍ବଶ୍ରେଷ୍ଠ ଧାମ ରୂପେ ସ୍ୱୀକୃତି ଲାଭ କରିଛି । କାରଣ ଏହି ପୀଠରେ ସ୍ୱୟଂ ପରଂବ୍ରହ୍ମ ଦାରୁମୂର୍ତ୍ତି ମୂରାରୀ ଶ୍ରୀଜଗନ୍ନାଥ, ଜ୍ୟେଷ୍ଠଭ୍ରାତା ଶ୍ରୀବଳଭଦ୍ର ଓ ଭଗ୍ନୀ ସୁଭଦ୍ରା ଶ୍ରୀମନ୍ଦିରର ରତ୍ନ ସିଂହାସନରେ ବିରାଜିତ। ଓଡ଼ିଶାବାସୀଙ୍କର ନମସ୍ୟ ତଥା ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥଙ୍କର ଲୀଳା ଯେପରି ରହସ୍ୟମୟ, ଏହି ପୀଠର ମାଟି, ପାଣି ଓ ପବନ ମଧ୍ୟ ବିଚିତ୍ରମୟ। ଅତୀତରେ ବିଧର୍ମୀ ରାଜାମାନେ ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥ ମନ୍ଦିରକୁ ବିଲୋପ କରି ଅନ୍ୟ ଧର୍ମର ଧ୍ୱଜା ଉତ୍ତୋଳନ କରିବାକୁ ବହୁବାର ଉଦ୍ୟମ ଜାରି କରିଥିଲେ। ଆଉ ମଧ୍ୟ ବହିଃଶତ୍ରୁମାନେ ଓଡ଼ିଶା ଆକ୍ରମଣ କରିବା ଅବସରରେ ପୁରୀ ଶ୍ରୀଜଗନ୍ନାଥ ମନ୍ଦିର ଲୁଣ୍ଠନ କରିବାକୁ ଭୁଲି ନଥିଲେ। ଶ୍ରୀଜଗନ୍ନାଥ ହେଉଛନ୍ତି ଓଡ଼ିଆଜାତିର ଧର୍ମୀୟ ଭାବନାର ମୂଳ ଉତ୍ସ। ଶ୍ରୀଜଗନ୍ନାଥଙ୍କ ଧର୍ମ ଓ ସଂସ୍କୃତିକୁ ଓଡ଼ିଶାବାସୀ ସେମାନଙ୍କର ଜୀବନଠାରୁ ଅଧିକ ଭଲ ପାଆନ୍ତି। ତେଣୁ ଏହାର ଅବକ୍ଷୟ ହେଲେ ଓଡ଼ିଶା ସ୍ୱାଭିମାନର ସତ୍ତା ରହିବ ନାହିଁ। ଯେତେବେଳେ ବିଧର୍ମୀ ଓ ବହିଃଶତ୍ରୁ ରାଜା ମହାରାଜା ଯଥା– ଆଫଗାନି, ମୋଗଲ ଶ୍ରୀକ୍ଷେତ୍ରସ୍ଥିତ ଶ୍ରୀଜଗନ୍ନାଥ ମନ୍ଦିର ଉପରେ ଆକ୍ରମଣ କରିଛନ୍ତି, ସେତେବେଳେ ଓଡ଼ିଶାବାସୀ ସଂଗ୍ରାମ ଜାରି ରଖି ବିଗ୍ରହମାନଙ୍କୁ ଅକ୍ଷୁଣ୍ଣ ରଖିପାରିଛନ୍ତି। ତେଣୁ ଏହି ସବୁ ଆକ୍ରମଣ ଓ ଲୁଣ୍ଠନକୁ ପ୍ରତିହତ କରାଇବା ପାଇଁ ଗଜପତି ମହାରାଜା, ସେବାୟତ ଓ ଜଗନ୍ନାଥପ୍ରେମୀ ଭକ୍ତ ସମାଜ ଠାକୁରମାନଙ୍କୁ ଗୁପ୍ତରେ ବିଭିନ୍ନ ସ୍ଥାନକୁ ନେଇ ସ୍ଥାନାନ୍ତର କରି ରଖିଥିଲେ। ଏହିସବୁ ସ୍ଥାନାନ୍ତରିତ ସ୍ଥାନ ମଧ୍ୟରେ ସୁବର୍ଣ୍ଣପୁର ଜିଲ୍ଲାର କୋଟସମଲାଇଠାରେ ଶ୍ରୀଜଗନ୍ନାଥଙ୍କୁ ପାତାଳି ରୂପେ ରଖିବା ଅନ୍ୟତମ, ଯାହାକି ଆଜି ସେହି ପବିତ୍ର ସ୍ଥାନଟି ପାତାଳି ଶ୍ରୀକ୍ଷେତ୍ର ରୂପେ ଜଣାଶୁଣା ହେବା ସହ ଏକ ଯୁଗାନ୍ତକାରୀ ଆଧ୍ୟାତ୍ମିକ ଅଧ୍ୟାୟ ସୃଷ୍ଟି କରିପାରିଛି।

ଷଷ୍ଠ ଶତାବ୍ଦୀରେ ରାଜା ଶୋଭନ ଦେବଙ୍କ ରାଜତ୍ୱ ସମୟରେ ଯବନ ରକ୍ତବାହୁ ନାମରେ ଜଣେ ସେନାଧ୍ୟକ୍ଷ ସୈନ୍ୟସାମନ୍ତ ସହ ସମୁଦ୍ର ପଥରେ ଆସି ପୁରୀ ଆକ୍ରମଣ କରିଥିଲେ। ଶ୍ରୀଜଗନ୍ନାଥଙ୍କୁ ନେଇ ଯିବାର ଆଶଙ୍କା କରି ମହାରାଜା ଶୋଭନ ଦେବ ଗୁପ୍ତରେ ଜଳ ପଥରେ ଠାକୁରମାନଙ୍କୁ ସୋନପୁର ନେଇଯାଇଥିଲେ। କାଳେ ଖବର ପାଇ ରକ୍ତବାହୁ ସୋନପୁରକୁ ଆସି ଠାକୁରଙ୍କୁ ନେଇ ଯିବାକୁ ଉଦ୍ୟମ କରିବେ, ତେଣୁ ଠାକୁରଙ୍କୁ କୋଟସମଲାଇ ଅଞ୍ଚଳର ଗୋପାଳି ଗ୍ରାମର ଏକ ପାହାଡ଼ ଗୁମ୍ଫାରେ ପାତାଳି କରିରଖିଦେଇଥିଲେ। ସେହି ଗୁମ୍ଫାର ସମ୍ମୁଖକୁ ବଡ଼ ବଡ଼ ପଥର ଓ ମାଟିରେ ବନ୍ଦ କରି ଦେଇଥିଲେ। ତା' ସମ୍ମୁଖରେ ଏକ ବରଗଛ ରୋପଣ କରିଥିଲେ। ଶ୍ରୀଜଗନ୍ନାଥଙ୍କ ଅନୁପସ୍ଥିତରେ ଶ୍ରୀମନ୍ଦିରରେ ଦୈନନ୍ଦିନ ପୂଜା ପଦ୍ଧତି ସମେତ ବାର୍ଷିକ ପର୍ବପର୍ବାଣି ବନ୍ଦ ହୋଇ ଯାଇଥିଲା। ପରବର୍ତ୍ତୀ ସମୟରେ ସେହି ଛୋଟ ବରଗଛଟି ଏକ ବିଶାଳ ଦ୍ରୁମରେ ପରିଣତ ହୋଇ ସମ୍ପୂର୍ଣ୍ଣ ଗୁମ୍ଫାଟିକୁ ଘେରି ଥିଲା। ଫଳରେ ସେହି ସ୍ଥାନଟି ଚିହ୍ନଟ କରିବା ସମ୍ଭବପର ହୋଇନଥିଲା।



ଆଜି ଯେଉଁ ସ୍ଥାନରେ ପାତାଳି ଶ୍ରୀକ୍ଷେତ୍ର ଗଢ଼ି ଉଠିଛି, ସେହି ସ୍ଥାନଟି ଅବିଭକ୍ତ ବଲାଙ୍ଗୀର ଜିଲ୍ଲା ତଥା ବର୍ତ୍ତମାନ ସୁବର୍ଣ୍ଣପୁର ଜିଲ୍ଲାର ବୀର ମହାରାଜପୁର ଉପଖଣ୍ଡ ଓ ଉଲୁଣ୍ଡା ପଞ୍ଚାୟତ ସମିତି ଅନ୍ତର୍ଗତ କୋଟସମଲାଇ ଗ୍ରାମ ଉଲୁଣ୍ଡା। ଏହି ଗ୍ରାମର ଶେଷ ମୁଣ୍ଡରେ ତ୍ରିକୂଟ ପର୍ବତ ଅବସ୍ଥିତ। ସୁବର୍ଣ୍ଣପୁର ଜିଲ୍ଲା ସଦରମହକୁମାରୁ ମହାନଦୀ ପାର ହୋଇ ଉତ୍ତରପଶ୍ଚିମ ଦିଗକୁ ପ୍ରାୟ ୨୭ କି.ମି. ଗଲେ ପଡ଼ିଥାଏ ଏହି ପବିତ୍ରସ୍ଥାନ। ଓଡ଼ିଶାର ରାଜଧାନୀ ଭୁବନେଶ୍ୱରଠାରୁ ଏହାର ଦୂରତା ପ୍ରାୟ ୨୮୦ କି.ମି.। ଏହି ସ୍ଥାନଟି ବୈଷ୍ଣବ, ବୌଦ୍ଧ ଓ ଶାକ୍ତ ଧର୍ମର ମିଳନସ୍ଥଳୀ ରୂପେ ଖ୍ୟାତି ଅର୍ଜନ କରିଅଛି। ଅତୀତରେ ଏହି ପର୍ବତଟି ଘଞ୍ଚ ଜଙ୍ଗଲରେ ପରିପୂର୍ଣ୍ଣ ହୋଇ ଏକ ଦୁର୍ଗମ ଅଞ୍ଚଳ ଥିଲା। ସବୁଜ କାନନ ମଧ୍ୟରେ ଏହି ସ୍ଥାନଟି ନୈସର୍ଗିକ ଶୋଭାରାଜି ଓ ବହୁ ଗୁମ୍ଫାର ସମିଶ୍ରଣରେ ସୃଷ୍ଟି କରିଥିଲା ପ୍ରାକୃତିକ ସୌନ୍ଦର୍ଯ୍ୟର ସମାହାର। କାରଣ ତ୍ରିକୂଟ ପାହାଡ଼ର ପଶ୍ଚିମରେ ରହିଅଛି ଅନ୍ୟ ଏକ ପାହାଡ଼, ଯାହାର ନାମ ଶୂନ୍ୟ ପାହାଡ଼। ଯେଉଁଠାରେ କି ଠାକୁର ଶିବ ଆବିର୍ଭାବ ହେବାର କିମ୍ବଦନ୍ତୀ କହେ। ସେହିପରି ତା'ର ସନ୍ନିକଟରେ ଅନ୍ୟ ଏକ ପାହାଡ଼ ଅଛି, ଯାହାର ନାମ ରାଣୀବସା ପାହାଡ଼। କଥିତ ଅଛି ତତ୍କାଳୀନ ସୋନପୁରର ରାଣୀ ଲକ୍ଷ୍ମୀକରା ଦେବୀ ଶତ୍ରୁମାନଙ୍କ କବଳରୁ ରକ୍ଷା ପାଇବା ପାଇଁ ଏଠାରେ ବାସ କରୁଥିଲେ। ତେଣୁ ପାହାଡ଼ଟିର ନାମ ରାଣୀବସା ପାହାଡ଼ ହୋଇଅଛି।

କେହି କେହି ଏହି ପାହାଡ଼କୁ ଛଳିଆ ପାହାଡ଼ ବୋଲି କହିଥାନ୍ତି। କାରଣ ଏହି ପାହାଡ଼ରେ ଶ୍ରୀଜଗନ୍ନାଥ ତାଙ୍କର ଛଳନା ବା ଲୀଳା କରି ୧୪୪ ବର୍ଷଧରି ରହିଥିବାରୁ ଏହାର ନାମ ଛଳିଆ ପାହାଡ଼ ବୋଲି କୁହାଯାଏ। ଏହାର ଉପର ଅଂଶକୁ ଦାରୁକୋଣ ବୋଲି କୁହାଯାଏ। ଏହି ତ୍ରିକୂଟ ପର୍ବତ ବା ଛଳିଆ ପାହାଡ଼ର ଉପର ଭାଗରେ ଦାରୁ ଦେବତାଙ୍କୁ ପାତାଳି କରାଯାଇଥିବାରୁ ଏହି ସ୍ଥାନକୁ ମଧ୍ୟ ପାତାଳି ଶ୍ରୀକ୍ଷେତ୍ର ବୋଲି କୁହାଯାଉଅଛି। ବିଭିନ୍ନ ପର୍ଯ୍ୟାୟ ଓ ସମୟରେ ଶ୍ରୀଜଗନ୍ନାଥଙ୍କୁ ଓଡ଼ିଶାର ବିଭିନ୍ନ ସ୍ଥାନରେ ଲୁକ୍କାୟିତ ଅବସ୍ଥାରେ ରଖାଯାଇଥିଲେ ମଧ୍ୟ ପାତାଳି ଶ୍ରୀକ୍ଷେତ୍ର ହେଉଛି ଏକମାତ୍ର ସ୍ଥାନ, ଯେଉଁଠାରେ କି ଚତୁର୍ଦ୍ଧାମୂର୍ତ୍ତି ଦୀର୍ଘ ୧୪୪ବର୍ଷ ଧରି ପାତାଳି ହୋଇଥିଲେ। ତେଣୁ ଏହି ପୀଠଟି ବିଶେଷ ଗୁରୁତ୍ୱ ବହନ କରିପାରିଛି।

ଶୋଭନ ଦେବଙ୍କ ରାଜୁତି ପରେ ତାଙ୍କ ପୁତ୍ର ଚନ୍ଦ୍ରକର ଦେବ ଶ୍ରୀବିଗ୍ରହମାନେ ଶ୍ରୀମନ୍ଦିରରେ ନଥିବା ଓ ପୂଜା ପଦ୍ଧତି ବନ୍ଦ ଦେଖି, ସେମାନଙ୍କ ସନ୍ଧାନ ଜାଣିବା ପାଇଁ ଆପ୍ରାଣ ଉଦ୍ୟମ ଜାରି ରଖିଥିଲେ ମଧ୍ୟ କୃତକାର୍ଯ୍ୟ ହୋଇ ପାରିନଥିଲେ। ତତ୍‌ପରେ ନବମ ଶତାବ୍ଦୀରେ କେଶରୀ ବଂଶୀୟ ରାଜା ଯଯାତି କେଶରୀ (୨ୟ) ରାଜଗାଦି ଆରୋହଣ କରିଥିଲେ। ଦିନେ ସେ ମନ୍ଦିର ଭ୍ରମଣରେ ଆସିଥିଲେ । ସେବାୟତଙ୍କଠାରୁ ଶୁଣିବାକୁ ପାଇଲେ ଯେ ଷଷ୍ଠ ଶତାବ୍ଦୀରେ ରକ୍ତବାହୁ ନାମକ ଜଣେ ବିଧର୍ମୀ ସେନାଧକ୍ଷ ମନ୍ଦିର ଆକ୍ରମଣ କରିବା ଅବସରରେ ଶ୍ରୀଜୀଉମାନଙ୍କୁ ରକ୍ଷା କରିବା ପାଇଁ ଅନ୍ୟତ୍ର ନେଇ ପାତାଳି କରାଯାଇଅଛି। ଯଯାତି କେଶରୀ ଠାକୁରମାନଙ୍କୁ ଖୋଜି ଆଣିବା ପାଇଁ ଉଦ୍ୟମ କରିଥିଲେ। କିନ୍ତୁ ସେ କିଛି ସନ୍ଧାନ ପାଇନଥିଲେ।

ଏହି ବିଫଳତାରେ ଭାଙ୍ଗି ନଯାଇ ଯଯାତି କେଶରୀ ପୂର୍ବପରି ତାଙ୍କର ନିଷ୍ଠା, ତ୍ୟାଗ ଓ ସାଧନା ଜାରି ରଖିଥିଲେ। ଏହି ସମ୍ପର୍କରେ ଜାଣିବା ପାଇଁ ଯଯାତି କେଶରୀ ଜଗଦ୍‌ଗୁରୁ ଶ୍ରୀଶଙ୍କରାଚାର୍ଯ୍ୟଙ୍କର ଆଶୀର୍ବାଦ ଭିକ୍ଷା କରିଥିଲେ। ଏହା ଜାଣିବା ପାଇଁ ଶଙ୍କରାଚାର୍ଯ୍ୟ ଧ୍ୟାନମଗ୍ନ ରହିଥିଲେ। ଧ୍ୟାନମଗ୍ନରୁ ଉଠି ଶ୍ରୀଶଙ୍କରାଚାର୍ଯ୍ୟ କହିଥିଲେ ଯେ ଶ୍ରୀପ୍ରଭୁମାନଙ୍କୁ ନୌକା ସାହାଯ୍ୟରେ ସୋନପୁର ନିଆଯାଇଥିଲା। ଅନ୍ୟ କିଛି କହି ପାରିନଥିଲେ। ତତ୍‌ପରେ ନିଜେ ଯଯାତିକେଶରୀ ଧ୍ୟାନରେ ବସି ସମସ୍ତ ବିଷୟ ସ୍ୱପ୍ନାଦେଶ ମାଧ୍ୟମରେ ଶୁଣିବାକୁ ପାଇଥିଲେ। ତାହା ଥିଲା ହେ ରାଜନ୍! ତୁମେ କାଲି ସୋନପୁର କୋଟ ସମଲାଇଠାରେ ଥିବା ତ୍ରିକୂଟ ପର୍ବତ ତଟଦେଶରେ ବହିଯାଇଥିବା ସେଲିଗୁଡ଼ା ନଦୀକୂଳରେ ବସିଥିବ। ସେହି ନଦୀରେ ଜଣେ ଜୀର୍ଣ୍ଣଶୀର୍ଣ୍ଣ ବୃଦ୍ଧା ସ୍ନାନକରି ସେଠାରେ ଥିବା ଏକ ବରଗଛମୂଳେ ପୂଜା କରିବେ। ତୁମେ ସେହି ବୃଦ୍ଧାଙ୍କୁ ପଚାରିଲେ ସେ ଶ୍ରୀବିଗ୍ରହଙ୍କ ସମ୍ପର୍କରେ ସମସ୍ତ ବୃତ୍ତାନ୍ତ କହିଦେବେ। ସ୍ୱପ୍ନାଦେଶ ଅନୁସାରେ ଯଯାତି କେଶରୀ ଛଳିଆ ପାହାଡ଼ର ନଦୀକୂଳରେ ଉପସ୍ଥିତ ହୋଇଥିଲେ। ଧଳାଶାଢ଼ୀ ପିନ୍ଧିଥିବା ଜଣେ ବୃଦ୍ଧା ନଦୀରେ



ସ୍ନାନକରି ସେହି ବରଗଛମୂଳେ ପ୍ରଣାମ କରିବାର ଦେଖି, ଯଯାତିକେଶରୀ ନମ୍ରତାର ସହ ବୃଦ୍ଧାଙ୍କୁ ପ୍ରଣିପାତ କରି ମହାପ୍ରଭୁଙ୍କ ସମ୍ପର୍କରେ ପଚାରିଥିଲେ। କ୍ଷଣକ ମଧ୍ୟରେ ବୃଦ୍ଧାଜଣକ ଏହି ବରଗଛମୂଳେ ଥିବା ଏକ ଗୁମ୍ଫାରେ ଅଛନ୍ତି ବୋଲି କହି ଅନ୍ତର୍ଦ୍ଧାନ ହୋଇଯାଇଥିଲେ।

ଯଯାତି କେଶରୀ ଅତି ଆଗ୍ରହ ସହ ସେହି ସ୍ଥାନକୁ ଖୋଳାଇ ଏକ ଗୁମ୍ଫାର ସନ୍ଧାନ ପାଇଥିଲେ। ଗୁମ୍ଫା ଭିତରେ ରାଜା ତିନି ଠାକୁର ବିଗ୍ରହଙ୍କୁ ଦର୍ଶନ କରି ଅଛପା ଥିବା ଆରାଧ୍ୟ ଠାକୁରଙ୍କୁ ପାଇ ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ। ବିଗ୍ରହଗୁଡ଼ିକ ଜରାଜୀର୍ଣ୍ଣ ହୋଇଯାଇଥିବାରୁ ତାହାଙ୍କୁ ଶ୍ରୀକ୍ଷେତ୍ର ଆଣିବା ସମ୍ଭବପର ନଥିଲା। ତେଣୁ ସେବାୟତ ଓ ବଡ଼ପଣ୍ଡାଙ୍କ ପରାମର୍ଶରେ ବୈଦିକ ରୀତିନୀତିରେ କେବଳ ବ୍ରହ୍ମଗୁଡ଼ିକୁ ଶ୍ରୀକ୍ଷେତ୍ର ନେଇ ଆସିଥିଲେ। ତତ୍‌ପରେ ଶ୍ରୀଶଙ୍କରାଚାର୍ଯ୍ୟଙ୍କ ପରାମର୍ଶକ୍ରମେ ଦାରୁ ଚୟନ କରି ନୂତନ ବିଗ୍ରହରେ ବ୍ରହ୍ମରୋପଣ କରାଇ ଶ୍ରୀମନ୍ଦିରର ରତ୍ନସିଂହାସନରେ ପ୍ରତିଷ୍ଠା କରାଇଥିଲେ। ଏହାକୁ ଶ୍ରୀଜଗନ୍ନାଥଙ୍କର ପ୍ରଥମ ନବକଳେବର କୁହାଯାଏ।

ଆଜକୁ ପ୍ରାୟ ଏକ ହଜାର ବର୍ଷ ତଳର ଛଳିଆ ପର୍ବତର ପ୍ରାକୃତିକ ପରିବେଶ ଆଜି ଦେଖିବାକୁ ମିଳେ ନାହିଁ। ୧୯୮୨ମସିହା ମାର୍ଚ୍ଚମାସ ୨୫ ତାରିଖରେ ମାଦଳାପାଞ୍ଜିର ତଥ୍ୟକୁ ଆଧାର କରି ପଣ୍ଡିତ ସଦାଶିବ ରଥଶର୍ମା ଏହି ସ୍ଥାନ ଦର୍ଶନ କରିବା ଫଳରେ ଏହି ସ୍ଥାନର ମହତ୍ତ୍ୱ ଲୋକଲୋଚନକୁ ଆସିଥିଲା। ବର୍ତ୍ତମାନ ଏହାର ଆମୂଳଚୂଳ ପରିବର୍ତ୍ତନ ଯଥା– ରାସ୍ତାଘାଟଠାରୁ ଆରମ୍ଭ କରି ବିଜୁଳି ଆଲୋକ, କୋଠାଘର, ଦୋକାନବଜାର, ଜନବସତି ଇତ୍ୟାଦି ବହୁଳ ଭାବରେ ଉନ୍ନତି ସାଧିତ ହୋଇଅଛି। ୨୦୦୩ ମସିହା ଏପ୍ରିଲ ମାସରେ ଓଡ଼ିଶା ସରକାରଙ୍କ ସଂସ୍କୃତି ବିଭାଗ ଏହାକୁ ଏକ ପର୍ଯ୍ୟଟନ କେନ୍ଦ୍ର ରୂପେ ମାନ୍ୟତା ଦେଇ ଏହାର ପରିବେଶର ପରିବର୍ତ୍ତନ କରାଇଥିଲେ। ଯାହାଫଳରେ କି ଆଜି ଏଠାକୁ ଓଡ଼ିଶା ଓ ଓଡ଼ିଶା ବାହାରୁ ଶହ ଶହ ପର୍ଯ୍ୟଟକମାନଙ୍କର ସୁଅ ଛୁଟୁଛି। ୨୦୦୭ ମସିହାଠାରୁ ପ୍ରତିବର୍ଷ ମାଘମାସ ଶୁକ୍ଳପକ୍ଷ ପ୍ରତିପଦାଠାରୁ ଅଷ୍ଟମୀ ପର୍ଯ୍ୟନ୍ତ ଦୀର୍ଘ ୮ଦିନ ଧରି ଜିଲ୍ଲା ପ୍ରଶାସନ ଓ ପାତାଳି ଶ୍ରୀକ୍ଷେତ୍ର ପରିଚାଳନା କମିଟିର ମିଳିତ ସହଯୋଗରେ ପାତାଳି ମହୋତ୍ସବ ପାଳିତ ହୋଇଆସୁଅଛି। ଶ୍ରୀପ୍ରଭୁମାନେ ଏହି ପବିତ୍ର ପୀଠରେ ଦୀର୍ଘ ୧୪୪ବର୍ଷ ପାତାଳି ହୋଇ ରହିଥିବାର ସ୍ମୃତିକୁ ସ୍ମରଣ କରିବା ପାଇଁ ପୁରୀ ମନ୍ଦିର ପରିଚାଳନା ତରଫରୁ ୨୦୦୭ ସେପ୍ଟେମ୍ବର ମାସ ୯ ତାରିଖରେ ଏକ ପ୍ରତିନିଧି ଦଳ ଏଠାକୁ ଆସି ଏହାର ସର୍ବାଙ୍ଗୀନ ବିକାଶ କରିବା ପାଇଁ ଏକ ଖସଡ଼ା ପ୍ରସ୍ତୁତ କରିଥିଲେ। ଫଳରେ ଛଳିଆ ପର୍ବତ ଉପରେ ଏକ ମନ୍ଦିର ନିର୍ମାଣ ହୋଇ ତିନି ଠାକୁରଙ୍କର ବିଗ୍ରହ ପ୍ରତିଷ୍ଠା କରାଯାଇଛି। ୨୦୧୧ ମସିହା ଫେବୃଆରୀ ମାସ ୭ତାରିଖରେ ଏହି ମନ୍ଦିର ପ୍ରତିଷ୍ଠା ଉତ୍ସବରେ ପୁରୀ ଗଜପତି ମହାରାଜା ଶ୍ରୀ ଶ୍ରୀ ଦିବ୍ୟସିଂହ ଦେବ ଯୋଗ ଦେଇଥିଲେ। ଏଥି ସହିତ ପ୍ରତିବର୍ଷ ଏଠାରେ ଶ୍ରୀକ୍ଷେତ୍ରର ରଥଯାତ୍ରା ରୀତିନୀତି ଅନୁସାରେ ପାଳନ କରାଯାଉଅଛି। ଆଜିକାଲି ଏହି ପୀଠର ମାହାତ୍ମ୍ୟ ପ୍ରଚାର ଓ ପ୍ରସାର ହେବା ଫଳରେ ପ୍ରତିଦିନ ଶହ ଶହ ଶ୍ରଦ୍ଧାଳୁ ଜଗନ୍ନାଥପ୍ରେମୀ ଭକ୍ତ, ତୀର୍ଥଯାତ୍ରୀ ଓ ପର୍ଯ୍ୟଟକମାନେ ଏଠାକୁ ଆସି ଠାକୁରଙ୍କୁ ଦର୍ଶନ ସହ ଏହାର ପ୍ରାକୃତିକ ସୌନ୍ଦର୍ଯ୍ୟରୁ ମଜା ଉଠାଉଛନ୍ତି।

ଏଠାକାର ପ୍ରାକୃତିକ ପରିବେଶ ଅତ୍ୟନ୍ତ ମନୋହର ଓ ଆନନ୍ଦଦାୟକ। ଛଳିଆ ପର୍ବତ ଉପରେ ଥିବା ଶ୍ରୀଜଗନ୍ନାଥ ମନ୍ଦିରକୁ ଯିବାପାଇଁ ପାହାଚମାନ ନିର୍ମିତ ହୋଇଥିବାରୁ ଆଜିକାଲି ଭକ୍ତମାନେ ଅତି ସହଜରେ ମନ୍ଦିରକୁ ଯାଇପାରୁଛନ୍ତି। ଏହାର ତଟଦେଶରେ ବହିଯାଇଥିବା ସେଲିଗୁଡ଼ା ନଦୀର ନିର୍ମଳ ଜଳସ୍ରୋତ ଓ ପରିବେଶର ସୌନ୍ଦର୍ଯ୍ୟ ଦର୍ଶକମାନଙ୍କ ମନକୁ ବିମୋହିତ କରିଥାଏ । ଏଥିସହିତ ମନ୍ଦିରର ଉପରଭାଗରେ ଥିବା ଦାରୁକୋଣ ଅଂଶ ସମେତ ନିକଟରେ ଥିବା ଶୂନ୍ୟପାହାଡ଼ ଓ ରାଣୀବସା ପାହାଡ଼ର ମନମୁଗ୍ଧକର ଦୃଶ୍ୟ ଦର୍ଶନ କରିବା ପାଇଁ ପ୍ରତ୍ୟହ ଶହ ଶହ ଦର୍ଶକମାନଙ୍କର ସମାଗମ ଏହି ସ୍ଥାନକୁ ଚଳଚଞ୍ଚଳ କରିପକାଉଛି। ଆଜି ବି ପୁରୀ ଶ୍ରୀମନ୍ଦିରର ପ୍ରଶାସନ, କୋଟସମଲାଇ ପାତାଳି ଶ୍ରୀକ୍ଷେତ୍ରର ଟ୍ରଷ୍ଟ ଓ ସୁବର୍ଣ୍ଣପୁର ଜିଲ୍ଲା ପ୍ରଶାସନ ମିଳିତ ସହଯୋଗରେ ଏହାର ସର୍ବାଙ୍ଗୀନ ଉନ୍ନତି ପାଇଁ ଅଦମ୍ୟ ଉଦ୍ୟମ ଜାରି ରଖିଛନ୍ତି। ବିଶେଷତଃ ଏଠାରେ ଥିବା



ଐତିହ୍ୟସମ୍ପନ୍ନ ପାହାଡ଼ମାନଙ୍କ ମଧ୍ୟରେ ଗମନାଗମନର ସୁବନ୍ଦୋବସ୍ତ ଓ ତୀର୍ଥଯାତ୍ରୀମାନଙ୍କ ରାତ୍ର ରହଣି ପାଇଁ ଆଶ୍ରୟସ୍ଥଳୀମାନ ନିର୍ମାଣ କରାଗଲେ ଅଧିକ ସଂଖ୍ୟକ ଯାତ୍ରୀମାନଙ୍କ ସମାବେଶ ହୋଇପାରିବ ବୋଲି ଏଠାକାର ବୁଦ୍ଧିଜୀବୀମାନେ ମତପୋଷଣ କରନ୍ତି ।

ଆଜି ଯେପରି ପୁରୀ ଶ୍ରୀଜଗନ୍ନାଥଙ୍କ ପୀଠ ସାରା ବିଶ୍ୱରେ ଗୁରୁତ୍ୱ ବହନ କରିପାରିଛି, ସେପରି ଶ୍ରୀଜଗନ୍ନାଥ, ଓଡ଼ିଶାର ବିଭିନ୍ନ ସ୍ଥାନରେ ନିର୍ବାସିତ ହୋଇଥିବା ସ୍ଥାନଗୁଡ଼ିକ ମଧ୍ୟ ଖ୍ୟାତି ଅର୍ଜନ କରିପାରିଛି। ସେହିସବୁ ସ୍ଥାନର ମାଟି, ପାଣି ଓ ପବନ ଆଧ୍ୟାତ୍ମିକ ପରିବେଶରେ ପ୍ରସ୍ଫୁଟିତ ହେବାର ବିବରଣୀ ଇତିହାସରେ ଲିପିବଦ୍ଧ ହୋଇପାରିଛି। ସେହିସବୁ ସ୍ଥାନ ମଧ୍ୟରେ ସୁବର୍ଣ୍ଣପୁରର କୋଟସମଲାଇ ତ୍ରିକୂଟପର୍ବତର ପାତାଳି ଶ୍ରୀକ୍ଷେତ୍ର ସ୍ଥାନଟି ଅଧିକ ଜଗନ୍ନାଥପ୍ରେମୀ ଓ ଶ୍ରଦ୍ଧାଳୁ ଭକ୍ତମାନଙ୍କୁ ଆକର୍ଷିତ କରିପାରିଛି। ତେଣୁ ସୁବର୍ଣ୍ଣପୁର ଜିଲ୍ଲାବାସୀ ଶ୍ରୀଜଗନ୍ନାଥଙ୍କ ମହିମା ଓ ସେଠାକାର ପରିବେଶ ପାଇଁ ଗର୍ବିତ ଓ ଗୌରବାନ୍ୱିତ।

ଦୁର୍ଗାମାଧବ ନଗର
ଲେନ୍ ନଂ –୮, ଶ୍ୟାମପୁର, ଭୁବନେଶ୍ୱର

# ଜୟ ଜଗନ୍ନାଥ

ସ୍ନେହଲତା ମହାନ୍ତି

ଏ ମନ ମୋର ତୋ ଶ୍ରୀମନ୍ଦିର
ଏ ଦେହ ତୋ ବଡ଼ଦାଣ୍ଡ
ସେହି ଦାଣ୍ଡରେ ନନ୍ଦିଘୋଷରେ
ଆରେ ଆ' ମୋ କଳାଚାନ୍ଦ
ମୁଁ ଦେଖିବି ତୋର କଳାଶ୍ରୀମୁଖ
ତୋର ପୀତବସନ ବେଶ
ଆହୁରି ଦେଖି ହେବି ମୁଁ ଖୁସୀ
ତୋର ରଙ୍ଗା ଅଧରେ ହସ
ତାଳଧ୍ୱଜରେ ଥିବେ ସାଥୀରେ
ତୋ ଭାଇ ହଳଧର
ସୁଭଦ୍ରା ଦେବୀ ସୁଦର୍ଶନଙ୍କୁ
ସାଥୀରେ ଆଣିଥିବୁ
ସଭିଙ୍କ ପାଇଁ ଏ ଘୋଷଯାତ୍ରା
ଯେମିତି ନ ଭୁଲିବୁ





ବରଷେ ଥରେ ଏ ଆଷାଢ଼େ
ତୋର ଏ ଘୋଷଯାତ
ସେ ଯାତ ପାଇଁ ସାରା ଜଗତେ
ହୋଇଛୁରେ ଧନ ଖ୍ୟାତ
ତୋ ନନ୍ଦିଘୋଷ ହେଲାଣି ସଜ
ଉଠ ପହଡ଼ ଭାଙ୍ଗି
ଅଭିମାନରେ ମା' ମହାଲକ୍ଷ୍ମୀ
ଦେବେରେ ରଥ ଚକ ଭାଙ୍ଗି
ଫେରି ମାଉସୀ ଘରୁ
ମିଠା ଖୋଇବୁ ମାନ ଭାଙ୍ଗିବୁ
ମନଟି ତୋର କେତେ କୋମଳ
ମିଛକୁ ସିନା ଗରୁ ।

ମାଛୁଆଡି, ସାଲେପୁର



# କ୍ଷେତ୍ରର ନାମ ତୁଳସୀ ରଥର ନାମ ବ୍ରହ୍ମତାଳଧ୍ୱଜ

**ପଣ୍ଡିତ ଡକ୍ଟର ସୂର୍ଯ୍ୟମଣି ଖୁଣ୍ଟିଆ**

ଆମ ଉତ୍କଳରେ ଚାରିଗୋଟି କ୍ଷେତ୍ର ବୋଲି ପ୍ରସିଦ୍ଧି ରହିଛି । ଯଥା- ଶଂଖକ୍ଷେତ୍ର ପୁରୀ, ଗଦାକ୍ଷେତ୍ର ଯାଜପୁର, ଚକ୍ରକ୍ଷେତ୍ର ଭୁବନେଶ୍ୱର ଓ ପଦ୍ମକ୍ଷେତ୍ର କୋଣାର୍କ । ଏ ଚାରି କ୍ଷେତ୍ରକୁ ଛାଡ଼ିଦେଲେ ଆଉ ଗୋଟିଏ ପ୍ରସିଦ୍ଧ କ୍ଷେତ୍ର ବା ପଞ୍ଚମ କ୍ଷେତ୍ର ହେଉଛି ତୁଳସୀ କ୍ଷେତ୍ର- କେନ୍ଦ୍ରାପଡ଼ା । ପ୍ରାଚୀନଗ୍ରନ୍ଥ ବ୍ରହ୍ମତନ୍ତ୍ରରେ ଏ କ୍ଷେତ୍ରକୁ ଉତ୍କଳର ପଞ୍ଚମ କ୍ଷେତ୍ର ଭାବରେ ସ୍ୱୀକାର କରାଯାଇଛି । ଭାରତବର୍ଷର ଉତ୍କଳଦେଶର ତୁଳସୀ କ୍ଷେତ୍ର ସଂପର୍କରେ ଉଲ୍ଲେଖ କରାଯାଇଛି-

ବର୍ଷାଣାଂ ଭାରତଃ ଶ୍ରେଷ୍ଠଃ ଦେଶାନାଂ ଉତ୍କଳତଥା
ଉତ୍କଳେ ଶ୍ରେଷ୍ଠ ତୀର୍ଥାଣି କୃଷ୍ଣାର୍କ ପାର୍ବତୀହରାଃ
ଯାତ୍ରାଯାତ୍ରାୟାମ୍ ହଳାୟୁଧଃ ଗଚ୍ଛେତ୍ ତୁଳସୀ କ୍ଷେତ୍ରେ
ଉତ୍କଳେ ପଞ୍ଚକ୍ଷେତ୍ରାଣି ବଦନ୍ତି ମୁନି ପୁଙ୍ଗବାଃ ।

ଅର୍ଥାତ୍ ବର୍ଷ ଭିତରେ ଭାରତ ଶ୍ରେଷ୍ଠ, ଦେଶ ଭିତରେ ଉତ୍କଳ ଶ୍ରେଷ୍ଠ, ଉତ୍କଳରେ କ୍ଷେତ୍ରଗୁଡ଼ିକ ହେଲା- କୃଷ୍ଣ, ସୂର୍ଯ୍ୟ, ପାର୍ବତୀ, ହର, ପଞ୍ଚମ କ୍ଷେତ୍ର ହଳାୟୁଧ (ବଳଭଦ୍ର)

କୃଷ୍ଣ-ଶ୍ରୀଜଗନ୍ନାଥ- ଶଂଖକ୍ଷେତ୍ର, ଶ୍ରୀକ୍ଷେତ୍ର
ଅର୍କ- ଶ୍ରୀସୂର୍ଯ୍ୟ- କୋଣାର୍କ, ପଦ୍ମକ୍ଷେତ୍ର
ପାର୍ବତୀ- ଶ୍ରୀବିରଜା- ଯାଜପୁର, ଗଦାକ୍ଷେତ୍ର
ହର- ଶ୍ରୀଲିଙ୍ଗରାଜ- ଭୁବନେଶ୍ୱର, ଚକ୍ରକ୍ଷେତ୍ର
ହଳାୟୁଧ- ଶ୍ରୀବଳଭଦ୍ର- କେନ୍ଦ୍ରାପଡ଼ା, ତୁଳସୀ କ୍ଷେତ୍ର

ଅତଏବ କେନ୍ଦ୍ରାପଡ଼ା ତୁଳସୀ କ୍ଷେତ୍ର । କ୍ଷେତ୍ର ପୁରାଣମାନଙ୍କରେ 'ତୁଳସୀକ୍ଷେତ୍ର' ବା କେନ୍ଦ୍ରାପଡ଼ାକୁ 'ଗୁପ୍ତକ୍ଷେତ୍ର ଉତ୍କଳେଗୁପ୍ତ ବୃନ୍ଦାବନ' 'ବ୍ରହ୍ମକ୍ଷେତ୍ର' ଆଦି ଭାବରେ ବର୍ଣ୍ଣନା କରାଯାଇଛି । ବ୍ରହ୍ମବୈବର୍ତ୍ତ ପୁରାଣ(ବଂଗଳା ଅନୁବାଦ)ରେ ତୁଳସୀ କ୍ଷେତ୍ରକୁ ଗୁପ୍ତ ବୃନ୍ଦାବନ ରୂପରେ ବର୍ଣ୍ଣନା କରାଯାଇଥିବା କଥା ନିମ୍ନ ପଦ୍ୟାଂଶ ପ୍ରମାଣିତ କରେ ।

ତୁଳସୀର ଆର ନାମ ବୃନ୍ଦାତପୋଧନ
ଏହି ହେତୁ ନାମଖ୍ୟାତ ହଇଲା ବୃନ୍ଦାବନ ।

ଏ କ୍ଷେତ୍ର ଓଡ଼ିଶାର ସମସ୍ତ କ୍ଷେତ୍ରମାନଙ୍କ ମଧ୍ୟରେ ପ୍ରାଚୀନତମ ବୋଲି ତୁଳସୀ କ୍ଷେତ୍ର ମାହାତ୍ମ୍ୟ ଗ୍ରନ୍ଥ ଦାବି କରେ ।

'ତୁଳସୀ କ୍ଷେତ୍ର ମାହାତ୍ମ୍ୟ' ଗ୍ରନ୍ଥ ଅନୁଯାୟୀ ଦ୍ୱାପର ଯୁଗରେ ମହାବଳୀ କୃଷ୍ଣାଗ୍ରଜ ବଳରାମ ମହାଭାରତ ଯୁଦ୍ଧ ପ୍ରତି ବିମୁଖ ହୋଇ ତୀର୍ଥାଟନରେ ନୈମିଷାରଣ୍ୟରେ ବ୍ୟାସଙ୍କର ଶିଷ୍ୟ ସୁତ ମୁନିଂକୁ କ୍ରୋଧାବିଷ୍ଟ ହୋଇ ହତ୍ୟା କରିବା ପରେ ମୁନି ଋଷିଙ୍କଠାରୁ ତିରସ୍କାର ପାଇଲେ । ସେଇ ମୁନିଋଷିମାନଙ୍କଠାରୁ ସମ୍ବାଦ ପାଇ ଲଳିତଗିରିରେ ବାସ କରୁଥିବା ମଧୁଦୈତ୍ୟର ପୌତ୍ର ବା ଶଂକୁକର୍ଣ୍ଣର ପୁତ୍ର ଅତ୍ୟାଚାରୀ ଦୁର୍ଦ୍ଦାନ୍ତ ଦାନବ କନ୍ଦରାସୁରକୁ ବଧ କରିବା ପାଇଁ ସେଠାକୁ ଆସିଥିଲେ । ସେ ତାଂକର ହଳମୂଷଳ ସାହାଯ୍ୟରେ କନ୍ଦରାସୁରକୁ ବଧ କଲେ । କନ୍ଦରାସୁରର ଗୋଟିଏ ପାଳିତା କନ୍ୟା ଥିଲା । ତା'ର ନାମ ବୃନ୍ଦା ବା ତୁଳସୀ । ସତ୍ୟଯୁଗରୁ ସିଏ ବର ପାଇଥିଲା ଯେ ନାରାୟଣ ତା'ର ପତି ହେବେ । କନ୍ଦରାସୁରକୁ ହତ୍ୟା କରିବା ପରେ ମହାବଳୀ ବଳଭଦ୍ର ବୃନ୍ଦା ବା ତୁଳସୀକୁ ବିବାହ କରି ଏଠାରେ କ୍ଷେତ୍ର ପ୍ରତିଷ୍ଠା କଲେ । ସେଥିପାଇଁ ତୁଳସୀ କ୍ଷେତ୍ର ମାହାତ୍ମ୍ୟରେ କୁହାଯାଇଛି-



କନ୍ଦରା ଆତ୍ମଜାକାରଣେ / କ୍ଷେତ୍ରରଚିଲୁ ପ୍ରଭୁ ପଣେ
ଏ ବ୍ରହ୍ମ କ୍ଷେତ୍ର ପ୍ରତିଷ୍ଠିତ / ତୁଳସୀ କ୍ଷେତ୍ରନାମେ ଖ୍ୟାତ
ଅର୍ଦ୍ଧଯୋଜନ ଏହୁ କ୍ଷେତ୍ର / ତୋ ନିଷ୍ଠାବାସ ପଦ୍ମନେତ୍ର
ଏ କ୍ଷେତ୍ରେ ଯେ ବାସ କରିବ/ଯେ ଯାହା ବାଂଛା ପୂର୍ଣ୍ଣ ହେବ
ଏ କ୍ଷେତ୍ରର କ୍ଷେତ୍ରାଧିପତି ହଳାୟୁଧ ଶ୍ରୀବଳଭଦ୍ର ।

କ୍ଷେତ୍ରର ଇତିହାସ ଖୋଜିବାକୁ ଗଲାବେଳେ ୨୨୦୦ ବର୍ଷ ତଳୁ ଉତ୍କୀର୍ଣ୍ଣ 'ଘୁଷୁଣ୍ଡି' ଶିଳାଲେଖରୁ ଜଣାଯାଏ ଯେ ଭାରତବର୍ଷରେ ଶାସନ କରୁଥିବା 'ମଣିଭଦ୍ର' ନାମକ ମହାରାଜା ପ୍ରଥମେ 'ବଳଭଦ୍ରଶିଳା' ପ୍ରକରଣ କରାଇ ପୂଜାର୍ଚ୍ଚନା କରିଥିଲେ । ଶ୍ରୀବଳଭଦ୍ରଂକ ଦୁର୍ମୂଲ୍ୟ ମଣିବିଗ୍ରହ ଉପରେ ସପ୍ତଫଣା ନଥିବାରୁ ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀରେ ନାଗବଂଶୀୟ ରାଜା 'ଶତ୍ରୁଭଂଜ' ଲଳିତଗିରିଠାରେ ପ୍ରଭୁଙ୍କ ପୂଜା କରାଇଥିଲେ । ତତ୍ପରେ ଷଷ୍ଠ ଶତାବ୍ଦୀରେ ଉତ୍ତର ତୋଷାଳୀର ମୁଦ୍‌ଗଲ ବଂଶୀୟ ମହାରାଜା ଶମ୍ଭୁଯଶଂକର ରାଜ୍ୟର ରାଷ୍ଟ୍ରଦେବତା ଭାବରେ ଶ୍ରୀବଳଦେବ ପୂଜିତ ହେଉଥିଲେ । ଓଡ଼ିଶା ମ୍ୟୁଜିୟମ୍‌ରେ ସଂରକ୍ଷିତ ଥିବା ୭୦୦ବର୍ଷ ତଳର 'କିଷ୍କିନ୍ଧାକାଣ୍ଡ' ପୋଥିରୁ ଜଣାଯାଏ ଯେ ପ୍ରାୟ ୧୫୦୦ ବର୍ଷ ତଳେ ବଳଦେବ ଲଳିତଗିରିରେ ପୂଜା ପାଉଥିଲେ । ସମ୍ଭବତଃ ରକ୍ତବାହୁର ଆକ୍ରମଣ କିମ୍ବା ବୌଦ୍ଧଧର୍ମର ବ୍ୟାପକ ବିସ୍ତାର ଅଥବା ଦୁର୍ମୂଲ୍ୟ ମଣିବିଗ୍ରହ ପ୍ରାପ୍ତି ଆଶାରେ ବିଧର୍ମୀମାନଂକ ଦ୍ୱାରା ଉତ୍ପୀଡ଼ିତ ହୋଇ ମହାପ୍ରଭୁ ବଳଭଦ୍ର ସାନଭାଇ ଜଗନ୍ନାଥଂକ ପରି ଦୀର୍ଘଦିନ ଧରି ପାତାଳୀ ହୋଇଥିଲେ । ପରବର୍ତ୍ତୀ ସମୟରେ ସିଦ୍ଧେଶ୍ୱର ନାମକ ଯାଜ୍ଞିକ ବ୍ରାହ୍ମଣ ପ୍ରଭୁଂକ ଦ୍ୱାରା ସ୍ୱପ୍ନାବିଷ୍ଟ ହୋଇ ପ୍ରଭୁଂକୁ ଉଦ୍ଧାର କରିଥିଲେ । ଉଦ୍ଧାର କରିଥିବା ମଣି ବିଗ୍ରହମାନଂକୁ ପାଟଶାଢ଼ୀରେ ଆବୃତ୍ତ କରି ନିଜ ଗୃହରେ ରଖିଥିଲେ । ସେହିଦିନଠାରୁ ମହାପ୍ରଭୁ ଗୁପ୍ତ ଥିବାରୁ ଏହାର ନାମ 'ଗୁପ୍ତକ୍ଷେତ୍ର' ହୋଇଛି । ଦଶମ ଶତାବ୍ଦୀରେ ସୋମବଂଶୀୟ ନରପତି ଦ୍ୱିତୀୟ ଯଯାତିକେଶରୀ ମହାପ୍ରଭୁଙ୍କ ଲାଗି ଏକ ଛୋଟ ମନ୍ଦିର ନିର୍ମାଣ କରିଥିଲେ । ପରେ ଗଜପତି ତୃତୀୟ ଅନଂଗଭୀମଦେବ ଶ୍ରୀବଳଭଦ୍ରଂକ ଲାଗି ଏକ ଗଗନଚୁମ୍ବୀ ରେଖମନ୍ଦିର ନିର୍ମାଣ କରି ଏହାର ପରିଚାଳନା ଦାୟିତ୍ୱ ତାଂକର ପ୍ରଧାନମନ୍ତ୍ରୀ ଗୋବିନ୍ଦ ପଟ୍ଟଯୋଷୀଙ୍କ ସାନଭାଇ ଶ୍ରୀଜଗନ୍ନାଥ ପଟ୍ଟଯୋଷୀଙ୍କୁ ଅର୍ପଣ କରିଥିଲେ । ଷୋଡଶ ଶତାବ୍ଦୀର ମଧ୍ୟଭାଗରେ ବୈଷ୍ଣବଧର୍ମର ପ୍ରଚାରକ ଶ୍ରୀଚୈତନ୍ୟ ଓ ଓଡ଼ିଆ ଭାଗବତକାର ଅତିବଡ଼ୀ ଜଗନ୍ନାଥ ଦାସ ଏ କ୍ଷେତ୍ରର ଚଳଣିରେ ବହୁ ପରିବର୍ତ୍ତନ ଆଣିଥିଲେ ।

୧୬୬୩ ଖ୍ରୀଷ୍ଟାବ୍ଦ ଜୁନ୍ ମାସ ୨୬ ତାରିଖ ଦିନ ବାଲେଶ୍ୱରର ନବାବ୍ ମହାମ୍ମଦ ଜାନ୍‌ଙ୍କ ସୁବେଦାର ଖାନ୍–ଇ–ଦୌଶନ୍ ଏହି ମନ୍ଦିରକୁ ଭାଂଗି ସେଠାରେ ଏକ ମସଜିଦ୍ ନିର୍ମାଣ କରିଥିବାର ପ୍ରମାଣ ଡକ୍ଟର ନବୀନ କୁମାର ସାହୁ ଓ ଡକ୍ଟର ହରେକୃଷ୍ଣ ମହାତାବଙ୍କ ଲିଖିତ ଓଡ଼ିଶା ଇତିହାସରୁ ଜଣାଯାଏ । ଏହି କାର୍ଯ୍ୟରେ ସାହାଯ୍ୟ କରିଥିବା କୁଜଂଗ ଜିଲ୍ଲା ଅନ୍ତର୍ଗତ ପ୍ରାଚୀନ ଜମିଦାରୀ ବାଲିତୁଠର ଜମିଦାର ଗୋପାଳୀ ରାଉତରାୟ ମହାପ୍ରଭୁଙ୍କୁ ନିଜ ରାଜ୍ୟକୁ ନେଇ ଯିବା ପାଇଁ ଚାହିଁଥିଲେ । ମାତ୍ର କିମ୍ବଦନ୍ତୀ କହେ ମହାପ୍ରଭୁ ମଧୁସାଗର କୂଳ ତ୍ୟାଗ କରି ଯିବାକୁ ଚାହିଁଲେ ନାହିଁ । ହଠାତ୍ ଗୋପାଳୀ ଆତ୍ମହତ୍ୟା କଲେ ଏବଂ କିଛି ଦିନ ପାଇଁ ମହାପ୍ରଭୁ ବାଳଭୋଗ ଖାଇ ଚିତ୍ରୋପ୍ଳା କୂଳସ୍ଥ ବିରାଟ ବଟବୃକ୍ଷ ସଖୀବଟ ତଳେ ଆଶ୍ରୟ ନେଲେ ।

୧୭୦୭ ଖ୍ରୀଷ୍ଟାବ୍ଦ ସୁଦ୍ଧା କୁଜଂଗର ତତ୍କାଳୀନ ରାଜା ଗୋପୀନାଥ ନରେନ୍ଦ୍ର ସାମନ୍ତ ଓ ପରେ ଦାମୋଦର ଷଣ୍ଡ ଏବଂ ଛେଦରା କିଲ୍ଲାର ଜମିଦାର ଗୋପୀନାଥ ରାୟ ମିଶି ବର୍ତ୍ତମାନର ମୁଖ୍ୟ ମନ୍ଦିର ନିର୍ମାଣ କାର୍ଯ୍ୟ ସମାପନ କରିଥିଲେ । ଏ ହେଲା କ୍ଷେତ୍ର ତୁଳସୀର ସଂକ୍ଷିପ୍ତ ପରିଚିତି ।

ଏବେ ଯିବା ରଥ ବ୍ରହ୍ମତାଳଧ୍ୱଜ ପାଖକୁ । ରଥ ଓ ରଥଯାତ୍ରା ମାନବ ସଭ୍ୟତା ଓ ସଂସ୍କୃତିର ଗୋଟିଏ ଅବିଚ୍ଛେଦ୍ୟ ଅଂଗ । ପୁରାଣ ଯୁଗରୁ ସ୍ୱର୍ଗର ଦେବତାମାନଙ୍କ ପାଖରୁ ଆରମ୍ଭ କରି ମାଟିର ମଣିଷମାନଙ୍କ ପର୍ଯ୍ୟନ୍ତ ରଥାରୋହଣ କରୁଥିବାର ପ୍ରମାଣ ଆମ ଶାସ୍ତ୍ର ପୁରାଣ ଇତିହାସମାନଙ୍କରେ ଅଛି । ଦେବତା ତଥା ରାଜା ମହାରାଜାମାନେ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯିବା ପାଇଁ ରଥର ବ୍ୟବହାର କରୁଥିଲେ । କୁବେରଂକର ପୁଷ୍ପକ ବିମାନ ବା ରଥ ଆକାଶରେ ଉଡୁଥିବାର କଥା ରାମାୟଣରେ



କୁହାଯାଇଛି । ଏ ଯୁଗରେ ମଧ୍ୟ ଲୋକେ ମୋଟର ଯାନକୁ ରଥ ଆକାରରେ ସଜାଇ ତାକୁ ରଥର ଆଖ୍ୟା ଦେଉଛନ୍ତି ।

କେତେକ ଐତିହାସିକ ତଥା ଗବେଷକ ମତ ଦିଅନ୍ତି ଯେ ରଥଯାତ୍ରା ବୌଦ୍ଧମାନଂକଠାରୁ ଅର୍ଥାତ୍ ବୁଦ୍ଧଯୁଗରୁ ଆରମ୍ଭ ହୋଇଛି । ସେ କଥାକୁ ବିଚାର କରୁ କରୁ ବୌଦ୍ଧଯୁଗର ବହୁ ପୂର୍ବରୁ ରାମାୟଣ ବା ମହାଭାରତ ଯୁଗରେ ରଥର ବ୍ୟବହାର କଥା ଆମ ଆଖି ଆଗକୁ ଆସେ । ରାମାୟଣରେ ରାମ ରାବଣ ଯୁଦ୍ଧ ବେଳେ ଇନ୍ଦ୍ରଂକର ସାରଥି ମାତଳି ନିଜର ରଥ ଘେନି ରାମଂକ ସମ୍ମୁଖରେ ଲଂକାର ରଣକ୍ଷେତ୍ରରେ ପହଂଚିବା କଥା କିମ୍ବା ମହାଭାରତ ଯୁଦ୍ଧରେ ଶ୍ରୀକୃଷ୍ଣ ଅର୍ଜୁନଂକ ରଥରେ ସାରଥି ହେବାକଥା ଆମ ଆଖି ଆଗରେ ନାଚିଯାଏ । ରଥର ବି ନାମକରଣ କରାଯାଇଛି । ଯେମିତି ଅର୍ଜୁନଂକର ରଥର ନାମ କପିଧ୍ୱଜ, କୃଷ୍ଣଙ୍କ ରଥର ନାମ ନନ୍ଦିଘୋଷ, ପୁଣି କୃଷ୍ଣଂକର ବଡ଼ଭାଇ ବଳରାମଙ୍କର ରଥର ନାମ ତାଳଧ୍ୱଜ ।

ପରବର୍ତ୍ତୀ ସମୟରେ ରାଜା ମହାରାଜାମାନେ ରଥର ବ୍ୟବହାର ତ୍ୟାଗ କଲାବେଳେ ଆମର ଦେବଦେବୀଂକ ପାଇଁ ରଥ ଓ ରଥଯାତ୍ରାର ବିଧାନ ଖଂଜିଛନ୍ତି । ଏହି ପରିପ୍ରେକ୍ଷୀରେ ଉତ୍କଳ ମାଟିରେ ଶ୍ରୀଜଗନ୍ନାଥଙ୍କର ରଥଯାତ୍ରା ସମ୍ଭବତଃ ସବୁଠାରୁ ବେଶୀ ବିଶ୍ୱପ୍ରସିଦ୍ଧି ଲାଭ କରିଛି । କେତେକଙ୍କର ଧାରଣା ଅଛି ଯେ କେବଳ ଜଗନ୍ନାଥଙ୍କର ରଥଯାତ୍ରା ହୁଏ । ଏ ଯାତ୍ରା ହୁଏ ଆଷାଢ଼ ଶୁକ୍ଳ ଦ୍ୱିତୀୟା ତିଥିରେ । ଏ କଥା ମଧ୍ୟ ଆମେ ଜାଣିବା ଉଚିତ୍ ଯେ ଶ୍ରୀଜଗନ୍ନାଥଂକ ରଥଯାତ୍ରାକୁ ଛାଡ଼ି ଯାଜପୁରାଧୀଶ୍ୱରୀ ମା' ବିରଜାଙ୍କର ଆଶ୍ୱିନ ଶୁକ୍ଳ ପ୍ରତିପଦଠାରୁ ନବମୀ ପର୍ଯ୍ୟନ୍ତ ନବଦିନ ବ୍ୟାପୀ ରଥଯାତ୍ରା ହୁଏ । ସେ ରଥର ନାମ ସିଂହଧ୍ୱଜ ବା ବିଜୟା ରଥ । ପୁଣି ଭଗବାନ ଲିଙ୍ଗରାଜଙ୍କର ରାମନବମୀ ପୂର୍ବଦିନ ଅର୍ଥାତ୍ ଅଶୋକାଷ୍ଟମୀ ଦିନ ରଥଯାତ୍ରା ହୁଏ, ସେ ରଥର ନାମ ରୁକୁଣାରଥ । ଖାଲି ଉତ୍କଳ ବା ଓଡ଼ିଶାରେ ନୁହେଁ ଓଡ଼ିଶା ବାହାରେ ମଧ୍ୟ ଦକ୍ଷିଣର ଦେବୀ କନ୍ୟାକୁମାରୀଙ୍କର ଆଶ୍ୱିନ ନବରାତ୍ର ସମୟରେ ରଥଯାତ୍ରା ହୁଏ । ତାମିଲନାଡୁର ଭେଲୋରଠାରେ ଥିବା ପ୍ରଖ୍ୟାତ 'ଜଳାନ୍ତକେଶ୍ୱର' ମନ୍ଦିରରେ ତ ପ୍ରତିଦିନ ରଥଯାତ୍ରା ହୁଏ । ସୁନାର ରଥ ନିର୍ମିତ ହୋଇ ଏକ ସ୍ୱତନ୍ତ୍ର ଗୃହରେ ସଂରକ୍ଷିତ ହୋଇ ରହିଛି ପ୍ରତିଦିନ ପରିକ୍ରମା ପାଇଁ ।

ଏତେକଥାର ଅବତାରଣା କରିବାର ଉଦ୍ଦେଶ୍ୟ ହେଉଛି ଆମ ସଂସ୍କୃତି ଓ ସଭ୍ୟତାରେ ରଥଯାତ୍ରାର ପରମ୍ପରା ଅତ୍ୟନ୍ତ ପୁରାତନ । ଆମର ପ୍ରିୟ ପ୍ରଭୁ ଶ୍ରୀଜଗନ୍ନାଥଙ୍କର ରଥଯାତ୍ରାରେ ବ୍ୟବହୃତ ହୁଏ ତିନିରଥ ଯଥା– ବଳଭଦ୍ରଙ୍କର ତାଳଧ୍ୱଜ, ଶ୍ରୀସୁଭଦ୍ରାଙ୍କର ଦର୍ପଦଳନ ଏବଂ ଶ୍ରୀଜଗନ୍ନାଥଙ୍କର ନନ୍ଦିଘୋଷ ରଥ । ପୁଣି ପୁରୀ ବା ଶ୍ରୀକ୍ଷେତ୍ରର ରଥଯାତ୍ରାର ଅନୁସରଣରେ ସମଗ୍ର ଭାରତବର୍ଷରେ ତଥା ଭାରତବର୍ଷ ବାହାରେ ବିଦେଶୀ ରାଷ୍ଟ୍ରମାନଙ୍କରେ ମଧ୍ୟ ରଥଯାତ୍ରାର ଆୟୋଜନ କରାଯାଉଛି । କେଉଁଠି ଗୋଟିଏ ରଥରେ ତିନିଠାକୁରଙ୍କୁ ବିଜେ କରାଯାଉଛି ତ ଆଉ କେଉଁଠି ତିନିଠାକୁରଙ୍କ ପାଇଁ ଅଲଗା ଅଲଗା ରଥର ବ୍ୟବହାର କରାଯାଉଛି ।

### ତୁଳସୀ କ୍ଷେତ୍ରର ରଥ 'ବ୍ରହ୍ମତାଳଧ୍ୱଜ'

ତୁଳସୀ କ୍ଷେତ୍ରର ଇଛାପୁର ଗ୍ରାମରେ ଥିବା ରଥଦାଣ୍ଡ ଉପରେ ଚାଲେ ଗୋଟିଏ ରଥ । ସାରା ପୃଥିବୀରେ ଯେଉଁଠି ଯେଉଁଠି ଶ୍ରୀଜଗନ୍ନାଥଙ୍କର ବିଗ୍ରହ ପୂଜା ପାଉଛନ୍ତି ସେସବୁ ବିଗ୍ରହ ହେଉଛନ୍ତି ଦାରୁବିଗ୍ରହ । ମାତ୍ର କେନ୍ଦ୍ରାପଡ଼ା ତୁଳସୀ କ୍ଷେତ୍ରର ତିନି ଦିଅଁ ହେଉଛନ୍ତି ମଣି ବିଗ୍ରହ । ଏହି ତ୍ରିମଣି ବିଗ୍ରହ ଆରୋହଣ କରୁଥିବାର ରଥର ସଂଖ୍ୟା ଏକ... ନାମ ହେଉଛି 'ବ୍ରହ୍ମତାଳଧ୍ୱଜ' । ଏ ରଥର ନାମ କାହିଁକି ଏପରି ହୋଇଛି ?

ଦ୍ୱାପର ଯୁଗରେ ଧେନୁକାସୁରକୁ ମାରିବା ପାଇଁ ଦେବତାମାନେ ବଳରାମଂକୁ ଯେଉଁରଥ ଦେଇଥିଲେ, ସେହି ରଥର ନାମ ତାଳଧ୍ୱଜ । କେନ୍ଦ୍ରାପଡ଼ା ତୁଳସୀ କ୍ଷେତ୍ରର ଅଧୀଶ୍ୱରମାନେ ଦାରୁ ନୁହଁନ୍ତି ତେଣୁ ତାଂକୁ ଦାରୁବ୍ରହ୍ମ କୁହାନଯାଇ ଖାଲି 'ବ୍ରହ୍ମ' ବୋଲି କୁହାଯାଏ । ତେଣୁ ତାଙ୍କର ରଥକୁ ଖାଲି 'ତାଳଧ୍ୱଜ' କୁହାନଯାଇ 'ବ୍ରହ୍ମ ତାଳଧ୍ୱଜ' କୁହାଯାଏ । ତାଂକ ନିବାସ ସ୍ଥାନକୁ ମଧ୍ୟ 'ବ୍ରହ୍ମକ୍ଷେତ୍ର' ବୋଲି କୁହାଯାଏ । ତେବେ ଆମ୍ଭମାନଙ୍କୁ ମନେରଖିବାକୁ ପଡ଼ିବ ବ୍ରହ୍ମକ୍ଷେତ୍ରର ରଥ ହେଉଛି 'ବ୍ରହ୍ମତାଳଧ୍ୱଜ' ।



ଏ ରଥ ଶ୍ରୀକ୍ଷେତ୍ରର ରଥମାନଙ୍କଠାରୁ ଢେର ଅଧିକ ଉଚ୍ଚ ଓ ଏହାର ଗଠନ ପ୍ରଣାଳୀ ସ୍ୱତନ୍ତ୍ର । ଏ ରଥ ବର୍ଣ୍ଣନାରେ କୁହାଯାଏ ଚଉଦବ୍ରହ୍ମାଣ୍ଡର ଅଧିପତି ବୋଲି ରଥର ଚକ ସଂଖ୍ୟା ୧୪ । ଏହି ଚକଗୁଡ଼ିକର ଉଚ୍ଚତା ସାଢ଼େ ଛଅ ଫୁଟ୍ । ଚକଗୁଡ଼ିକର ଅର ସଂଯୁକ୍ତରେ ନିର୍ମାଣ ନହୋଇ ସାତ ଇଞ୍ଚ ମୋଟା ବିଶିଷ୍ଟ ତିନିଖଣ୍ଡ ନିଦା ଶାଳ କାଠରେ ତିଆରି ହୋଇଥାଏ । ଏହି ରଥ ୧୦୧୩ ଖଣ୍ଡ କାଠରେ ନିର୍ମିତ ଓ ଭୂମିଠାରୁ ରଥର ଉଚ୍ଚତା ୪୩ହାତ ୯ ଆଙ୍ଗୁଳି ବା ୬୫ଫୁଟ୍ । ଭୂମିଠାରୁ ରଥ ସିଂହାସନର ଉଚ୍ଚତା ସାଢ଼େ ୧୨ଫୁଟ । କେତେକ ମନେ କରନ୍ତି ଏହା ପୃଥିବୀର ସର୍ବୋଚ୍ଚ ଓ ସର୍ବ ବୃହତ୍ତମ ରଥ । ସାରଥିର ନାମ ସୁଦ୍ୟୁମ୍ନ । ସାତଗୋଟି ଅଖ ସପ୍ତତତ୍ତ୍ୱର ପରିଚାୟକ । ୯ଟି ବରାନ୍ଦ ନବଗ୍ରହଂକର ପ୍ରତୀକ । ରଥର ଦୁଇଟି ଧଳା ଓ ଦୁଇଟି କଳାଘୋଡ଼ା ଯୋଚା ଯାଆନ୍ତି । ଏମାନେ ହେଲେ ତୀବ୍ର, ଘୋର, ଦୀର୍ଘଶ୍ରମ ଓ ସ୍ୱର୍ଣ୍ଣନାଭ । ରଥ ରଜ୍ଜୁର ନାମ ବାସୁକୀ । ରଥର ଆବରଣ ସପ୍ତରଂଗ । ଅର୍ଥାତ୍ ସାତରଂଗର ବସ୍ତ୍ର ବ୍ୟବହାର କରାଯାଏ । ଦଉଡ଼ି ସାତଟି । ପ୍ରତି ଦଉଡ଼ିର ଲମ୍ବ ଚାଳିଶ ଫୁଟ । ନେତର ନାମ ଉନ୍ନନି । ରଥ ସମ୍ମୁଖରେ ଗରୁଡ଼ ଓ ହନୁମାନ । ଦ୍ୱାରପାଳ ସୂର୍ଯ୍ୟ ଓ ଚନ୍ଦ୍ର । ମୂର୍ଦ୍ଧିରେ କେତୁପ୍ରଭା । ଦ୍ୱାରଦେଶରେ ରୁଦ୍ର । ରଥର ରକ୍ଷକସ୍ୱୟଂ ବାସୁଦେବ ସଂକର୍ଷଣ । ପାର୍ଶ୍ୱଦେବତା ହେଲେ ହରିହର, ତ୍ରିପୁରାରୀ, ଲକ୍ଷ୍ମଣ, ସିଦ୍ଧ ବିନାୟକ, ନୃସିଂହ ବାସୁଦେବ, ଚାମଣ୍ଡା, ଭଦ୍ରକାଳୀ, ମଂଗଳା, ବାଣୀମଂଗଳା, ଭୈରବୀ, ଚକ୍ରବାସୁଳାଇ, ନାଟାମ୍ବର, ଦୁର୍ଗା ଓ ଶେଷଦେବ, ରଥଚାରଣ ମହାସିଦ୍ଧ, ଉଲେମୀ ଓ ଗର୍ଭାଧୀଶ୍ୱରୀ । ରଥର ଶକ୍ତି ତୁଂଗ, ତୁଂଗଭଦ୍ରା, ପ୍ରଭା, ସୁପ୍ରଭା, ଧାତ୍ରୀ, ବିଧାତ୍ରୀ, ନନ୍ଦା, ସୁନନ୍ଦା– ଋଷି ପଟାରେ– ଅଂଗିରା, ପୌଲସ୍ତ୍ୟ, ପୁଲହ, ଅଗସ୍ତି, ଆତ୍ରେୟ ଓ କଶ୍ୟପ । ରଥ କୁମ୍ଭର ନାମ ଭୁବନ, ବିଶ୍ୱ, ପୃଥିବୀ, ଚକ୍ରାୟୁଧ– ହ୍ଲୀଂ ବୀଜ । ରକ୍ଷାକର୍ତ୍ତା ନନ୍ଦସୁନନ୍ଦ ।

ମୋଟାମୋଟି ଭାବରେ ଏହା ହେଉଛି ରଥର ବିବରଣୀ । ଜାଣିବାକୁ ହେବ ଯେ ପ୍ରତ୍ୟେକ ଦେବତାଙ୍କର ରଥ ଏକ ନିର୍ଦ୍ଦିଷ୍ଟ ନିୟମରେ ତିଆରି ହୁଏ । ଏହି ବିଶାଳକାୟ ରଥ 'ବ୍ରହ୍ମତାଳଧ୍ୱଜ' ଯେତେବେଳେ ରଥଦାଣ୍ଡରେ ଚାଲେ ସେତେବେଳେ ଏକ ଚଳନ୍ତି ମନ୍ଦିରର ଭ୍ରମ ସୃଷ୍ଟି କରିଥାଏ । ତେବେ ଶ୍ରୀକ୍ଷେତ୍ର ପରି ପ୍ରତିବର୍ଷ ଏ ରଥ ନୂଆ ହୋଇ ତିଆରି ହୁଏ ନାହିଁ । ପ୍ରତିବର୍ଷ ଦୁଇଗୋଟି ଚକ ଓ କେତେକ ଅଂଶକୁ ବଦଳାଇ ଦିଆଯାଏ । ଏଠାରେ ରଥକାର୍ଯ୍ୟ ଅକ୍ଷୟ ତୃତୀୟାଠାରୁ ଆରମ୍ଭ ନହୋଇ ଜ୍ୟେଷ୍ଠ ପୂର୍ଣ୍ଣିମା ବା ସ୍ନାନପୂର୍ଣ୍ଣିମାଠାରୁ ଆରମ୍ଭ ହୁଏ । ଶ୍ରୀଗୁଣ୍ଡିଚା ଦିନ ନେତବଂଧା ସରିଲେ ରଥକାର୍ଯ୍ୟ ସଂପୂର୍ଣ୍ଣ ହେଲା ବୋଲି ମନେ କରାଯାଏ ।

ଶ୍ରୀଜୀଉଙ୍କର ପୂର୍ବ ବିଜେସ୍ଥଳୀରେ ରଥଯାତ୍ରା ପର୍ବ ପାଳିତ ହେଉଥିଲା ବୋଲି ସହର ଭିତରେ ଥିବା ଭଗ୍ନ ଗୁଣ୍ଡିଚା ମନ୍ଦିରର ପ୍ରସ୍ତର ଖଣ୍ଡରୁ ମିଳିଥାଏ । ଏବେ ରଥଯାତ୍ରା ପାଇଁ ଇଚ୍ଛାପୁର ଗ୍ରାମରେ ଥିବା ମୂଳମନ୍ଦିରଠାରୁ ଏକ କିଲୋମିଟର ଦୂରରେ ଶ୍ରୀଗୁଣ୍ଡିଚା ମନ୍ଦିର ଅବସ୍ଥିତ । ମନ୍ଦିରର ସିଂହଦ୍ୱାରରୁ ବ୍ରହ୍ମ ତାଳଧ୍ୱଜରଥ ଗଡ଼ିଚାଲେ ଶ୍ରୀଗୁଣ୍ଡିଚା ମନ୍ଦିର ପର୍ଯ୍ୟନ୍ତ । କିନ୍ତୁ ଏଠାରେ ଶ୍ରୀଗୁଣ୍ଡିଚା ଦିନ ରଥ ଗଡ଼େ ନାହିଁ । ରଥ ଟଣା କାର୍ଯ୍ୟକ୍ରମ ହୁଏ ତା'ପରଦିନ । ଶ୍ରୀଗୁଣ୍ଡିଚା ଦିନ କେବଳ ଶ୍ରୀଜୀଉମାନଙ୍କର ପହଣ୍ଡି ହୋଇ ରଥଟଣା କାର୍ଯ୍ୟ ସମ୍ପନ୍ନ ହୁଏ ।

### ଛେରା ପହଁରା ବିଧି

ଏ ରଥରେ ଛେରା ପହଁରା ବିଧି ମଧ୍ୟ ସ୍ୱତନ୍ତ୍ର । ଯାହା ଲୋକମୁଖରେ ଶୁଣାଯାଏ କୁଜଂଗର ରାଜା ବିଶ୍ୱମ୍ଭର ଷଣ୍ଢ ବିପନ୍ନୀକ ଥିବାରୁ ସେ ସେ ସେବାକୁ ଛେଦରା କୀଲ୍ଲାର ଜମିଦାର ଜଗନ୍ନାଥରାୟଂକୁ ନିଜର ବଡ଼ଝିଅ ଲକ୍ଷ୍ମୀଙ୍କୁ ବିବାହ ଦେବା ସଂଗେ ସଂଗେ ବ୍ରହ୍ମତାଳଧ୍ୱଜ ରଥର ଛେରାପହଁରା ସେବାକୁ ଯୌତୁକରେ ଦାନ କରିଥିଲେ । ଖାଲି ସେତିକି ଏହି ସେବା ସହିତ ବଡ଼ପାଳ, ବାଇଣା, ଦଶୀପୁର ଆଦି ଅଂଚଳରେ ଥିବା ଅତି ମୂଲ୍ୟବାନ ଜମିମାନ ମହାପ୍ରଭୁ ଶ୍ରୀବଳଦେବ ଜୀଉଙ୍କୁ ଦାନ କରିଥିଲେ । ସେହିଦିନଠାରୁ ଛେଦରା କୀଲ୍ଲାର ଜମିଦାର ପ୍ରଭୁଙ୍କ ନିକଟରେ ଥିବା ବାରଂଗ ଝାଡ଼ରେ ଗଡ଼ ନିର୍ମାଣ କରି ରହିଲେ ଏବଂ ଠାକୁର ରାଜା ବୋଲାଇଲେ । ତାଂକ ପଛରେ ନରେନ୍ଦ୍ର ମହାପାତ୍ର ସଂଜ୍ଞା ଲେଖାଗଲା । ତେବେ ଜଗନ୍ନାଥ ମହାପାତ୍ର ହେଲେ ପ୍ରଥମ ଠାକୁର ରାଜା । ତାଂକ ପରେ



ପୁରୁଷୋତ୍ତମ, ପଦ୍ମନାଭ, ପର୍ଶୁରାମ, ମଧୁସୂଦନ, ଦାଶରଥି, ଶ୍ରୀନିବାସ ଓ ଦୁର୍ଗାପ୍ରସାଦ ନରେନ୍ଦ୍ର ମହାପାତ୍ର ଠାକୁର ରାଜା ଭାବେ ପରିଚିତ ଥିଲେ । ୧୭୨୧ ମସିହାରେ ଦୁର୍ଗାପ୍ରସାଦ ନରେନ୍ଦ୍ର ମହାପାତ୍ର ଅପୁତ୍ରିକ ଭାବେ ମୃତ୍ୟୁବରଣ କରିଥିଲେ । ତାଂକର ଦୁଇ ଝିଅ ଥିଲେ । କନ୍ୟା ବିବାହ ଦେବା ପାଇଁ ତାଂକର ରାଣୀ ନିଜ ରାଜ୍ୟର ବହୁ ସମ୍ପତ୍ତି, ଶ୍ରୀଜୀଉଙ୍କ ଚନ୍ଦନ ପୁଷ୍କରିଣୀ ଓ ଛେରାପହଁରା ସେବା ଆଦି ବଡ଼ କୋଠାର ପ୍ରଖ୍ୟାତ ଦାନଶୀଳ ଜମିଦାର ରାଧାଶ୍ୟାମ ନରେନ୍ଦ୍ରଂକୁ ବିକ୍ରୟ କରିଦେଇଥିଲେ । ରାଧାଶ୍ୟାମ ନରେନ୍ଦ୍ରଂକ ପତ୍ନୀ ଚନ୍ଦ୍ରକଳାଂକର ତତ୍ ପୂର୍ବରୁ ମୃତ୍ୟୁ ହୋଇଥିଲା । ତେଣୁ ତାଂକର ଜ୍ୟେଷ୍ଠପୁତ୍ର ବାବୁ ଜଗନ୍ନାଥ ଭ୍ରମରବର ରାୟ ଓ ତାଂକ ପୁତ୍ର ବାବୁ ବଳରାମ ଭ୍ରମରବର ରାୟ ଶ୍ରୀଜୀଉଙ୍କ ଛେରା ପହଁରା କରି ଆସୁଥିଲେ । ନରେନ୍ଦ୍ର ପରିବାରର ପରଂପରା ଅନୁଯାୟୀ ବଂଶର ବଡ଼ ଭାଇଙ୍କର ବଡ଼ପୁଅ ଛେରା ପହଁରା କରିବାର ପ୍ରଥା ରହିଥିଲା । ମାତ୍ର ପରବର୍ତ୍ତୀ ସମୟରେ ସେ ପରିବାରର ବହୁ ଲୋକ ନିଃସନ୍ତାନ ଓ ଉପରତଳ ହୋଇଯିବାରୁ କଳହ ସୃଷ୍ଟି ହେଲା । ଫଳତଃ ସର୍ବ ଶେଷରେ ସେମାନେ ତାଂକ କୁଳର କୁଳ ପୁରୋହିତ ବାରଂଗ ରାଜ୍ୟସ୍ଥିତ ଗୋସାଇଁ ବଂଶର ବ୍ରାହ୍ମଣଙ୍କୁ ଛେରା ପହଁରା ସେବା ଅର୍ପଣ କରିଥିଲେ । ସେହିଦିନଠାରୁ ଗୋସାଇଁ ବଂଶ ଏ କାର୍ଯ୍ୟ ସୁଚାରୁ ରୂପେ କରିଆସୁଛନ୍ତି ।

ପୂର୍ବରୁ କୁହାଯାଇଛି ଏଠାରେ ଦୁଇ ଦିନ ଗୁଣ୍ଡିଚା ଯାତ୍ରା ଅନୁଷ୍ଠିତ ହୁଏ । ବାହୁଡ଼ାଯାତ୍ରା ମଧ୍ୟ ଦୁଇଦିନ ଅନୁଷ୍ଠିତ ହୋଇ ଥାଏ । ଶ୍ରୀଗୁଣ୍ଡିଚାର ତୃତୀୟ ଦିବସରେ ଦିଅଁମାନେ ଶ୍ରୀଗୁଣ୍ଡିଚା ମନ୍ଦିରର ଆଡ଼ପମଣ୍ଡପକୁ ବିଜେ କରନ୍ତି । ହେରାପଞ୍ଚମୀ ଦିନ କ୍ରୋଧିତା ମହାଲକ୍ଷ୍ମୀ ଯାଇ ରଥ ଭାଂଗି ଆସନ୍ତି ଏବଂ ପୁନଶ୍ଚ ମନ୍ଦିର ବିଜୟ ପୂର୍ବରୁ ବ୍ରହ୍ମତାଳଧ୍ୱଜ ରଥ ଉପରେ ଶ୍ରୀଜୀଉଙ୍କର ରଘୁନାଥ ବେଶ ହୁଏ । ମୋଟାମୋଟି ଉପରେ କେନ୍ଦ୍ରାପଡ଼ାର ତୁଳସୀ କ୍ଷେତ୍ର ଓ କ୍ଷେତ୍ରାଧୀଶ୍ୱର ଶ୍ରୀବଳଦେବଂକର 'ବ୍ରହ୍ମତାଳଧ୍ୱଜ' ରଥଯାତ୍ରାର ଏହା ଏକ ସଂକ୍ଷିପ୍ତ ବିବରଣୀ ବୋଲି ଧରିନେବାକୁ ହେବ । ଶେଷରେ ଶ୍ରୀବଳଦେବଜୀଉଙ୍କ ପାଦତଳେ ଭକ୍ତି ଅର୍ଘ୍ୟ ନିବେଦନ କରିବାକୁ ଯାଇ ଏତିକି କୁହାଯାଇପାରେ–

ବନ୍ଦଇ ଶ୍ରୀବଳଦେବ ରୋହିଣୀନନ୍ଦନ
ରେବତୀରମଣ ହଳ ମୂଷଳ ଧାରଣ
ତୁମ୍ଭପାଦେ ହେ
ଦୟିନୀ କରୁଛି ଅବସାଦେ ହେ...।
(ବୈଶ୍ୟ ସଦାଶିବ)

ଶ୍ରୀବଳଦେବଙ୍କ ଚରଣ କମଳରେ କୋଟି କୋଟି ନମସ୍କାର ।

(ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକସଂପର୍କ ବିଭାଗ, କେନ୍ଦ୍ରାପଡ଼ା ତରଫରୁ ପ୍ରକାଶିତ ସୂଚନା ପୁସ୍ତିକାର ସହଯୋଗରେ)

ବେଗନା, ଧନେଶ୍ୱର
କୋରାଇ, ଯାଜପୁର – ୭୫୫୦୨୨





# ରାଜରାଜେଶ୍ୱର ବେଶରେ ଶ୍ରୀଜଗନ୍ନାଥ

ବିଚକ୍ଷଣା ବିଶ୍ୱାଳ

ଲୀଳାମୟ ପ୍ରଭୁ ଶ୍ରୀଜଗନ୍ନାଥ ଅନନ୍ତ କୋଟି ବ୍ରହ୍ମାଣ୍ଡର ଈଶ୍ୱର ସାରା ବିଶ୍ୱକୁ ସେ ଆର୍ଦ୍ର କରିଛନ୍ତି କରୁଣା ଶିଷରେ, ରଙ୍ଗେଇଛନ୍ତି ମହାଶୂନ୍ୟକୁ କୋଟି କୋଟି ଗ୍ରହ ନକ୍ଷତ୍ରରେ । ସେ ପରଂବ୍ରହ୍ମ, ପରମାତ୍ମା କେତେବେଳେ ସାକାର ତ କେବେ ନିରାକାର, ସଗୁଣ, ନିର୍ଗୁଣ– ଏମିତି ବହୁ ରୂପରେ ବହୁ ଭାବରେ ଭକ୍ତଟି ଗ୍ରହଣ କରିନିଏ ତା'ର ପ୍ରାଣ ପୁରୁଷ ମହାପ୍ରଭୁଙ୍କୁ । ସେଇ ଇଚ୍ଛାମୟ ଉତ୍କଳଭୂମିକୁ ବାଛି ନେଇଛନ୍ତି ଆପଣାର ବାସସ୍ଥାନ ରୂପରେ, ବିଜେ କରିଛନ୍ତି ନୀଳାଚଳଧାମ ଶ୍ରୀମନ୍ଦିରରେ । ହିନ୍ଦୁମାନଙ୍କର ସେ ପରମ ଉପାସ୍ୟ ତଥା ଚରମ ଆରାଧ ଦେବତା । ସେମାନେ ତାଙ୍କୁ ବିପଦ ଆପଦ, ସୁଖ ଦୁଃଖ, ହାନି ଲାଭର ସାଥୀ କରି ନେଇଛନ୍ତି । ଓଡ଼ିଶାର ସାମାଜିକ, ରାଜନୀତିକ, ଧାର୍ମିକ, ସାଂସ୍କୃତିକ, ଜୀବନ ସହ ସେ ଓତପ୍ରୋତ ଭାବେ ଜଡ଼ିତ । ତାଙ୍କ ବିଜେସ୍ଥଳୀ ଶ୍ରୀକ୍ଷେତ୍ର ପବିତ୍ର ତୀର୍ଥସ୍ଥାନ, ମର୍ତ୍ତ୍ୟ ବୈକୁଣ୍ଠ । ସାରା ବିଶ୍ୱର ବିଭିନ୍ନ ଧର୍ମାବଲମ୍ବୀମାନେ ପୁରୀକୁ ଆସିଥାନ୍ତି ତାଙ୍କରି ଦର୍ଶନ ପାଇଁ । ଭାବବିନୋଦିଆ ଠାକୁର କାହାକୁ ନିରାଶ କରି ନାହାନ୍ତି । ପୁରୁଷୋତ୍ତମ କ୍ଷେତ୍ର ପାଲଟିଛି ସର୍ମଧର୍ମ ସମନ୍ୱୟର ସଂଗମସ୍ଥଳ । ସେଇଥିପାଇଁ ସାରା ସଂସାର ତାଙ୍କୁ ଗ୍ରହଣ କରିଛି ଜଗତର ନାଥ ଜଗନ୍ନାଥ ଭାବରେ । ତାଙ୍କର ସର୍ବବ୍ୟାପକତା ଯୁକ୍ତିକୁ ଅନେକ ଗ୍ରହଣ କରନ୍ତି । ସବୁ ସମ୍ପ୍ରଦାୟ ଭକ୍ତ ତାଙ୍କ ରତ୍ନସିଂହାସନରେ ଦର୍ଶନ କରିବାର ଅଧିକାର କଥା ବି ଉଠାଇଥାନ୍ତି ଓ ଏଥିପାଇଁ ନିୟମ ତିଆରି ପାଇଁ ମତ ପ୍ରଦାନ କରନ୍ତି । ଏ ପ୍ରକାର ଯୁକ୍ତି କଦାପି ଗ୍ରହଣଯୋଗ୍ୟ ହୋଇନପାରେ । ଅତୀତରେ କେଇଜଣ ଧର୍ମବିଦ୍ୱେଷୀ ଶାସକ ଜଗନ୍ନାଥଙ୍କ କୋଠ ଭଣ୍ଡାର ଲୁଟ୍ କରିବାର ଚେଷ୍ଟା / ଅପଚେଷ୍ଟା କରିଛନ୍ତି । ସେ ରକ୍ତବାହୁ ହେଉ ବା କଳାପାହାଡ ହେଉ ଅବା ଅନ୍ୟ କୌଣସି ଶାସକ । ସେମାନେ ଆପଣାର ସ୍ୱାର୍ଥ ସାଧନ ପାଇଁ ଏ ପ୍ରକାର ପଦକ୍ଷେପ ନେଇଛନ୍ତି । ଏଣୁ ଜଗନ୍ନାଥ ପ୍ରେମୀ ଶାସକ, ସେବାୟତ ଶ୍ରୀଜଗନ୍ନାଥଙ୍କୁ ସୁରକ୍ଷା ଦେବା ପାଇଁ କେତେକ ଅନୁପ୍ରବେଶକୁ ବାରଣ କରିଛନ୍ତି । ଏହା ଏକ ସ୍ୱତଃସିଦ୍ଧ ମାନସିକ ପ୍ରକ୍ରିୟା, ଦୟାଳୁ ଠାକୁର କିନ୍ତୁ ବୁଝନ୍ତି ଭକ୍ତର ମନକଥା । ପୂରଣ କରନ୍ତି ତା'ର ବାଞ୍ଛିତ ଅଭିଳାଷକୁ । ବର୍ଷକୁ ଥରୁଟିଏ ବାହାରି ଆସନ୍ତି ବଡ଼ଦାଣ୍ଡକୁ । ରଥାରୂଢ଼ ହୋଇ ଦର୍ଶନ ଦିଅନ୍ତି । ଶ୍ରୀଜୀଉଙ୍କର ଏହା ବିଶ୍ୱପ୍ରସିଦ୍ଧ ଘୋଷଯାତ୍ରା । ରତ୍ନସିଂହାସନର କୋଠ ଭୋଗଖିଆ ଏବେ ବଡ଼ଦାଣ୍ଡରେ ସାଧାରଣ ମଣିଷଟିଏ । ଏହା ସତ୍ତ୍ୱେ ଐଶ୍ୱର୍ଯ୍ୟମୟ ରାଜ–ରାଜେଶ୍ୱର ଶ୍ରୀଜଗନ୍ନାଥ । ଏ କଥାଟି ତାଙ୍କର ବେଶ, ପୋଷାକ, ନୈବେଦ୍ୟ–ପ୍ରତିଟିରେ ପରିଲକ୍ଷିତ । ତନ୍ମଧ୍ୟରୁ ରଥ ଉପରେ 'ସୁନାବେଶ' ଅନ୍ୟତମ ।

ଶ୍ରୀଜଗନ୍ନାଥଙ୍କ ଦୈନନ୍ଦିନ ଜୀବନଚର୍ଯ୍ୟା ସାଧାରଣ ଓଡ଼ିଆଟି ପରି । କିନ୍ତୁ ସେ ଓଡ଼ିଶାର ବିଭବର ପ୍ରତୀକ । ତାହା ପ୍ରତୀୟମାନ ହୋଇଥାଏ ତାଙ୍କ ସୁନାବେଶରେ । ମହାପ୍ରଭୁଙ୍କ ବର୍ଷରେ ୨୪ଟି ବେଶ ମଧ୍ୟରୁ ୨୨ଟି ସମ୍ପନ୍ନ ହୋଇଥାଏ । ନାଗାର୍ଜୁନ ବେଶ, ରଘୁନାଥ ବେଶ– ଏ ଦୁଇଟି ବିରଳ ଶୁଭଲଗ୍ନରେ ଅନୁଷ୍ଠିତ ହୁଏ । ଶ୍ରୀଜୀଉମାନଙ୍କର ବେଶଗୁଡିକରେ ମୁଖ୍ୟତଃ ପୋଷାକ ପରିବର୍ତ୍ତନ ହେଉଥିବା ସ୍ଥଳେ, କେତେଗୋଟିରେ ତାଙ୍କର ଅବତାର ବଦଳିଯାଏ । କେତେବେଳେ ସେ ବିଷ୍ଣୁ ତ ଆଉ କେତେବେଳେ ନୃସିଂହ ଅବତାର ବେଶରେ । ସବୁ ବେଶରେ ଶ୍ରୀଜଗନ୍ନାଥ ମୁଖ୍ୟ ସ୍ଥାନରେ ଥିବା ସ୍ଥଳେ କେବଳ ପ୍ରଳମ୍ବାସୁର ବଧ ବେଶରେ



ବଳଭଦ୍ର ପ୍ରମୁଖ ଭୂମିକାରେ ରହିଥାନ୍ତି । ସୁନାବେଶ ବର୍ଷରେ ୫ଥର ଅନୁଷ୍ଠିତ ହୋଇଥାଏ । ରନ୍ସିଂହାସନରେ ଦଶହରା, କାର୍ତ୍ତିକ ପୂର୍ଣ୍ଣିମା, ପୌଷପୂର୍ଣ୍ଣିମା, ଦୋଳପୂର୍ଣ୍ଣିମାରେ ଏହା ସମ୍ପନ୍ନ ହୁଏ । ଏହା ସହିତ ନୀଳାଦ୍ରି ବିଜେ ପୂର୍ବଦିନ (ଆଷାଢ଼ ଶୁକ୍ଳ ଏକାଦଶୀ) ରଥ ଉପରେ ଶ୍ରୀଜୀଉମାନଙ୍କର ସୁନାବେଶ ଅନୁଷ୍ଠିତ ହୁଏ । ଅନ୍ୟ ଚାରୋଟି ଅପେକ୍ଷା ଏହା ଅଧିକ ମାଧୁର୍ଯ୍ୟପୂର୍ଣ୍ଣ । ଏଥିରେ ସବୁ ପ୍ରକାର ସ୍ୱର୍ଣ୍ଣାଳଙ୍କାର ଶ୍ରୀବିଗ୍ରହମାନଙ୍କୁ ଲାଗି କରାଯାଏ । ଅନ୍ୟ ସୁନାବେଶଗୁଡିକରେ କେତେକ ନିର୍ଦ୍ଦିଷ୍ଟ ଅଳଙ୍କାର ବ୍ୟବହୃତ ହୋଇଥାଏ । ରନ୍ସିଂହାସନରେ ଅନୁଷ୍ଠିତ ସୁନାବେଶ ସବୁ ସଂପ୍ରଦାୟର ଭକ୍ତ ଦେଖିବା ସମ୍ଭବ ହୋଇନଥାଏ । କେବଳ ହିନ୍ଦୁମାନେ ଏ ଦିବ୍ୟବେଶ ଦର୍ଶନର ସୁଯୋଗ ପାଇଥାନ୍ତି । ରଥଯାତ୍ରା ସମୟରେ ଠାକୁରମାନଙ୍କର ସୁନାବେଶ ଆଚଣ୍ଡାଳ ବ୍ରାହ୍ମଣ ସମସ୍ତେ ଦର୍ଶନ କରନ୍ତି । ପତିତପାବନ ସ୍ୱୟଂ ଭକ୍ତର ମନସ୍କାମନା ପୂର୍ଣ୍ଣ କରିବା ପାଇଁ ଏ ଅପୂର୍ବ ରୂପ ଧାରଣ କରିଥାନ୍ତି ।

ଆଷାଢ଼ ଶୁକ୍ଳଦଶମୀ ତିଥି । ଠାକୁରମାନେ ଜନ୍ମବେଦୀରୁ ପୁନଶ୍ଚ ଓହ୍ଲାଇ ଆସନ୍ତି ବଡ଼ଦାଣ୍ଡକୁ । ନବଦିନ ବ୍ୟାପୀ ଘୋଷଯାତ୍ରାର ଏହା ଏକ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ । ଶ୍ରୀଗୁଣ୍ଡିଚା ପରି ଚତୁର୍ଦ୍ଧାମୂର୍ତ୍ତିଙ୍କ ପହଣ୍ଡିବିଜେ, ରଥତ୍ରୟୀରେ ଠାକୁର ରାଜାଙ୍କ ଛେରା–ପହଁରା ପର୍ବ ସମାପ୍ତି ପରେ ଶ୍ରଦ୍ଧାଳୁମାନେ ରଥଟାଣି ଆଣନ୍ତି । ଶ୍ରୀ ବିଗ୍ରହମାନଙ୍କର ଏବେ ଜନ୍ମବେଦୀକୁ ଯାତ୍ରା । ଏହା 'ବାହୁଡାଯାତ୍ରା' ନାମେ ଖ୍ୟାତ । ତା'ପରେ ଆସେ ବହୁ ପ୍ରତୀକ୍ଷିତ ବଡ଼ ଏକାଦଶୀ । ଶ୍ରୀ ବିଗ୍ରହମାନେ ରଥାରୂଢ଼ ହୋଇ ରହିଥାନ୍ତି । ଅନୁଷ୍ଠିତ ହୁଏ ସୁନାବେଶ । ଏହା ଶ୍ରୀଜଗନ୍ନାଥଙ୍କ ଐଶ୍ୱର୍ଯ୍ୟ ବେଶ । ଏଥିରେ ତିନି ଠାକୁରଙ୍କୁ ଲାଗି କରାଯାଏ ମହଣ ମହଣ ସ୍ୱର୍ଣ୍ଣ ଅଳଙ୍କାର । ଅଳଙ୍କାରଗୁଡ଼ିକୁ ତଢ଼ାଉକରଣ ସେବାୟତମାନେ ତିଆରି କରିଥାନ୍ତି । ଏଣୁ ସୁନାବେଶକୁ 'ତଢ଼ାଉକରଣ ବେଶ' କୁହାଯାଏ । ଏହା ମଧ୍ୟ 'ବଡତଢ଼ାଉ ବେଶ', 'ରାଜ ବେଶ', 'ରାଜ–ରାଜେଶ୍ୱର ବେଶ' ନାମରେ ଅଭିହିତ । ରଥରେ ସନ୍ଧ୍ୟା ଆଳତି ସରେ । ପାଳିଆ, ମେକାପ, ଖୁଣ୍ଟିଆ ସେବକମାନେ କଡା ସୁରକ୍ଷା ମଧ୍ୟରେ ବହୁ ମୂଲ୍ୟର ସୁନା ଅଳଙ୍କାର ଶ୍ରୀଜୀଉଙ୍କ ଭଣ୍ଡାରଘରୁ ବାହାରକରି ରଥକୁ ଆଣନ୍ତି । ପାଳିଆ ପୁଷ୍ପାଳକ, ଦଇତାପତି, ଖୁଣ୍ଟିଆ ମେକାପ, ତଳଛୁ, ଭିତରଛୁ ଆଦି ସେବକମାନଙ୍କ ଉପସ୍ଥିତିରେ ଏହି ବେଶ ସମ୍ପନ୍ନ ହୁଏ । ପ୍ରଥମେ ଠାକୁରମାନଙ୍କୁ ପାଟବସ୍ତ୍ରରେ ସଜ୍ଜିତ କରାଯାଏ । ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ବାଡ଼ରେ ଭିତରଛୁ ମହାପାତ୍ର, ଶ୍ରୀବଳଭଦ୍ରଙ୍କ ବାଡ଼ରେ ତଳଛୁ ମହାପାତ୍ର, ସୁଭଦ୍ରାଙ୍କ ବାଡ଼ରେ ପୁଷ୍ପାଳକ ସେବକମାନେ ସ୍ୱର୍ଣ୍ଣ ଅଳଙ୍କାରଗୁଡିକୁ ଲାଗି କରନ୍ତି । ବଡ଼ଠାକୁର ବଳଭଦ୍ରଙ୍କୁ ଶ୍ରୀପୟର, ଶ୍ରୀଭୁଜ, କିରୀଟି, ଓଡ଼ିଆଣୀ, କୁଣ୍ଡଳ, ଚନ୍ଦ୍ରସୂର୍ଯ୍ୟ, ଆଡକାନି, ଘାଗଡାମାଳି, କଦମ୍ବମାଳି, ତିଳକ, ଚନ୍ଦ୍ରିକା, ଅଳକା, ଝୋବାକଣ୍ଟି, ବାହାଡାମାଳି, ହଳ, ମୂଷକ, ବାଘନଖ ମାଳି, ସେବତିମାଳି, ତ୍ରିଖଣ୍ଡିକା ଭୂଷିତ କମରପଟି, ଦେବୀ ସୁଭଦ୍ରାଙ୍କୁ କିରୀଟି, ଓଡ଼ିଆଣି, ଚନ୍ଦ୍ରସୂର୍ଯ୍ୟ, ଆଡ଼କାନି, ଘାଗଡାମାଳି, କଦ୍ମମାଳି, ଦୁଇଟି ତଡ଼ଗି, ସେବତିମାଳି, ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ କିରୀଟି, ଶ୍ରୀଭୁଜ, ଶ୍ରୀପୟର, ଓଡ଼ିଆଣି, ଚନ୍ଦ୍ରସୂର୍ଯ୍ୟ, ଆଡକାନି, ଘାଗଡା ମାଳି, କଦମ୍ବମାଳି, ତିଳକ, ଚନ୍ଦ୍ରିକା, ଅଳକା, ଝୋବାକଣ୍ଟି, ସୁବର୍ଣ୍ଣଚକ୍ର, ରୌପ୍ୟଶଙ୍ଖ, ହରିଡାମାଳି, ବାହାଡାମାଳି, ତାବିଜମାଳି, ସେବତିମାଳି, ତ୍ରିଖଣ୍ଡିକା କମରପଟି ଆଦି ବେଶ କରାଯାଏ । ପୁଷ୍ପର ଅଧରମାଳ, ନାକୁଆସୀ, ଝୁମ୍ପା ଲାଗି କରାଯିବା ପରେ ଶ୍ରୀବିଗ୍ରହମାନେ ଦର୍ଶନ ଦିଅନ୍ତି 'ରାଜ ରାଜେଶ୍ୱର ବେଶ'ରେ ।

ମହାପ୍ରଭୁଙ୍କ ସୁନାବେଶ ଆରମ୍ଭ ସଂପର୍କରେ ବିଭିନ୍ନ ମତ ପ୍ରକାଶ ପାଇଛି । ରାଣୀ ଗୁଣ୍ଡିଚାଙ୍କ ଅଧାଗଢ଼ା ଦିଅଁଙ୍କୁ ଦେଖି ରାଜା ଇନ୍ଦ୍ରଦ୍ୟୁମ୍ନ ନିଜକୁ ବ୍ରହ୍ମଘାତୀ ମନେକଲେ । ସ୍ୱୟଂ ଇଚ୍ଛାମୟ ଏଥିପାଇଁ ରାଜାଙ୍କୁ ସ୍ୱପ୍ନାଦେଶ କଲେ । ରାଜା ତିଆରି କଲେ ସୁନାର ହସ୍ତ, ପାଦ, ମୁକୁଟ । ଶ୍ରୀଜୀଉମାନେ ସୁନାବେଶରେ ଦର୍ଶନ ଦେଲେ । ଏହା ଦାରୁବ୍ରହ୍ମଙ୍କ ନିର୍ଦ୍ଦେଶ ଥିବା ପୁରାଣ କଥିତ । ଓଡ଼ିଶାର ଠାକୁର ରାଜା କପିଳେନ୍ଦ୍ର ଦେବ ଦାକ୍ଷିଣାତ୍ୟ ବିଜୟ (୧୪୬୦ ଖ୍ରୀ.ଅ) କରି ୧୬ଟି ହାତୀ ପିଠିରେ ସୁନା, ରୂପା, ମୋତି, ମାଣିକ୍ୟ, ହୀରା, ଲୀଳା ପ୍ରଭୃତି ଅନେକ ଦୁର୍ଲ୍ଲଭ ଅଳଙ୍କାର ଶ୍ରୀକ୍ଷେତ୍ର ଆଣିଲେ । ଏହା କେବଳ କୃପାମୟଙ୍କ କରୁଣାରୁ ସମ୍ଭବ ହେଲା । ଠାକୁର ରାଜାମାନେ ତ କାଳେ କାଳେ



ମହାପ୍ରଭୁଙ୍କ ନ୍ୟାସ (ଟ୍ରଷ୍ଟି) ଭାବେ ନିଜକୁ ଗ୍ରହଣ କରିଥାନ୍ତି। ସବୁ ଯଶ, ଖ୍ୟାତି, ସମ୍ପଦ, ବୈଭବ ପ୍ରାପ୍ତି ଶ୍ରୀଜଗନ୍ନାଥଙ୍କ କୃପା ମନେକରି ତାଙ୍କରି ପାଦରେ ନିଜକୁ ସମର୍ପଣ କରିଦେଇଥାନ୍ତି। ରାଜା କପିଳେନ୍ଦ୍ର ଦେବ ମଧ ଦାକ୍ଷିଣାତ୍ୟରୁ ପ୍ରାପ୍ତ ଏହି ମୂଲ୍ୟବାନ ଧାତୁରେ ତଡ଼ାଉକରଣ ସେବାୟତଙ୍କ ଦ୍ୱାରା ୧୩୮ପ୍ରକାରର ରତ୍ନ ଖଚିତ ସ୍ୱର୍ଣ୍ଣ ଅଳଙ୍କାର ତିଆରି କଲେ। ବିଶ୍ୱର ସବୁ ଭକ୍ତ, ମହାପ୍ରଭୁଙ୍କ ରାଜରାଜେଶ୍ୱର ବେଶ ସନ୍ଦର୍ଶନ କରିବେ। ତେଣୁ ରାଜା ଆଷାଢ଼ ଶୁକ୍ଳ ଏକାଦଶୀ ଦିନ ଏହି ବେଶ ଲାଗୁ କରିଥିଲେ। ରାଜା ଅନଙ୍ଗଭୀମ ଦେବ ମଧ ବହୁମାଡ଼ ସୁନାରେ ପ୍ରଭୁଙ୍କ ପାଇଁ ଅଳଙ୍କାର ମାନ ଗଢ଼ାଇଥିଲେ। ଏତଦ୍‌ଭିନ୍ନ ସୁନାବେଶ ସହିତ ଆଉ ଏକ କାହାଣୀ ବିଜଡିତ। ଶ୍ରୀଜଗନ୍ନାଥ ବଡ଼ ଆଗ୍ରହରେ ଯାଇଥାନ୍ତି ଗୁଣ୍ଡିଚା ମନ୍ଦିର। ନବଦିନର କ୍ଳାନ୍ତି, ଅବସାଦ ତାହାଙ୍କୁ ସ୍ପର୍ଶ କରିପାରେନି। ସୁନାବେଶରେ ନିଜକୁ ସଜେଇ ଦିଅନ୍ତି ପ୍ରଭୁ। ବୀରଦର୍ପରେ ବାହୁଡନ୍ତି ଶ୍ରୀମନ୍ଦିରକୁ। ଏ ସମସ୍ତ ମତାମତ ଉର୍ଦ୍ଧ୍ୱରେ ରହିଛି ଗୁରୁତ୍ୱପୂର୍ଣ୍ଣ କଥାଟି। କୋଟି ବ୍ରହ୍ମାଣ୍ଡ ପ୍ରଭୁ ଜଗନ୍ନାଥ। ତାଙ୍କୁ ବା କିଏ କ’ଣ ଦେଇ ସନ୍ତୁଷ୍ଟ କରିବ? ସବୁ ସେଇ ଇଚ୍ଛାମୟଙ୍କର ଇଚ୍ଛା। ରଥ ଉପରେ ରାଜ–ରାଜେଶ୍ୱର ବେଶରେ ଦର୍ଶନ ଦିଅନ୍ତି ପ୍ରଭୁ, ସବୁ ଧର୍ମର ଭକ୍ତଙ୍କ କାମନା ପୂର୍ଣ୍ଣ କରନ୍ତି, ସାର୍ଥକ କରନ୍ତି ନିଜର ପତିତପାବନ ନାମକୁ। ତାଙ୍କର ଇଙ୍ଗିତରେ ଏହି ଅନନ୍ୟ ରାଜ–ରାଜେଶ୍ୱର ଲୀଳା ହିଁ ସମ୍ଭବ ହୋଇପାରିଛି।

ରଥ ଉପରେ ମହାପ୍ରଭୁଙ୍କ ସୁନାବେଶ ଦେଖିଲେ କୋଟି ଜନ୍ମର ପାତକ ଦୂର ହୋଇଯାଏ, ମିଳିଯାଏ ମୋକ୍ଷ। ଏଇ ଆଶାଟିକକ ପୋଷଣକରି ବଡ଼ଦାଣ୍ଡରେ ରୁଣ୍ଡ ହୋଇଯାନ୍ତି କୋଟି କୋଟି ଭକ୍ତ। ଆଖି ପୂରେଇ ଦେଖନ୍ତି ଚକାନୟନଙ୍କୁ। ବହିଯାଏ ଆନନ୍ଦାଶ୍ରୁ। କିଏ ସ୍ତବ କରୁଥାଏ, କିଏ ସ୍ତୁତିରେ ମଗ୍ନ ।

ତେତିଶ କୋଟି ଦେବତା ମଧ ଦେଖୁଥାନ୍ତି ଲୀଳାମୟଙ୍କ ରାଜବେଶ। ରହସ୍ୟମୟ ଠାକୁର ଶ୍ରୀଜଗନ୍ନାଥ। ତାଙ୍କର ଏ ପ୍ରକାର ଐଶ୍ୱର୍ଯ୍ୟମୟ ଲୀଳା କାହିଁ ସାରା ବିଶ୍ୱରେ ପରିଲକ୍ଷିତ ହୁଏ ନାହିଁ ! ପ୍ରଭୁ ତ ସ୍ୱୟଂ ସୁବର୍ଣ୍ଣ ସଂସାର ବିନ୍ଧାଣି। ତାଙ୍କୁ କିଏ ବା କେତେ ସୁନା ଦେବ? ସେ ସୁବର୍ଣ୍ଣର ରାଜ–ରାଜେଶ୍ୱର। ତାଙ୍କରି ପଦାରବିନ୍ଦରେ ସାରାଜଗତ ଆଜି ଶରଣାପନ୍ନ ।

ସା/ପୋ–ଗଙ୍ଗାକୂଳ
କେନ୍ଦ୍ରାପଡ଼ା–୭୫୪୨୨୩

# ତୋ ରଥ ଦଉଡ଼ି

ଦିଲ୍ଲୀପ କୁମାର ବେହୁରା

ତୋ ରଥ ଦଉଡ଼ି ଛୁଇଁବାକୁ ଯାଇ
ଲୋକହସା ଯାହା ହେଲି
ଯେତେ ଥର ଗଲି ଗହଳି ଭିତରେ
ପଛୁ ପଛ ଗଲି ଚାଲି
ରଥ ଦଉଡ଼ିକୁ ଛୁଇଁଦେଲେ ପରା
ଏ ଭବୁଁ ଯାଆନ୍ତି ତରି
ଆସିଅଛି ଯେଣୁ ଶୀରିକ୍ଷେତର ମୁଁ
ଯିବି ନାହିଁ କେବେ ଫେରି

ଯେତେ ତୁ ପରୀକ୍ଷା କରୁଥା କାଳିଆ ଯିବି ମୁହିଁ ଠେଲିପେଲି।
ବହି ଯାଉ ପଛେ ଆଖିରୁ ଲୋତକ
ଗଡ଼ିଚାଲୁ ତୋର ରଥ
ପଛରେ ଧାଇଁବି ଦଉଡ଼ି ଛୁଇଁବି
ଦେଖାରେ ତୁ ମୋତେ ପଥ
ଜଗତର ନାଥ ଭକତ ବତ୍ସଳ ଚାହିଁବାରେ ଆଖି ମେଲି।

ଗ୍ରାମ–ପୋଖରୀଆ, ପୋ–ମହୁଲିଆ
ରାଜନଗର, କେନ୍ଦ୍ରାପଡ଼ା



# ଶ୍ରୀଜଗନ୍ନାଥ ସଂସ୍କୃତି ଓ ଆୟୁର୍ବେଦ

ଡାକ୍ତର ଦୀନବନ୍ଧୁ ମହାରଣା

ଆୟୁର୍ବେଦ ଚିକିତ୍ସା ପଦ୍ଧତି ପୁରାତନ। ଏହି ସୃଷ୍ଟି ତ୍ରିଗୁଣରୁ ହିଁ ସୃଷ୍ଟି–ସତ୍ତ୍ୱ , ରଜ ଓ ତମ । ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଏହି ତ୍ରିଗୁଣଙ୍କୁ ନେଇ ଆୟୁର୍ବେଦ ଚିକିତ୍ସା ବିଜ୍ଞାନ ପ୍ରତିଷ୍ଠିତ। ଏହି ତିନିଗୁଣର ଦୈହିକ ବା ସ୍ଥୂଳ ଗୁଣ ଭୌତିକ ବା ସୂକ୍ଷ୍ମ ଗୁଣଗୁଡ଼ିକୁ ଆୟୁର୍ବେଦ ଚିକିତ୍ସାରେ ବାତ, ପିତ୍ତ ଓ କଫ ଭାବରେ ବିଚାର କରାଯାଇଛି, ତଥା ତା' ମଧ୍ୟରେ ସୃଷ୍ଟିରେ ଥିବା ସମସ୍ତ କାର୍ଯ୍ୟକାରିତା ଶକ୍ତିକୁ ଅନ୍ତର୍ଭୁକ୍ତ କରାଯାଇଛି। ଏହା ହିଁ ହେଉଛି ତ୍ରିଦୋଷ। ଶରୀରମାଦ୍ୟଂ ଖଳୁ ଧର୍ମ ସାଧନମ୍– ଧର୍ମ ସାଧନା ପାଇଁ ପ୍ରଥମେ ଶରୀରକୁ ରକ୍ଷା କରିବାକୁ ପଡ଼ିବ, ଅର୍ଥାତ୍ ନିରୋଗ ରଖିବାକୁ ହେବ। ଆୟୁର୍ବେଦ ଚିକିତ୍ସା ବିଜ୍ଞାନ ବ୍ୟତୀତ ଅନ୍ୟାନ୍ୟ ଚିକିତ୍ସା ପ୍ରଣାଳୀର ଲକ୍ଷ୍ୟ ହେଉଛି ରୋଗକୁ ଉପଶମ କରିବା । କିନ୍ତୁ ପ୍ରାଚୀନ ଭାରତୀୟ ଚିକିତ୍ସା ବିଜ୍ଞାନ ଆୟୁର୍ବେଦର ମୂଳ ଲକ୍ଷ୍ୟ ହେଉଛି– ସୁସ୍ଥ ଲୋକର ସ୍ୱାସ୍ଥ୍ୟ ରକ୍ଷା କରିବା । ଶରୀର ନିରାମୟକରଣ ଓ ଆୟୁବର୍ଦ୍ଧନ ପାଇଁ ଆୟୁର୍ବେଦ ଶାସ୍ତ୍ରରେ ବ୍ୟବସ୍ଥା ଅଛି। ଏଥିପାଇଁ ଦିନଚର୍ଯ୍ୟା ଓ ଋତୁଚର୍ଯ୍ୟା ଭେଦରେ ବିଭିନ୍ନ ମୌଳିକ ସିଦ୍ଧାନ୍ତର ବର୍ଣ୍ଣନା କରାଯାଇଛି। ସକାଳେ ଶଯ୍ୟା ତ୍ୟାଗ କରିବାଠାରୁ ଆରମ୍ଭ କରି ରାତ୍ରି ଶୟନ ପର୍ଯ୍ୟନ୍ତ ବିଭିନ୍ନ କର୍ମ ସମାପନ ଭିତରେ ଆୟୁର୍ବେଦ ମତେ ଦିନଚର୍ଯ୍ୟା ଓ ବିଭିନ୍ନ ଋତୁମାନଙ୍କର ପ୍ରାକୃତିକ ପରିସ୍ଥିତି ଅନୁସାରେ ଆହାର ବିହାର ମତେ ଋତୁଚର୍ଯ୍ୟାର ବ୍ୟବସ୍ଥା ରହିଛି।



ଶ୍ରୀଜଗନ୍ନାଥ ଓଡ଼ିଆ ଜାତିର ପ୍ରାଣପ୍ରବାହର କେନ୍ଦ୍ରବିନ୍ଦୁ। ଏ ଦେଶର ଜନଜୀବନ ସହିତ ସେ, ଏପରି ଭାବରେ ସଂଶ୍ଲିଷ୍ଟ ଯେ ତାଙ୍କୁ ଆମ ଭିତରେ ଜଣେ ବୋଲି ବିଚାର କରାଯାଏ। ଜଗନ୍ନାଥ ଧାରଣାର ଏହି ବିଭାଗଟି ଅତି ମହାନ୍। ସେଥିପାଇଁ ସାଧାରଣ ମଣିଷ ଜୀବନରେ ଯେଉଁ ସ୍ୱାଭାବିକ କ୍ରିୟା ପ୍ରକ୍ରିୟା ଦେଖାଯାଏ, ତାହା ଜଗନ୍ନାଥଙ୍କଠାରେ ମଧ୍ୟ ମିଳେ। ମରଣଶୀଳ ଶରୀର ଧାରଣ କରି ଯେପରି ମଣିଷ ରୋଗାକ୍ରାନ୍ତ ହୁଏ, ଜଗତର ନାଥ ହୋଇ ମଧ୍ୟ ଶ୍ରୀଜଗନ୍ନାଥ ସେଥିରୁ ବାଦ୍ ଯାଇନାହାନ୍ତି। ସାଧାରଣ ମଣିଷକୁ ଯେପରି ଜ୍ୱର ହୁଏ, ଶ୍ରୀଜଗନ୍ନାଥ ସେହିପରି ପ୍ରତିବର୍ଷ ଆଷାଢ଼ ମାସ ପ୍ରତିପଦଠାରୁ ନେତ୍ର ଉତ୍ସବ ପର୍ଯ୍ୟନ୍ତ ୧୫ ଦିନ ଧରି ଜ୍ୱରାକ୍ରାନ୍ତ ହୋଇଥାନ୍ତି। ଜ୍ୱର ହେଲେ ରୋଗୀକୁ ଯେପରି ଭାତ ଖାଇବାକୁ ମନା କରାଯାଏ, ସେହିପରି ଶ୍ରୀଜଗନ୍ନାଥଙ୍କୁ ତାଙ୍କର ନିତ୍ୟନୈମିତ୍ତିକ ପ୍ରସାଦରୁ ବଞ୍ଚିତ କରାଯାଇ କେବଳ ଦୁଗ୍ଧ ସର, ଫଳ, ମୂଳ ଆଦି ଭୋଗ କରାଯାଏ । ଅନ୍ନ ପ୍ରସାଦ ଏହି ସମୟରେ ମହାପ୍ରଭୁଙ୍କ ଚଳନ୍ତି ପ୍ରତିମା ପାଖରେ ପୂଜା କରାଯାଏ। ଏହି ଜ୍ୱରରୁ ଆରୋଗ୍ୟ ହେବା ପାଇଁ ଶ୍ରୀଜଗନ୍ନାଥ ଆୟୁର୍ବେଦ ଚିକିତ୍ସା ଶାସ୍ତ୍ର ଅନୁଯାୟୀ ଦଶମୂଳ ମୋଦକ ବୃହତ୍ ଶାଳପର୍ଣ୍ଣ, ପୃଷ୍ଣପର୍ଣ୍ଣି, ବୃହତୀଦ୍ୱୟ ଓ ଗୋକ୍ଷୀରରୁ ପ୍ରସ୍ତୁତ କରାଯାଏ। ଏହା ତ୍ରିଦୋଷ ନାଶକ। ଏହି ୧୦ ମୂଳ ମୋଦକ ଖାଇବା ପରେ ଶ୍ରୀଜଗନ୍ନାଥ ସଂପୂର୍ଣ୍ଣ ଆରୋଗ୍ୟ ଲାଭ କରି ରଥଯାତ୍ରା ପାଇଁ ପ୍ରସ୍ତୁତ ହୁଅନ୍ତି।



ଶ୍ରୀଜଗନ୍ନାଥ ବିଗ୍ରହ ଶ୍ରୀମୁଖରେ ବହୁ ପ୍ରକାର ରଙ୍ଗ ପ୍ରଲେପ ଦିଆଯାଏ । ହିଙ୍ଗୁଳ, ହରିତାଳ, ଶଙ୍ଖ ଓ ବଳା ସହ କସ୍ତୁରୀ ଓ କର୍ପୂର ମିଶ୍ରିତ କରି ଏହି ରଙ୍ଗ ପ୍ରସ୍ତୁତ କରାଯାଏ । କସ୍ତୁରୀ ଓ କର୍ପୂରର ବହୁ ଔଷଧୀୟ ଗୁଣ ଭରପୂର ହୋଇ ରହିଥିବାରୁ ଏଥିରେ ଆୟୁର୍ବେଦର ବହୁ ମୂଲ୍ୟବାନ ଔଷଧ ପ୍ରସ୍ତୁତ କରାଯାଇପାରୁଛି । ପ୍ରତ୍ୟେକ ଉତ୍କଳୀୟଙ୍କ ପରି ଶ୍ରୀଜଗନ୍ନାଥ ମଧ୍ୟ ସକାଳୁ ଉଠିବା ପରଠାରୁ ରାତ୍ରିରେ ଶୋଇବା ପର୍ଯ୍ୟନ୍ତ ଦାନ୍ତ ଘଷିବା, ସ୍ନାନ କରିବା ଓ ଭୋଜନାଦି କରିଥାନ୍ତି । ଶ୍ରୀଜଗନ୍ନାଥଙ୍କୁ ପ୍ରତି ସକାଳର ମଙ୍ଗଳ ଆରତି ପରେ ଅବକାଶ ବା ସ୍ନାନ କରାଯାଇଥାଏ । ଏହି ସ୍ନାନ ଜଳ କର୍ପୂର, ଦହି, ଅଁଳା,ଚନ୍ଦନ ଓ ସୁବାସିତ ଫୁଲର ମିଶ୍ରଣରେ ପ୍ରସ୍ତୁତ ହୋଇଥାଏ । ଦହିର ପାଞ୍ଚ ପ୍ରକାରଭେଦ ମଧ୍ୟରେ ମଧୁର ଦହି ବୀର୍ଯ୍ୟବର୍ଦ୍ଧକ ବାତନାଶକ । ଅଁଳା ହେଉଛି ଦେହର ସୌନ୍ଦର୍ଯ୍ୟ ବୃଦ୍ଧିକାରକ, ଚକ୍ଷୁ ନିର୍ମଳକାରକ । ଚନ୍ଦନ ହେଉଛି ପିତ୍ତବିକାର, ଭ୍ରମ, ବାନ୍ତି, ଜ୍ୱର, ତୃଷା, କୃମି, ମୁଖରୋଗ, ରକ୍ତପିତ୍ତ, ପାଣ୍ଡୁ, ଶ୍ୱାସ, କାଶପ୍ରଶମକ ଅଟେ । ଏହି ଅବକାଶ ବା ସ୍ନାନ ଜଳରେ ଏପରି ଔଷଧୀୟ ଗୁଣ ରହିଛି ଯେ ଯଦି କୌଣସି ବ୍ୟକ୍ତିର ଅଜୀର୍ଣ୍ଣ ବା ବାତବୃଦ୍ଧି ହୋଇଥାଏ ତେବେ ତାହା ପାଳନ କଲେ ଶୀଘ୍ର ଆରୋଗ୍ୟ ହୋଇଥାଏ । ଆହୁରି ମଧ୍ୟ ଜଗନ୍ନାଥଙ୍କ ଦେହରୁ ଚନ୍ଦନ ଓ କରାଳ ବାହାରେ, ତାହା କୌଣସି ଝାଡ଼ା ରୋଗୀଙ୍କୁ ଦିଆଗଲେ ଔଷଧ ସଦୃଶ କାମ କରିଥାଏ । ଏଥିରେ କୌଣସି ମନ୍ତ୍ର ମହୌଷଧିର ବ୍ୟବସ୍ଥା ନଥାଏ । କେବଳ ବିଶ୍ୱାସ ହିଁ ମୂଳକଥା ।

ସବୁ ଲୌକିକତା ଭିତରେ ସେ ଅଲୌକିକ । ବିଶ୍ୱନିୟନ୍ତା ହୋଇଥିଲେ ମଧ୍ୟ ଆମର ନିକଟତମ, ଅସାଧାରଣ ହୋଇ ବି ସାଧାରଣ । ଓଡ଼ିଶାର ଜନଜୀବନ ତଥା ଇତିହାସରେ ଯେପରି ମୁଖ୍ୟ ଭୂମିକା ଗ୍ରହଣ କରିଆସିଛନ୍ତି । ମନୁଷ୍ୟ ରକ୍ତ ମାଂସର ଦେହ ଧାରଣ କରି ଯେଉଁ ଜୀବନଚର୍ଯ୍ୟା ଓ ପ୍ରାକୃତିକ ପ୍ରକ୍ରିୟା ମଧ୍ୟ ଦେଇ ଜୀବନ ନିର୍ବାହ କରେ, ଶ୍ରୀଜଗନ୍ନାଥ ମଧ୍ୟ ସେହିସବୁ ମାନବସୁଲଭ ଜୀବନ ପ୍ରବାହ ଭିତରେ ସାକାର ଶରୀର ରକ୍ଷା କରନ୍ତି । ସେ ତ୍ରିତାପ ହରଣକାରୀ । ତାଙ୍କ ନାମ ଉଚ୍ଚାରଣମାତ୍ରେ ସବୁ ଦୁରିତ ଦୂରୀଭୂତ ହୁଏ । ତଥାପି ସାଧାରଣ ଲୋକ ପରି ସେ ରୋଗାକ୍ରାନ୍ତ ହୁଅନ୍ତି । ରୋଗର ଉପଶମ ପାଇଁ ତଥା ସ୍ୱାସ୍ଥ୍ୟରକ୍ଷା ପାଇଁ ପ୍ରାଚୀନ ଆୟୁର୍ବେଦ ଚିକିତ୍ସା ଶାସ୍ତ୍ର ଅନୁଯାୟୀ ତାଙ୍କ ପରିଚର୍ଯ୍ୟାରେ ବହୁ ବ୍ୟବସ୍ଥା କରାଯାଇଛି ।

ଆୟୁର୍ବେଦ ଚିକିତ୍ସା ଶାସ୍ତ୍ରର ବନୌଷଧିଗୁଡ଼ିକ ସହ ଜଗତର ନାଥ ଜଗନ୍ନାଥଙ୍କର ରହିଛି ନିବିଡ଼ ସଂପର୍କ । ସେଥିପାଇଁ ଶ୍ରୀମନ୍ଦିରର ବହୁ କାର୍ଯ୍ୟରେ ଏହି ଆୟୁର୍ବେଦ ଔଷଧ ବୃକ୍ଷର ଉପଯୋଗ ହୋଇଆସୁଛି । ସେହି ବନୌଷଧିଗୁଡ଼ିକ ମଧ୍ୟରେ ନିମ୍ବ, ତୁଳସୀ, ଚନ୍ଦନ, ତ୍ରିଫଳା, କର୍ପୂର ଓ ଜାଇଫଳାଦି ଅନ୍ୟତମ । ଏହି ନିମ୍ବ ସଂପର୍କରେ ଧନ୍ୱନ୍ତରୀ ନିର୍ଘଣ୍ଟରେ ବର୍ଣ୍ଣନା ରହିଛି ।

ଆୟୁର୍ବେଦ ଶାସ୍ତ୍ରରେ ବର୍ଣ୍ଣିତ ଅଛି ଯେ, ନିମ୍ବ ଲଘୁ ଗୁଣଯୁକ୍ତ । ବିପାକରେ କଟୁ ରସରେ ତିକ୍ତ ଓ କଷାୟ ଅଟେ ଏବଂ ଏହା ଶୀତବୀର୍ଯ୍ୟ ଜଗନ୍ନାଥ ମହାପ୍ରଭୁଙ୍କର ତ୍ରିଗୁଣରେ ସତ୍ତ୍ୱ ଗୁଣ ଲଘୁ । ଯାହା ଉଦାରମୟ ରସ ମହାଭାବ ରସ, ଯାହା ସାମାନ୍ୟ ସାଧନାରେ ପ୍ରାପ୍ତ ହୁଏନା, ଏଣୁ ସବୁଠାରୁ ସାଧନ କଲେ ମହାଭାବର ପ୍ରାପ୍ତ ହୋଇପାରିବ । ବିପାକ କୂଟ ଏହା ବଡ଼ସିଂହାରର ତାଡ଼ିଆ ଭୋଗର ପ୍ରମାଣ ଦିଏ । ପୁନଶ୍ଚ କଟୁ ଶବ୍ଦର ଅର୍ଥ ହେଲା– ଯାହାକୁ କୀଟମାନେ ନଷ୍ଟ କରିପାରନ୍ତି ନାହିଁ । ସେଥିପାଇଁ ଶ୍ରୀଜଗନ୍ନାଥଙ୍କ ଆବିର୍ଭାବ ଅନ୍ୟ କୌଣସି ଦ୍ରବ୍ୟରେ ନହୋଇ ହୁଏ ନିମ୍ବ ଦାରୁରେ । ଏ ସଂପର୍କରେ ତୁଳସୀ ରାମାୟଣରେ ବର୍ଣ୍ଣନା ରହିଛି ଯେ –

ଉମାଦାରୁ ଯୋ ସିତକେ ନହିଁ
ସବହି ନ ବାବତ୍ ରାମ ଗୋସାଇଁ ।

ଅର୍ଥାତ୍ ଏଠାରେ ନିମ୍ବକୁ ଦାରୁ ବୋଲି କୁହାଯାଇଛି । ଯାହାର ବୀର୍ଯ୍ୟ ଅର୍ଥାତ୍ ଆଧାର ହେଲା ଶୀତଳ ବା ଶୀତ । ପୁନଶ୍ଚ ଏହା ମୂତ୍ରଗତ, କଫ, ପିତ୍ତଦୋଷକ ବିକାରକୁ ଦୂର କରିଥାଏ । ଏହାର ବୀର୍ଯ୍ୟ ଗର୍ଭାଶୟ ଉତ୍ତେଜକ । ଆମାପାଚକ ଜ୍ୱରଘ୍ନ ଓ ବିଷମଜ୍ୱର ପ୍ରତିବିଧକ ହୋଇଥିବାରୁ ଏହାକୁ ଜଗନ୍ନାଥଙ୍କ କଳେବର ରୂପେ ବ୍ୟବହାର କରାଯାଇଛି । ନୃସିଂହ





ଅବତାରେ ଭଗବାନ ସ୍ତମ୍ଭାନ୍ତରାଳୁ ନୃସିଂହ ରୂପେ ଧାରଣ କରି ହିରଣ୍ୟକଶିପୁକୁ ମାରିବା ପରେ ଚିନ୍ତା କଲେ ଯେ ସର୍ବବୃକ୍ଷ ଅପେକ୍ଷା ନିମ୍ବ ବୃକ୍ଷରେ ସମାବିଷ୍ଟ ହେବା ସର୍ବୋତ୍ତମ।

ନିମ୍ବ ପ୍ରଧାନତମ ତେଷାଂ ପ୍ରତିମାନ୍ୟଂ ବିନିର୍ମିତୈଃ।

ଅର୍ଥାତ୍ ନିମ୍ବ ବୃକ୍ଷ ପୁରାତନ ହେଲେ ମଳୟ ସ୍ପର୍ଶରେ ଆସି ତାହା ଚନ୍ଦନ ବୃକ୍ଷରେ ପରିଣତ ହୋଇଥାଏ। ଶାସ୍ତ୍ରାନୁସାରେ ବୃକ୍ଷକୁ ପୁରୁଷ, ସ୍ତ୍ରୀ ଓ କ୍ଳୀବ ଭାବରେ ବିଭକ୍ତ କରାଯାଇଛି। ନିମ୍ବ ଦାରୁ ପୁରୁଷ ବୃକ୍ଷ ହୋଇଥିବାରୁ ଏହା ଶକ୍ତି ଓ ଶ୍ରେଷ୍ଠ ଏବଂ ବିଷ୍ଣୁ ବିଗ୍ରହ ନିର୍ମାଣ ପାଇଁ ଉପଯୋଗୀ ଅଟେ। ଜଗନ୍ନାଥଙ୍କର ଅଙ୍ଗଲାଗି ହୋଇଥିବା ଚନ୍ଦନ ଏକ ଆତ୍ମିକ ବୃକ୍ଷ ଭାବେ ପରିଗଣିତ। ମହର୍ଷି ଚରକ ତାଙ୍କ ଗ୍ରନ୍ଥର ୨୫ ଅଧ୍ୟାୟରେ କହିଛନ୍ତି ଯେ -

ସମସ୍ତ ପ୍ରକାର ଦୁର୍ଗନ୍ଧକୁ ହରଣ କରୁଥିବା ଏହି ଚନ୍ଦନ ବୃକ୍ଷ ସର୍ବରୋଗ ନାଶକ ଅଟେ। ଏହା ପିତ୍ତବିକାର, ଭ୍ରମ, ବାନ୍ତି, ଜ୍ୱର, ତୃଷ୍ଣା, ଦାହ, କୃମି, ମୁଖରୋଗ, ରକ୍ତପିତ୍ତ, ପାଣ୍ଡୁ, ଶ୍ୱାସ, କାଶ ପ୍ରଶମକ ଅଟେ। ଚନ୍ଦନ ବୃକ୍ଷର ଉତ୍ପତ୍ତି ସମ୍ବନ୍ଧରେ ପୌରାଣିକ ତଥ୍ୟରୁ ପ୍ରମାଣ ମିଳେ ଯେ, ପୁରୁଷୋତ୍ତମ ନୀଳମାଧବ ରୂପେ ୮୪ ଅଙ୍ଗୁଳ ବିଶିଷ୍ଟ ଇନ୍ଦ୍ରନୀଳମୟୀ ପ୍ରତିମା ରୂପେ କୃଷ୍ଣଗୁରୁ ବୃକ୍ଷମୂଳେ ବିରାଜମାନ କରିଥିଲେ।

ଏହି କୃଷ୍ଣଗୁରୁ ବୃକ୍ଷ ହେଉଛି କଳାରଙ୍ଗର ଚନ୍ଦନ ବୃକ୍ଷ। ଆୟୁର୍ବେଦ ବିଶେଷଜ୍ଞମାନେ ଏହି ବୃକ୍ଷକୁ ହରିଚନ୍ଦନ ବୃକ୍ଷ ବୋଲି କହିଥାନ୍ତି। ଚନ୍ଦନ ଓ ଚକାଡୋଳା ପରସ୍ପର ପରିପୂରକ। ବର୍ଷସାରା ତିନିଠାକୁରଙ୍କୁ ଚନ୍ଦନ ଚର୍ଚ୍ଚିତ କରାଯାଇଥାଏ। ବିଶେଷକରି ଅକ୍ଷୟ ତୃତୀୟାଠାରୁ ବେଶୀ ଚନ୍ଦନଲାଗି ହୋଇଥାଏ। ଚନ୍ଦନ ଶ୍ରୀଜଗନ୍ନାଥଙ୍କର କୃଷ୍ଣ ଶରୀରକୁ ଅଧିକ ଶୁଦ୍ଧପୂତ କରିଥାଏ। ଏବେ ବି ଶ୍ରୀମନ୍ଦିରରେ ଚନ୍ଦନଗୃହ ରହିଛି। ସେହି ଗୃହରେ କୃଷ୍ଣଗୁରୁ ବୃକ୍ଷ ଥିଲା। ସେହିଠାରୁ ଆଜି ପର୍ଯ୍ୟନ୍ତ ଧୂପ ଆରତି ଅବକାଶ ପାଇଁ ଚନ୍ଦନ ଘଟୁଆରୀ ଯୋଗାଇ ଆସୁଛନ୍ତି। ଅଣସର ପିଣ୍ଡିରେ ଚନ୍ଦନ ଶ୍ରୀମୁଖ ପ୍ରକ୍ଷାଳନରେ ଚନ୍ଦନ କନକ ଲାଗିଲେ ଚନ୍ଦନ ଓ ସର୍ବଦା ଶ୍ରୀଜଗନ୍ନାଥଙ୍କୁ ଚନ୍ଦନ ଚର୍ଚ୍ଚିତ କରି କଳେବରର ଅଙ୍ଗପ୍ରତ୍ୟଙ୍ଗଗୁଡ଼ିକ ସୁଗନ୍ଧଯୁକ୍ତ କରିବା ପାଇଁ ପୁଷ୍ପାଳକମାନେ ଶ୍ରୀମନ୍ଦିରରେ ଯଥାସମ୍ଭବ ଯତ୍ନବାନ ହୋଇଥାନ୍ତି। ଆୟୁର୍ବେଦର ଶ୍ରୀଚନ୍ଦନ, ଶ୍ରୀଖଣ୍ଡ ଚନ୍ଦନ, ହରିଚନ୍ଦନ, ରକ୍ତଚନ୍ଦନ, କୃଷ୍ଣଗୁରୁ, ଚନ୍ଦନ ଆୟୁର୍ବେଦ ଔଷଧ ନିର୍ମାଣ ପାଇଁ ଯେତେ ଉପଯୋଗୀ ହୋଇଥାଏ, ଶ୍ରୀଜଗନ୍ନାଥଙ୍କ ଉପାସନା ପାଇଁ ମଧ୍ୟ ସେତିକି ଉପଯୋଗୀ ହୋଇଥାଏ।

ସଂସ୍କୃତିର ପ୍ରତୀକ ତୁଳସୀ ଶ୍ରୀମନ୍ଦିରରେ ବ୍ୟବହୃତ ହେଉଥିବା ଏକ ପ୍ରଧାନ ଦ୍ରବ୍ୟ। ଏହା ମହାପୁରୁଷଙ୍କ ତିନିବାଡ଼ରେ ଦିନର ସବୁ ସମୟରେ ଲାଗି ହୋଇଥାଏ। ଶ୍ରୀଜଗନ୍ନାଥଙ୍କ ଛଡ଼ାତୁଳସୀ ସେବକ, ସୁଆର କିମ୍ବା ସାଧାରଣ ଭକ୍ତଙ୍କ ପାଇଁ ଏକ ଅମୂଲ୍ୟ ପଦାର୍ଥ। ଦ୍ରବ୍ୟଗୁଣ ଦୃଷ୍ଟିରୁ ତୁଳସୀ ବହୁ ହିତକାରୀ ଓ ବହୁ ରୋଗ ଆଶ୍ଚର୍ଯ୍ୟଜନକ ଭାବେ ଆରୋଗ୍ୟ କରିଥାଏ। ଆୟୁର୍ବେଦ ଔଷଧ ସହିତ ଏହା ଅନୁପାନ ରୂପେ ବ୍ୟବହୃତ ହୋଇଥାଏ। ଦ୍ୱାପର ଯୁଗରେ ସତୀ ତୁଳସୀର ଅଭିଶାପ ଥିଲା ତୁଳସୀ ଶ୍ରୀକୃଷ୍ଣଙ୍କର ମୁଣ୍ଡ ଉପରେ ରହିବା ପାଇଁ। ତେଣୁ ଏ ଯୁଗରେ ତୁଳସୀ ଶ୍ରୀଜଗନ୍ନାଥଙ୍କର ଶିର ମଣ୍ଡନ କରିବା ସହିତ ଭୋଗରେ ଲାଗି ହୋଇଥାଏ।

ସ୍ୱଦେଶୀ ଚିକିତ୍ସା ପଦ୍ଧତି ଆୟୁର୍ବେଦର ମୌଳିକ ଉପାଦାନ ନିମ୍ବ, ତୁଳସୀ, ହରିଡ଼ା, ଅଁଳା, କର୍ପୂର, ଚନ୍ଦନ ଓ ଜାଇଫଳ ବୃକ୍ଷ ସହ ଶ୍ରୀଜଗନ୍ନାଥ ନିଜକୁ ଯେପରି ଭାବେ ସଂପୃକ୍ତ କରିଛନ୍ତି, ତାହା ଚିକିତ୍ସା ବିଜ୍ଞାନ ଓ ଆତ୍ମିକତା ମଧ୍ୟରେ ଏକ ସୁନ୍ଦର ସେତୁ ନିର୍ମାଣ କରେ।

---

ଅଧ୍ୟକ୍ଷ, ଓଡ଼ିଶା ଆୟୁର୍ବେଦ ସେବା ସଂଘ
ରୁମ୍ ନଂ-୧୧୧
ମ୍ୟୁନିସିପାଲିଟି ମାର୍କେଟ୍, ଓ.ଏମ୍.ପି ଛକ, କଟକ



# ଶ୍ରୀମନ୍ଦିରରେ ଦୁର୍ଗାମାଧବ ଉପାସନା

ନିରଞ୍ଜନ ପ୍ରଧାନ

ପୁରୁଷ– ପ୍ରକୃତି, ପୃଥିବୀ–ଆକାଶ, ନର–ନାରୀ, ସ୍ରଷ୍ଟା ଓ ସ୍ରଷ୍ଟୀର ଆବର୍ତ୍ତନରେ ଜୀବ–ଜଗତର ସୃଷ୍ଟି । ଅର୍ଥାତ୍ ଜନକ–ଜନନୀ ଜଗତର ମୂଳାଧାର ଈଶ୍ୱର– ପାର୍ବତୀ, ଲକ୍ଷ୍ମୀ–ନୃସିଂହ, ରାଧା–କୃଷ୍ଣ, ରାମ–ସୀତା ପ୍ରଭୃତି ଦେବାଦେବୀଙ୍କ ପରିକଳ୍ପନା ଓ ଆରାଧନା ମୂଳରେ ସୃଷ୍ଟି ପ୍ରକ୍ରିୟା ଆତଯାତ ବୋଲି ବର୍ଣ୍ଣନା ହୋଇଛି । ଶିବ ଶକ୍ତି ପୂଜାକୁ ଲକ୍ଷ୍ୟକରି ପଣ୍ଡିତ ନୀଳକଣ୍ଠ ଦାସ କହନ୍ତି– ଏ ଲିଙ୍ଗ ଯୋନି, ମହାଦେବ ପୂଜା ସୃଷ୍ଟି ପ୍ରକ୍ରିୟାର ସଙ୍କେତ ମାତ୍ର । ସେହିପରି ଏ ଦୁର୍ଗା ସାଧନ ଉପାସନା ଦୁର୍ଗା–ମା, ଧବ –ଅର୍ଥ ପତି ବା ସ୍ୱାମୀ ।

ଜଗନ୍ନାଥ–ବଳଭଦ୍ର–ସୁଭଦ୍ରା ବା ବ୍ରହ୍ମା–ବିଷ୍ଣୁ–ମହେଶ୍ୱର ସୃଷ୍ଟି ସ୍ଥିତି ଓ ଲୟର ପ୍ରତୀକ । ଶ୍ରୀଜଗନ୍ନାଥ ସୃଷ୍ଟି ପ୍ରକ୍ରିୟାର ଭାରସାମ୍ୟ ରକ୍ଷା ଦିଗରେ ନିଜେ ତିନି ରୂପରେ ବିଭାଜନ । ଅର୍ଥାତ୍ ସତ୍ ଯୋଗ ଯୁକ୍ତ ଅବସ୍ଥାରେ ସୁଭଦ୍ରା ସାଜି ରେଚକର ସୃଷ୍ଟି କର୍ତ୍ତା, ବଡଠାକୁର ବଳରାମ ରୂପରେ ପୂରକରେ ସଂହାରକ ଏବଂ ସ୍ୱୟଂ ଶ୍ରୀଜଗନ୍ନାଥ କୁମ୍ଭକ ଦ୍ୱାରା ସ୍ଥିତି ବା ପାଳନ କର୍ତ୍ତା ଅଟନ୍ତି । ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କୁ ପୁରାଣମାନଙ୍କରେ ସୃଷ୍ଟି, ସ୍ଥିତି, ପ୍ରଳୟର ଅଧୀଶ୍ୱର ବୋଲି ଯେପରି ବର୍ଣ୍ଣନା କରାଯାଇଛି, ସେହିପରି ଶକ୍ତିଦେବୀଙ୍କୁ ମଧ୍ୟ ପ୍ରାଧାନ୍ୟ ଦିଆଯାଇଛି । ସେ ଏକାଧାରରେ ସଗୁଣା, ନିର୍ଗୁଣା, ବିଦ୍ୟା, ଅବିଦ୍ୟା ଦେବୀ ଭାଗବତରେ ବର୍ଣ୍ଣନା କରାଯାଇଛି ।

ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥଙ୍କୁ ଭୈରବ ଓ ବିମଳାଙ୍କୁ ଭୈରବୀ କହିବାର ତାତ୍ପର୍ଯ୍ୟ ହେଉଛି, ପରମେଶ୍ୱର ଓ ପରମେଶ୍ୱରୀ ଏକ ବା ଅଭିନ୍ନ ।

ଉତ୍କଳେ ନାଭି ଦେଶଶ୍ଚ, ବିମଳା ପୁରୁଷୋତ୍ତମେ
ବିମଳା ଭୈରବୀ ସାକ୍ଷାତ୍ ଜଗନ୍ନାଥସ୍ତୁ ଭୈରବଃ ।

ପରଂବ୍ରହ୍ମ ଜଗନ୍ନାଥ– ବ୍ରହ୍ମ ଶକ୍ତି, ବ୍ରହ୍ମଶକ୍ତି ରୂପେ ବିବେଚିତ । ସେଥିପାଇଁ ଭଗବାନ ଗୀତାରେ କହିଛନ୍ତି– ଅଗ୍ନି–ଶିଖା ଓ ତାହାର ଦୈହିକା ଶକ୍ତି ଯେପରି ଏକ –ସେହିପରି ବ୍ରହ୍ମାଙ୍କଠାରୁ ମାୟାଶକ୍ତି ଭିନ୍ନ ନୁହନ୍ତି । ଯୋଗମାୟା, ଯୋଗନିଦ୍ରା ନାମେ ଅଭିହିତ । ଜଗତକର୍ତ୍ତା, ଜଗନ୍ନାଥ ଓଁକାର (ପ୍ରଣବ) । ସେ କ୍ଷର ଅକ୍ଷରର ଅତୀତ ଉତ୍ତମ ପୁରୁଷ ବା ପୁରୁଷୋତ୍ତମ । ସେହିପରି ଦୁର୍ଗା ବା ମହାକାଳୀଙ୍କୁ କୁହାଯାଏ ତ୍ରିମାତ୍ରା । ଅକାର, ଉକାର, ମକାର ଏବଂ ଉଚ୍ଚାରଣବିହୀନ ଅର୍ଦ୍ଧମାତ୍ରା । ସେହିପରି ପରା ଅପରାର ଅତୀତ ଦେବୀ ମହାକାଳୀ ପରମେଶ୍ୱରୀ ଅଟନ୍ତି ।

ପୁରାଣ ଆଦିରୁ ପ୍ରମାଣ ମିଳେ ଯେ ମା' ବିମଳା ଶ୍ରୀମନ୍ଦିରର ପ୍ରାଚୀନତମ ଦେବୀ ବିଗ୍ରହ । ବିମଳା ମନ୍ଦିରରେ ଦଶମହାବିଦ୍ୟା, ଶ୍ରୀଗଣେଶ, କାର୍ତ୍ତିକେୟ, ନାଟଚାମୁଣ୍ଡା, ଛାୟା–ମାୟା, କାଳୀ ଓ ଭଗଦର୍ଶନୀ ମୂର୍ତ୍ତି ବିରାଜିତ । ବିମଳାଙ୍କ ଉର୍ଦ୍ଧ୍ୱ ବାମହସ୍ତରେ ସୁଧାପାତ୍ର ଏବଂ ନିମ୍ନ ଦକ୍ଷିଣ ହସ୍ତରେ ଅକ୍ଷମାଳା ସୁଶୋଭିତ । ଏଥିରୁ ସ୍ପଷ୍ଟ ପ୍ରମାଣ ମିଳେ ଯେ ବିମଳା ନାରାୟଣୀ, ପରମ ବୈଷ୍ଣବୀ । ସେଥିପାଇଁ ମା' ବିମଳାଙ୍କୁ ବିମଳା ଭୈରବୀ, ନିତ୍ୟାନିତ୍ୟ କୈବଲ୍ୟ ଭୋଜନୀ ବୋଲି ସ୍ତୁତି କରାଯାଏ ।

ଆଦିମ ଯୁଗରୁ ବସୁଧା ବା ବସୁମାତା ପୂଜା ପ୍ରଚଳିତ । କାଳକ୍ରମେ ଏହା ବନଦେବୀ ଭାବେ ପୂଜା ପାଇଲେ । କହିବା ବାହୁଲ୍ୟ ନୁହେଁ ଯେ ଅନାର୍ଯ୍ୟ ଆର୍ଯ୍ୟଙ୍କ ମଧ୍ୟରେ ଯେଉଁ ମାତୃପୂଜା





ପ୍ରଚଳନ ଥିଲା, ଯେଉଁ ଶାକମ୍ଭରୀ ବା ଶସ୍ୟାଧିଷ୍ଠାତ୍ରୀ ଦେବୀ ପୂଜା ପାଉଥିଲେ କାଳକ୍ରମେ ତାହା ଦେବୀପୂଜା ବା ଶକ୍ତିପୂଜା (ଦୁର୍ଗା) ନାମରେ ପରିଚିତ ହୋଇଛି । ଜାତି, ଉପଜାତି କିମ୍ବା ସବର୍ଣ୍ଣ–ଅସବର୍ଣ୍ଣ ସମସ୍ତେ ଏ ମାତୃପୂଜା କରିବାରେ ଭେଦଭାବର ପ୍ରଶ୍ନ ନଥାଏ ।

ଶ୍ରୀମନ୍ଦିର ବିଷ୍ଣୁକ୍ଷେତ୍ର ହେଲେ ହେଁ ଜଗନ୍ନାଥ ହେଉଛନ୍ତି ସର୍ବଧର୍ମର ସମନ୍ୱୟ । ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ମନ୍ଦିରରେ ଖାଲି ବିମଳା ନୁହନ୍ତି, ଲକ୍ଷ୍ମୀ, ସରସ୍ୱତୀ, ସର୍ବମଙ୍ଗଳା, ଭୁବନେଶ୍ୱରୀ, ଚର୍ଚ୍ଚିକା, କାଳୀ, ଷଠୀଦେବୀ, ନାରାୟଣୀ, ଖମ୍ବକାଳୀ, ବାସୁଳାଇ, ଶୀତଳା ଦେବୀ ପ୍ରଭୃତି ଦେବୀ ମୂର୍ତ୍ତି ପୂଜା ପାଉଛନ୍ତି । ସେହିପରି ଶ୍ରୀମନ୍ଦିର ବେଢାରେ ବିଶ୍ୱନାଥ, ମାର୍କଣ୍ଡେଶ୍ୱର, ସତ୍ୟନାରାୟଣ, ନୃସିଂହ ନାଥ, ବଟଗଣେଶ, ଭଣ୍ଡଗଣେଷ, ସାକ୍ଷୀଗୋପାଳ, ରାଧାକୃଷ୍ଣ, ସୂର୍ଯ୍ୟନାରାୟଣ ପ୍ରଭୃତି ପୁରୁଷ ଦେବତା ମଧ୍ୟ ପୂଜିତ ହେଉଛନ୍ତି । ଅତଏବ ଦେବାଦେବୀ ଏକ ବା ଅନୁପୂରକ କିମ୍ବା ପରିପୂରକ ଅଟନ୍ତି । ଏମାନେ ସମସ୍ତେ ବୈଷ୍ଣବୀୟ ଓ ବୈଦିକ ମନ୍ତ୍ରରେ ପୂଜିତ ହୁଅନ୍ତି । ତେବେ ଦୁର୍ଗାପୂଜାକୁ ଏତେ ପ୍ରାଧାନ୍ୟ ଦେବାର ଉଦ୍ଦେଶ୍ୟ ହେଲା–

ପୌରାଣିକ କଥନରୁ ଜଣାଯାଏ, ଦେବତା ଓ ଅସୁରମାନଙ୍କ ମଧ୍ୟରେ ବରାବର ଯୁଦ୍ଧ ହେଲା । ମହିଷାସୁର ନାମକ ଏକ ପ୍ରଚଣ୍ଡ ରାକ୍ଷସ ବ୍ରହ୍ମାଙ୍କ ବଳରେ ବଳୀୟାନ ହୋଇ ଦେବତାମାନଙ୍କୁ ଭୀତତ୍ରସ୍ତ କଲା । ଦେବତାମାନେ ଭୟରେ ବିଷ୍ଣୁଙ୍କ ଶରଣାପନ୍ନ ହେଲେ । ଭଗବାନଙ୍କ ଅଶେଷ ତେଜଃପୁଞ୍ଜରୁ ତେଜଶ୍ୱମ୍ବନୀ ବିଶ୍ୱେଶ୍ୱରୀ ଆବିର୍ଭୂତା ହୋଇ ସବୁ ଦେବତାଙ୍କ ଶକ୍ତି ଓ ଆୟୁଧ ଗ୍ରହଣ କରି ଶୁମ୍ଭ ନିଶୁମ୍ଭଙ୍କୁ ନିଧନ କରି ମହିଷାସୁରକୁ ବଧ କଲେ । ତା' ପରଠାରୁ ଦୁର୍ଗାପୂଜାର ପରିବ୍ୟାପ୍ତ ହେଲା ।

ବିଷ୍ଣୁକ୍ଷେତ୍ର ଶ୍ରୀମନ୍ଦିରରେ ଶକ୍ତିପୂଜା ବା ତନ୍ତ୍ର–ମନ୍ତ୍ରର ପ୍ରଭାବ ପ୍ରକ୍ରିୟା ସମ୍ପର୍କରେ ବିଶ୍ଳେଷଣ କଲେ ଜଣାଯାଏ ଯେ– ଓଡିଶାରେ ବୈଷ୍ଣବ ଧର୍ମର ପ୍ରଚଳନ ପୂର୍ବରୁ ଶ୍ରୀଜଗନ୍ନାଥଙ୍କୁ ତନ୍ତ୍ରର ଦେବତା କହି ତନ୍ତ୍ରଦେବୀ ବିମଳାଙ୍କୁ ଭୈରବୀ ରୂପେ ଚିନ୍ତିତ କରାଗଲା । ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ ସ୍ୱୟଂ ବିଷ୍ଣୁ ହେଲେ ହେଁ ତାନ୍ତ୍ରିକ ମତରେ ତାଙ୍କୁ ଭୈରବ କହି ଚକ୍ରରେ ଅବସ୍ଥାନ କରାଗଲା ଏବଂ ତନ୍ତ୍ରଶାସ୍ତ୍ରର ତର୍ଜମା ଅନୁଯାୟୀ ରନ୍‌ସିଂହାସନରେ ଭୈରବୀ ଚିହ୍ନ ଅଙ୍କନ କରାଗଲା ।

ଶ୍ରୀଜଗନ୍ନାଥଙ୍କୁ ବୈଦିକ ଦେବତା ବା ସ୍ୱୟଂ ବିଷ୍ଣୁ ବୋଲି କହି ଶ୍ରୀକ୍ଷେତ୍ରକୁ ମର୍ତ୍ତ୍ୟବୈକୁଣ୍ଠ ବୋଲି ବର୍ଣ୍ଣନା କଲାବେଳେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଭୈରବ କହିବାର ରହସ୍ୟ କ'ଣ ? ଶ୍ରୀମନ୍ଦିରରେ ଜୟ ବିଜୟ ଦ୍ୱାର, ଦ୍ୱାରପାଳ ପୂଜା, ଗରୁଡ ପୂଜା, ଲକ୍ଷ୍ମୀ ଠାକୁରାଣୀ ଓ ଚଳନ୍ତି ପ୍ରତିମା ମଦନମୋହନଙ୍କ ପୂଜା ଉଲ୍ଲେଖନୀୟ । ଶ୍ରୀମନ୍ଦିରରେ ସୂର୍ଯ୍ୟପୂଜା, ବୈଦିକ ହୋମ ଆଦି ରୀତିନୀତିରେ ତୁଳସୀ ଦ୍ୱାରା ଗୋପାଳ ମନ୍ତ୍ରରେ ପୂଜା ହୁଏ ।

ଶ୍ରୀମନ୍ଦିର ମହାପ୍ରଭୁ ଜଗନ୍ନାଥ ଯେଉଁ ରନ୍‌ସିଂହାସନରେ ବିରାଜମାନ କରିଛନ୍ତି, ତାହା ଖାଲି ସୁନା ରୂପା ହୀରା ନୀଳା ମଣିମୁକ୍ତା ପ୍ରଭୃତି ଅଷ୍ଟରନ୍ ଦ୍ୱାରା ନିର୍ମିତ ହୋଇନାହିଁ । କୋଟିଏ ଜୀବନ୍ତ ଶାଳଗ୍ରାମ ମଧ୍ୟରେ ଅଛନ୍ତି । ଅନେକ ଗବେଷକଙ୍କ ମତରେ ଏହି ଦାରୁବ୍ରହ୍ମ ମଧ୍ୟରେ ଜୀବନ୍ତଶାଳ ବିରାଜମାନ । ତହିଁ ଉପରେ ଚକ୍ର ଆଙ୍କି ତନ୍ତ୍ରଦେବତା କହିବାର ତାତ୍ପର୍ଯ୍ୟ କ'ଣ ?

ଯେଉଁ ଦାରୁବ୍ରହ୍ମ ଜଗନ୍ନାଥଙ୍କୁ ସ୍ୱୟଂ ବ୍ରହ୍ମା ବୈଦିକ ମନ୍ତ୍ରରେ ପ୍ରତିଷ୍ଠା କରିଥିଲେ ଏବଂ ଏହାଛଡା ଦୈନିକ ବୈଷ୍ଣବାଗ୍ନି ଆବାହନ, ସୂର୍ଯ୍ୟପୂଜା, ଅନ୍ନ ବ୍ୟଞ୍ଜନ ଓ ପିଷ୍ଟକାଦି ମା' ମହାଲକ୍ଷ୍ମୀଙ୍କ ଦ୍ୱାରା ପ୍ରସ୍ତୁତ ହୋଇ ସ୍ୱୟଂ ଜଗନ୍ନାଥଙ୍କୁ ଭୋଗ ଲାଗେ । ଦ୍ୱାବିଂଶାକ୍ଷରୀ ପାତାଳ ନୃସିଂହ ମନ୍ତ୍ରରେ ପ୍ରେକ୍ଷିତ ଗୋବିନ୍ଦ ଅଷ୍ଟାକ୍ଷରୀ ଗୋପାଳ ମନ୍ତ୍ରରେ ରନ୍‌ସିଂହାସନସ୍ଥିତ ବିଗ୍ରହମାନେ ପୂଜିତ । ସେଠି ଶ୍ରୀଜଗନ୍ନାଥଙ୍କୁ ଭୈରବ କହିବାର ରହସ୍ୟ ହେଲା ତାନ୍ତ୍ରିକମାନେ ସୁଭଦ୍ରାଙ୍କୁ ଯୋଗମାୟା ରୂପେ ପୂଜା କରନ୍ତି । ପୁନଶ୍ଚ କେହି କେହି ସୁଭଦ୍ରାଙ୍କୁ ଗାୟତ୍ରୀ ସ୍ୱରୂପା କହନ୍ତି ଏବଂ କେହି କେହି ବିମଳାଙ୍କୁ ନାରାୟଣୀ ଓ ପରମ ବୈଷ୍ଣବୀ ଆଦିମାତା କୁହନ୍ତି । ତାନ୍ତ୍ରିକ ମତରେ ଦୁର୍ଗା ମାଧବ



କହିଲାବେଳେ ବିମଳାଙ୍କୁ ଶିବ ଦୁର୍ଗା ବୋଲି ମାନୁଛନ୍ତି । ବାସ୍ତବିକ ଏସବୁ ଅନନ୍ତ ଅଣାକାର । ଏ କ୍ଷୁଦ୍ର ବୁଦ୍ଧିରେ ଲେଖି ହେବନି ।

ଯଦି ବିମଳା ଭୈରବୀ ଓ ଜଗନ୍ନାଥ ଭୈରବ –ତେବେ ପରମ୍ପରା ଅନୁଯାୟୀ ପ୍ରତ୍ୟହ ଜଗନ୍ନାଥଙ୍କର ଅଧରମାଳା, ପଦକ ଆଦି ମା' ମହାଲକ୍ଷ୍ମୀଙ୍କୁ ଲାଗି କରାଯାଏ ଓ ବଡଠାକୁର ବଳଭଦ୍ରଙ୍କ ଅଧରମାଳା ବିମଳାଙ୍କୁ ଲାଗିକରାଯାଏ କାହିଁକି ? ରହସ୍ୟମୟ ଜଗନ୍ନାଥଙ୍କ ବିଷୟରେ ଏଭଳି ପ୍ରଶ୍ନର ଉତ୍ତର ଦେଲାବେଳେ ନାନା ଗୋଲକଧନ୍ଦାରେ ସମ୍ମୁଖୀନ ହେବା ସ୍ୱାଭାବିକ । ଜଗତର ନାଥ ଜଗନ୍ନାଥ ଗଣ ଦେବତା । ସେ ସଭିଙ୍କର । ତାଙ୍କୁ ଶବର ପୂଜିଛି, ବ୍ରାହ୍ମଣ ପୂଜିଛି, ବୌଦ୍ଧ ପୂଜିଛି, ସନ୍ନ୍ୟାସୀ ପୂଜିଛି ସେ ସମସ୍ତଙ୍କର । ସେ ନିତେଇ ଧୋବଣୀ, ପତର ସଉରୁଣୀର ମଧ୍ୟ ଆରାଧ୍ୟ । ଅତଏବ ଜଗନ୍ନାଥଙ୍କୁ ଚକ୍ରରେ ବସାଇ ତନ୍ତ୍ରରେ ପୂଜି ଭୈରବ କହିବା ଅପ୍ରାସଙ୍ଗିକ ନୁହେଁ । ଜଗନ୍ନାଥ ତନ୍ତ୍ର, ମନ୍ତ୍ର, ଶିବ, ଶାକ୍ତ ଓ ଗାଣପତ୍ୟ ସର୍ବଧର୍ମ ସମନ୍ୱୟର ପ୍ରତୀକ । ସେଥିପାଇଁ ଭଗବାନ କୃଷ୍ଣ ଗୀତାରେ କହିଛନ୍ତି– ମୁଁ ଅରୂପ, ଅନନ୍ତ, ଅସୀମ । ମୁଁ ବିନ୍ଦୁରୂପରେ ଅବସ୍ଥାନ କରେ । ଯେଉଁ ଭକ୍ତ ଯେଉଁ ରୂପରେ ଦେଖିବାକୁ ଇଚ୍ଛାକରେ ମୁଁ ସେହି ରୂପରେ ଦେଖାଦିଏ । ସୁତରାଂ ଜଗନ୍ନାଥଙ୍କୁ ଭୈରବ କହିଲେ ମଧ୍ୟ ତାଙ୍କୁ ବୈଦିକ ମନ୍ତ୍ରରେ ପୂଜା କରାଯାଏ ତୁଳସୀ ପତ୍ରରେ । ତେଣୁ ପଞ୍ଚ 'ମ' କାର ପୂଜା ନକହି ପଞ୍ଚଉପଚାର ପୂଜା କୁହାଯାଇପାରେ ।

ଶ୍ରୀଜଗନ୍ନାଥଙ୍କୁ ସର୍ବଧର୍ମ ସମନ୍ୱୟ ତଥା ସର୍ବଚେତନାର ଆଧାର ବୋଲି ପ୍ରମାଣ କରିବାକୁ ଗଲାବେଳେ ଦର୍ଶାଇବାକୁ ହେବ ଯେ ରାଜାନୁଗତ ଧର୍ମ ଅନୁସାରେ ଯେତେବେଳେ ଯେ ରାଜା ହେଲେ ତାଙ୍କରି ଧର୍ମ ଅନୁସାରେ ଶ୍ରୀମନ୍ଦିରରେ ଦାରୁବ୍ରହ୍ମଙ୍କ ସହିତ ଅନ୍ୟାନ୍ୟ ଦେବଦେବୀ ମଧ୍ୟ ଉପାସିତ । ଅର୍ଥାତ୍ ଯେତେବେଳେ ଯେଉଁ ରାଜା ଯେଉଁ ଧର୍ମାବଲମ୍ବୀ ହେଲେ ତାଙ୍କ ଶାସନକାଳ ମଧ୍ୟରେ ଶ୍ରୀମନ୍ଦିରକୁ ସେହିଭାବେ ଚଳାଇବାର ଇତିହାସରୁ ମିଳେ । ଶ୍ରୀମନ୍ଦିରରେ ଦୁର୍ଗାପୂଜା ବା ତନ୍ତ୍ରର ପ୍ରଭାବ ବଢିଲା ଏହି ତନ୍ତ୍ରଯୁଗର ଶାକ୍ତ ଧର୍ମାଲମ୍ବୀ ରାଜାଙ୍କଠାରୁ । ଅତଏବ ଦୁର୍ଗାଭକ୍ତ ରାଜା ଶ୍ରୀମନ୍ଦିରରେ ଦୁର୍ଗାଙ୍କୁ ସର୍ବଶ୍ରେଷ୍ଠ ବୋଲି ପ୍ରମାଣ କରିବାକୁ ପ୍ରୟାସ କରିବା ସ୍ୱାଭାବିକ ।

ଶ୍ରୀମନ୍ଦିରରେ ବାରମାସରେ ତେର ପର୍ବ ଓ ନାନାପ୍ରକାର ପର୍ବପର୍ବାଣି ମଧ୍ୟରେ ଦୁର୍ଗାପୂଜା ଏକ ବ୍ୟତିକ୍ରମ । ଆଶ୍ୱିନ କୃଷ୍ଣ ଅଷ୍ଟମୀଠାରୁ ଶ୍ରୀମନ୍ଦିରରେ ବିମଳାଙ୍କର ଷୋଳପୂଜା ଆରମ୍ଭ ହୁଏ । ସେଦିନ ସୁଭଦ୍ରାଙ୍କଠାରୁ ଆଜ୍ଞାମାଳ ନେଇ ବିମଳା ମୂର୍ତ୍ତିଙ୍କୁ ବିଜେ କରାଯାଏ ଏବଂ ଜଗନ୍ନାଥଙ୍କ ଆଜ୍ଞାମାଳ ନେଇ ମାଧବଙ୍କୁ ଅଣାଯାଏ । ଦୁର୍ଗା ଓ ମାଧବଙ୍କୁ ଏକତ୍ର ରଖି ପ୍ରଥମ ଆଠଦିନ ବିମଳା ମନ୍ଦିରରେ ପୂଜା ହୁଏ । ତା'ପରେ ଦୁର୍ଗାମାଧବଙ୍କୁ ନେଇ ଦୋଳମଣ୍ଡପ ସାହି ନାରାୟଣୀ ମନ୍ଦିରରେ ରଖାଯାଏ, ଯାହା କି ଦେବୀଗୁଣ୍ଡିଚା ନାମରେ ପ୍ରଚଳିତ ।

କିମ୍ବଦନ୍ତୀ ଓ ସ୍କନ୍ଦପୁରାଣ ଉତ୍କଳଖଣ୍ଡ ଶାସ୍ତ୍ରରୁ ପ୍ରମାଣ ମିଳେ ଯେ, ସ୍ୱୟଂ ବିଷ୍ଣୁ ନୀଳାଚଳରେ ସ୍ୱୟଂସମ୍ଭୂତ, ବ୍ରହ୍ମା ଆସି ଯେଉଁ ଦାରୁବ୍ରହ୍ମଙ୍କୁ ପ୍ରତିଷ୍ଠା କରି ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ନିର୍ଦ୍ଦେଶ ଦେଇଥିଲେ । ଦାରୁବ୍ରହ୍ମ ଶ୍ରୀଜଗନ୍ନାଥଙ୍କୁ ନୃସିଂହ ନାରାୟଣ ମନେକରି ବୈଦିକ ରୀତିରେ ପୂଜାକରିବ ।

ମା' ଜଗଜ୍ଜନନୀ ଦୁର୍ଗାଙ୍କୁ କୁହାଯାଇଛି–

ଯା ଦେବୀ ସର୍ବଭୂତେଷୁ, ମାତୃରୂପେଣ ସଂସ୍ଥିତା ।

ମାନବ ସମାଜରୁ ପଶୁତ୍ୱର ବିଲୋପ ପାଇଁ ମନୁଷ୍ୟର ସ୍ୱଭାବକୁ ଠାକୁର ଠାକୁରାଣୀଙ୍କ ପାଖରେ ବଳି ଦେଇ ଜୀବହିଂସା ନକରିବାକୁ ଦୃଢମନା ହେବା ଆବଶ୍ୟକ । ମଦ ମାତ୍ସର୍ଯ୍ୟ ପ୍ରବୃତ୍ତି ଛାଡି ଷଡରିପୁକୁ ଦମନକରି ଆତ୍ମସଂଯମ ମାର୍ଗରେ ଚଳିଲେ ସମାଜର ମଙ୍ଗଳ ହେବ ।

ନିର୍ମାଲ୍ୟ, ୧୧୨/୨୫୦୦
ଖଣ୍ଡଗିରି ବିହାର, ଭୁବନେଶ୍ୱର





# କୃଷ୍ଣାର୍କ ପାର୍ବତୀ ହରାଃ

**ମଧୁସୂଦନ ପଟ୍ଟନାୟକ**

ଉତ୍କଳରେ ଶ୍ରୀକୃଷ୍ଣ (ବିଷ୍ଣୁ), ଅର୍କ (ସୂର୍ଯ୍ୟ), ପାର୍ବତୀ ଓ ହର ଏହି ଚାରି ଦେବତା ଯଥାକ୍ରମେ ନୀଳାଚଳ କ୍ଷେତ୍ର (ପୁରୀ), ମୈତ୍ରେୟବନ କ୍ଷେତ୍ର (କୋଣାର୍କ), ବିରଜା କ୍ଷେତ୍ର (ଯାଜପୁର) ଓ ଏକାମ୍ରକ୍ଷେତ୍ର (ଭୁବନେଶ୍ୱର)ରେ ବାସ କରୁଥିବାର ପୁରାଣମାନଙ୍କରେ ବର୍ଣ୍ଣିତ ଅଛି ।

ଦାରୁରୂପୀ ଶ୍ରୀକୃଷ୍ଣଙ୍କ କ୍ଷେତ୍ରର ନାମ ନୀଳାଚଳ । ଏହି କ୍ଷେତ୍ରରେ ଦେହତ୍ୟାଗ କରି ମନୁଷ୍ୟ ବୈକୁଣ୍ଠପ୍ରାପ୍ତ ହୋଇଥାଏ । ଏହି ନୀଳାଚଳ ମହା ପୁଣ୍ୟକର ନୀଳଜଳଦ କାନ୍ତିଯୁକ୍ତ ତଥା ମହାନ ଅଟେ । ଏହାର ଆୟତନ ଦଶ ଯୋଜନ ପର୍ଯ୍ୟନ୍ତ ବିସ୍ତୃତ ଓ ଉଚ୍ଚତା ଅର୍ଦ୍ଧ ଯୋଜନ । ଏହି କ୍ଷେତ୍ରରେ ଅନେକ ସିଦ୍ଧ ମୁନି ବାସ କରନ୍ତି । ନାନା ପ୍ରକାର ପକ୍ଷୀ ଏଠାରେ କଳକଳ କୂଜନ କରି ରହିଛନ୍ତି ଏବଂ ଏହି ମହାନ୍ କ୍ଷେତ୍ରରେ ନାନା ପ୍ରକାର ଫଳଯୁକ୍ତ ବୃକ୍ଷ ରହିଛି । ଏହି ପୁରୁଷୋତ୍ତମ କ୍ଷେତ୍ର ସାକ୍ଷାତ୍ ବୈକୁଣ୍ଠ ସ୍ୱରୂପ ଅଛି । ଏହି କ୍ଷେତ୍ର ନିଦ୍ରା, ସମାଧି, ସତ୍‌କର୍ମ, ପରମାନନ୍ଦ ତଥା ସଂସାର ନିବୃତ୍ତି ଆଦି ସକଳ କର୍ମ ପାଇଁ ପ୍ରଶସ୍ତ କ୍ଷେତ୍ର । ଏହି କ୍ଷେତ୍ରରେ ବ୍ରହ୍ମା ଆଦି ଦେବଗଣ ବାସ କରିବା ସହିତ ମହୋଦଧି ତୀର୍ଥରେ ସ୍ନାନ କରି ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରନ୍ତି । ନୀଳପ୍ରସ୍ତର ରୂପ ଧାରଣ କରିଥିବା ଶ୍ରୀଜଗନ୍ନାଥ ନୀଳାଚଳ କ୍ଷେତ୍ରରେ ଦାରୁ ସ୍ୱରୂପରେ ବିରାଜମାନ କରିଛନ୍ତି ।

ସତ୍ୟଯୁଗରେ ଇନ୍ଦ୍ରଦ୍ୟୁମ୍ନ ନାମରେ ରାଜା କ୍ଷୀର ସମୁଦ୍ରରୁ ଜାତ ଚନ୍ଦ୍ର ପରି ଶୋଭାଶାଳୀ ଓ ଶତ୍ରୁକୁଳର ଅନ୍ତକ ସଦୃଶ ଥିଲେ । ଦେବ ଦେବ ଜଗନ୍ନାଥଙ୍କଠାରେ ତାଙ୍କର ଅଚଳା ଭକ୍ତି ଥିଲା । ସେ ସ୍ୱୟଂ ବ୍ରହ୍ମାଙ୍କର ପଞ୍ଚମ ଶରୀର ଥିଲେ । ଯେତେବେଳେ ଭଗବାନ ଶମ୍ଭୁ ଗିରିଜାଙ୍କୁ ପତ୍ନୀ ରୂପେ ଗ୍ରହଣ କଲେ, ସେତେବେଳେ ସେ ସହସା ବ୍ରହ୍ମାଙ୍କର ପଞ୍ଚମ ଶିରକୁ ଛେଦନ କରିଥିଲେ । ସେହି ସମୟରୁ ବ୍ରହ୍ମା ଚତୁର୍ମୁଖ ହୋଇଥିଲେ ଓ ତାଙ୍କର ପଞ୍ଚମ ମସ୍ତକଟି ମହାବାହୁ ଇନ୍ଦ୍ରଦ୍ୟୁମ୍ନ ନାମରେ ବିଖ୍ୟାତ ହେଲା । ଯଜ୍ଞଶୀଳ, ତପସ୍ୱୀ, ସଂଯମୀ, ଶାନ୍ତ, ଅତିଥି ପୂଜକ, ବିଷ୍ଣୁଭକ୍ତ, ସତ୍ୟସମ୍ପନ୍ନ କ୍ରୋଧଜୟୀ ଓ ପରୋପକାରୀ ଥିଲେ ।

ଦିନେ ସେହି ରାଜା ତ୍ରିପୁର ବିଜୟୀ ମହାବାହୁ ବିଷ୍ଣୁଙ୍କୁ ଦର୍ଶନ କରିବା ଲାଗି ଚିନ୍ତା କଲେ । ଏହି ଚିନ୍ତା କରୁଥିବା ସମୟରେ ବିଷ୍ଣୁ ତାହାଙ୍କୁ ସ୍ୱପ୍ନରେ ଦର୍ଶନ ଦେଇ କହିଲେ– ତୁମେ ଆଉ ସାଂସାରିକ ମୋହଗ୍ରସ୍ତ ହେବନି । ଲବଣ ସମୁଦ୍ର ତୀରରେ ବାଲୁକାଚ୍ଛନ୍ନ ଓ ଜଗତର ମୁକ୍ତିପ୍ରଦ ମୋର ନୀଳାଚଳ କ୍ଷେତ୍ର ରହିଛି । ସେହି ସ୍ଥାନ ପରମ ରହସ୍ୟମୟ ଓ ବ୍ରହ୍ମାଦି ଦେବଗଣଙ୍କ ପକ୍ଷରେ ଦୁର୍ଲଭ । ସାଂସାରିକ ଆସକ୍ତି ତ୍ୟାଗ କରିଥିବା ଯୋଗୀମାନେ ସେହି ସ୍ଥାନ ସମ୍ବନ୍ଧରେ କିଛି ଜାଣି ନାହାନ୍ତି, ପରମ ଗୋପନୀୟ ଓ ପୁଣ୍ୟପ୍ରଦ ପୁରୁଷୋତ୍ତମ କ୍ଷେତ୍ର ଅତ୍ୟନ୍ତ ପୂଜନୀୟ । ପ୍ରଳୟ କାଳରେ ସ୍ଥାବର ଓ ଜଙ୍ଗମାଦି ପ୍ରାଣୀବର୍ଗ ବିନାଶପ୍ରାପ୍ତ ହୁଅନ୍ତି । ସମଗ୍ର ବିଶ୍ୱ କାରୁଣ୍ୟ ଜଳଦ୍ୱାରା ପ୍ଲାବିତ ହୁଅନ୍ତି । ସକଳ ପୁଣ୍ୟକ୍ଷେତ୍ର ତୀର୍ଥ, ମନ୍ଦିର, ଆଶ୍ରମ ବୈକୁଣ୍ଠପୁର ଓ କ୍ଷୀର ସାଗର ଆଦି ଉତ୍ତମ ସ୍ଥାନ ତ୍ୟାଗ କରି ମୁଁ ପୁରୁଷୋତ୍ତମ କ୍ଷେତ୍ରର ବଟପୁଟରେ ଅବସ୍ଥାନ କରିବି । ତୁମେ ସଂଯମ ଆଚରଣ ପୂର୍ବକ ସେଠାକୁ ଗମନ କର । ସେଠାରେ ତୁମେ ତପସ୍ୟାଚରଣ କରି ଇନ୍ଦ୍ରନୀଳମଣି ସଦୃଶ ମୋର ସ୍ୱରୂପ ଦର୍ଶନ କରିବ । ସେହି କ୍ଷେତ୍ରର ଏକ ପାର୍ଶ୍ୱରେ 'ରୋହିଣୀ' ନାମକ ମହାତୀର୍ଥ ଅଛି ।



ସେଥିରେ ଭକ୍ତି ସହକାରେ ସ୍ନାନ କଲେ ମୋ ଦେହରେ ମନୁଷ୍ୟ ଲୀନ ହୋଇଯିବେ। କେଶବଙ୍କ ସ୍ୱପ୍ନବାଣୀ ଶ୍ରବଣ କରିବା ପରେ ଇନ୍ଦ୍ରଦ୍ୟୁମ୍ନଙ୍କ ନିଦ୍ରାଭଙ୍ଗ ହେଲା। ସେ ସ୍ୱପ୍ନରେ ଯେଉଁ ନୀଳ ସୁନ୍ଦର ମୂର୍ତ୍ତି ଦର୍ଶନ କରିଥିଲେ ନିଦ୍ରାଭଙ୍ଗ ପରେ ତାହା ଦେଖି ନପାରି କୃଷ୍ଣ କୃଷ୍ଣ କହି ରୋଦନ କଲେ। ସେ ମନେ ମନେ ଭାବିଲେ ମୋର କେଉଁ ପାପ ପାଇଁ ନବଘନ ସୁନ୍ଦର ଶ୍ରୀକୃଷ୍ଣ ଅନ୍ତର୍ଦ୍ଧାନ ହୋଇଗଲେ।

ଏହି ସମୟରେ ମନ୍ତ୍ରୀ, ପୁରବାସୀ ଓ ପୁରୋହିତଗଣ ତାଙ୍କୁ ସାନ୍ତ୍ୱନା ଦେଲେ। ଆଶ୍ୱସ୍ତ ହୋଇ ସ୍ୱପ୍ନ ଆଦେଶାନୁସାରେ ନୀଳାଚଳକୁ ଯିବାର ଆୟୋଜନ କଲେ। ଏହା କହି ରାଜା ଅନ୍ତଃ ପୁରକୁ ଗମନ କଲେ। ଭରଦ୍ୱାଜ କହିଲେ– ଏକଦା ସୂର୍ଯ୍ୟଙ୍କ ପୁତ୍ର ଯମରାଜ ନିଜ ପଦର ସଂରକ୍ଷଣ ପାଇଁ ନୀଳାଚଳକୁ ଗମନ କଲେ। ସେ ଅତ୍ୟନ୍ତ ଦୁଃଖିତ ହୋଇ କମ୍ପିତ ସ୍ୱରରେ କହିଲେ–ହେ ସର୍ବଲୋକର ହିତକାରୀ ବିଷ୍ଣୁ, ତୁମେ ତ୍ରିଗୁଣ ରହିତ ଓ ସ୍ୱପ୍ରକାଶ। ତେଣୁ ମୁଁ ତୁମ୍ଭଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରୁଛି। ଯମଙ୍କ ଆକୁଳତା ଦେଖି ଭଗବାନ ବିଷ୍ଣୁ କହିଲେ– ହେ ରବିନନ୍ଦନ। ତୁମେ କେଉଁ ଦୁଃଖରେ ପଡି ମୋ ନିକଟକୁ ଆସିଛ, ତାହା ନିଃସଙ୍କୋଚନରେ ପ୍ରକାଶ କର। ମୁଁ ନିଶ୍ଚୟ ତୁମ ଦୁଃଖ ମୋଚନ କରିବି।

ଯମରାଜ କହିଲେ– ହେ ମଧୁସୂଦନ! ମହାରାଜ ଇନ୍ଦ୍ରଦ୍ୟୁମ୍ନ ନିଜର ସୈନ୍ୟବଳ ଘେନି ନୀଳାଚଳ ଧାମକୁ ଆସୁଛନ୍ତି। ସେମାନେ ନୀଳାଚଳରେ ଉପସ୍ଥିତ ହେବା ମାତ୍ରେ ସକଳ ପାପରୁ ମୁକ୍ତ ହୋଇଯିବେ। ମୋର ଅନୁରୋଧ, ଆପଣ ଏହି ମୁହୂର୍ତ୍ତରେ ନୀଳାଚଳ ତ୍ୟାଗ କରି ଅନ୍ୟତ୍ର ଚାଲିଯାଆନ୍ତୁ। ଏଠାରେ ଥିବା ପାପନାଶିନୀ ରୋହିଣୀ ପାତାଳଗାମୀ ହେଉ, ନୋହିଲେ ରାଜାଙ୍କର ପରିବାର, ମନ୍ତ୍ରୀ, ପୁରୋହିତ ଓ ସୈନ୍ୟସାମନ୍ତ ରୋହିଣୀ କୁଣ୍ଡରେ ସ୍ନାନ କରି କାକ ମୋକ୍ଷଲାଭ କଲାପରି ପରମ ପଦ ଲାଭ କରିବେ। ଶବର ଯେପରି ଆପଣଙ୍କ ନୀଳସୁନ୍ଦର ମୂର୍ତ୍ତି ଦେଖି ଅଜର ଓ ଅମର ହୋଇଥିଲା, ସେମାନଙ୍କର ମଧ୍ୟ ସେହି ଗତି ହେବ। ଭଗବାନ ବିଷ୍ଣୁ ଯମଙ୍କ ଅନୁରୋଧପୂର୍ଣ୍ଣ ବାକ୍ୟ ଶୁଣି କହିଲେ– ମୁଁ ପୂର୍ବରୁ ଇନ୍ଦ୍ରଦ୍ୟୁମ୍ନଙ୍କୁ ଦର୍ଶନ ଦେବାଲାଗି ସତ୍ୟ କରିଛି। ତୁମ୍ଭେ ମଧ୍ୟ ଯଥାର୍ଥ କଥା କହୁଛ। ମୁଁ ଏବେ କ'ଣ କରିବି ? ତୁମେ ଯାହା କରୁଛ, ତାହା ହିଁ ହେଉ।

ଯମରାଜ ଜଗନ୍ନାଥଙ୍କଠାରୁ ଆଦେଶ ପାଇ ସ୍ୱପୁରକୁ ଗମନ କଲେ ଏବଂ ଦେବାଧିଦେବ ଜଗନ୍ନାଥ ନୀଳାଚଳରେ ଅବସ୍ଥାନ କଲେ।

ଏହାପରେ ରାଜା ଇନ୍ଦ୍ରଦ୍ୟୁମ୍ନ ମନ୍ତ୍ରୀ, ପୁରାଣଜ୍ଞ, ପୁରୋହିତ, ପ୍ରଜାବର୍ଗ ଓ ଅଶ୍ୱଗଜ ଗହଣରେ ନୀଳପର୍ବତକୁ ଗମନ କଲେ। ମାର୍ଗରେ ଏକାମ୍ରବନ ମଧ୍ୟସ୍ଥ ଶିବଙ୍କୁ ଦର୍ଶନ, ଆରାଧନା ଓ ପ୍ରଣାମ ନିବେଦନ କରି ନୀଳପର୍ବତର ଅଭିମୁଖେ ଗମନ କଲେ। ବାଟରେ ଶଙ୍ଖ, ଚକ୍ର, ଗଦାଧାରଣ କରିଥିବା ଲୋକଙ୍କୁ ଦେଖିଲେ। ରାଜା ଶୁଣିଲେ– ବିଷ୍ଣୁ ପବିତ୍ର ସଲିଳ ସମେତ ପାତାଳଗାମୀ ହୋଇଗଲେଣି। ଏହା ଶୁଣି ରାଜା ମୂର୍ଚ୍ଛିତ ଗଲେ। ମନ୍ତ୍ରୀ ଓ ପୁରୋହିତଗଣ ତାଙ୍କୁ ଭୂମିରୁ ଉଠାଇ ଦେଲେ। ଦେବର୍ଷି ନାରଦ ଇନ୍ଦ୍ରଦ୍ୟୁମ୍ନଙ୍କୁ ବୁଝାଇ କହିଲେ ଯେ ତାଙ୍କୁ ବ୍ରହ୍ମା ସାହାଯ୍ୟ କରିବାକୁ ପଠାଇଛନ୍ତି। ଉପସ୍ଥିତ ସମସ୍ତେ କୋଳାହଳ କଲେ। ଏହି ସମୟରେ ରାଜା ଦେଖିଲେ ଶଙ୍ଖ, ଚକ୍ର ଅଙ୍କିତ ଦାରୁ ସମୁଦ୍ରରେ ଭାସୁଛି। ଦେବର୍ଷି ନାରଦ ରାଜାଙ୍କ ହାତର ଧରି ସମୁଦ୍ର କୂଳକୁ ଗଲେ। ରାଜା ଦାରୁଙ୍କୁ ଦର୍ଶନ କରି ଭୂମିରେ ସାଷ୍ଟାଙ୍ଗ ପ୍ରଣାମ କଲେ ଓ ଲୋକମାନଙ୍କ ସାହାଯ୍ୟରେ କୂଳକୁ ନେଇଆସିଲେ। ଏହାପରେ ଆସି ଜଗନ୍ନାଥ, ବଳଭଦ୍ର ଓ ସୁଦର୍ଶନଙ୍କ ଅନୁପମା ବିଗ୍ରହ ନିର୍ମାଣ କଲେ ଓ ଶ୍ରୀଜଗନ୍ନାଥଙ୍କ ହସ୍ତରେ ଶଙ୍ଖଚକ୍ର ଧାରଣ କରିଥିଲେ ଓ ସେ ପୀତ ବସନରେ ସୁଶୋଭିତ ବନମାଳରେ ବିଭୂଷିତ ହୋଇଥିଲେ। ବଳଭଦ୍ର ହଳ ଓ ଗଦାଧାରଣ କରିଥିଲେ। ସୁଦର୍ଶନ ସ୍ତମ୍ଭ ସ୍ୱରୂପୀ ହୋଇଥିଲେ। ନିର୍ମାଣ ପରେ ସେମାନଙ୍କୁ ମଣ୍ଡପରେ ସ୍ଥାପନ କରିଥିଲେ।

ମହାବାହୁ ଇନ୍ଦ୍ରଦ୍ୟୁମ୍ନ ପ୍ରତିଷ୍ଠା ନିମନ୍ତେ ବ୍ରହ୍ମଲୋକକୁ ଗମନ କଲେ। ସେଠାରେ କୁଶକେତୁ ବ୍ରହ୍ମାଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରି କହିଲେ, ହେ କୁରଣାସାଗର! ମୋର ମନୋରଥ ପୂର୍ଣ୍ଣ କରିବା ସଙ୍ଗେ ସଙ୍ଗେ ମୋତେ ଉଦ୍ଧାର କରନ୍ତୁ।



ପ୍ରଜାପତି ବ୍ରହ୍ମା କହିଲେ– ବତ୍ସ ଇନ୍ଦ୍ରଦ୍ୟୁମ୍ନ ! ତୁମ ପରି ପରମ ବୈଷ୍ଣବ ପୃଥିବୀରେ ଅତୀତରେ ନଥିଲେ ବର୍ତ୍ତମାନ କେହି ନାହାନ୍ତି କିମ୍ବା ଭବିଷ୍ୟତରେ କେହି ହେଲେ ହେବେ ନାହିଁ। ଚକ୍ରଧାରୀ ଚତୁର୍ଦ୍ଧାମୂର୍ତ୍ତି ବିଷ୍ଣୁଙ୍କୁ ପ୍ରତିଷ୍ଠା କରିବି। ତୁମେ ଶୀଘ୍ର ଗମନ କର। ଇନ୍ଦ୍ରଦ୍ୟୁମ୍ନ ଆନନ୍ଦରେ ବ୍ରହ୍ମଲୋକରୁ ଆସି ଭୂଲୋକରେ ପହଞ୍ଚିଲେ। ସେଠାରେ ନୃପତି ଗାଲମାଧବଙ୍କୁ ଦର୍ଶନ କଲେ। ରାଜା ଗାଲମାଧବ ଶ୍ରୀଜଗନ୍ନାଥାଦି ଚତୁର୍ଦ୍ଧାମୂର୍ତ୍ତିଙ୍କୁ ନିଜ ଅଧିକାରରେ ରଖିଥିବାରୁ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ସହିତ ଯୁଦ୍ଧ କରି ଶ୍ରୀହରିଙ୍କୁ ଗ୍ରହଣ କଲେ। ବ୍ରହ୍ମଲୋକରୁ ପ୍ରଜାପତି ଆସି ଭୂଲୋକରେ ପ୍ରବିଷ୍ଟ ହେବା ସଙ୍ଗେ ସଙ୍ଗେ ବିଗ୍ରହମାନଙ୍କୁ ପ୍ରତିଷ୍ଠା କଲେ।

ଭଗବାନ ଶଙ୍ଖଚକ୍ରଧାରୀ ହରି ସେଠାରେ ଆବିର୍ଭୂତ ହୋଇ ଧର୍ମପ୍ରାଣ ମହୀପତି ଇନ୍ଦ୍ରଦ୍ୟୁମ୍ନଙ୍କୁ କହିଲେ, ହେ ରାଜନ୍ ! ସକଳ ପୁଣ୍ୟ କ୍ଷେତ୍ର ଓ ତୀର୍ଥ ପରିତ୍ୟାଗ କରି ଏହି ସ୍ଥାନରେ ମୁଁ ପରାର୍ଦ୍ଧ ପର୍ଯ୍ୟନ୍ତ ଅବସ୍ଥାନ କରିବି। ମୋର କେତୋଟି ପରାମର୍ଶ ଗ୍ରହଣ କର। ଏହି କ୍ଷେତ୍ରରେ ଜ୍ୟେଷ୍ଠ ପୂର୍ଣ୍ଣିମାରେ ସ୍ନାନ ଯାତ୍ରା ଓ ଆଷାଢ ମାସରେ ଗୁଣ୍ଡିଚା ନାମକ ମହୋତ୍ସବ କରିବ। ଯେଉଁ ମନୁଷ୍ୟମାନେ ଆନନ୍ଦାନ୍ୱିତ ହୋଇ ମୋତେ ସ୍ନାନ ସମୟରେ ଦର୍ଶନ କରିବେ, ମୁଁ ସେମାନଙ୍କୁ ମୁକ୍ତି ପ୍ରଦାନ କରିବି। ଯେଉଁମାନେ ହର୍ଷାନ୍ୱିତ ହୋଇ (ଗୁଣ୍ଡିଚା)ନାମକ ମହାଯାତ୍ରା ଦର୍ଶନ କରିବେ, ସେମାନେ ସମସ୍ତେ ପାପରୁ ମୁକ୍ତ ହୋଇ ମୋ ଭୁବନକୁ ଗମନ କରିବେ। ଏହିପରି ଭାବେ ଜଗତ ପରିପାଳକ ଇନ୍ଦ୍ରନୀଳ ସ୍ୱରୂପଧାରୀ ଜଗନ୍ନାଥ ଅଧୁନା ଦାରୁରୂପ ବ୍ରହ୍ମ ରୂପେ ନୀଳପର୍ବତରେ ଅଧିଷ୍ଠିତ ଅଛନ୍ତି। ଯେଉଁ ମନୁଷ୍ୟମାନେ ସେହି ପୁଣ୍ୟ କ୍ଷେତ୍ରରେ ବାସ କରନ୍ତି, ସେମାନେ ନିଜେ ତେଜରେ ପ୍ରକାଶିତ ହୋଇ ବିଷ୍ଣୁଙ୍କ ସାନ୍ନିଧ୍ୟପ୍ରାପ୍ତ ହୁଅନ୍ତି। ମନୁଷ୍ୟ ମହୋଦଧିରେ ସ୍ନାନ କରି ପୁରୁଷୋତ୍ତମଙ୍କୁ ଦର୍ଶନ କଲେ ବ୍ରହ୍ମହତ୍ୟା ପୂର୍ବକ ମହାପାପରୁ ମୁକ୍ତ ହୋଇ ମୋକ୍ଷ ଲାଭ କରିଥାଏ।

କୈବଲ୍ୟ, ଦଉତୋଟା, ପୁରୀ

# ଆହେ ଦୁଃଖନାଶନ

ଗୋଲାପ ମଞ୍ଜରୀ ନନ୍ଦ

କମଳାବର ହେ ମୋଠାରେ ଟିକେ କର କରୁଣା
ଆସ ମୋର କୁଟୀରେ
ଘର ମୋର ଧନ୍ୟ ହୋଇବ ପାଦ ଦେଲେ ମୋ ଘରେ ।
ଉଦ୍ଧାର କରତା ତୁମେ ତ ଏଇ ତିନି ଲୋକର
ଚାହିଁ ଦିଅ କୃପା ନେତ୍ରରେ ଦୁଃଖଯାଉ ମୋହର ।
ଛଳ କଲେ ପ୍ରଭୁ ମୋଠାରେ ନିଶ୍ଚେ ଯିବିଟି ନାଶ
ଜୀବନ ହାରିବି ନିଶ୍ଚୟ ନିନ୍ଦା ହେବ ତ୍ରିଦଶ ।
ଝଡ଼ି ଯେବେ ବୃକ୍ଷରୁ ହେବି ଭୂଲୁଣ୍ଠିତ
ନୀଳାଦ୍ରି ନାଥ ହେ ସେବେଳେ ଧରି ନେବ ମୋ ହାତ ।
ଟେକ ରହିଯିବ ମହୀରେ ମୋତେ ହେଲେ ସହାୟ
ଥରେ ମୋ ଗୁହାରି ଶୁଣ ଆହେ ବ୍ରହ୍ମାଣ୍ଡ ସାଇଁ
ଦୀନହୀନ ମୁଁ ଯେ ଦୁଃଖୀନୀଟିଏ ମୁହିଁ ।
ଧରୁଛି ଚରଣ ପଙ୍କଜ ଦିଅ ଶରଣ ମୋତେ
ନରଖିଲେ ମୋତେ ପ୍ରଭୁ ହେ ନାଶଗଲି ତୁରିତେ ।
ପତିତପାବନ ନାମଟି କୁହ କିଆଁ ମଉନ
ଫେଡ଼ କରୁଣାର ଭଣ୍ଡାର ଦୁଃଖ ଯାଉ ବହନ ।
ବଡ଼ ଦେଉଳରେ ବସିଛ ଆହେ ଦୁଃଖନାଶନ
ଭରସା କରିଛି ତୁମକୁ ଘେନ ମୋ ନିବେଦନ ।

ଦେଉଳବେଡ଼ା କଲୋନୀ, ଘର ନଂ–୧ ବି–୨୦
ତାଳଚେର, ଅନୁଗୋଳ



# ଶାରଳା ମଣ୍ଡଳରେ ଜଗନ୍ନାଥ ସଂସ୍କୃତିର ପ୍ରଭାବ ଓ ପ୍ରତିଶ୍ରୁତି

ବସନ୍ତ କୁମାର ନାୟକ



ପୁଣ୍ୟତୋୟା ମହାନଦୀ ଓ ଏହାର ଶାଖା ଦେବୀ ନଦୀର ତ୍ରିକୋଣ ଭୂମି ଅଂଚଳ ଆଧୁନିକ ଜଗତ୍‌ସିଂହପୁର ଜିଲ୍ଲା ଭାବେ ପରିଚିତ, ଯାହାର ପ୍ରାଚୀନ ନାମ 'ଶାରଳା ମଣ୍ଡଳ'। ଓଡିଶାର ସମସ୍ତ ଜିଲ୍ଲାମାନଙ୍କ ମଧ୍ୟରେ ଏହା ସବୁଠୁ ଲଘିଷ୍ଠ ମାତ୍ର ମହିମାରେ ବରିଷ୍ଠ। କଟକ ଜିଲ୍ଲାର ପୂର୍ବ ସୀମାରୁ ଆରମ୍ଭ ହୋଇ ବଙ୍ଗୋପସାଗର ପର୍ଯ୍ୟନ୍ତ ପରିବ୍ୟାପ୍ତ ଏହି ଅଞ୍ଚଳ ହେଉଛି ମହାସରସ୍ୱତୀଙ୍କର ଆରାଧନା କ୍ଷେତ୍ର ଓ ପ୍ରଥମ ଆର୍ଯ୍ୟଭୂମି। ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଲୀଳା କ୍ଷେତ୍ର ରୂପେ ସ୍ୱୀକୃତି ଲାଭ କରି ଉତ୍କଳୀୟ ସଂସ୍କୃତିର ଅନୁସୃତି ଓ ଉତ୍ତର ଦାୟାଦ ଭାବେ ପ୍ରତିଷ୍ଠିତ ହୋଇପାରିଛି। ଭୌଗଳିକ ମାନଚିତ୍ରରେ ଆୟତନ ଦୃଷ୍ଟିରୁ ଏହି ଜିଲ୍ଲା ରାଜ୍ୟର ୩୦ତମ ଓ ଦେଶର ୫୨୩ ତମ ସ୍ଥାନ ଅଧିକାର କରିଥିଲେ ମଧ୍ୟ ଏହା ମହାନ୍ ଐତିହ୍ୟର ଗୌରବୋଜ୍ଜ୍ୱଳ ଅଧ୍ୟାୟରେ ପରିପୁଷ୍ଟ ଓ ଗରିମାମୟ। ଏହି ମାଟିର ସଂସ୍କୃତି, ଐତିହ୍ୟ ଓ ପରମ୍ପରା ସୁଦୂରପ୍ରସାରୀ, ଯାହାକି ସମଗ୍ର ବିଶ୍ୱ ମଣିଷ ସମାଜକୁ ପ୍ରଭାବିତ କରିପାରିବାର ପ୍ରତିଶ୍ରୁତି ବହନ କରିଛି। ଜିଲ୍ଲାର ବୈଶିଷ୍ଟ୍ୟର ପ୍ରଚାର ପ୍ରସାର ଉଦ୍ଦେଶ୍ୟରେ ଜିଲ୍ଲା ମହୋତ୍ସବ 'କଲ୍ଲୋଳ' ପ୍ରତ୍ୟେକ ବର୍ଷ ପାଳନ କରାଯାଏ। ଚଳିତବର୍ଷ ଜିଲ୍ଲା ଗଠନର ୨୫ ବର୍ଷ ପୂର୍ତ୍ତି ଉପଲକ୍ଷେ ମହାସମାରୋହରେ ରୌପ୍ୟ ଜୟନ୍ତୀ ପାଳନ କରାଯିବା ପାଇଁ ଜିଲ୍ଲା କର୍ତ୍ତୃପକ୍ଷ ନିଷ୍ପତ୍ତି ନେଇଥିବା ଜିଲ୍ଲାବାସୀଙ୍କ ପାଇଁ ଆନନ୍ଦ ଓ ଗୌରବର ବିଷୟ। ଏହି ଅବସରରେ ଜିଲ୍ଲାର ସମୃଦ୍ଧ ପରମ୍ପରାର ଆଲୋକବର୍ତ୍ତିକା ସାଜିଥିବା ପାରାଦ୍ୱୀପ ତଥା ଆଦ୍ୟଲୀଳା କ୍ଷେତ୍ରର କେତେକ ଅନାଲୋଚିତ ତଥ୍ୟ ଉପସ୍ଥାପନା କରିବାକୁ ପ୍ରାସଙ୍ଗିକ ମନେ କରୁଛି।

ପାରାଦ୍ୱୀପ ମହାନଦୀ ଅବବାହିକାର ଏକ ଗୁରୁତ୍ୱପୂର୍ଣ୍ଣ ଅଂଚଳ। ମହାନଦୀର ଶାଖା ପ୍ରଶାଖା ଏବଂ ଜୁଆରିଆ ନଦୀମାନଙ୍କ ଦ୍ୱାରା ପରିବୃତ ହୋଇ ଏହି ଦ୍ୱୀପାଞ୍ଚଳର ସୃଷ୍ଟି। ଏହି ଉପଖଣ୍ଡ ନିଜସ୍ୱ ସ୍ୱତନ୍ତ୍ରତାରେ ପରିପୁଷ୍ଟ। ଏହାର ପୌରାଣିକ, ସାଂସ୍କୃତିକ, ଆଧ୍ୟାତ୍ମିକ ତଥା ଐତିହାସିକ ମହତ୍ତ୍ୱ ସମ୍ପର୍କରେ ପୁରାଣ ଶାସ୍ତ୍ରଗୁଡିକରେ ବର୍ଣ୍ଣନା କରାଯାଇଛି। ଏହାର ଇତିହାସ ଅନ୍ଧକାରଚ୍ଛନ୍ନ ହେଲେ ମଧ୍ୟ କିମ୍ବଦନ୍ତୀରେ ବଂଚିରହିଛି। ଅନେକ କିମ୍ବଦନ୍ତୀର ଅନ୍ତରାଳରେ ଲୁଚି ରହିଛି, ଧାର୍ମିକ ଅଭିବ୍ୟକ୍ତି ଓ ଲୁକ୍କାୟିତ ଇତିହାସର ପଟ୍ଟଭୂମି। ସମୟ ରହସ୍ୟର କୁହେଳିକାରେ ଆଚ୍ଛନ୍ନ ହୋଇ ରହିଥିବା ଗୌରବପୂର୍ଣ୍ଣ ଅତୀତର ବଳିଷ୍ଠ ସାଂସ୍କୃତିକ ବିଭବ, ଧର୍ମ ଧାରଣା ଓ ଆଧ୍ୟାତ୍ମିକ ବିଶେଷତ୍ୱକୁ ସମ୍ଭାବନାମୟ ଭବିଷ୍ୟତ ସହିତ ସଂଯୁକ୍ତ କରୁଥିବା



ଆଧ୍ୟାତ୍ମିକ ଉପଲବ୍ଧି ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ । ଯୁଗଯୁଗ ଧରି ଏହି ଦ୍ୱୀପାଞ୍ଚଳର ପ୍ରାକୃତିକ ସୌନ୍ଦର୍ଯ୍ୟ, ନୈସର୍ଗିକ ଶୋଭା ଭଣ୍ଡାର ଭାରତୀୟ ମୁନିଋଷିମାନଙ୍କର ପରମ ଲୋଭନୀୟ ହୋଇ ଆସିଛି ।

ମହାନଦୀ ତ୍ରିକୋଣଭୂମିର ଏହି ଉପକୂଳବର୍ତ୍ତୀ ଇଲାକାର ପ୍ରାଚୀନ ମାନବ ସଭ୍ୟତା ଓ ଇତିହାସ ସମ୍ପର୍କରେ ପର୍ଯ୍ୟାପ୍ତ ସୂଚନା ମିଳିଥାଏ । ଐତିହାସିକମାନଙ୍କ ମତରେ ବେଦରେ ବର୍ଣ୍ଣିତ ନିଷାଦ ଜନଜାତି ଏହି ଅଞ୍ଚଳର ଆଦିମ ଅଧିବାସୀ, ଯେଉଁମାନଙ୍କର ପିତୃ ପୁରୁଷମାନେ ମଧ୍ୟପ୍ରସ୍ତର ଯୁଗରୁ ବଂଶାନୁକ୍ରମ ଭାବରେ ଏଠାରେ ବସବାସ କରିବା ଏବଂ ମାଛ ଧରି ଶିକାର କରି ପରବର୍ତ୍ତୀ କାଳରେ କୈବର୍ତ୍ତ ରୂପେ ଜୀବିକା ନିର୍ବାହ କରୁଥିଲେ । ଅତ୍ରି ମହାମୁନିଙ୍କ ଜଂଘ ମୂଳରୁ ଜନ୍ମ ନେଇଥିବା ନିର୍ଭୀକ ମନୁଷ୍ୟ, ଯିଏକି ଦେଖିବାକୁ କଳା ଓ ଖର୍ବକାୟ ସେମାନେ ନିଷାଦ ନାମରେ ପରିଚିତ । ଫକିର ମୋହନ ସେନାପତିଙ୍କ ଦ୍ୱାରା ଅନୁବାଦିତ ୫ମ ଅନୁଚ୍ଛେଦ ଖିଳ ହରିବଂଶରେ ବର୍ଣ୍ଣନାନୁସାରେ ଏମାନଙ୍କ କୌଳିକ ବ୍ୟବସାୟ ନୌଚାଳନା ଓ ଏମାନଙ୍କ ପୂର୍ବପୁରୁଷମାନେ ମତ୍ସ୍ୟଜୀବୀ ଓ ସାମୁଦ୍ରିକ ଜଳଯାତ୍ରାରେ ପାରଙ୍ଗମ ଥିଲେ । ମହାଭାରତ 'ସଭାପର୍ବରେ' ପ୍ରାଚୀନ ନିଷାଦ ବଂଶଜ କୈବର୍ତ୍ତମାନେ ବୋଇତ ନିର୍ମାଣ କୌଶଳ ଓ ଜଳପଥରେ ଯାତ୍ରା କରିବାର ଆବଶ୍ୟକ ଜ୍ଞାନ ଆହରଣ କରିଥିବାର ବର୍ଣ୍ଣନା ରହିଛି । ସୁତରାଂ କୈବର୍ତ୍ତମାନେ ଏହି ଅଂଚଳରେ ପ୍ରାଚୀନ କାଳରୁ ବସବାସ କରୁଥିଲେ ଏବଂ ଶିକାର ଓ ମାଛଧରା ସେହି ଲୋକମାନଙ୍କର ପ୍ରଧାନ ଜୀବିକା ଥିଲା । ଏହି ଅଂଚଳକୁ ଚାଷ କାର୍ଯ୍ୟ ଶିଖିଥିବା ଲୋକମାନେ ମାଟିର ଉର୍ବରତା ହେତୁ ଆକୃଷ୍ଟ ହୋଇଥିଲେ । ଐତିହାସିକମାନଙ୍କ ମତରେ ଏମାନେ ସମ୍ଭବତଃ ଭାରତୀୟ ଆର୍ଯ୍ୟ ଗୋଷ୍ଠୀର ବୋଲି ଜଣାଯାଏ ।

ସ୍ଥାନୀୟ ପ୍ରବାଦ ଓ କିମ୍ବଦନ୍ତୀ ଅନୁସାରେ ଆର୍ଯ୍ୟଋଷି ପରାଶର ନୂତନ ଭୂଖଣ୍ଡ ଅନୁସନ୍ଧାନରେ ଆସି ମହାନଦୀ ମୁହାଣର ଏହି ପ୍ରଶସ୍ତ ଅତ୍ୟୁର୍ବର ଜଳସେଚିତ ଦ୍ୱୀପାଞ୍ଚଳକୁ ଆର୍ଯ୍ୟ ସଭ୍ୟତା ବିସ୍ତାର ପାଇଁ ଉପଯୁକ୍ତ କ୍ଷେତ୍ରଭାବେ ବିବେଚନା କରିଥିଲେ । ଦ୍ୱୀପବାସୀ କୈବର୍ତ୍ତମାନେ ତାଙ୍କୁ ସ୍ୱାଗତ କରିଥିଲେ ଓ ପରବର୍ତ୍ତୀ ସମୟରେ ଏଠାକାର ସଂସ୍କୃତି ସହ ପରିଚିତ ହେବା ଫଳରେ ଏହାରି ଭିତ୍ତି ଉପରେ ଏ ଅଂଚଳ ହେଲା ମହାମିଳନର ମହାନ କ୍ଷେତ୍ର । ପରାଶରଙ୍କ ନାମାନୁସାରେ ଏହି ଦ୍ୱୀପାଞ୍ଚଳ କ୍ରମେ 'ପରାଦ୍ୱୀପ' ଏବଂ ଶେଷରେ ଅପଭ୍ରଂଶ ହୋଇ 'ପାରାଦ୍ୱୀପ' ନାମରେ ପରିଚିତ ହେଲା । ଅବିବାହିତ ଯୁବକ ଋଷି ପରାଶର ଏହି ଅଂଚଳର କୈବର୍ତ୍ତ କନ୍ୟା ମତ୍ସ୍ୟଗନ୍ଧା ବା ସତ୍ୟବତୀଙ୍କ ରୂପଲାବଣ୍ୟରେ ଆକୃଷ୍ଟ ହୋଇଥିଲେ । ସେମାନଙ୍କ ମିଳନରୁ ଅଲୌକିକ ପ୍ରତିଭା ସମ୍ପନ୍ନ ପୁତ୍ର ବେଦବ୍ୟାସ ଜନ୍ମଲାଭ କଲେ । କୁହାଯାଏ କଳିଯୁଗର ନରନାରୀମାନଙ୍କୁ ଧର୍ମର ସୁଗମ ତଥା ସରଳମାର୍ଗ ପ୍ରଦର୍ଶନ କରିବା ପାଇଁ ସ୍ୱୟଂ ଭଗବାନ ବ୍ୟାସ ରୂପରେ ଏଠାରେ ଅବତାର ଗ୍ରହଣ କରିଥିଲେ । ଏହି ପ୍ରାଚୀନ ପରମ୍ପରାର କିମ୍ବଦନ୍ତୀ ସ୍ୱରୂପ ଏଠାରେ ସ୍ମରଣାତୀତ କାଳରୁ ପରାଶରଙ୍କ ନାମାନୁସାରେ 'ପାରେଶ୍ୱର' ମନ୍ଦିର ଓ 'ଲୋକନାଥ' ବ୍ୟାସଙ୍କ ମନ୍ଦିର ମୂକସାକ୍ଷୀ ରୂପେ 'ନିମିଢ଼ି' ଓ ପାରାଦିପଗଡ ମୌଜାରେ ବିଦ୍ୟମାନ । ଏ ଅଂଚଳର ଲୋକ ସଂସ୍କୃତିରେ ଏବେ ବି ବ୍ୟାସଙ୍କ ପୂଜା ପ୍ରଚଳିତ, ଯାହାକି ଅଂଚଳର ସାଂସ୍କୃତିକ ପରିଚୟର ମୂଳ ଆଧାର ହୋଇ ରହିଛି ।

ମହାନଦୀ ଓ ଏହାର ଶାଖା ଦେବୀ ନଦୀର ଏହି ତ୍ରିକୋଣ ଭୂମି ଅଂଚଳ ଯୁଗେଯୁଗେ ପୌରାଣିକ ପ୍ରସିଦ୍ଧି ଲାଭ କରି ଆସିଛି । ପୁରାଣ ଇତିହାସ ପରି ତଥ୍ୟଭିତ୍ତିକ ନ ହେଲେ ମଧ୍ୟ ଏହାର ଭୂମିକା ଗୁରୁତ୍ୱପୂର୍ଣ୍ଣ । ପୁରାଣର ସମୟାନୁସାରେ ଘଟଣା ପ୍ରବାହର ଚିତ୍ରରୁ ଜଣାଯାଏ ଯେ ବ୍ରହ୍ମାଣ୍ଡ ପୁରାଣର ୪୩ତମ ଅଧ୍ୟାୟ ବର୍ଣ୍ଣନାନୁଯାୟୀ ସୃଷ୍ଟିର ଆଦ୍ୟ ପର୍ଯ୍ୟାୟରେ ପ୍ରଜାପିତା ବ୍ରହ୍ମା ବାଗ୍‌ଦେବୀ ବା ସରସ୍ୱତୀଙ୍କୁ ଜନ୍ମଦେଇ ସେହି କନ୍ୟା ମାଧ୍ୟମରେ ସେ ବିଶ୍ୱବ୍ରହ୍ମାଣ୍ଡର ସମସ୍ତ ଜୀବ ତଥା ସ୍ଥାବର ଜଙ୍ଗମ ସର୍ଜନା କରାଇଥିଲେ । ସତ୍ୟ ଯୁଗରେ ବ୍ରହ୍ମପଦ ଲାଭ କରିଥିବା ଋଷି କୃପାଜଳ ସରସ୍ୱତୀଙ୍କୁ କନ୍ୟା ରୂପରେ ପାଇବା ପାଇଁ ଅଭିଳାଷ କରନ୍ତେ ସରସ୍ୱତୀ ଆବିର୍ଭୂତା ହୋଇ ଋଷିଙ୍କୁ ଦର୍ଶନ ଦେଇ ଅନ୍ତର୍ଦ୍ଧାନ ହେବା ପୂର୍ବରୁ ଗୋଟିଏ ପଥର ଉପରେ ଶରମୁନରେ ତାଙ୍କର ଏକ ଚିତ୍ର ଆଙ୍କି ଦେଇ ଯାଇଥିଲେ । ଋଷି ସେହି ଚିତ୍ରାଙ୍କିତ ଶିଳାକୁ ନିଜ ଆଶ୍ରମରେ ରଖିଥିଲେ ।



କାଳକ୍ରମେ ସେହି ଶିଳା ଋଷି ଆଶ୍ରମରେ ମାଟିତଳେ ପୋତି ହୋଇଯାଇଥିଲା । ତ୍ରେତୟା ଯୁଗରେ ପର୍ଶୁରାମ ଋଷି ତୀର୍ଥ ପର୍ଯ୍ୟଟନ କରୁଥିବା ସମୟରେ ଏହି କ୍ଷେତ୍ରରେ ଅଲୌକିକ ଶକ୍ତି ଲୁକ୍କାୟିତ ହୋଇ ରହିଥିବା ଅନୁଭବ କରି ସେହି ସ୍ଥାନକୁ ଖୋଳିବା ପରେ ମାଟିତଳୁ ଏକ ଅଷ୍ଟଭୁଜା ଶିଳା ମୂର୍ତ୍ତି ପ୍ରାପ୍ତ ହେଲେ । ଶର ମୁନରେ ମୂର୍ତ୍ତି ବାହାର କରିଥିବାରୁ ପର୍ଶୁରାମ ତାଙ୍କର ନାମ ଶାରଳା ଦେଲେ । ଯେଉଁ ସ୍ଥାନରେ ପର୍ଶୁରାମ ଓ ଶାରଳାଙ୍କ ଭେଟ ହୋଇଥିଲା ସେହି ସ୍ଥାନ ଏବେ 'ଭେଟବର' ନାମରେ ସୁପରିଚିତ, ଯାହାକି ସାରଳା ମହାଭାରତ ସ୍ୱର୍ଗାରୋହଣ ପର୍ବରେ ବର୍ଣ୍ଣନା କରାଯାଇଛି । ଅନ୍ୟ ଏକ ପୌରାଣିକ ଆଖ୍ୟାୟିକା ଅନୁସାରେ ଦକ୍ଷ ପ୍ରଜାପତିଙ୍କ ଶିବହୀନ ଯଜ୍ଞ ଆୟୋଜନର ପରିଣାମରେ ମୃତାସତୀଙ୍କ ଶରୀରର ଅଂଶ ବିଶେଷ ଭାରତର ବିଭିନ୍ନ ସ୍ଥାନରେ ପଡି ଗୋଟିଏ ଲେଖାଏଁ ଶକ୍ତିପୀଠ ଭାବେ ପରିଚିତ ହେଲା । ସେଥି ମଧ୍ୟରୁ ଆଠଗୋଟି ଶକ୍ତିପୀଠ ଅଷ୍ଟମଣ୍ଡଳ ରୂପେ ପୁରୁଷୋତ୍ତମ କ୍ଷେତ୍ରରେ ବିଦ୍ୟମାନ । ସତୀଙ୍କର ଜିହ୍ୱା ଏହି କ୍ଷେତ୍ରରେ ଭୂପତିତ ହୋଇଥିବାରୁ ଶାରଳାଙ୍କୁ ବାଗ୍‌ଦେବୀ ଭାବେ ଆଖ୍ୟାୟିତ କରାଯାଇଛି । ସେ ମହାଶକ୍ତି, ମହାଚେତନା ଓ ମହାଜ୍ଞାନର ଉତ୍ସଭାବେ ଅଜ୍ଞାନ ଅନ୍ଧକାର ମଧ୍ୟରୁ ଦିବ୍ୟ ଧାମକୁ ବାଟ କଢାଇ ନେବାର ଅଧିଷ୍ଠାତ୍ରୀ ଦେବୀ ଭାବେ ଝଙ୍କଡ ପୀଠରେ ସ୍ମରଣାତୀତ କାଳରୁ ପୂଜା ପାଇ ଆସୁଛନ୍ତି ।

ଓଡିଆ ଜାତିର ସାଂସ୍କୃତିକ ପ୍ରାଣପିଣ୍ଡ, ଆଧ୍ୟାତ୍ମିକ ଆସ୍ଥା, ଆବେଗ ଓ ଆକର୍ଷଣର କେନ୍ଦ୍ରବିନ୍ଦୁ ପରଂବ୍ରହ୍ମ ଶ୍ରୀଜଗନ୍ନାଥଙ୍କ ଲୀଳାଖେଳା କ୍ଷେତ୍ର ରୂପେ 'ଶାରଳା ମଣ୍ଡଳ'କୁ ବହୁଗୁଣରେ ପରିପୁଷ୍ଟ କରିପାରିଛି । ଶ୍ରୀମନ୍ଦିର ନିମନ୍ତେ ମହାରାଜା ଇନ୍ଦ୍ରଦ୍ୟୁମ୍ନ ଶ୍ରୀଜଗନ୍ନାଥଙ୍କ ପ୍ରଥମ ଦାରୁ ଏହି ମାଟିରୁ ପ୍ରାପ୍ତ ହୋଇଥିବା ଜଗନ୍ନାଥ ସଂସ୍କୃତି ଗବେଷକମାନେ ମତବ୍ୟକ୍ତ କରିଛନ୍ତି । ଗବେଷକ ଅଧ୍ୟାପକ ଡ. ଗଂଗାଧର ସାମନ୍ତରାୟ ଏକାଧିକ ବାର ଶାରଳା ମଣ୍ଡଳ ମାଟି ମହାପ୍ରଭୁଙ୍କର ସଂସ୍ପର୍ଶରେ ଆସିଛି ବୋଲି ମତପୋଷଣ କରିଛନ୍ତି । ରାଜା ଇନ୍ଦ୍ରଦ୍ୟୁମ୍ନ ଓ ରାଜା ରାମଚନ୍ଦ୍ର ଦେବ ଉଭୟ ବଡଠାକୁରଙ୍କ ସନ୍ଧାନରେ ଆସି ଏହିଠାରୁ ପ୍ରାପ୍ତି ହୋଇଛନ୍ତି । ଜଗନ୍ନାଥ ସଂସ୍କୃତି ଗବେଷକ ତଥା ଐତିହାସିକ ଡ. ଜଗନ୍ ମୋହନ ସାହୁଙ୍କ ଦ୍ୱାରା ପ୍ରଦତ୍ତ ବଳିଷ୍ଠ ତଥ୍ୟ ଓ ଗବେଷଣା ଅନୁଯାୟୀ ଇନ୍ଦ୍ରଦ୍ୟୁମ୍ନ ରାଜା ପ୍ରାଚୀ ନଦୀର ଉତ୍ତର ତୀର ଚିତ୍ରୋତ୍ପଳାର ବାଙ୍କି ମୁହାଣରୁ ଦାରୁ ପ୍ରାପ୍ତି ହୋଇଥିବା ପୁରାଣରେ ଉଲ୍ଲେଖ ଅଛି । ସାରଳା ଦାସ ମହାଭାରତର ଆଦି ପର୍ବରେ ଉଲ୍ଲେଖ କରିଛନ୍ତି ଯେ ପ୍ରାଚୀ ନଦୀର ସେ ଯେ ଉତ୍ତର ତୀରର– ସ୍ୱର୍ଗୁ ବଳିଣ ସେ ଦେଶ ପଟ୍ଟାନ୍ତର । ସ୍କନ୍ଦପୁରାଣ ବର୍ଣ୍ଣନାନୁସାରେ ଚିତ୍ରୋତ୍ପଳା ନଦୀକୂଳସ୍ଥ ରାଜ୍ୟରେ ଜଗନ୍ନାଥ ଗୋପନରେ ଥିବା ଖବର ପାଇ ରାଜା ଇନ୍ଦ୍ରଦ୍ୟୁମ୍ନ ସେହି ରାଜ୍ୟକୁ ଦଖଲ କଲେ ଓ ଚିତ୍ରୋତ୍ପଳା କୂଳରେ ଅଶ୍ୱମେଧ ଯଜ୍ଞ କରିବାରୁ ସମୁଦ୍ର ମୁହାଣରେ ଦାରୁ ଭାସୁଥିବା ଜାଣିବାକୁ ପାଇଥିଲେ । ଏଥିରୁ ସ୍ପଷ୍ଟ ଜଣାଯାଏ ଚିତ୍ରୋତ୍ପଳା ନଦୀ ଓ ସମୁଦ୍ରର ସଂଗମ ସ୍ଥଳୀରେ ସମସ୍ତ ଘଟଣାମାନ ଘଟିଛି । ଗବେଷକ ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ ଉଲ୍ଲେଖ କରିଛନ୍ତି ଯେ ପ୍ରାଚୀନ କାଳରେ ମହାନଦୀକୁ ହିଁ ଚିତ୍ରୋତ୍ପଳା କୁହାଯାଉଥିଲା । ସେହିପରି ନୀଳାଦ୍ରି ମହୋଦୟ ସଂସ୍କୃତ ଗ୍ରନ୍ଥର ଦ୍ୱିତୀୟ ଅଧ୍ୟାୟରେ ମହାନଦୀକୁ ଚିତ୍ରୋତ୍ପଳା ନାମରେ ଅଭିହିତ କରାଯାଇଛି । ଏବେ ବି ଚିତ୍ରୋତ୍ପଳା ପାରାଦ୍ୱୀପ ଅଠରବାଙ୍କିସ୍ଥିତ ଚଉମୁହାଣି ପାଖରେ ସମୁଦ୍ରରେ ମିଶିଛି । ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ମହାନଦୀର ପ୍ରାଚୀନ ନାମ ଚିତ୍ରୋତ୍ପଳା ଥିଲା ଓ ଏହାରି କୂଳରେ ଜଗନ୍ନାଥ ଅନ୍ତର୍ଦ୍ଧାନ ହୋଇଥିବା, ଇନ୍ଦ୍ରଦ୍ୟୁମ୍ନ ଅଶ୍ୱମେଧ ଯଜ୍ଞ କରିବା ଓ ଦାରୁବ୍ରହ୍ମ ବାଙ୍କି ମୁହାଣରେ ସମୁଦ୍ରରୁ ଭାସି ଆସିବା ପ୍ରସଙ୍ଗ ହିଁ ମହାନଦୀ ଓ ସମୁଦ୍ର ସଂଗମ ସ୍ଥଳରେ ଘଟିଥିବା ପ୍ରତୀୟମାନ ହେଉଛି । ତେଣୁ ମହାନଦୀ ଓ ସମୁଦ୍ରର ସଂଗମ ସ୍ଥଳ ବା ମୁହାଣ ମୁହଁ ଯାହା କୁଜଙ୍ଗଗଡର ଉତ୍ତରପଟକୁ ଅଠରବାଙ୍କି ଭାବରେ ପରିଚିତ, ତାହାକୁ ହିଁ ନିର୍ଦ୍ୱନ୍ଦ୍ୱରେ ବାଙ୍କି ମୁହାଣ ବୋଲି ଗବେଷକମାନେ କହିଛନ୍ତି । ଆହୁରି ଶ୍ରୀମନ୍ଦିର ସଂସ୍କୃତି ସହିତ କୁଜଙ୍ଗଗଡର ସଂସ୍କୃତି ଯୋଡି ହୋଇରହିଥିବା ମଧ୍ୟ ଐତିହାସିକମାନେ ଉଲ୍ଲେଖ କରିଛନ୍ତି । କଳା ପାହାଡ ଜଗନ୍ନାଥ ମନ୍ଦିର ଆକ୍ରମଣ ଏବଂ ମୂର୍ତ୍ତିଗୁଡିକ ନଷ୍ଟ କରିବା ପରେ କୁଜଙ୍ଗର ବିଶର ମହାନ୍ତି 'ବ୍ରହ୍ମ ପଦାର୍ଥ' ଉଦ୍ଧାର କରି ମୁସଲମାନ କ୍ଷମତା ବାହାରର ଦୁର୍ଦ୍ଧର୍ଷ କୁଜଙ୍ଗାଧିପତିଙ୍କୁ ପ୍ରଦାନ କରିଥିଲେ । କୁଜଙ୍ଗ ରାଜା





ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତି ଅନୁରୂପ ମୂର୍ତ୍ତି ନିର୍ମାଣ କରାଇ ବ୍ରହ୍ମପଦାର୍ଥ ସ୍ଥାପନ ପୂର୍ବକ 'କୁଂଜବିହାରୀ' ନାମ ଦେଇ ଗଡକୁଜଙ୍ଗରେ ପୁନଃ ପ୍ରତିଷ୍ଠା କରିବା ଏ ଅଂଚଳର ଇତିହାସ ପୃଷ୍ଠାରେ ଏକ ଗରିମାମୟ ସ୍ଥାନ ଅଧିକାର କରିଛି। ପରବର୍ତ୍ତୀ ପର୍ଯ୍ୟାୟରେ ରମଚନ୍ଦ୍ର ଦେବ ଏହି ଅବିନଶ୍ୱର ବ୍ରହ୍ମ ପଦାର୍ଥକୁ ନୂତନ ଦାରୁ ବିଗ୍ରହ ଗର୍ଭରେ ସ୍ଥାନ ଦେଇ ଶ୍ରୀକ୍ଷେତ୍ରରେ ଜଗନାଥ ପୂଜାର ପୁନଃ ପ୍ରତିଷ୍ଠା କରିଥିଲେ, ଯାହାକୁ କି ଜଗନ୍ନାଥଙ୍କର ପ୍ରକୃତ ନବକଳେବର ଆଦ୍ୟ ପର୍ଯ୍ୟାୟ ବୋଲି ସ୍ୱୀକାର କରାଯାଇଛି ଓ ରାମଚନ୍ଦ୍ର ଦେବ ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ବୋଲି ଉଦ୍‌ଘୋଷିତ ହୋଇଛନ୍ତି । ଏହି ଦ୍ୱୀପାଞ୍ଚଳର ଐତିହାସିକ ପୃଷ୍ଠଭୂମି ତଥା ମାଦଳାପାଞ୍ଜି, ଚକଡା ପୋଥି, ଗବେଷକମାନଙ୍କ ତଥ୍ୟ ଓ ମତାମତକୁ ଆଧାର କରି ଶ୍ରୀମନ୍ଦିର ଲୀଳାକ୍ଷେତ୍ର କମିଟିର ସଦସ୍ୟ ଓ ବିଶେଷଜ୍ଞମାନେ ଏ ଅଂଚଳର କେତେକ ଅନାଲୋଚିତ ତଥ୍ୟକୁ ଉପସ୍ଥାପନ କରିବା ସହ ଏହି କ୍ଷେତ୍ରକୁ ମହାପ୍ରଭୁଙ୍କ ଲୀଳା କ୍ଷେତ୍ର ରୂପେ ଘୋଷଣା କରିଛନ୍ତି । ନିକଟ ଅତୀତରେ ଘଟିଯାଇଥିବା ଆଉ ଏକ ଘଟଣା ଏ କ୍ଷେତ୍ରର ବୈଶିଷ୍ଟ୍ୟ ପ୍ରତିପାଦିତ କରିଛି। ଅତୀତରେ ଠାକୁରଙ୍କ ନବକଳେବର ସମୟରେ ଦାରୁଗୁଡିକ ଭିନ୍ନଭିନ୍ନ ଅଂଚଳରୁ ସନ୍ଧାନ କରାଯାଇଥିବା ବେଳେ ଚଳିତ ଶତାବ୍ଦୀର ପ୍ରଥମ ନବକଳେବର ସମୟରେ କେବଳ 'ଶାରଳା ମଣ୍ଡଳ'ରେ ତିନିଠାକୁରଙ୍କ ଦାରୁ ସନ୍ଧାନ ହେବା ଏକ ବିରଳ ଦୃଷ୍ଟାନ୍ତ ସୃଷ୍ଟି କରିଛି, ଯାହାକି ମହାପ୍ରଭୁଙ୍କ ସହିତ ଏ ଅଂଚଳର ସମ୍ପର୍କକୁ ସୁଦୃଢ କରିଛି। ପୁରୁଷୋତ୍ତମ କ୍ଷେତ୍ରର ଅଷ୍ଟମଣ୍ଡଳ ମଧ୍ୟରୁ 'ଶାରଳା ମଣ୍ଡଳ' ପୂର୍ବ ଦ୍ୱାରର ପୌରାଣିକ ସ୍ୱୀକୃତି ଲାଭ କରିଛି। ପୂର୍ବ ଏକ ଉତ୍କୃଷ୍ଟ ପରମ୍ପରାର ଉତ୍ତରାଧିକାରୀ। ସୂର୍ଯ୍ୟ ପୂର୍ବରେ ଉଦିତ ହୋଇ ଭୂପୃଷ୍ଠରେ ସକଳ ଜୀବଜଗତକୁ ନିଜର ପ୍ରାଣଭୂତ ଶକ୍ତି ନିରନ୍ତର ପ୍ରଦାନ କରି ଆସୁଛନ୍ତି। ଏଣୁ ପୂର୍ବକୁ ଯଥାର୍ଥରେ ପବିତ୍ର ମନେ କରାଯାଏ। ପ୍ରାଚୀନ ମାନବ ସଂସ୍କୃତିରେ ଏହା ଉପ୍‌ଭିଷ୍ଠଳ ଯେଉଁଠି ଶାଶ୍ୱତ ପ୍ରକାଶର ଭବ୍ୟ ଦୃଶ୍ୟମାନ ଦୃଷ୍ଟି ପଥକୁ ଆସିଥାଏ। ଏହି ପବିତ୍ର ପୂର୍ବଦ୍ୱାରର ସଂକେତ ସ୍ୱରୂପ ବାଲିବନ୍ଧ ଉପରେ ଦଣ୍ଡାୟମାନ ଏକ ପ୍ରାଚୀନ ବଟବୃକ୍ଷ 'ଉଦୟବଟ'କୁ ମୂକସାକ୍ଷୀ ରୂପେ ଦର୍ଶାଯାଇଛି। କଥିତ ଅଛି, ସୂର୍ଯ୍ୟୋଦୟର ପ୍ରଥମ କିରଣ ଏହି ବଟ ଉପରେ ପଡିବା ପରେ ପୃଥିବୀ ପୃଷ୍ଠରେ ପହଞ୍ଚିଥାଏ। ସଂପ୍ରତି ବନ୍ଦର ନଗରୀ ପାରାଦ୍ୱୀପ ଉପକଣ୍ଠରେ ଏହି ଐତିହ୍ୟସମ୍ପନ୍ନ ପ୍ରାଚୀନ ଧର୍ମପୀଠ ଉଦୟବଟ ଅବସ୍ଥିତ। ପ୍ରାୟ ସାତ ଏକରରୁ ଊର୍ଦ୍ଧ୍ୱ ପରିବ୍ୟାପ୍ତ ଏହି ବଟ ବୃକ୍ଷଟି କ୍ରମାଗତ ବାତ୍ୟା ଫଳରେ ଧ୍ୱସ୍ତ ବିଧ୍ୱସ୍ତ ହେଲେ ହେଁ ଦୃଶ୍ୟମାନ ବଟ ବୃକ୍ଷର ମୂଳ ଅଦୃଶ୍ୟ ଓ ଅଦୃଶ୍ୟ ବୃକ୍ଷର ମୂଳ ମଧ୍ୟ ଅଦୃଶ୍ୟ । ପରନ୍ତୁ କଳି ଯୁଗରେ ଶ୍ରୀଜଗନ୍ନାଥଙ୍କ କଲ୍‌କୀ ଲୀଳାର ସ୍ମୃତି ବହନ କରୁଥିବା ବିସ୍ମୟ ଓ ରହସ୍ୟର ସ୍ମାରକୀ ରୂପେ ସମୟର ଘାତ ପ୍ରତିଘାତ ସହି ଓହଳ ବା ବାୟବୀୟ ଚେର ସାହାଯ୍ୟରେ ଛିଡା ହୋଇ ରହିଛି।

'ଉଦୟବଟ'ଠାରୁ ପରଂବ୍ରହ୍ମ ଶ୍ରୀଜଗନ୍ନାଥଙ୍କ କଳକୀ ଲୀଳାର ପ୍ରକାଶ ସମ୍ପର୍କରେ ଭାଗବତ, ମହାଭାରତ ଏବଂ ଅନ୍ୟାନ୍ୟ ପୁରାଣ ତଥା ଉପପୁରାଣଗୁଡିକରେ ସୂଚନା ପ୍ରଦାନ କରାଯାଇଛି। ଉଦୟବଟ ସହିତ ଶ୍ରୀଜଗନ୍ନାଥଙ୍କ କଲ୍‌କୀ ଲୀଳା ଓତପ୍ରୋତଭାବେ ଜଡିତ ଥିବା ମାଳିକା ସାହିତ୍ୟରେ ଉଦଘୋଷିତ ହୋଇଛି। ଏହିଠାରେ ସମ୍ବଳ ନଗ୍ର ବା ପାଣ୍ଠି ସଂଗ୍ରହର ଉତ୍ସଭାବେ ଏକ ସହର ଗଢିଉଠିବା, ଏକଲକ୍ଷ ଚୁଲି ପଡିବା ବା ସହରର ଲୋକସଂଖ୍ୟା ଏକ ଲକ୍ଷ ହେବା, ଶ୍ରୀକ୍ଷେତ୍ରରେ ଅଠରନଳା ସଦୃଶ ଏଠାରେ ଅଠରବାଙ୍କି ଥିବା, ଗଜପତି ଶ୍ରୀଦିବ୍ୟସିଂହ ଦେବଙ୍କ ଦ୍ୱାରା ନୂଆପାଟଣାରେ ନୀଳଚକ୍ର ଧ୍ୱଜା ଉଡିବା, ବନ୍ଦର ନାମରେ ହୁନ୍ଦର ଲାଗିବା, ଚାରିଦିଗ ଲୋକଙ୍କ ଭେଟ ହେବା, ସମୁଦ୍ର କୂଳ ଲଘିଂବା ଇତ୍ୟାଦି ବହୁ ସଂକେତ ପରୋକ୍ଷ କିମ୍ବା ପ୍ରତ୍ୟକ୍ଷ ଭାବେ ପାରାଦ୍ୱୀପକୁ ସୂଚିତ କରୁଥିବା ଦୃଷ୍ଟିକୁ ଆସିଥାଏ। ସମୟକ୍ରମେ ଘଞ୍ଚ ଜଙ୍ଗଲରେ ଗଢିଉଠିଥିବା ବନ୍ଦର ନଗରୀ ସଂପ୍ରତି ଏକ ଶିଳ୍ପ ସମୃଦ୍ଧ ସହରରେ ପରିଣତ ହୋଇ ଦେଶର ପୂର୍ବାଞ୍ଚଳର ପ୍ରବେଶ ପଥ ରୂପେ ପରିଚିତ। ବାସ୍ତବରେ ବନ୍ଦରଗୁଡିକ ପୃଥିବୀର ବିଭିନ୍ନ ଦେଶ (ଚାରି ଦିଗ) ଲୋକମାନଙ୍କର ମିଳନସ୍ଥଳୀ, ଯେଉଁଠିକି ପରସ୍ପର ମଧ୍ୟରେ ବିଚାରଧାରାର ଆଦାନ ପ୍ରଦାନ ହେବା ସହିତ ଦେଶର ସାଂସ୍କୃତିକ, ସାମାଜିକ ଓ ଅର୍ଥନୈତିକ ଅଭିବୃଦ୍ଧିକୁ ପ୍ରଭାବିତ କରିଥାଏ। ଏହି ପରିପ୍ରେକ୍ଷୀରେ ନବ ଉତ୍କଳ ନିର୍ମାଣର ଅଗ୍ରଦୂତ



ତତ୍‌କାଳୀନ ଓଡିଶାର ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ଉଦ୍ୟମରେ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ଏହି ବିରଳ ପବିତ୍ରତାର ମହତ୍ତର କ୍ଷେତ୍ରକୁ ଆଧୁନିକ ପୃଥିବୀ ମାନଚିତ୍ରରେ ସ୍ଥାନିତ କରି ନୂତନ ଦିବ୍ୟ ମାନବ ଜାତିର ବିକାଶ ପଥରେ ଏକ ଅଭିଯାନର ଆହ୍ୱାନ ଦେଇ କ୍ଷେତ୍ରର ସମ୍ଭାବନାମୟ ଭବିଷ୍ୟତକୁ ବାସ୍ତବ ରୂପ ଦେଇଥିବା ଉଲ୍ଲେଖନୀୟ ଘଟଣା। ଅନ୍ୟ ପକ୍ଷରେ, ନୂଆ ପାଟଣା ବା ନୂତନଭାବେ ଗଢିଉଠିଥିବା ସହର ପାରାଦ୍ୱୀପଠାରେ ମା' ଶାରଳାଙ୍କ ସ୍ୱପ୍ନାଦେଶ ବଳରେ ଜଗତସିଂହପୁରର ପଣ୍ଡିତ ପଦ୍ମଚରଣ ତ୍ରିପାଠୀ 'ଜଗନ୍ନାଥ ସମାଜ' ଅନୁଷ୍ଠାନ ଗଠନ କରିବା ଓ ଗଜପତି ଦିବ୍ୟସିଂହ ଦେବଙ୍କ ଦ୍ୱାରା ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା ହେବା ବିଶେଷ ପ୍ରଣିଧାନଯୋଗ୍ୟ। 'ଜଗନ୍ନାଥ ସମାଜ' ସମଗ୍ର ବିଶ୍ୱକୁ ଆଲିଙ୍ଗନ କରିବାର ପ୍ରତିଶ୍ରୁତି ବହନ କରେ। ଏହାର ସମ୍ବିଧାନ ଧର୍ମ ନିରପେକ୍ଷତାର ଜୀବନ୍ତ ନିଦର୍ଶନ ଓ ଭାରତୀୟ ଧର୍ମନିରପେକ୍ଷତା ବା ସର୍ବଧର୍ମ ସମନ୍ୱୟର ନିଛକ ପରିଚାୟକ । ମନ୍ଦିର ସମ୍ମୁଖରେ ଅରୁଣ ସ୍ତମ୍ଭ ସଦୃଶ ପରିଦୃଶ୍ୟମାନ ସ୍ତମ୍ଭ ସର୍ବଧର୍ମ ସମନ୍ୱୟର ପ୍ରତୀକ, ଯାହାକି ବିଶ୍ୱର ସମସ୍ତ ପ୍ରକାର ଜାତିବାଦ, ବର୍ଣ୍ଣବାଦ, ସାମ୍ପ୍ରଦାୟିକ ଧର୍ମମତ ଓ ସବୁପ୍ରକାର ଦାର୍ଶନିକ ମତବାଦକୁ ଆଲିଙ୍ଗନ କରି ଶ୍ରୀଜଗନ୍ନାଥ ଉପାସନାରେ ଏକ ସାର୍ବଜନୀନ ସମନ୍ୱୟର ପରିଚାୟକ ଭାବେ ମାନବୀୟ ଚେତନାର ଏକ ମହାନ ନିଦର୍ଶନ ସାଜିଛି। ଏକ ନୂତନ ଯୁଗାଦର୍ଶ ବଳରେ ଆତ୍ମବିସ୍ମୃତ ମନୁଷ୍ୟକୁ ଶୁଭଙ୍କର ପଥରେ ଅନୁଗାମୀ କରାଇବା ଦିଗରେ ଏହି ଅନୁଷ୍ଠାନ ସମୟ ଉପଯୋଗୀ କଲ୍‌କୀ ଚେତନା ବାର୍ତ୍ତା ବହନ କରି ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକାରେ ଅବତୀର୍ଣ୍ଣ ହୋଇଛି। ଏହି ଭୂଖଣ୍ଡର ଗୌରବପୂର୍ଣ୍ଣ ଅତୀତକୁ ସମ୍ଭାବନାମୟ ଭବିଷ୍ୟତ ସହିତ ସଂଯୁକ୍ତ କରୁଥିବା ଆଧ୍ୟାତ୍ମିକ ଉପଲବ୍ଧି ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ। ଅବତାର ବିଶ୍ୱାସ ଭାରତୀୟ ଚେତନାର ଏକ ମହତ ଓ ମୌଳିକ ବିଶେଷତ୍ୱ। ଆଧ୍ୟାତ୍ମଦର୍ଶୀମାନେ ଯେଉଁ ଦଶାବତାର କିମ୍ବଦନ୍ତୀ ପରିବେଷଣ କରିଛନ୍ତି, ତାହା ନିଃସନ୍ଦେହରେ ବିଶେଷ ଅର୍ଥପୂର୍ଣ୍ଣ। ମହାକବି ଜୟଦେବଙ୍କ ଦଶାବତାର ସ୍ତୋତ୍ର ଓ ବିଜ୍ଞାନୀ ଚାର୍ଲସ ଡାରଉଇନ୍‌ଙ୍କ ଦ୍ୱାରା ପ୍ରତିପାଦିତ ବିବର୍ତ୍ତନବାଦ ତତ୍ତ୍ୱ ଭାରତୀୟ ସନାତନ ଧର୍ମ ବିଶ୍ୱାସରେ ଆଶ୍ଚର୍ଯ୍ୟଜନକ ଭାବେ ସମାନତା ପରିଲକ୍ଷିତ ହୁଏ। ସମୟ ସହ ତାଳ ଦେଇ ଜୀବଜଗତର କ୍ରମବିକାଶ ସହ ମାନବ ସଭ୍ୟତାର ବିକାଶ ଘଟିଥାଏ। ଭାରତୀୟ ଦିବ୍ୟଦ୍ରଷ୍ଟାମାନେ ଅନୁଭବ କରିଛନ୍ତି ମଣିଷର ବୌଦ୍ଧିକ ବିକାଶତାକୁ ହିଂସ୍ରତା ଆଡକୁ ଟାଣି ନେବ ଓ ନିଜେ ନିଜର କ୍ଷତି ସାଧନ କରିବ । ସମ୍ପ୍ରତି ମଣିଷ ଭିତରେ କୁଟିଳ ବୌଦ୍ଧିକ ହିଂସ୍ରତା ବ୍ୟାପିଯାଇ ମାନବୀୟ ଧର୍ମାଚାର ଓ ମୂଲ୍ୟବୋଧ ହରାଇ ମାନବ ଜାତି ଭୟଭୀତ ଓ ଆତଙ୍କିତ ଅବସ୍ଥାରେ ଏକ ନିଶ୍ଚିତ ଧ୍ୱଂସ ଆଡକୁ ଅଗେଇ ଚାଲିଛି। ପରିବାର, ସମାଜ ଇତ୍ୟାଦି କୁଳକ୍ଷିତ ହୋଇ ସବୁଠାରେ ଦ୍ୱନ୍ଦ୍ୱ ଓ ଗ୍ଲାନି ଦେଖା ଦେଇଛି। ଏହି ସଙ୍କଟର ସମାଧାନ ନିମନ୍ତେ ଆଦ୍ୟଲୀଳା କ୍ଷେତ୍ର 'ଶାରଳା ମଣ୍ଡଳ'ରୁ ସ୍ୱୟଂ ପରଂବ୍ରହ୍ମଙ୍କ କଲ୍‌କୀ ଅବତାର ବା କଲ୍‌କୀ ଚେତନାର ବିକାଶ ଘଟିବ ବୋଲି ଦିବ୍ୟଦ୍ରଷ୍ଟା ଓଡିଶାର ପଞ୍ଚସଖା ମହାପୁରଷମାନଙ୍କ ଗ୍ରନ୍ଥଗୁଡିକରେ ବହୁଳଭାବେ ବର୍ଣ୍ଣନା ରହିଛି। ଚେତନାର ବିବର୍ତ୍ତନରେ ଏକ ମହତ୍ତର ମାନବୋତ୍ତର ପ୍ରାଣୀର ଆବିର୍ଭାବ ହେବ। ହିଂସା, ଦ୍ୱେଷ, ପଶୁତ୍ୱର ଅତ୍ୟାଚାର, ସନ୍ତ୍ରାସବାଦ ତଥା ପରମାଣୁ ଯୁଦ୍ଧର ଆତଙ୍କ ଓ ଆଶଙ୍କା ସତ୍ତ୍ୱେ ଏକ ନବଯୁଗର ଉନ୍ମେଷ ହେବ। ଦିବ୍ୟ ଚେତନାର ଅଭ୍ୟୁଦୟ ହେବ। ବ୍ୟକ୍ତିର ଅନ୍ତର୍ନିହିତ ଶକ୍ତିକୁ ବିକଶିତ କରି ଅଭୂତପୂର୍ବ ଆଧ୍ୟାତ୍ମିକ ଚେତନାରେ ଉଦ୍‌ଭାସିତ କରିବ। ଭାରତୀୟ ସଂସ୍କୃତିର ମୂଳଭିତ୍ତି ଶ୍ରୀଜଗନ୍ନାଥ ଧର୍ମ ଓ ସଂସ୍କୃତିର ପ୍ରତିଫଳନ ଘଟି ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟାର ଅଧିକରୁ ଅଧିକ ସକାରାତ୍ମକ ବିନିଯୋଗ ହେବ। ଜାତି ଧର୍ମ ବର୍ଣ୍ଣ, ଶ୍ରେଣୀ, ଆସ୍ଥାନ, ଲିଙ୍ଗ, ସମ୍ପ୍ରଦାୟ ନିର୍ବିଶେଷରେ ବ୍ୟକ୍ତି ବ୍ୟକ୍ତି ଭିତରେ ହୃଦୟବତ୍ତାର ସମନ୍ୱୟ ଘଟିବ। ନୂତନ ବିଶ୍ୱ ସଂସ୍କୃତିର ଆବିର୍ଭାବ ହୋଇ ବିଶ୍ୱ ଭ୍ରାତୃତ୍ୱ ପ୍ରତିଷ୍ଠିତ ହେବ। ଭାରତୀୟ ଆତ୍ମାର ଅଭିବ୍ୟକ୍ତି 'ବସୁଧୈବ କୁଟୁମ୍ବକମ୍'ର କିରଣମାଳା ଏହି କ୍ଷେତ୍ରରୁ ସମଗ୍ର ବିଶ୍ୱକୁ ବିଚ୍ଛୁରିତ ହେବ।

---

ପ୍ଲଟ୍ ନଂ– ୨୨୩ ଏବଂ ୭୫୩/୩୪
ଭୀମପୁର, ୟୁନିଟ୍–୬, ଭୁବନେଶ୍ୱର–୭୫୧୦୨୦

# ଭକ୍ତର ଭାବରେ ବନ୍ଧା ଭଗବାନ

**ପ୍ରମୋଦା ଦେବୀ**

ସବୁବର୍ଷ ପରି ସେବର୍ଷ ମଧ ନୀଳାଚଳ ଧାମ ଶ୍ରୀକ୍ଷେତ୍ରରେ ବିଶ୍ୱପ୍ରସିଦ୍ଧ ରଥଯାତ୍ରା ପାଇଁ ଚାଲିଥାଏ ପ୍ରସ୍ତୁତି ପର୍ବ। ଆଷାଢ଼ ଶୁକ୍ଳ ଦ୍ୱିତୀୟା ହେଉଛି ପବିତ୍ରଦିନ। ଶ୍ରୀମନ୍ଦିର ସିଂହଦ୍ୱାର ସମ୍ମୁଖରେ ଦଣ୍ଡାୟମାନ ସୁସଜ୍ଜିତ ନଭଶ୍ଚୁମ୍ବୀ ଦିବ୍ୟ ତିନିରଥ। ତାଳଧ୍ୱଜ, ନନ୍ଦିଘୋଷ ଓ ଦେବଦଳନ ରଥରେ ଯଥାକ୍ରମେ ଶ୍ରୀବଳଭଦ୍ର, ଶ୍ରୀଜଗନ୍ନାଥ, ମା' ସୁଭଦ୍ରାଙ୍କ ସହିତ ଚକ୍ରରାଜ ସୁଦର୍ଶନ ପହଣ୍ଡି ସାରି ବିଜେ ହେଲେଣି। ଏହି ଯାତ୍ରା ଦେଖିବା ପାଇଁ ପୃଥିବୀର କୋଣ ଅନୁକୋଣରୁ ଛୁଟି ଆସିଛନ୍ତି ଅଗଣିତ ଭକ୍ତ, ସାଧୁ ସନ୍ଥ ମହାତ୍ମାମାନେ। ପୁରୀ ବଡ଼ଦାଣ୍ଡ ପାଲଟି ଯାଇଛି ଜନ ସମୁଦ୍ର । ଘଣ୍ଟ, ଘଣ୍ଟା, ଭେରୀ, ତୂରୀ, କାହାଳୀ, ଶଙ୍ଖ, ହୁଳହୁଳି, ହରିବୋଲ ଶବ୍ଦରେ ପ୍ରକମ୍ପିତ ଗଗନ ପବନ। ଭକ୍ତି ଭାବରେ ତଲ୍ଲୀନ ଭକ୍ତଗଣ ଗିନି, ମୃଦଙ୍ଗର ତାଳେ ତାଳେ ଦଳ ଦଳ ହୋଇ ନୃତ୍ୟ ଓ କୀର୍ତ୍ତନରେ ମଗ୍ନ। ଘୋଷ ଯାତ୍ରାରେ ପ୍ରଭୁଙ୍କ ଲୀଳା ଅବଲୋକନ କରିବା ପାଇଁ ଦେବତାମାନେ ମଧ ସ୍ୱର୍ଗରେ ଅପେକ୍ଷାରତ। ରଥ ଉପରେ ଦଇତା ସେବକମାନେ ଶ୍ରୀଜୀଉଙ୍କ ଗୋଟି ଗୋଟି ନୀତି କାନ୍ତି ସାରିବା ପାଇଁ ଯେଝା କାର୍ଯ୍ୟରେ ଯିଏ ବ୍ୟସ୍ତ।



ଠିକ୍ ଏହି ସମୟରେ ଘଟିଗଲା ଗୋଟିଏ ବଡ଼ ଅଘଟଣ। ହଠାତ୍ ଜଣେ ବ୍ୟକ୍ତି ଝଡ଼ ବେଗରେ ଆସି ସିଧା ଚଢ଼ିଗଲେ ନନ୍ଦିଘୋଷ ରଥ ଉପରକୁ, ଯାହାଙ୍କର କେଶବାସ ଥିଲା ଅସଂଯତ ଏବଂ ଶରୀର ଆଉ ମୁଖମଣ୍ଡଳରେ କୁଙ୍କୁମ, ତାମ୍ବୁଳର ଦାଗ। ସେବକମାନଙ୍କର ଅତି ପରିଚିତ ଥିଲେ ଉକ୍ତ ବ୍ୟକ୍ତି ଏବଂ ତାଙ୍କର କୁଅଭ୍ୟାସ ସହିତ ସେମାନେ ଅବଗତ ଥିଲେ। ପ୍ରତ୍ୟେକ ମନ୍ଦିରରେ ତାଙ୍କ ସହିତ ଦେଖା ସାକ୍ଷାତ୍ ହୁଏ। ଶ୍ରୀଜୀଉଙ୍କର ସେ ଜଣେ ବଡ଼ ଭକ୍ତ ଏଥିରେ ସନ୍ଦେହ ନାହିଁ। ରଥ ଉପରେ ତାଙ୍କୁ ଏପରି ଦେଖି ଦୁର୍ ଦୁର୍ ମାର୍ ମାର୍ କରି ସେବକମାନେ ଗୋଡ଼ାଇ ଆସିଲେ। ନାନା କଟୁ ମନ୍ତବ୍ୟ କହି ଗଳା ଧକ୍କା ଦେଇ ରଥ ଉପରୁ ତଳକୁ ଠେଲି ଦେଲେ। ସେଇ ବ୍ୟକ୍ତିଜଣକ ଆଉ କେହି ନୁହଁନ୍ତି, ସେ ଥିଲେ ଭକ୍ତ ବଳରାମ ଦାସ।

ପୁରୁଷୋତ୍ତମ କ୍ଷେତ୍ରବାସୀ ମହନ୍ତ ସୋମନାଥ ଦାସଙ୍କର ଅନେକ ଶିଷ୍ୟଗଣଙ୍କ ମଧରେ ପ୍ରିୟ ଥିଲେ ବଳରାମ ଦାସ ପରମ ବୈଷ୍ଣବ। ଶ୍ରୀହରିଙ୍କ ସହସ୍ରନାମ ତାଙ୍କ ତୁଣ୍ଡରେ ଦିନରାତି ବସାବାନ୍ଧି ଥିଲେ। ପ୍ରଭୁଙ୍କ ନାମ ମନନ, କୀର୍ତ୍ତନ, ଭଜନରୁ



ଅପାର ଆନନ୍ଦ, ସ୍ୱର୍ଗ ସୁଖପାଇ ଭୁଲି ଯାଉଥିଲେ ଭୋକ ଶୋଷ। ତାଙ୍କର ପ୍ରତିଟି ଶ୍ୱାସ ପ୍ରଶ୍ୱାସରେ ପ୍ରତିଧ୍ୱନିତ ହେଉଥିଲା ପ୍ରଭୁଙ୍କ ମଧୁର ନାମାବଳୀ କିନ୍ତୁ ଚନ୍ଦ୍ରରେ କଳଙ୍କ ସଦୃଶ ତାଙ୍କ ଚରିତ୍ରରେ ରହିଯାଇଥିଲା ଏକ ଦୋଷ, ଯାହା ପାଇଁ ସେ ବାରମ୍ବାର ଅପଦସ୍ତ ହେବା ସହିତ ଅପମାନିତ ହେଉଥିଲେ। ଗଣିକାମାନଙ୍କ ପ୍ରତି ତାଙ୍କର ଥିବା ଦୁର୍ବଳତା ତାଙ୍କୁ ବେଳେ ବେଳେ ଟାଣି ନେଉଥିଲା। ତାଙ୍କ ମନ କିନ୍ତୁ ଥିଲା ନିର୍ବିକାର, ହୃଦୟ ନିର୍ମଳ ଶଙ୍ଖ ଚକ୍ର ଗଦା ପଦ୍ମଧାରୀ ସ୍ୱୟଂ ବିଷ୍ଣୁ ସଦାସର୍ବଦା ଯାହାଙ୍କ ଅନ୍ତରରେ ଆସୀନ, ଶୟନେ ସପନେ, ଜାଗରଣେ ଯିଏ ପ୍ରଭୁଙ୍କ ପଦାରବିନ୍ଦରେ ସମର୍ପିତ, ସେ ଅପବିତ୍ର ହେବ ବା କିପରି ? ନାମାମୃତ ପାନ କରି ସେ'ତ ଗଙ୍ଗାଜଳ ପରି ସଦା ପବିତ୍ର।

ପ୍ରକୃତି ବଶତଃ ସେଇ ରଥ ଯାତ୍ରା ଦିନ ବି ସକାଳୁ ସକାଳୁ ବଳରାମ ଦାସ ଚାଲିଯାଇ ଥିଲେ ଗଣିକାଳୟ। କାନରେ ଭେରୀ, ତୂରୀ ଶଙ୍ଖ ମହୁରୀ ହୁଳହୁଳି ଓ ହରିବୋଲ ଧ୍ୱନି ବାଜିବାରୁ ଚମକି ଉଠିଲେ ଦାସେ। ତାଙ୍କର ମନେ ପଡ଼ିଗଲା ଆଜି ଯେ ଦାରୁବ୍ରହ୍ମ ଚତୁର୍ଦ୍ଧାମୂର୍ତ୍ତିଙ୍କର ଅତିପ୍ରିୟ ବଡ଼ଯାତ୍ରା, ରଥଯାତ୍ରା। ପ୍ରଭୁ ଚକାନୟନ କଳାବଦନ ଏହି ଯାତ୍ରାରେ ରଥାରୂଢ଼ ହୋଇ ବାମନ ଅବତାରରେ ଦର୍ଶନ ଦେଇ ଭକ୍ତଜନମନ ତୋଷିଥାନ୍ତି। ନିଜକୁ ନିଜେ ଶତ ଧିକ୍କାର କରି ସେହିଠାରୁ ସିଧା ଧାଇଁଲେ ସିଂହଦ୍ୱାର। ସେଠାରେ ପହଞ୍ଚି ଯୋଡ଼ହସ୍ତରେ ଭକ୍ତି ଗଦ୍ ଗଦ୍ ଚିତ୍ତରେ ଚଢ଼ିଗଲେ ନନ୍ଦିଘୋଷ ରଥ ଉପରକୁ। ସେବକଠାରୁ ଗଳା ଧକ୍କା ଖାଇ ତଳକୁ ପଡ଼ିବା ପରେ ଦୁରନ୍ତ ଅଭିମାନ, ଅସହ୍ୟ ଅପମାନରେ ଫାଟି ପଡୁଥିଲେ ବଳରାମ ଦାସ। ସେଠାରେ ସମବେତ ସମସ୍ତ ଜନତାଙ୍କ ଦୃଷ୍ଟି ନିବଦ୍ଧ ଥିଲା ତାଙ୍କରି ଉପରେ। ଅଜସ୍ର ବ୍ୟଥା, ଅନନ୍ତ ବେଦନାରେ ଭାରାକ୍ରାନ୍ତ ହୃଦୟଟା ଭାଙ୍ଗି ଖଣ୍ଡ ଖଣ୍ଡ ହୋଇ ଯାଉଥିଲା ଯେପରି ଶରୀର ପୀଡ଼ାଠାରୁ ବଳି ପଡୁଥିଲା ମନର ପୀଡ଼ା। ପୋଡ଼ି ଯାଉଥିଲା ଲଜ୍ଜାରେ ମୁହଁ। ବୋହି ଚାଲି ଥିଲା ଅବାରିତ ଅଶ୍ରୁଧାର। ମନ ହେଉଥିଲା ସେଇ ମୁହୂର୍ତ୍ତରେ ମୁଣ୍ଡପିଟି ପ୍ରାଣତ୍ୟାଗ କରିବାକୁ ଏ ନିର୍ଲଜ ମୁହଁ ନେଇ ଏବେ କେଉଁଠାକୁ ଯିବେ ସେ ? ଅନୁତାପ ଓ ଅଭିମାନର ଅନ୍ତଦାହରେ ଛଟପଟ ହୋଇ ବଢ଼ି ଚାଲିଥାଏ ବୁକୁର ଯନ୍ତ୍ରଣା। ପ୍ରାଣଠାରୁ ପ୍ରିୟ ନିଜ ପ୍ରଭୁଙ୍କ ଉପସ୍ଥିତିରେ ଏ ସବୁ ଘଟିଗଲା ଅଥଚ ଚକାଆଖି ସବୁ କିଛି ଦେଖି କୌଣସି ପ୍ରତିକାର କଲେନି। ଏ ଅପମାନ କ'ଣ କାଳିଆର ଅପମାନ ନୁହଁ ? ଭକ୍ତ ଶରୀରର ପୀଡ଼ା କ'ଣ ତା' ଶ୍ରୀଅଙ୍ଗକୁ ବାଧୁନି ? ଯଦି ଦଣ୍ଡ ଦେବାର ଥିଲା ତେବେ ସେବକ ହାତରେ ନ ଦେଇ ନିଜେତ ଦେଇ ପାରିଥାନ୍ତେ, ଗଦାରେ ପିଟି ବା ଚକ୍ରରେ ଛେଦି । ଆସ୍ତେ ଆସ୍ତେ ସବୁ ଅଭିମାନ ଅଭିଯୋଗ ଯାଇ ଠୁଳ ହେଲା ସେଇ ଦାରୁବ୍ରହ୍ମ ନିଦା ବିଷ୍ଣୁଙ୍କ ଉପରେ । ପ୍ରଭୁଙ୍କ ଆଖିରେ ଆଖି ମିଳାଇ ମନେ ମନେ କହିଲେ ''ଯଦି ପ୍ରକୃତରେ ତୁ ଭକ୍ତ ବତ୍ସଳ ହରି ହୋଇଥିବୁ ଏ ଭକ୍ତର ମାନ ରକ୍ଷା କରି ତୋ ରଥ ଆଗକୁ ଇଞ୍ଚେ ବି ଗଡ଼ିବ ନାହିଁ ।'' ଏତିକି କହି ସବୁ କୋହ ଛାତି ତଳେ ଚାପି ରଖି, ଆଖି ଲୁହ ଆଖିରେ ମାରି ବହୁ କଷ୍ଟରେ ତଳୁ ଉଠି ଠିଆ ହେଲେ ଦାସେ ଏବଂ ତଳକୁ ମୁହଁ ପୋତି ଚାଲିଲେ ମହୋଦଧି ଅଭିମୁଖେ। କାନରେ ଟାଇଁ ଟାଇଁ ବାଜୁଥାଏ ସେବକମାନଙ୍କ କଟୁ ପରିହାସ ଗାଳି ଗୁଲଜ। ଅସ୍ଥିର ମନ ଆହତ ହୃଦୟ ଉଦ୍‌ଭ୍ରାନ୍ତ ପ୍ରାଣକୁ ନେଇ କେତେବେଳେ ଯେ ବଳରାମ ଦାସ ପହଞ୍ଚି ଯାଇଥିଲେ ଯାଇ ବାଙ୍କି ମୁହାଁଣର ବାଲି ସ୍ତୂପ ଉପରେ ତାଙ୍କୁ ଜଣାନାହିଁ। ସେଇ ବାଲିଗଦା ଉପରେ କ୍ଳାନ୍ତ, ଶ୍ରାନ୍ତ ଶରୀର ନେଇ ବସିପଡ଼ିଲେ ଦାସେ। ଗୋଟାଏ ବଡ଼ ଦୀର୍ଘ ନିଃଶ୍ୱାସ ମାରି ଘଟି ଯାଇଥିବା ସେଇ ଅପ୍ରୀତିକର ଘଟଣାର ରୋମନ୍ଥନ କରୁ କରୁ ଅନ୍ୟମନସ୍କ ଭାବେ ସେ ଗଢ଼ି ଦେଇଛନ୍ତି ବାଲିରେ ତିନିଗୋଟି ରଥ। ବାଲିରଥକୁ ଦେଖି ତା' ମଧ୍ୟରେ ଶ୍ରୀଜୀଉଙ୍କୁ ଦର୍ଶନ କରିବାର ପ୍ରବଳ ଇଚ୍ଛାକୁ ଦମନ କରି ନପାରି ଆଖି ବୁଜି ଧ୍ୟାନସ୍ଥ ଅବସ୍ଥାରେ ସେଇ ରଥରେ ବିଜେ ହେବା ପାଇଁ ପ୍ରଭୁଙ୍କୁ ଆବାହନ କଲେ ବଳରାମ ଦାସ ଭକ୍ତି ଭାବରେ।

ପ୍ରିୟ ଭକ୍ତର ଅପମାନରେ ଅପମାନିତ ହୋଇ, ସେ ଖାଇଥିବା ମାଡ଼ର ପୀଡ଼ାକୁ ଶ୍ରୀଅଙ୍ଗରେ ଅନୁଭବ କରି ଘୋଷଯାତ୍ରାର ସମସ୍ତ ଆନନ୍ଦ, ଉଦ୍ଦୀପନା, ସୁଖ ନିମିଷକେ ମିଳାଇ ଯାଇଥିଲା ପ୍ରଭୁଙ୍କର। ଶୁଖି ଯାଇଥିଲା ଶ୍ରୀମୁଖ। ଭକ୍ତ ନିକଟକୁ ଛୁଟିଯିବା ପାଇଁ ଛଟପଟ ହେଉଥିଲେ କଳାକାହ୍ନୁ।

ଏହି ସମୟରେ ବଳରାମଙ୍କ ଏକାଗ୍ର ଧ୍ୟାନ, ଜପ, ଆବାହନ ତାଙ୍କୁ ଚୁମ୍ବକ ପରି ଟାଣି ନେଲା ବାଙ୍କି ମୁହାଣର ବାଲିରଥକୁ ଭାଇ ଭଉଣୀଙ୍କ ସହିତ । ବଡ଼ଦାଣ୍ଡର ରଥ ଉପରେ ପଡ଼ି ରହିଲେ କେବଳ ପିଣ୍ଡ ବିହୀନ ଦାରୁମୂର୍ତ୍ତି ।

ବଳରାମ ଦାସ ଦଣ୍ଡଧରି ଟିକିଏ ପ୍ରକୃତିସ୍ଥ ହେବା ପରେ ଆଜି ପ୍ରଭୁଙ୍କର ଏତେ ବଡ଼ ଯାତ୍ରାରେ ଯେଉଁ ଅଘଟଣ, ବିଶୃଙ୍ଖଳା, ଅଶୋଭନୀୟ ପରିସ୍ଥିତି ସୃଷ୍ଟି ହେଲା ସେଥିପାଇଁ ନିଜକୁ ଦାୟୀ ମଣି ଗଭୀର ଅନୁଶୋଚନା, ଅମାପ ଅନ୍ତର୍ଦାହରେ କୁହୁଳି କୁହୁଳି ଅସହ୍ୟ ଯନ୍ତ୍ରଣାରେ ଛଟପଟ ହେଲେ । ପୁଣି ଆଖିରୁ ଗଡ଼ି ଚାଲିଲା ଅନୁତାପର ଅସରନ୍ତି ଅଶ୍ରୁ । କଳାମାଣିକ ଯେ କେତେବେଳେ ଆସି ତାଙ୍କ ବାଲିରଥରେ ସେଇ ଅପନ୍ତରା ସ୍ଥାନରେ ଉଭା ହେଲେଣି, ଦେଖିଦେଇ ସଙ୍ଗେ ସଙ୍ଗେ ତାଙ୍କର ସକଳ ବ୍ୟଥା ବେଦନା ଦୂର ହୋଇଗଲା । ଅନିର୍ବଚନୀୟ ଆନନ୍ଦରେ ଉଲ୍ଲସିତ ହୋଇ ଉଠିଲା ତନୁ ମନ । ପ୍ରଭୁ ଯେପରି ତାଙ୍କୁ କହୁଛନ୍ତି ପଛ ଘଟଣା ସବୁଭୁଲି ଏବେ ମୋ ସହିତ ଭାବ ଭକ୍ତିରେ ମଜ୍ଜି ଯା' । ହଜି ଯା' ଭଗବତ୍ ଚିନ୍ତା ଚେତନା ମଧ୍ୟରେ । ବଡ଼ଦାଣ୍ଡରେ ବଡ଼ ବିଦ୍ୟାରଥ ତ୍ୟାଗ କରି ଲକ୍ଷ ଲକ୍ଷ ଅପେକ୍ଷାରତ ଭକ୍ତଙ୍କ ହୃଦୟରେ ଆଘାତ ଦେଇ ଜଗତର ନାଥ ଜଗନ୍ନାଥ ଯେ ତାଙ୍କ ବାଲି ରଥରେ ଏ ନିର୍ଜନ ସ୍ଥାନରେ ବିଜେ କରିଛନ୍ତି ଭାବିଲା ବେଳକୁ ଯେତିକି ଖୁସି ହୋଇଥିଲେ ଦାସେ ତା' ଠାରୁ ଅଧିକ ଦୁଃଖରେ ଦୁଃଖିତ ହୋଇ, ତାଙ୍କ ହସ୍ତ ନିର୍ମିତ ବାଲିରଥରେ ବିଜେ କରିଛନ୍ତି ଭାବି ଆତ୍ମସନ୍ତୋଷ ଲାଭ କରୁଥିଲେ ବଳରାମ । ସବୁ ମାନ ଅପମାନ ଯନ୍ତ୍ରଣା ଭୁଲି ଆଖିବୁଜି କଳ୍ପନାରେ ସେହିଠାରେ ରଥଟଣା ଆରମ୍ଭ କରିଦେଲେ ସେ । ପ୍ରଭୁ ଯେ କାଳେ କାଳେ ଭକ୍ତର ଭାବରେ ବନ୍ଧା ଏହା ନିରାଟ ସତ୍ୟ ।

ସେପଟେ ବଡ଼ଦାଣ୍ଡରେ ଅଚଳ ହୋଇ ଅଟକି ରହିଛି ତିନିରଥ । ଉପସ୍ଥିତ ସମସ୍ତ ଜନତାର ପ୍ରୟାସ, ପିଠିଆମାନଙ୍କ ବଳକଷା, ଶତ ଶତ ମତ ହସ୍ତୀଙ୍କର ପ୍ରୟୋଗ ବଳ, କର୍ତ୍ତବ୍ୟରତ ପୋଲିସମାନଙ୍କ ପ୍ରଚେଷ୍ଟା ସବୁ ବିଫଳ ହୋଇଛି ରଥ ଟାଣିବାରେ । ରଥ ଚକ ଗଡ଼ିବା ତ ଦୂରର କଥା ସୂତେ ବି ଘୁଞ୍ଚୁନି ଆଗକୁ । ଗଡ଼ିବ ବା କିପରି ? ରାଣ ଯେ ପଡ଼ିଚି ଭକ୍ତ ବଳରାମ ଦାସଙ୍କର ଶେଷକୁ ଠାକୁର ରାଜା ପ୍ରତାପରୁଦ୍ରଦେବ ବ୍ୟସ୍ତ ବିବ୍ରତ ହୋଇ ରଥ ନ ଗଡ଼ିବାର କାରଣ ଜାଣିବା ପାଇଁ ରଥ ଆଗରେ ଅଧିଆ ପଡ଼ିଲେ । ହାତ ଯୋଡ଼ି କାତର କଣ୍ଠରେ କହିଲେ ''ହେ ! ମଣିମା, ବ୍ରହ୍ମାଣ୍ଡ ଠାକୁର ବାଞ୍ଛା କଳ୍ପବଟ ଅଗତିର ଗତି, ଶରଣ ରକ୍ଷକ, ଇଚ୍ଛାମୟ ପ୍ରଭୁ, ତୁମ ଇଚ୍ଛାବିନା ବୃକ୍ଷର ପତ୍ରଟିଏ ମଧ୍ୟ ହଲେନା । ତେଣୁ ତୁମେ ଇଚ୍ଛା ନ କଲେ ଏତେ ବଡ଼ ରଥ ବା ଗଡ଼ିବ କିପରି ? ଯଦି ନୀତି କାନ୍ତିରେ କେଉଁଠି ଦୋଷ ତ୍ରୁଟି ରହିଯାଇଛି ଉଦାର ପଣରେ କ୍ଷମା କରି ରଥକୁ ସଚଳ କରାଅ ପ୍ରଭୁ ଉପସ୍ଥିତ ହୋଇ ଲକ୍ଷ ଲକ୍ଷ ଭକ୍ତଙ୍କ ମନୋବାଞ୍ଛା ପୂରଣ କର ଦୟାନିଧି । ରଥ ନ ଗଡ଼ିବା ଯାଏଁ ଆଜି ଏଇ ବଡ଼ଦାଣ୍ଡରେ ତୁମରି ରଥ ସମ୍ମୁଖରେ ଏହିପରି ପଡ଼ିରହିଥିବି ।'' ଦିନଯାକର ଧାଁ ଦୌଡ଼, ଚିନ୍ତା ଅବସାଦ କ୍ଲାନ୍ତିରେ ମହାରାଜଙ୍କ ଆଖିପତା ଟିକିଏ ଲାଗିଯାଇଛି । ସ୍ୱପ୍ନାବିଷ୍ଟ ଅବସ୍ଥାରେ ଚିତ୍ରପଟ୍ଟ ପରି ବଳରାମ ଦାସଙ୍କ ସହିତ ଘଟିଯାଇଥିବା ସମସ୍ତ ଘଟଣା ଆମୂଳ ଚୂଳ ନୀତି ଗଲା ରାଜାଙ୍କ ଆଖିର ଆଗରେ । ତା' ସହିତ ସ୍ୱପ୍ନାଦେଶ ହେଲା ଯଥାଶୀଘ୍ର ମୋର ପରମ ଭକ୍ତ ବଳରାମଙ୍କୁ ସସମ୍ମାନେ ବାଙ୍କି ମୁହାଁଣରୁ ସିଧା ରଥ ଉପରକୁ ନେଇଯିବା ପାଇଁ ଏବଂ ଦୋଷୀ ସାବ୍ୟସ୍ତ ସେବକମାନଙ୍କୁ ଉପଯୁକ୍ତ ଦଣ୍ଡଦେଇ ବଳରାମ ଦାସଙ୍କୁ କ୍ଷମା ମଗାଇବା ପାଇଁ । ଏତକ କାର୍ଯ୍ୟ ନ କରିବା ପର୍ଯ୍ୟନ୍ତ ଆମ୍ଭେ ଏହି ଅପନ୍ତରା ସ୍ଥାନରେ ଦାସଙ୍କ ନିର୍ମିତ ବାଲିରଥରେ ବନ୍ଧା ପଡ଼ିଥିବୁ । ତେଣୁ ସେପର୍ଯ୍ୟନ୍ତ ରଥ ଗଡ଼ି ପାରିବ ନାହିଁ ।

ରାଜା ତତ୍‌କ୍ଷଣାତ୍ ଚମକି ଉଠି ବସିଲେ । ଚତୁର୍ଦ୍ଦିଗକୁ ଟିକିଏ ଆଖି ବୁଲାଇ, ସ୍ୱପ୍ନାଦେଶ ଅନୁସାରେ ଦୋଷୀ ସାବ୍ୟସ୍ତ ସମସ୍ତ ସେବକମାନଙ୍କୁ ବନ୍ଧାଇବା ପରେ ହାତୀ ଛତି ପାଟି ଆଭୂଷଣ ପାଲିଙ୍କି ସହିତ ଥାଟ ପଟୁଆର ଧରି ଚାଲିଲେ ବାଙ୍କି ମୁହାଁଣ । ସେଠାରେ ବଳରାମଙ୍କ ମସ୍ତକରେ ଶାଢ଼ୀ ବାନ୍ଧି ପାଟ ଯୋଡ଼ ସହିତ ସମସ୍ତ ଆଭୂଷଣ ପିନ୍ଧାଇ ନିଜ ପାଖରେ ପାଲିଙ୍କିରେ ବସାଇ ନେଇ ଆସିଲେ ରଥ ନିକଟକୁ । ବନ୍ଧା ହୋଇଥିବା ସେବକ ଦଇତାପତିମାନେ ତାଙ୍କୁ କ୍ଷମା ମାଗି ଦୋଷ ସ୍ୱୀକାର କରିବା ପରେ ରଥ ଉପରକୁ ଯାଇ ନିଜେ ବଳରାମ



ଦାସ ରଥ ଗଡ଼ିବା ପାଇଁ ଅନୁମତି ଦେବାକୁ ସ୍ୱୟଂ ମହାରାଜା ନିବେଦନ କଲେ। ନିଆଁରେ ପାଣି ପଡ଼ିବା ପରି ନିମିଷକେ ବଳରାମ ଦାସଙ୍କ ସମସ୍ତ ଅପମାନ, ଅଭିମାନ କେଉଁଆଡ଼େ ଉଭେଇଗଲା। ତରବର ହୋଇ ଦାସେ ରଥ ଦଉଡ଼ି ନିଜେ ଆଗ ହାତରେ ଧରି ପକାଇ ପ୍ରଭୁଙ୍କ ଉଦ୍ଦେଶ୍ୟରେ ମୁଣ୍ଡିଆଟିଏ ମାରି ଉପସ୍ଥିତ ସମସ୍ତ ଭକ୍ତମଣ୍ଡଳୀ, ଜନସାଧାରଣ ପୋଲିସମାନଙ୍କୁ ରଥ ଦଉଡ଼ି ଧରି ଟାଣିବାକୁ ନିର୍ଦ୍ଦେଶ ଦେଲେ। ବଡ଼ ଆଶ୍ଚର୍ଯ୍ୟର କଥା ଶଙ୍ଖ, ହୁଳହୁଳି, ହରିବୋଲ, ଘଣ୍ଟ, ଘଣ୍ଟାର ତାଳେ ତାଳେ ସଙ୍ଗେ ସଙ୍ଗେ ରଥ ଚକ ଘୋର ଘର୍ଘର ନାଦରେ ଗଡ଼ି ଚାଲିଲା ଆଗକୁ ଆଗକୁ। ଆଉ ଥରଟିଏ ହେଲେ ଅଟକି ନ ରହି ଚାହୁଁ ଚାହୁଁ ତିନିରଥ ଯାଇ ପହଞ୍ଚିଗଲା ଗୁଣ୍ଡିଚା ମନ୍ଦିର ସମ୍ମୁଖରେ।

ଶରଧା ବାଲିରେ ସମସ୍ତ ଉତ୍କଣ୍ଠାର ପରିସମାପ୍ତି ଘଟାଇ ବିସ୍ମୟ ଚକିତ ବିସ୍ଫାରିତ ନେତ୍ରରେ ଅଗଣିତ ଦର୍ଶକ ଏ ଅପୂର୍ବ ଦୃଶ୍ୟ ଉପଭୋଗ କରୁ କରୁ ଉପଲବ୍ଧି କରିପାରୁଥିଲେ ରହସ୍ୟମୟ ଠାକୁରଙ୍କ ଅଲୌକିକ ଶକ୍ତିର ଅପାର ମହିମା। ରାଜା ପ୍ରତାପରୁଦ୍ରଦେବ ବଳରାମ ଦାସଙ୍କ ଭକ୍ତିର କରାମତି ଦେଖି ଖୁସିରେ ତାଙ୍କୁ ଆଲିଙ୍ଗନ କରି ଶ୍ରେଷ୍ଠ ଭକ୍ତ ଭାବରେ ଘୋଷଣା କଲେ। ସବୁରି ମୁଖରେ ଦାସଙ୍କ ଭକ୍ତିର ଭୂୟସୀ ପ୍ରଶଂସା ''ଜୟ ଜଗନ୍ନାଥ'' ଧ୍ୱନି ସହିତ ବଳରାମ ଦାସଙ୍କ ଜୟ ଜୟକାର ଧ୍ୱନି ମିଶି କମ୍ପି ଉଠିଲା ଗଗନ ପବନ। ଭକ୍ତ ଓ ଭଗବାନଙ୍କର ଏ ଅପୂର୍ବ ମିଳନ ଦୃଶ୍ୟ ଦର୍ଶନ କରି ଧନ୍ୟ ହୋଇଗଲେ ଆଗନ୍ତୁକ, ସମସ୍ତ ସାଧୁ, ସନ୍ନ୍ୟାସୀ ଓ ମହାତ୍ମାଗଣ। ଧନ୍ୟ ଭକ୍ତବତ୍ସଳ ଭାବଗ୍ରାହୀ ମହାପ୍ରଭୁଙ୍କ ମହିମା, ଭକ୍ତର ମାନରକ୍ଷା ପାଇଁ ସଦା ସଜାଗ ସେ। ଦୂରରୁ ଭାସି ଆସୁଥିଲା କେଉଁ ଏକ ଭକ୍ତ କଣ୍ଠରୁ ''ସେ'ତ ଭକତ ଭାବରେ ବନ୍ଧାରେ, ସେ'ତ ଭକତ ହୃଦୟ ଧନ......''।

ସର୍ବୋଦୟ ନଗର , ପୁରୀ–୨

# କିଆଁ କରୁଅଛ ଡେରି

ଅଧ୍ୟାପିକା ସୌଦାମିନୀ ବେହେରା

ଦରଶନ ଦେବ ଦେବ
କିଆଁ କରୁଅଛ ଡେରି
ବଢ଼ିଚାଲେ ଭକତଙ୍କ ଭିଡ଼
ପଣ୍ଡା ପଢ଼ିଆରିମାନେ
ଆଉ କରନାହିଁ ଡେରି
ଘେରିଲେଣି ରଥ ଚାରିକଡ଼
ମହାବାହୁ, ରତ୍ନସିଂହାସନ ବେଗି ଛାଡ଼।
ହରିବୋଲ ହୁଳହୁଳି
ଚାରିଆଡ଼େ ଯାଏ ଖେଳି
ତିନିରଥ ହୋଇଲାଣି ସଜ୍ଜା
ବଡ଼ଭାଇ ବଳରାମ
ମଝିରେ ସୁଭଦ୍ରା ସାଥେ
ଜଗତର ନାଥ ହେବେ ଖୋଜା



ଛେରାପହଁରା କରିବେ ରାଜା
ମହାବାହୁ, ଭକ୍ତଜନ ନେବେ ସେଠି ମଜା।
ବଡ଼ଭାଇ ତାଳଧ୍ୱଜେ
ରଥରେ ହୋଇବେ ବିଜେ
ବଡ଼ଦାଣ୍ଡେ ଆଗେ ଆଗେ ଯିବେ
ଦେବଦଳନରେ ବସି
ସୁଭଦ୍ରା ଭଉଣୀ ହସି
ଭକତମାନଙ୍କୁ ଦେଖୁଥିବେ
ନନ୍ଦିଘୋଷେ ଜଗତର ନାଥ
ମହାବାହୁ, ପତିତପାବନ ନାମେ ଜଗତେ ବିଦିତ।

ରାଜନୀତି ବିଜ୍ଞାନ ବିଭାଗ
ଏସ୍.ଏସ୍.ବି.ଡ଼ି ମହିଳା ମହାବିଦ୍ୟାଳୟ
କଣ୍ଟିଆ, ଜଟଣୀ, ଖୋର୍ଦ୍ଧା

# ଶାବର ଶ୍ରୀକ୍ଷେତ୍ରରେ ରଥଯାତ୍ରା

ଡକ୍ଟର ପ୍ରମୋଦିନୀ ହୋତା

କୋରାପୁଟ ଜିଲ୍ଲା ହେଉଛି ପୂର୍ବଘାଟ ପର୍ବତମାଳାର ପାହାଡ଼ ପର୍ବତ, ଝରଣା ଝୋଲାର କୁଳୁକୁଳୁ ନାଦ, ଘନ ଅରଣ୍ୟ ସମାକୀର୍ଣ୍ଣ ଅଂଚଳ। ଏହି ଆଦିମ ଅଧିବାସୀ ଅଧ୍ୟୁଷିତ ଅଂଚଳ, ଏକ ସାଂସ୍କୃତିକ ସମନ୍ୱୟର ଦେବଭୂମି। ଶ୍ରୀଜଗନ୍ନାଥ ବିଗ୍ରହ



ଏହାର ଆତ୍ମା ଓ ପ୍ରାଣ ସହିତ ଜଡ଼ିତ। ଯେଉଁଠି ଆଦିବାସୀମାନେ କ୍ରିତୁଙ୍ଗ ଓ ଜଙ୍ଗମ୍ ଉପାସନା କରି ଶ୍ରୀଜଗନ୍ନାଥ ଉପାସନାର ପ୍ରଥମ ସଂଧାନ ପାଇଥିଲେ। ଶାବର ଶ୍ରୀକ୍ଷେତ୍ର କୋରାପୁଟ ଯାହାକି ପ୍ରାକୃତିକ ପରିବେଶ ମନଲୋଭା ଏବଂ ଏହାର ସଂସ୍କୃତି, ପରମ୍ପରା, ଆଦିବାସୀ ଜୀବନଧାରା ଏହି ମାଟିକୁ ମହାନ କରି ଗଢ଼ି ତୋଳିଛି। ଜଗନ୍ନାଥ ମନ୍ଦିର ଏହି ସହରର କେନ୍ଦ୍ରସ୍ଥଳରେ ଅବସ୍ଥିତ । ଯେଉଁଠାରୁ ଦୋଳବେଦୀରୁ ପୂର୍ବ ଦିଗ୍‌ବଳୟରେ ସର୍ବୋଚ୍ଚ ପର୍ବତ ଶୃଙ୍ଗ ଦେଓମାଳିକୁ ଦେଖିହୁଏ। ନାନା ଧର୍ମ, ନାନା ଦର୍ଶନ, ନାନା ଆଚରଣକୁ ଆଧାର କରି ଜଗନ୍ନାଥ ସଂସ୍କୃତି ଏକ ଚିରନ୍ତନ ସମନ୍ୱୟର ପ୍ରତୀକ।

ବସୁଧୈବ କୁଟୁମ୍ବକଂ ଜଗନ୍ନାଥ ସଂସ୍କୃତିରେ ରହିଛି। ଯାହା ଭାବର କଥା ଏବଂ ପ୍ରୀତିର କଥା। ଶାବର ଶ୍ରୀକ୍ଷେତ୍ରରେ ସେହି ରୂପ ଦେବା ପାଇଁ ଯେଉଁ ଆର୍ଯ୍ୟ ଓ ଦ୍ରାବିଡ଼ ଗୋଷ୍ଠୀର ଲୋକ ମିଳିମିଶି ଜୀବିକା ନିର୍ବାହ କରନ୍ତି, ସେହିଠାରେ ଜଗନ୍ନାଥ ଚେତନା ଓ ସଂସ୍କୃତି ବିଦ୍ୟମାନ ରହି ଏକାଠି ଗାଇଥାନ୍ତି ଜଗନ୍ନାଥୀୟ ଚିନ୍ତାର ମୂଳମନ୍ତ୍ର।

ଶାବର ଶ୍ରୀକ୍ଷେତ୍ରର ଜଗନ୍ନାଥ ମନ୍ଦିର ନିର୍ମାଣ ବିଷୟରେ କୁହାଯାଏ – ୧୯୭୨ ମସିହାରେ ଜୁନ୍ ମାସରେ ମହିମା ଧର୍ମ ନେଇ ଏକ ମହାସଭା କୋରାପୁଟଠାରେ ଅନୁଷ୍ଠିତ କରାଯାଇଥିଲା। ଏହି ସଭାରେ ଓଡ଼ିଶାର ବହୁ ଗଣ୍ୟମାନ୍ୟ ବ୍ୟକ୍ତି, ସମାଲୋଚକ, ସାହିତ୍ୟିକ, ଗବେଷକ, ବିଦ୍ୱାନଗଣ ସମାବେଶ ହୋଇଥିଲେ। ପଣ୍ଡିତ ସଦାଶିବ ରଥଶର୍ମା ଏହାର ପୁରୋଧା ଥିଲେ। ଜଗନ୍ନାଥଙ୍କ ଆବାହନ ପରେ ସଭାକାର୍ଯ୍ୟ ଆରମ୍ଭ ହେଲା। ସେହି ସମୟରେ ଦେଖାଗଲା ଜଣେ ଆଦିବାସୀ ରମଣୀ ଜଗନ୍ନାଥଙ୍କ ସମ୍ମୁଖରେ କିଛି ବନ୍ୟଫଳ ଧରି ଜଗନ୍ନାଥଙ୍କ ରଙ୍ଗ ଅଧରରେ ଫଳଗୁଡ଼ିକୁ ଘଷୁଛି ତା'ର ଆଖିରୁ ଝରି ପଡୁଛି ଲୋତକଧାର। ଏହି ଭାବ ବିହ୍ୱଳ ପରିବେଶ ସମସ୍ତ ଭକ୍ତଙ୍କୁ ଅଭିଭୂତ କରିଦେଲା। ଭାବବିହ୍ୱଳ ହୋଇଗଲେ ପଣ୍ଡିତ ରଥଶର୍ମା । ତାଙ୍କ ତୁଣ୍ଡରୁ ବାହାରିଗଲା ଶବରୀର ପୂଜା



ଏଯେ ଶାବର ଶ୍ରୀକ୍ଷେତ୍ର । କଥାଛଳରେ ସେ କାଳିଆର ସେହି ପ୍ରାଣସ୍ପର୍ଶୀ ଆଖି ଦୁଇଟିକୁ ଚାହିଁ କେହି କେହି କହୁଥିଲେ କାଳିଆ ଛତିଆକୁ ଚାଲିଗଲା । କିନ୍ତୁ ମୋତେ କାହିଁକି ଲାଗୁଛି କାଳିଆ ଚାଲି ଆସିଛି କୋରାପୁଟକୁ - ଏହି ଶାବର ଶ୍ରୀକ୍ଷେତ୍ରକୁ । ସେଦିନଠାରୁ କୋରାପୁଟ ଶାବର ଶ୍ରୀକ୍ଷେତ୍ର ନାମରେ ନାମିତ ହେଲା । ତା'ପରେ କେତେଜଣ ଯୁବକ ମନସ୍ଥ କଲେ, କୋରାପୁଟରେ ରଥଯାତ୍ରା କରାଯିବ । ସେହି ବର୍ଷ ରଥଯାତ୍ରା ପଡ଼ିଥାଏ ଜୁଲାଇ ୧୨ ତାରିଖ ଦିନ । ସମସ୍ତଙ୍କ ଭାଳେଣି ପଡ଼ିଲା । ଠାକୁର ନଥାଇ କିପରି ରଥଯାତ୍ରା କରାଯିବ । ପ୍ରଥମେ ଶ୍ରୀକ୍ଷେତ୍ର ପୁରୀରେ ଠାକୁର ନିର୍ମାଣ କରି ତିନି ଠାକୁରଙ୍କ ପ୍ରତିମାକୁ ପୁରୀରୁ କୋରାପୁଟ ଅଣାଗଲା । ଜୁଲାଇ ୯ ତାରିଖ ଦିନ ଡ଼ିଏଭି କଲେଜର ଏକ କ୍ଷୁଦ୍ର ପ୍ରକୋଷ୍ଠରେ ତିନିଠାକୁରଙ୍କୁ ବିଜେ କରାଗଲା । କୋରାପୁଟର ମଝିରେ ଥିବା ନିଶାଣୀ ପାବୁଲ (ପାହାଡ଼) ଉପରେ ଏକ ପିଟୁ ଟିଣରେ ମନ୍ଦିରାକୃତି ଗୃହ ନିର୍ମାଣ କରାଗଲା । ଡ଼ିଏଭି କଲେଜ ପ୍ରକୋଷ୍ଠରୁ ତିନି ଠାକୁରଙ୍କୁ ଅଣାଯାଇ ସେହି ଗୃହରେ ସ୍ଥାପନ କରାଗଲା । ସେହି ସ୍ଥାନରୁ ପ୍ରଥମେ ରଥଯାତ୍ରା ପାଇଁ ପ୍ରସ୍ତୁତି ପର୍ବ ଆରମ୍ଭ କରାଗଲା । ରଥ ପ୍ରସ୍ତୁତ ହେଲା ପରେ ରଥରେ ମହାପ୍ରଭୁଙ୍କର ପହଣ୍ଡି ବିଜେ କରାଯାଇଥିଲା । ଶାବର କ୍ଷେତ୍ରର ପ୍ରଥମ ରଥଯାତ୍ରାରେ ଛେରାପହଁରା ଆଦିବାସୀ ସେବକମାନଙ୍କ ସହିତ ଗଜପତି ମହାରାଜା କରିଥିଲେ । ତା'ପରେ ଆଜ୍‌ବେଷ୍ଟସ୍ ଗୃହ ନିର୍ମାଣ କରାଗଲା । ପରବର୍ତ୍ତୀ ସମୟରେ ବଡ଼ ଦେଉଳ ତିଆରି କରାଗଲା । ଆଜିର ଶାବର ଶ୍ରୀକ୍ଷେତ୍ର ନାମରେ ବିଶ୍ୱବିଦିତ ଯେଉଁଠି ସେଦିନର ଲଣ୍ଡା ପାହଡ଼ଟି କୋରାପୁଟର ନାଭିସ୍ଥଳ ଥିଲା ଆଜି ଶାବର ଶଙ୍ଖ କ୍ଷେତ୍ର ଶାବର ଶ୍ରୀକ୍ଷେତ୍ର ନାମରେ ଜନମାନସ କନ୍ଦରକୁ ଗୁଞ୍ଜରିତ କରୁଛି । ସେହିଦିନଠାରୁ ଆଜି ପର୍ଯ୍ୟନ୍ତ ରଥଯାତ୍ରା ଶାବର ଶ୍ରୀକ୍ଷେତ୍ରରେ ମହା ସମାବେଶରେ ଅନୁଷ୍ଠିତ ହୋଇ ଆସୁଅଛି । ରଥନିର୍ମାଣ ପାଇଁ ଅକ୍ଷୟତୃତୀୟା ଦିନ ଶୁଭପଡ଼େ । କୋରାପୁଟ ମ୍ୟୁନିସିପାଲିଟି ଅଫିସ ଏବଂ ଉପ-ଜିଲ୍ଲାପାଳଙ୍କ ଅଫିସର ମଧ୍ୟଭାଗରେ ରଥ ନିର୍ମାଣ କରାଯାଏ । ତା'ପରେ ରଥ ପ୍ରତିଷ୍ଠା, ନୃସିଂହ ହୋମ, ତା'ପରେ ରଥରେ ବାନା ଚଢ଼ାଯାଏ । କୋରାପୁଟର ଜାତୀୟ ରାଜପଥକୁ ବଡ଼ଦାଣ୍ଡ ରୂପେ ଅଭିହିତ କରାଯାଏ, ଯେଉଁଠି ରଥ ଗଡ଼ି ଗଡ଼ି ଚାଲିଥାଏ । ରାୟଗଡ଼ା ରାସ୍ତା ଯେଉଁଠି ଆରମ୍ଭ ହୋଇଛି ସେହି ସ୍ଥାନକୁ ମାଉସୀମା ଛକ କୁହାଯାଏ । ସେହିଠାରେ ଗୁଣ୍ଡିଚା ମନ୍ଦିର ପ୍ରତିଷ୍ଠା କରାଯାଏ । କୋରାପୁଟର ଥାନା ଇନ୍‌ଚାର୍ଜଙ୍କ ଘରକୁ ମାଉସୀମା ଘର ବା ମନ୍ଦିର ରୂପେ ଗ୍ରହଣ କରାଯାଇଥାଏ । ରଥ ନିର୍ମାଣ କାର୍ଯ୍ୟ ସରିବା ପରେ ପହଣ୍ଡି ବିଜେର ପୂର୍ବଦିନ ରାତ୍ରିରେ ମହାପ୍ରଭୁଙ୍କୁ ସେନାପଟା ବନ୍ଧାଯାଏ । ପହଡ ବିଜେ ଦିନ ସକାଳୁ ମଙ୍ଗଳ ଆଳତି, ଅବକାଶ ପ୍ରଭୃତି ନୀତିକାନ୍ତି ହୋଇଥାଏ । ବିମଳାଙ୍କର ଆଜ୍ଞାମାଳ ଅଣାଯାଏ । ଚାରୋଟି କଳସ (ପୂଜା) ମଙ୍ଗଳାରୋପଣ ହୋଇଥାଏ । ସେଦିନ ପୋଲିସ ଅଧିକ୍ଷକ (ଏସ୍.ପି) ଦମ୍ପତ୍ତି ଉପବାସ ରହି ବିମଳାଙ୍କ ଆଜ୍ଞାମାଳ ପ୍ରାପ୍ତ ପରେ ପହଣ୍ଡି ବିଜେ କରିଥାନ୍ତି । ତା'ପରେ ପହଣ୍ଡି ବିଜେ ହୁଏ । ପ୍ରଥମେ ସୁଦର୍ଶନ, ବଡ଼ଠାକୁର, ଦେବୀ ସୁଭଦ୍ରା ଆଉ ଶେଷରେ ଜଗନ୍ନାଥ ଧାଡ଼ି ପହଣ୍ଡିରେ ରଥାରୂଢ଼ ହୋଇଥାନ୍ତି । ସେହିଦିନ ଜିଲ୍ଲାପାଳ ଦମ୍ପତ୍ତି ସାରାଦିନ ଉପବାସ ରହିଥାନ୍ତି । ଦୁଇଦିନ ପୂର୍ବରୁ ଜିଲ୍ଲାପାଳ ଆଦିବାସୀ ବହୁଳ କୁମ୍ଭାଗାଁର ନାୟକଙ୍କୁ ଡାକ ରାଜାର ମାନ୍ୟତା ପ୍ରଦାନ କରିଥାନ୍ତି । ମହାପ୍ରଭୁଙ୍କ ଶ୍ରୀକ୍ଷେତ୍ରରେ ଯେପରି ରଥାରୂଢ଼ ପରେ ନୀତିକାନ୍ତି କରାଯାଏ । ତା'ପରେ ରଥରେ ଗଜପତି ମହାରାଜା ଛେରାପହଁରା କରିଥାନ୍ତି । ସେହିପରି ଆଦିବାସୀର ରାଜା କୁମ୍ଭାଗାଁର ନାୟକ ରଥଯାତ୍ରାରେ ରଥରେ ଛେରାପହଁରା କରିଥାନ୍ତି । ରଥ ଉପରେ ଜିଲ୍ଲାପାଳ ବିଭିନ୍ନ ଗ୍ରାମରୁ ଆସିଥିବା ମୁଖିଆ, ନାୟକ, ପୂଜାରୀ, ଜ୍ୟୋତିଷ, ପୁରୋହିତ ଏବଂ ମନ୍ଦିର ମୁଖ୍ୟ ପୂଜାରୀ (ବଡ଼ପଣ୍ଡା), ସେବାୟତମାନଙ୍କୁ ସମ୍ମାନିତ କରି ମସ୍ତକରେ ଶିରୋପା ବାନ୍ଧିଥାନ୍ତି । ଜିଲ୍ଲାର ବିଭିନ୍ନ ଅଂଚଳରୁ ଅଗଣିତ ଆଦିବାସୀ ପୁରୁଷ, ସ୍ତ୍ରୀ ମହା ଉଲ୍ଲାସରେ ନିଜ ନିଜ ବାଡ଼ି ବଗିଚାରେ ଫଳିଥିବା ଆମ୍ବ, ତରଭୂଜ, କଦଳୀ, ପଣସ, ବିଭିନ୍ନ ଜାତିର ଫୁଲ, ଫଳ ଧରି ମହାପ୍ରଭୁଙ୍କୁ ପୂଜାର୍ଚ୍ଚନା କରିଥାନ୍ତି । ଆଦିବାସୀ ନୃତ୍ୟଗୀତ, ବାଦ୍ୟ, ହୁଳହୁଳି, ହରିବୋଲ ଧ୍ୱନିରେ କୋରାପୁଟ ଜାତୀୟ ରାଜପଥ (ବଡ଼ଦାଣ୍ଡ) ମୁଖରିତ ହୋଇ





ଉଠିଥାଏ। ଧୂମସା ବାଦ୍ୟ, ଢ଼ାମ୍ପ, ଡୁଡୁମ, ମହୁରୀ, ଶିଙ୍ଗା ବାଇଦ, ଟାମକୋ, ଢ଼ୋଲ ବାଦ୍ୟରେ କୋରାପୁଟ ସହର କମ୍ପମାନ ହୋଇ ଉଠୁଥାଏ। ଏପଟେ ନାଚଗୀତ ଚାଲିଥାଏ ସେପଟେ ନରନାରୀ ରଥ ଦଉଡ଼ି ଧରି ରଥ ଟାଣୁଥାନ୍ତି। ତା'ପରେ ରଥ ଯାଇ ଶ୍ରୀଗୁଣ୍ଡିଚା ମନ୍ଦିରରେ ପହଞ୍ଚି ଥାଏ। ପୂଜାର୍ଚ୍ଚନା ପରେ ସୁଦର୍ଶନଙ୍କ ସହିତ ତିନିଠାକୁର ସିଂହାସନରେ ବିଜେ କରିଥାନ୍ତି। ଗୁଣ୍ଡିଚା ମନ୍ଦିରରେ ମହାପ୍ରଭୁଙ୍କର ନଅଦିନ ଯାତ୍ରା କରାଯାଏ। ଦୈନନ୍ଦିନ ମନ୍ଦିରରେ ନୀତିକାନ୍ତି ହୋଇଥାଏ। ପ୍ରତ୍ୟେକ ଦିନ ମଙ୍ଗଳ ଆରତି, ଅବକାଶ, ବାହାରପୂଜା, ମଧ୍ୟାହ୍ନ ଭୋଗ, ବେଢ଼ା ଦର୍ଶନ, ସନ୍ଧ୍ୟା ଆଳତି, ରାତିରେ ଅନ୍ନଭୋଗ, ପହଡ ବିଜେ କରାଯାଇଥାଏ। ମହାପ୍ରଭୁଙ୍କର ପ୍ରଥମ ଚାରିଦିନ ମତ୍ସ୍ୟ ଅବତାର, କଚ୍ଛପ ଅବତାର, ବରାହ ଅବତାର, ନୃସିଂହ ଅବତାର ବେଶ କରାଯାଇଥାଏ। ଅନ୍ୟ ଦିନମାନଙ୍କରେ ମହାପ୍ରଭୁଙ୍କର ବାମନ ଅବତାର, ପର୍ଶୁରାମ, ରାମ ଅବତାର, ବଳରାମ ଅବତାର, କଲ୍କୀ ଅବତାର ବେଶ କରାଯାଇଥାଏ। ହେରା ପଞ୍ଚମୀ ଦିନ ବଡ଼ ଦେଉଳ ଶାବର ଶ୍ରୀକ୍ଷେତ୍ରରୁ ଆଡ଼ମ୍ବର ସହକାରେ ମହାଲକ୍ଷ୍ମୀ ଠାକୁରାଣୀ ଆଦିବାସୀ ଏବଂ ଅଣ ଆଦିବାସୀ (ଗଡିଆ) ମହିଳାମାନଙ୍କ ଗହଣରେ ଧୂପଦୀପ, ହୁଳହୁଳି, ଶଙ୍ଖଧ୍ୱନି ସହିତ ଦେଉଳରୁ ବାହାରି ଗୁଣ୍ଡିଚା ମନ୍ଦିରକୁ ଯାଇଥାନ୍ତି।

ଗୁଣ୍ଡିଚା ମନ୍ଦିରରେ ମହାଲକ୍ଷ୍ମୀ ଠାକୁରାଣୀଙ୍କୁ ବନ୍ଦାପନା କରାଯାଏ। ଗୁଣ୍ଡିଚାମନ୍ଦିର ଚତୁର୍ଦ୍ଦିଗ ମହିଳାମାନଙ୍କ ସମାବେଶ ହୁଳହୁଳି ନାଦରେ ମୁଖରିତ ହୋଇ ଉଠୁଥାଏ। ମନ୍ଦିର ଭିତରେ ଲକ୍ଷ୍ମୀ ଏବଂ ଜଗନ୍ନାଥଙ୍କର ଭେଟ ହୋଇ ଦୁହିଁଙ୍କ ମଧ୍ୟରେ ବଚସା ହୋଇଥାଏ। ମହାପ୍ରଭୁଙ୍କୁ ଶଙ୍ଖୁଳିଲା ପରେ ମହାଲକ୍ଷ୍ମୀ ରୋଷ ହୋଇ ରଥ ନିକଟକୁ ଯାଇ ରଥ ଭାଙ୍ଗିଥାନ୍ତି ଏବଂ ମୁଖ୍ୟ ସେବକକୁ ରଥରେ ବାନ୍ଧି ଦେଇଥାନ୍ତି। ମହା ଆଡ଼ମ୍ବରରେ ମହାଲକ୍ଷ୍ମୀ ଠାକୁରାଣୀ ବଡ଼ ଦେଉଳକୁ ମହିଳାମାନଙ୍କ ସହିତ ଫେରି ଆସିଥାନ୍ତି।

ପ୍ରତିଦିନ ଗୁଣ୍ଡିଚା ମନ୍ଦିର ସମ୍ମୁଖରେ ଭାରତର ବିଭିନ୍ନ ପ୍ରାନ୍ତରୁ ଆସିଥିବା କଳାକାରଙ୍କ ଦ୍ୱାରା ଭଜନ ଏବଂ ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରାଯାଏ। ନବମୀରେ ଠାକୁରଙ୍କର ସନ୍ଧ୍ୟାଦର୍ଶନ ହୋଇଥାଏ। ଦଶମୀ ଦିନ ବାହୁଡ଼ା ଯାତ୍ରା ହୋଇଥାଏ। ବାହୁଡ଼ା ଯାତ୍ରାରେ ସୁଦର୍ଶନଙ୍କ ସହିତ ପହଣ୍ଡି ହୋଇ ତିନିଠାକୁର ରଥାରୂଢ଼ ହୋଇଥାନ୍ତି। ମହାପ୍ରଭୁ ବାହୁଡ଼ା ଯାତ୍ରାରେ ରଥରେ ବସି ଶାବର ଶ୍ରୀକ୍ଷେତ୍ରର ବଡ଼ ଦେଉଳ ଅଭିମୁଖେ ଯାତ୍ରା କରିଥାନ୍ତି। ଡ଼ାହୁକ ଗୀତ ଗାଉଥାଏ ରଥ ଉପରେ, ହରିବୋଲ ହୁଳହୁଳି ପଡୁଥାଏ। ପୁଣିଥରେ ଆଦିବାସୀମାନେ ପାରମ୍ପରିକ ବେଶଭୂଷା, ଗୀତ ବାଦ୍ୟ ଢ଼େମସା ନାଚରେ ମସଗୁଲ ହୋଇ ବଡ଼ଦାଣ୍ଡ (ଜାତୀୟ ରାଜପଥ)ରେ ନାଚିଥାନ୍ତି ଏବଂ ଅଣ ଆଦିବାସୀମାନଙ୍କ ସହିତ ରଥ ଟାଣିଥାନ୍ତି। ରଥ ଗଡ଼ି ଗଡ଼ି ଚାଲେ। ବାଟରେ ଥାନା ଇନ୍‌ଚାର୍ଜଙ୍କ ଘର ମାଉସୀମା' ମନ୍ଦିର ପଡ଼େ । ସେଠାରେ ରଥ ଅଟକି ଯାଏ। ଥାନା ଇନଚାର୍ଜ ଦମ୍ପତି ରଥରେ ଭୋଗରାଗ କରି, ମହାପ୍ରଭୁଙ୍କୁ ପୋଡ଼ପିଠା, ନୈବେଦ୍ୟ, ମିଷ୍ଟାନ୍ନ, ପଣା ସମର୍ପଣ କରିଥାନ୍ତି। ସେଠାରେ ହୋଇଥିବା ନୈବେଦ୍ୟ ଭୋଗକୁ ଭକ୍ତମାନଙ୍କୁ ବାଣ୍ଟି ଦିଆଯାଏ। ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମସ୍ତ ଭକ୍ତ ଏକତ୍ରିତ ହୋଇ ପରସ୍ପର ଭିତରେ ଭୋଗ ଖାଇଥାନ୍ତି। ଏହା ହେଉଛି ସଦ୍‌ଭାବର ଏକ ଉତ୍କୃଷ୍ଟ ଉଦାହରଣ। ତା'ପରେ ରଥଟଣା ଆରମ୍ଭ ହୁଏ। ପୁନରପି ରଥ ଉପ–ଜିଲ୍ଲାପାଳଙ୍କ ଅଫିସ ସମ୍ମୁଖରେ ରଖାଯାଏ। ସେଠାରେ ସେଦିନ ସାଂସ୍କୃତିକ କାର୍ଯ୍ୟକ୍ରମ ଏବଂ ଆକାଶବାଣୀ କଳାକାର, ଦୂରଦର୍ଶନ କଳାକାର ଏବଂ ବିଭିନ୍ନ ଅନୁଷ୍ଠାନର କଳାକାରମାନଙ୍କ ଦ୍ୱାରା ଭଜନ ସମାରୋହ କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଥାଏ । ଏଥିରେ ଆଦିବାସୀ ମହିଳା, ପୁରୁଷ ନିଜ ନିଜର ଲୋକନୃତ୍ୟ ପରିବେଷଣ କରିଥାନ୍ତି। ଏକାଦଶୀ ଦିନ ସକାଳୁ ତିନି ଠାକୁରଙ୍କର ରୂପା ବେଶ କରାଯାଇଥାଏ ଏବଂ ରାତ୍ରିରେ ତିନିଠାକୁରଙ୍କୁ ସୁନାବେଶରେ ସୁସଜ୍ଜିତ କରାଯାଏ। ସେଠାରେ ଆଦିବାସୀ ମହିଳା, ପୁରୁଷ, ଯୁବକ, ଯୁବତୀ ସମସ୍ତେ ଏକତ୍ରିତ ହୋଇ ସାମ୍ୟ ଓ ମୈତ୍ରୀ ଭାବରେ ବିହ୍ୱଳ ହୋଇ ଉଠିଥାନ୍ତି। ଏଠାରେ ଉଚ୍ଚ, ନୀଚ୍ଚ, ଧନୀ, ଗରିବର ଭେଦଭାବ ନଥାଏ। ରଥଯାତ୍ରା ସମୟରେ ପ୍ରତ୍ୟେକ ଭକ୍ତ ମହାପ୍ରଭୁଙ୍କୁ ଏକତ୍ର ଦର୍ଶନ କରିଥାନ୍ତି। ମହାପ୍ରଭୁ ଜଗନ୍ନାଥଙ୍କର ଅପଲକ ନୟନରେ ସମସ୍ତେ



ସମାନ। ଧର୍ମ ହେଉଛି ଜୀବଧର୍ମ। ସବୁଠି ତାଙ୍କର ସେହି ବ୍ରହ୍ମାତ୍ମା ବିଦ୍ୟମାନ। ଯାହା ଏହି ବିଶ୍ୱର ସନାତନ ଧର୍ମ। ସେ ହେଉଛନ୍ତି ଦୁଃଖହାରକ ଏବଂ ମୋକ୍ଷଦାୟକ।

ସୁନାବେଶ ପରେ ଅଧରପଣା ପ୍ରସ୍ତୁତ କରାଯାଏ। ସେହି ପଣାକୁ ରଥର ଚାରିପାଖରେ ସିଞ୍ଚନ କରାଯାଏ। ଦ୍ୱାଦଶୀ ଦିନ ତିନିଠାକୁର ସୁଦର୍ଶନଙ୍କ ସହିତ ଗୋଟି ପହଣ୍ଡିରେ ଶାବର ଶ୍ରୀକ୍ଷେତ୍ରର ବଡ଼ଦେଉଳକୁ ବିଜେ କରିଥାନ୍ତି । ତାହାକୁ ନୀଳାଦ୍ରି ବିଜେ କୁହାଯାଏ। ସିଂହଦ୍ୱାର ନିକଟରେ ମହାଲକ୍ଷ୍ମୀ ଠାକୁରାଣୀ ସ୍ୱାଗତ କରିବା ପାଇଁ ବିଜେ କରି ରୋଷଦ୍ୱାରା ରୁଦ୍ଧ କରିଥାନ୍ତି। ନିଜ କ୍ଷୋଭ ଯୋଗୁଁ ମହାଲକ୍ଷ୍ମୀ ଠାକୁରାଣୀ ଓ ମହାପ୍ରଭୁ ଜଗନ୍ନାଥଙ୍କ ମଧ୍ୟରେ ବଚସା ହୋଇଥାଏ। ମହିଳାମାନେ ଲକ୍ଷ୍ମୀଠାକୁରାଣୀଙ୍କୁ ଘେରି ବଚନିକା କରିଥାନ୍ତି, ପୁରୁଷମାନେ ମହାପ୍ରଭୁଙ୍କୁ ଘେରି ବଚନିକାରେ ଭାଗ ନେଇଥାନ୍ତି। ଏହି ବଚନିକା କାର୍ଯ୍ୟକ୍ରମ ଦୀର୍ଘ ସମୟ ଧରି ଚାଲିଥାଏ। ପରିଶେଷରେ ମହାପ୍ରଭୁଙ୍କର ତୋଷାମଦ ବାକ୍ୟରେ ମହାଲକ୍ଷ୍ମୀ ସନ୍ତୁଷ୍ଟ ହୋଇଥାନ୍ତି। ହୁଳହୁଳି, ହରିବୋଲ, ଶଙ୍ଖନାଦରେ ଶାବର ଶ୍ରୀକ୍ଷେତ୍ର ମୁଖରିତ ହୋଇଉଠେ ଏବଂ ଆନନ୍ଦ ମନରେ ସିଂହଦ୍ୱାର ଖୋଲାଯାଏ। ସୁଦର୍ଶନ ଏବଂ ତିନିଠାକୁର ମହାଲକ୍ଷ୍ମୀଙ୍କ ସହିତ ବଡ଼ ଦେଉଳକୁ ବିଜେ କରିଥାନ୍ତି। ମହାପ୍ରଭୁ ତିନିଠାକୁରଙ୍କର ମହାସ୍ନାନ କରାଯାଇଥାଏ। ତା'ପରେ ସମସ୍ତେ ରତ୍ନ ସିଂହାସନରେ ବିଜେ କରିଥାନ୍ତି। ଶେଷରେ ଠାକୁରମାନଙ୍କର ପହୁଡ଼ ବିଜେ ହୋଇଥାଏ।

ପ୍ରାକ୍ତନ ଆସୋସିଏଟ୍ ପ୍ରଫେସର
ପାଇଲ ସାହି, ଜୟପୁର, କୋରାପୁଟ

# ଜପୁଥାଏ ତୋର ନାମ

**ବ୍ରଜେଶ୍ୱରୀ ସିଂହ ସ୍ୱାଇଁ**

ହୃଦୟେ ଭର ମୋ କରୁଣାର ବାରି
ଜପୁଥାଏ ତୋର ନାମ
ଡୋରି ଥରେ ପ୍ରଭୁ ଲଗାଇ ଦିଅ ଯେ
ଯିବି ମୁଁ ପୁରୀ ଧାମ ।
ଦର୍ଶନ କରିବି ମୁକତି ଲଭିବି
ଗାଇ ନାମ ଜପି ତୋର
ଗରୁଡ଼ ସ୍ତମ୍ଭକୁ ଛୁଇଁଦେଲେ ଥରେ
ପାପ ହୋଇଯିବ ଦୂର ।
ଜାଣେ ନାହିଁ ପ୍ରଭୁ ପାପ ଅବା ପୁଣ୍ୟ
କରିଛି ଏହି ମହୀରେ
ସତ୍ୟକୁ ସାରଥି କରି ଜପାମାଳି
ଚାଲୁଅଛି ନିରନ୍ତରେ ।





କେତେଦିନ ଆଉ ଚାଲିଥିବି ମୁହିଁ
କଣ୍ଟକିତ ପଥରେ
ଜୀବନ ଜଞ୍ଜାଳ ଭାରି ଦୁଃଖମୟ
ଆଖିରୁ ଲୋତକ ଝରେ ।
ଯେତେ ଡାକିଲେବି କାହିଁକି ହେ ପ୍ରଭୁ
ମୋ ଡ଼ାକ ତୁମେ ନ ଶୁଣ
ବାରେ କୃପାକର ଆହେ ଦୟାମୟ
ଘୁଞ୍ଚିଯାଉ ମୋ କଷଣ ।

ଯାଜପୁର ରୋଡ଼, ଯାଜପୁର





# ସମ୍ବଲପୁର ସହରରେ ରଥଯାତ୍ରା

ଅଧ୍ୟାପକ ପବିତ୍ର ମୋହନ ବାରିକ

ଐତିହାସିକ ସହର ସମ୍ବଲପୁର ତା'ର ଇତିହାସ, ଐତିହ୍ୟ, ସଂସ୍କୃତି ଓ ପରମ୍ପରା ପାଇଁ କେବଳ ଓଡ଼ିଶା ନୁହେଁ, ସମଗ୍ର ଭାରତବର୍ଷରେ ଯଥେଷ୍ଟ ସୁନାମ ଅର୍ଜନ କରିଛି । ଧର୍ମ, ସାମାଜିକ ବ୍ୟବସ୍ଥା, ଲୋକକଳା, ଓଷା, ବ୍ରତ, ଉପାସନା, ଚଳଣି ଇତ୍ୟାଦି ପାଇଁ ସମ୍ବଲପୁରର ସଂସ୍କୃତି ଜନାଦୃତ । ପଶ୍ଚିମ ଓଡ଼ିଶାର ପ୍ରମୁଖ ନଗରୀ ଭାବରେ ସମ୍ବଲପୁରର ଅନେକ ପ୍ରଶସ୍ତି ରହିଛି । ସମ୍ବଲପୁରର ଇଷ୍ଟ ଦେବୀ ମା' ସମଲାଇଙ୍କ ନାମାନୁସାରେ ଏ ସହରର ଏଭଳି ନାମକରଣ କରାଯାଇଥିବାର ବିଦ୍ୱାନମାନେ ଉଲ୍ଲେଖ କରିଛନ୍ତି । ବଲାଙ୍ଗୀର ପାଟଣାର ରାଜା ନରସିଂହ ଦେବ ନିଜ ଭାଇ ବଳରାମ ଦେବଙ୍କୁ ଏହି ଅଞ୍ଚଳର ଶାସନଭାର ଅର୍ପଣ କରିଥିଲେ । ବଳରାମ ଦେବ ସମ୍ବଲପୁରର ପ୍ରଥମ ଚୌହ୍ୱାନ ବଂଶୀୟ ରାଜା ଯେକି ଏହାର ପ୍ରତିଷ୍ଠାତା । ସେ ମଧ୍ୟ ମା'ସମଲାଇଙ୍କୁ ଏଠାରେ ପ୍ରତିଷ୍ଠା କରିଥିଲେ । ମହିମା ବିମଣ୍ଡିତ ସମ୍ବଲପୁର ସହର ଧାର୍ମିକ ପରମ୍ପରାରେ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଆସିଅଛି । ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ବିଶ୍ୱବିଖ୍ୟାତ ରଥଯାତ୍ରା ପଶ୍ଚିମ ଓଡ଼ିଶାର ବିଭିନ୍ନ ସ୍ଥାନରେ ମହାସମାରୋହ ଓ ଆନନ୍ଦ ଉତ୍ସାହର ସହିତ ପାଳନ କରାଯାଏ । ସମ୍ବଲପୁର ସହରରେ ଆୟୋଜିତ ରଥଯାତ୍ରା ତା'ର ନିଜର ସ୍ୱତନ୍ତ୍ରତା ବଜାୟ ରଖିଛି । ଗବେଷକମାନଙ୍କ ମତରୁ ଜଣାଯାଏ ଦୀର୍ଘ ସାଢ଼େ ଚାରିଶହ ବର୍ଷ ପୂର୍ବେ ସମ୍ବଲପୁରରେ ରଥଯାତ୍ରା ଆରମ୍ଭ ହୋଇଥିଲା । ଏକ କିମ୍ବଦନ୍ତୀରୁ ଜଣାଯାଏ, ଦୁର୍ଦ୍ଦାନ୍ତ କଳା ପାହାଡ ଯେ ଶ୍ରୀଜଗନ୍ନାଥ ସଂସ୍କୃତି ଓ ଧର୍ମର ବିନିଷ୍ଟ କରିବା ପାଇଁ ଉଦ୍ୟମ କରିଥିଲା । ତା'ର ମୃତ୍ୟୁ ସମ୍ବଲପୁରରେ ହୋଇଥିଲା । କଳା ପାହାଡର ମୃତ୍ୟୁ ପରେ ଶ୍ରୀଜୀଉଙ୍କ ବ୍ରହ୍ମ ଲୁଚା ଯାଇଥିବା ସ୍ଥାନରେ ସମ୍ବଲପୁରର ତୃତୀୟ ଚୌହ୍ୱାନ ବଂଶୀୟ ରାଜା ବଳଭଦ୍ର ଦେବ ନିର୍ମାଣ କରିଥିଲେ ବ୍ରହ୍ମପୁରା ମନ୍ଦିର । ଏହାପରେ ସମ୍ବଲପୁରରେ ରଥଯାତ୍ରା ଆରମ୍ଭ ହୋଇଥିଲା । ସମ୍ବଲପୁର ସହରରେ ଜଗନ୍ନାଥ ସଂସ୍କୃତି ସହିତ ସଂପୃକ୍ତ ଅନେକ ମନ୍ଦିର ଦେଖାଯାଏ । ଏମାନେ ଶ୍ରୀଜଗନ୍ନାଥ ସଂସ୍କୃତିର ଭାବ, ଐତିହ୍ୟ, ତତ୍ତ୍ୱ, ଦର୍ଶନ, ଲୀଳା ଓ ମହିମାର ପ୍ରଚାର ଓ ପ୍ରସାର ଦିଗରେ ନିରନ୍ତର ଉଦ୍ୟମ କରିଆସିଛନ୍ତି । ସମ୍ବଲପୁର ସହରରେ ୨୭ଟି ଜଗନ୍ନାଥ ମନ୍ଦିରରେ ମହାପ୍ରଭୁଙ୍କୁ ପୂଜା କରାଯାଏ । କିନ୍ତୁ ସେମାନଙ୍କ ମଧ୍ୟରୁ ୨୫ଟି ମନ୍ଦିର ପକ୍ଷରୁ ବିଶ୍ୱ ପ୍ରସିଦ୍ଧ ରଥଯାତ୍ରାର ଆୟୋଜନ କରାଯାଏ । ରାଣୀ ପଦ୍ମାବତୀଙ୍କ ଦ୍ୱାରା ନିର୍ମିତ ଦଧିବାମନ ମନ୍ଦିର ଆରଣ୍ୟକ ବିପ୍ର ବିଷ୍ଣୁ ହୋତାଙ୍କ ଦ୍ୱାରା ନିର୍ମିତ ମନ୍ଦିର । ଶେଷ ରାଜା ନାରାୟଣ ସିଂହଙ୍କ ଦ୍ୱାରା ପ୍ରତିଷ୍ଠିତ ସତ୍ୟବାଦୀ ମନ୍ଦିର, ରାଣୀ ମୁଖ୍ୟପାନ ଦେବୀଙ୍କ ଦ୍ୱାରା ନିର୍ମିତ ମଦନ ମୋହନ ମନ୍ଦିର, ରାଜା ଅଜିତ ସିଂହଙ୍କ ଦ୍ୱାରା ସ୍ଥାପନ କରାଯାଇଥିବା ପଞ୍ଚବରାହୀ ବା ବରାହୀ ମନ୍ଦିରରେ ପ୍ରାଚୀନ ସମୟରୁ ଅଦ୍ୟାବଧି ପର୍ଯ୍ୟନ୍ତ ରଥଯାତ୍ରା ଆୟୋଜିତ ହୋଇଆସୁଅଛି । ସମ୍ବଲପୁରର ଗୋପାଳଜୀ ମଠ ମଧ୍ୟରେ ଥିବା ବଡ ଜଗନ୍ନାଥ ମନ୍ଦିରକୁ ଚତୁର୍ଥ ରାଜା ମଧୁକର ସାଏଙ୍କ ପୁତ୍ର ବଂଶୀ ଗୋପାଳ ନିର୍ମାଣ କରିଥିଲେ । ବ୍ରହ୍ମପୁରା ମନ୍ଦିର ସମ୍ବଲପୁରର ତୃତୀୟ ପ୍ରମୁଖ ଦେବାଳୟ । ଏହି ଜଗନ୍ନାଥ ମନ୍ଦିର ବ୍ରହ୍ମପୁରା ଅଞ୍ଚଳରେ ଥିବାରୁ ଏଭଳି ନାମକରଣ କରାଯାଇଅଛି । ଏଠାରେ ଦେବତାଙ୍କ ନାମରେ ଶପଥ ମାଧ୍ୟମରେ ଅନେକ ବିବାଦର ସମାଧାନ କରାଯାଇଥାଏ । ଏହି ମନ୍ଦିରର ଆକାର ଛୋଟ, କିନ୍ତୁ ସମ୍ମୁଖ ଭାଗରେ ଏକ ବିଶାଳ ମଣ୍ଡପ ଶୋଭା ପାଉଛି । ମଣ୍ଡପର ଛାତ ନଅଟି ଅର୍ଦ୍ଧଗୋଲକ ଆକାର ଗମ୍ବୁଜ





ରୂପେ ନିର୍ମାଣ କରାଯାଇଛି । ମନ୍ଦିରର ପ୍ରବେଶ ଦ୍ୱାରବନ୍ଧ ଲାଲ ମାର୍ବଲ ପଥରରେ ନିର୍ମିତ । ପ୍ରବେଶ ଦ୍ୱାର ଉପରେ ଶ୍ରୀକୃଷ୍ଣ ପଦ୍ମାସନରେ ବଂଶୀବାଦନ କରୁଥିବାର ଦୃଶ୍ୟ ଖୋଦନ କରାଯାଇଛି । ମନ୍ଦିରର ଡାହାଣ ଦ୍ୱାରବନ୍ଧରେ ବିଷ୍ଣୁଙ୍କର ନଅ ଅବତାରର ବିଗ୍ରହ ରହିଛି । ମଣ୍ଡପର ପ୍ରତ୍ୟେକ ଗମ୍ବୁଜର ଭିତର ପଟେ ନଅ ଅବତାରର ଲୀଳା ଚିତ୍ରିତ ହୋଇଛି । ଏହି ବ୍ରହ୍ମପୁରା ମନ୍ଦିରରେ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଶ୍ରୀସୁଭଦ୍ରାଙ୍କ ଦାରୁମୂର୍ତ୍ତି ପୂଜା ପାଉଛନ୍ତି । ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧର ପ୍ରଥମ ଦଶକରେ ହୀରାକୁଦ ନଦୀବନ୍ଧ ଯୋଜନା କାର୍ଯ୍ୟାରମ୍ଭ ହେବା ଦ୍ୱାରା ଅନେକ ଗ୍ରାମ ଜଳମଗ୍ନ ହେଲା । ସେହି ଗ୍ରାମମାନଙ୍କରେ ଥିବା ଶ୍ରୀଜଗନ୍ନାଥ ମନ୍ଦିରରୁ ବିଗ୍ରହମାନଙ୍କୁ ଆଣି ଅନ୍ୟତ୍ର ପ୍ରତିଷ୍ଠା କରି ପୂଜା କରାଗଲା । ହୀରାକୁଦ ଅଂଚଳର କିଛି ବିସ୍ଥାପିତମାନେ ପ୍ରଥମେ ସମ୍ବଲପୁର ସହରର ବୁଢ଼ାରାଜା ଅଞ୍ଚଳରେ ବସ୍ତି ସ୍ଥାପନ କଲେ । ସେମାନେ ସେମାନଙ୍କର ପୂର୍ବଜଙ୍କ ଦ୍ୱାରା ସ୍ଥାପିତ ଗ୍ରାମରୁ ବିଗ୍ରହମାନଙ୍କୁ ଆଣି ସମ୍ବଲପୁରର ବୁଢ଼ାରାଜା ଅଞ୍ଚଳରେ ମନ୍ଦିର ନିର୍ମାଣ କରି ମନ୍ଦିରରେ ବିଗ୍ରହମାନଙ୍କୁ ପୂଜାକଲେ । ପ୍ରଥମେ ହୀରାକୁଦ ଜଳମଗ୍ନ ଗ୍ରାମମାନଙ୍କରୁ ତିନୋଟି ବିଗ୍ରହ ଆଣି ବୁଢ଼ାରାଜାଠାରେ ମନ୍ଦିର ନିର୍ମାଣ କରାଯାଇ ବିଗ୍ରହମାନଙ୍କୁ ପ୍ରତିଷ୍ଠା କରାଗଲା ଓ ସେହି ସମୟରୁ ରଥଯାତ୍ରା ଆରମ୍ଭ ହେଲା । ସେହିପରି ସମ୍ବଲପୁରର ଗୋପାଳଜୀ ମଠ, ଲିଆଖାଇଗୁଡି, ଚିମନ ଗୁଡି, ମୁଦିପଡା ଓ ବୁଢ଼ାରାଜା ଅଞ୍ଚଳରେ ରଥଯାତ୍ରା ପାଳିତ ହୋଇଆସୁଅଛି ।

ଶ୍ରୀଗୁଣ୍ଡିଚା ରଥଯାତ୍ରା ଓ ବାହୁଡା ଯାତ୍ରା ଦିନ ମହାପ୍ରଭୁଙ୍କର ପତିତପାବନ ବେଶ ଆୟୋଜିତ ହେବା ପରେ ଧାଡି ପହଣ୍ଡି ଆରମ୍ଭ ହୁଏ । ପ୍ରଭୁ ରଥରେ ବିଜେ କଲାପରେ ଶିଶୁମାନଙ୍କର ଅନ୍ନ ପ୍ରସନ୍ନ ଓ ରଥଛୁଆଁ ଆରମ୍ଭ ହୁଏ । ଏହି ପରମ୍ପରା ସମ୍ବଲପୁର ସମେତ ପଶ୍ଚିମ ଓଡ଼ିଶାର ଅନନ୍ୟ ଓ ଅସାଧାରଣ ଅଗ୍ରଜ ବ୍ରହ୍ମପୁରା ମହାପ୍ରଭୁଙ୍କ ବିଭିନ୍ନ ବୋଲି ଗାନ କରାଯାଇ ରଥଟଣା କାର୍ଯ୍ୟ ଆରମ୍ଭ ହୁଏ । ଏହାପରେ ଅନ୍ୟାନ୍ୟ ରଥ ଟଣାଯାଏ । ସମ୍ବଲପୁରର ରଥଟଣାକୁ ନେଇ ରହିଥିବା ଲୋକକଥାକୁ କବି ସତ୍ୟନାରାୟଣ ବହିଦାର ତାଙ୍କ ପୁସ୍ତକରେ ସ୍ଥାନ ଦେଇଛନ୍ତି । ଲୋକଗୀତ ଅନୁଯାୟୀ ପରମ୍ପରା ଓ ବରିଷ୍ଠତା ଭିତ୍ତିରେ ରଥଗୁଡିକ ବଡ ସଡକ ଦେଇ କ୍ରମାନ୍ୱୟରେ ଯାତ୍ରା କରନ୍ତି । ସମ୍ବଲପୁର ରାଜା ବଂଶୀ ଗୋପାଳ ଦେଓଙ୍କ ଦ୍ୱାରା ନିର୍ମିତ କୋଠା ଜଗନ୍ନାଥ ମହାପ୍ରଭୁ ନିଜର ବୃହତ୍ କଳେବର ପାଇଁ ରଥ ଉପରେ ବିଜେ କରିପାରନ୍ତି ନାହିଁ । ମୁଖ୍ୟ ରଥଗୁଡିକ କ୍ରମାନ୍ୱୟରେ ରହି ଦ୍ୱିତୀୟ ଦିନ ଅଧା ବାଟରେ ରହି ତୃତୀୟ ଦିନ ବିନାଖଣ୍ଡି (ଖଣ୍ଡ ନଥିବା ସ୍ଥାନ)ରେ ପହଞ୍ଚନ୍ତି । ସମ୍ବଲପୁରର ବିନାଖଣ୍ଡିରେ ରଥ ମେଳି ହୁଏ । ଏହା ମହାନଦୀ ଓ ହରିଡା ଜୋର ମୁହାଁଣସ୍ଥିତ ବିନାଖଣ୍ଡି ଅବସ୍ଥିତ । ବିନାଖଣ୍ଡିରେ ସ୍ୱତନ୍ତ୍ର ଦକ୍ଷିଣ ମୁହାଁ ପୂଜା ହେଲା ପରେ ରଥଗୁଡିକ ସ୍ୱମନ୍ଦିର ନିକଟସ୍ଥ ଗୁଣ୍ଡିଚା ମନ୍ଦିରକୁ ଫେରି ଆସନ୍ତି । ବିଗତ କିଛିବର୍ଷ ତଳେ ବିନାଖଣ୍ଡିରେ ମାଉସୀମା' ମନ୍ଦିର ନିର୍ମାଣ କରାଯାଇଅଛି । ନବମୀ ଦିନ ବା ଗୁଣ୍ଡିଚା ଅବସ୍ଥାନର ଶେଷ ଦିନରେ ବ୍ରହ୍ମପୁରା ମହାପ୍ରଭୁଙ୍କର ପ୍ରସିଦ୍ଧ ରାଜା ବେଶ ଅନୁଷ୍ଠିତ ହୋଇଥାଏ । ବାହୁଡା ଯାତ୍ରା ଓ ଏକାଦଶୀ ତିଥି ଗୋଟିଏ ଦିନରେ ପଡିଲେ ରଥଗୁଡିକୁ ସେହି ରାତିରେ ମନ୍ଦିରକୁ ଅଣାଯାଏ । କାରଣ ଏକାଦଶୀ ବ୍ରତଧାରୀମାନେ ରଥାରୂଢ଼ ମହାପ୍ରଭୁଙ୍କ ମହାଆଳତି ଦର୍ଶନ କରି ଉପବାସ ବ୍ରତ ସମାପ୍ତ କରନ୍ତି । ଏହାପରେ ପହଣ୍ଡି ବିଜେ କରି ବିଗ୍ରହମାନେ ଗମ୍ଭୀରୀ ବିଜେ କରନ୍ତି । ମନ୍ଦିର ପ୍ରବେଶ ସମୟରେ ବିଭିନ୍ନ ମନ୍ଦିରରେ ବଚନିକା ପାଠ କରାଯାଏ । ଲକ୍ଷ୍ମୀ–ନାରାୟଣ କଳି ପରେ ଶ୍ରୀଜୀଉଙ୍କ ସିଂହାସନ ବିଜେ ସହ ସମ୍ବଲପୁରରେ ରଥଯାତ୍ରା ମହୋତ୍ସବର ପରିସମାପ୍ତି ଘଟେ । ସମ୍ବଲପୁର ସହରର ରଥଯାତ୍ରା ନିଆରା ପରମ୍ପରା ବହନ କରିଥାଏ । ସମ୍ବଲପୁର ରଥଯାତ୍ରା ମହୋତ୍ସବରେ ଷଡଚକ ରଥ, ସମ୍ବଲପୁରୀ ଭାଷାରେ ବୋଲି ରଥଛୁଆଁ, ରାଜାବେଶ, ବିଭିନ୍ନ ଜଗନ୍ନାଥ ମନ୍ଦିରର ବିଭିନ୍ନ ନାମଧ୍ୟେୟ ରଥ, ବିନାଖଣ୍ଡିରେ ସମସ୍ତ ରଥମାନଙ୍କର ମିଳନ ଓ ବୟସ୍କମାନେ ଛୋଟ ପିଲାଙ୍କୁ ରଥ ଖର୍ଚ୍ଚ ପ୍ରଦାନ ଇତ୍ୟାଦି ସମ୍ବଲପୁର ମାଟିର ଐତିହ୍ୟ, ସଂସ୍କୃତି ଓ ପରମ୍ପରା ଚିହ୍ନ ବହନ କରିଥାଏ ।

ଇତିହାସ ବିଭାଗ
ସନାତନ ହରିଚନ୍ଦନ ମହାବିଦ୍ୟାଳୟ
ମଦନପୁର, ଖୋର୍ଦ୍ଧା–୭୫୨୦୫୪

# ରହସ୍ୟମୟ ଜଗନ୍ନାଥ

ଡକ୍ଟର ଶରତ ଚନ୍ଦ୍ର ବିଶ୍ୱାଳ

ବୈଦିକ ଯୁଗରେ ଆର୍ଯ୍ୟମାନଙ୍କ ମଧ୍ୟରେ ମୂର୍ତ୍ତି ଉପାସନା ପ୍ରଚଳିତ ନଥିଲା । ପ୍ରଥମ ଦାରୁ ପୂଜାର ସନ୍ଧାନ ଆମ୍ଭେମାନେ ପୃଥିବୀର ସବୁଠାରୁ ପ୍ରାଚୀନ ଗ୍ରନ୍ଥ ଋକ୍ ବେଦରେ ପାଇଥାଉ । ବୈଦିକ ଆର୍ଯ୍ୟମାନେ ସେତେବେଳେ ପିପ୍ପଳ, ବଟ, ଉଦୁମ୍ବର, ବିଲ୍ୱ ଏପରିକି ପଳାସ ପ୍ରଭୃତି ବୃକ୍ଷଗୁଡିକୁ ବିଭିନ୍ନ ଦେବଦେବୀଙ୍କ ନାମରେ ପୂଜା କରୁଥିଲେ । ସେହି ଯୁଗରୁ ବୃକ୍ଷପୂଜା ଏ ପର୍ଯ୍ୟନ୍ତ ହିନ୍ଦୁ ଧର୍ମରେ ପ୍ରଚଳିତ ହୋଇଆସିଛି । ଏହି ବୃକ୍ଷପୂଜା ବେଦରେ ଯୂପ ପୂଜା ନାମରେ କଥିତ ।



ଶ୍ରୀକ୍ଷେତ୍ରରେ ପୂଜିତ ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ ଆଦିବାସୀ ଶବରମାନଙ୍କ ପୂଜିତ ଦେବତା ରୂପେ ଗବେଷକମାନେ ସ୍ୱୀକାର କରିଛନ୍ତି । ଅତଏବ, ଜଗନ୍ନାଥ ଯେ ଆଦିବାସୀ ପୂଜିତ ଦେବତା, ଏହା ଗ୍ରହଣୀୟ ।

ଆଦିବାସୀମାନଙ୍କ ମଧ୍ୟରେ ପ୍ରଥମେ ବୃକ୍ଷ ଉପାସନା ପ୍ରଚଳିତ ଥିଲା । ସେମାନେ ଏକ ନିର୍ଦ୍ଦିଷ୍ଟ ସଙ୍କେତ ଥିବା ବୃକ୍ଷରୁ ଖଣ୍ଡେ କାଠ କାଟି ନିର୍ଦ୍ଦିଷ୍ଟ ଆକୃତିର ଖମ୍ବ ନିର୍ମାଣ କରି ପୂଜା କରୁଥିଲେ । ଖମ୍ବଗୁଡିକୁ ସେମାନେ ବସ୍ତି ବାହାରେ ସଂସ୍ଥାପନ କରୁଥିଲେ । କଳାହାଣ୍ଡି ଓ ଅନ୍ୟ କେତେକ ଅଞ୍ଚଳରେ ଆଦିବାସୀମାନେ ତିନିଗୋଟି ଖମ୍ବ ପୂଜା କରୁଥିବାର ଜଣାଯାଏ । ଆଦିବାସୀ ଶବର ସଂପ୍ରଦାୟରେ ଏହି ଖମ୍ବ ଦେବତାଙ୍କୁ ସେମାନେ ଜଗନ୍ ବା ଜଗନ୍ତ ବୋଲି କହୁଥିବାର ଜଣାଯାଏ । ସେଥିପାଇଁ, ଆଦିବାସୀମାନଙ୍କର ଏହି ଖମ୍ବ ବା ଦାରୁ ଦେବତା ଉପାସନାରୁ ଦାରୁ ଦେବତା ଜଗନ୍ନାଥ ଉପାସନାର ଉତ୍ପତ୍ତି ହୋଇଛି ବୋଲି ଗବେଷକମାନେ ମତ ଦେଇଛନ୍ତି ।

ତେବେ ଏଠାରେ ଗୋଟିଏ ପ୍ରଶ୍ନ ଉଠେ ଯେ ଦାରୁଦେବତାଙ୍କର ଉପାସନା ଆଦିବାସୀ ସଂସ୍କୃତିରୁ ଆସିଥିଲେ ମଧ୍ୟ ପରବର୍ତ୍ତୀ ସମୟରେ ଯେତେବେଳେ ଶ୍ରୀମନ୍ଦିରର ପ୍ରାଚୀନ ରୀତିନୀତିରେ ବହୁ ପରିବର୍ତ୍ତନ ଅଣାଯାଇଥିଲା, ସେତେବେଳେ ମଧ୍ୟ ଦାରୁମୂର୍ତ୍ତି ପରିବର୍ତ୍ତେ ଦୀର୍ଘସ୍ଥାୟୀ ଧାତୁ ବା ପ୍ରସ୍ତର ମୂର୍ତ୍ତି ପ୍ରତିଷ୍ଠା କରାଯାଇପାରିଥାନ୍ତା । ଯେଉଁ ଓଡିଆ ଶିଳ୍ପୀ ଶ୍ରୀମନ୍ଦିରର ଗାତ୍ରରେ ତା'ର ଶିଳ୍ପ ନୈପୁଣ୍ୟର ଚରମ ପରାକାଷ୍ଠା ପ୍ରଦର୍ଶନ କରି ବିଶ୍ୱବିଦିତ, ସେହି ଶିଳ୍ପୀ ଚତୁର୍ଦ୍ଧାମୂର୍ତ୍ତିଙ୍କର ମନୋରମ ମୂର୍ତ୍ତି ନିର୍ମାଣ କରି ତା'ର କାରିଗରୀ କଳାର ଉତ୍କର୍ଷତା କାଳକାଳକୁ ପ୍ରଦର୍ଶନ କରିପାରିଥାନ୍ତା । କିନ୍ତୁ ଏପରି ନ ହେବାର କାରଣ କ'ଣ ହୋଇପାରେ ?



କାଷ୍ଠ ବା ଦାରୁ ନିର୍ମିତ ବିଗ୍ରହ ଉପାସନାର ପୃଷ୍ଠଭୂମିରେ କେତେଗୁଡିଏ ବଳିଷ୍ଠ ଯୁକ୍ତି ଉପାସ୍ଥାପନା କରାଯାଇଛି। ପ୍ରଥମତଃ, ଦାରୁ ବା କାଷ୍ଠ ବିଗ୍ରହରେ ପରଂବ୍ରହ୍ମଙ୍କର ଅଧିଷ୍ଠାନ ହିଁ ଜୀବଜଗତ ତିଷ୍ଠି ରହିବା ପାଇଁ ବୃକ୍ଷ ସଂପଦର ଯେଉଁ ମହତ୍ତ୍ୱପୂର୍ଣ୍ଣ ଭୂମିକା ସେ ସଂପର୍କରେ ଆମକୁ ସର୍ବଦା ସଚେତନ କରାଇଥାଏ। ବୃକ୍ଷ ହିଁ ଜୀବନ, ବୃକ୍ଷ ହିଁ ପୂଜ୍ୟ– ଏହି ବାର୍ତ୍ତା ଉଦ୍‌ଘୋଷଣ କରନ୍ତି ଚତୁର୍ଦ୍ଧାମୂର୍ତ୍ତି। ଦ୍ୱିତୀୟତଃ, ବରାହମିହିରଙ୍କର 'ବୃହତ୍ ସଂହିତା'ରେ ବର୍ଣ୍ଣନା ରହିଛି ଯେ କାଷ୍ଠ ବା ଦାରୁ ବିଗ୍ରହ ଉପାସନା କରାଗଲେ ଶ୍ରୀ, ବଳ, ବୀର୍ଯ୍ୟ, ବିଜୟ ଓ ଆୟୁ ଲାଭ ହୋଇଥାଏ। ଆଦିବାସୀମାନେ ନିର୍ଦ୍ଦିଷ୍ଟ ବୃକ୍ଷରୁ ଖମ୍ବ ଦେବତାଙ୍କ ଦାରୁ ସଂଗ୍ରହ କଲାଭଳି ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନଙ୍କ ବିଗ୍ରହ ନିର୍ମାଣ ନିମନ୍ତେ କେବଳ ନିମ୍ବ ବୃକ୍ଷକୁ ଦାରୁ ରୂପେ ଗ୍ରହଣ କରାଯାଇଛି। ତୃତୀୟତଃ, ବାମଦେବ ସଂହିତାରେ ବିଭିନ୍ନ ବୃକ୍ଷ ମଧ୍ୟରେ ନିମ୍ବ ବୃକ୍ଷ ପୂଜ୍ୟ ତଥା ଉତ୍ତମ ବୃକ୍ଷ ରୂପେ ବିବେଚିତ କରାଯାଇ ଶାସ୍ତ୍ରରେ କୁହାଯାଇଛି, 'ନିମ୍ବ ପ୍ରଧାନ ମେତେଷାଂ ପ୍ରତିମାନାଂ ବିନିର୍ମିତ୍ୟେ'। ସେହିଭଳି, ଭବିଷ୍ୟ ପୁରାଣରେ କୁହାଯାଇଛି – 'ନିମ୍ବାଦ୍ୟାଃ ସର୍ବବର୍ଣ୍ଣାନାଂ ବୃକ୍ଷା ସାଧାରଣ ସ୍ଥିତାଃ'। ଚତୁର୍ଥତଃ, ଏହା ପିତା ହୋଇଥିବାରୁ ସହଜରେ କୀଟ ନଷ୍ଟ ଦ୍ୱାରା ହୋଇନଥାଏ। ପ୍ରାଚୀନ ନିମ୍ବ ବୃକ୍ଷରେ ମଳୟ ଲାଗିଲେ ତାହା ଚନ୍ଦନରେ ପରିଣତ ହୋଇଥାଏ।

ଶ୍ରୀକ୍ଷେତ୍ରରେ ଦାରୁ ଉପାସନା ଏବଂ ଏହାର ପ୍ରାଚୀନତା ସଂପର୍କରେ ବିଭିନ୍ନ ପୁରାଣ ଶାସ୍ତ୍ର ଆଦିରୁ ଆମକୁ ସୂଚନା ମିଳିଥାଏ। ଋକ୍ ବେଦର ଭାଷ୍ୟକାର ସାୟଣାର୍ଯ୍ୟଙ୍କ ମତରେ ସେହି ପବିତ୍ର ଦାରୁ ପୁରୁଷୋତ୍ତମ ବା ଶ୍ରୀଜଗନ୍ନାଥ ବେଦରେ ନିମ୍ନ ପ୍ରକାରେ ବର୍ଣ୍ଣିତ ହୋଇଛନ୍ତି ।

ସେହି ଦୂରଦେଶସ୍ଥ ସିନ୍ଧୁତୀରରେ ଅପୌରୁଷେୟ ଅବିନାଶୀ ପୁରୁଷୋତ୍ତମ ନାମକ ଯେଉଁ ଦାରୁ ଜଳରେ ଭାସୁ ଅଛନ୍ତି, ତାହାର ଆଶ୍ରୟ ଗ୍ରହଣ କର। ତାହାଙ୍କର ଉପାସନା କରି ଉତ୍କୃଷ୍ଟ ବୈଷ୍ଣବ ଲୋକକୁ ଯାଅ ।

କପିଳ ସଂହିତାରେ କଥିତ ହୋଇଛି ଯେ ନୀଳାଚଳ କ୍ଷେତ୍ରରେ ଦାରୁ ବ୍ରହ୍ମ ସ୍ୱରୂପୀ ଦେବତା ଅଧିଷ୍ଠିତ ହୋଇଅଛନ୍ତି। ଯଥା–

'କ୍ଷେତ୍ର ନୀଳାଚଳଂ ପୁଣ୍ୟ ଦାରୁବ୍ରହ୍ମ ସ୍ୱରୁପିଣମ୍'।

(କପିଳ ସଂହିତା – ନୀଳାଚଳ ମାହାତ୍ମ୍ୟ)

ବ୍ରହ୍ମ ପୁରାଣରେ ବର୍ଣ୍ଣିତ ହୋଇଛି ଯେ ପୁରୁଷୋତ୍ତମ ସନାତନ ବଟବୃକ୍ଷ ରୂପରେ ପୂଜା ପାଉଛନ୍ତି। ଯଥା –

'ପ୍ରାପ୍ତବାନ୍ ତତ୍ପଦଂ ଦିବ୍ୟଂ ମହାପ୍ରଳୟ କାରଣମ୍
ପୁରୁଷେଶମିତି ଖ୍ୟାତଂ ବଟରାଜଂ ସନାତନମ୍'।

ସ୍କନ୍ଦ ପୁରାଣରେ ଦାରୁମୂର୍ତ୍ତିର ମାହାତ୍ମ୍ୟ ବର୍ଣ୍ଣନା ହେବା ସହ ଶ୍ରୁତିରେ ମଧ୍ୟ ଦାରୁ ଉପାସନା ପ୍ରସଙ୍ଗ ଥିବା ଲିଖିତ ହୋଇଛି। ସେହି ଦାରୁକୁ ଉପାସନା କଲେ ମୁକ୍ତିଲାଭ ହୋଇଥାଏ । ଆଉ ମଧ୍ୟ ଯେଉଁ ଦାରୁଟି ଉପାସିତ ହୋଇ ଆସୁଥିଲେ ସେ 'ଏକକ' ଥିଲେ 'ଅନେକ' ନଥିଲେ। ପରବର୍ତ୍ତୀ ଯୁଗରେ ଅବଶ୍ୟ 'ତ୍ରିଧା' ଏପରିକି ଚତୁର୍ଦ୍ଧା ରୂପରେ ମଧ୍ୟ ଉପାସିତ ହେଲେ।

କେବଳ ସେତିକି ନୁହେଁ, ପାଲି ଜାତକରେ ମଧ୍ୟ ବୃକ୍ଷ ଦେବତାଙ୍କ ନାମ ଦେଖିବାକୁ ମିଳେ।

(ଜାତକ – ଭଦନ୍ତ କୌଶଲ୍ୟାୟନ, ୩ୟ ଖଣ୍ଡ ବ୍ୟଗ୍ଘ ଜାତକ, ପୃ– ୮୧ଷ୍ଠା)

ଜାତକଗୁଡିକ ବୌଦ୍ଧଧର୍ମମୂଳକ ଗାଥା ହୋଇଥିବାରୁ ଅନ୍ୟ ଧର୍ମର ଦେବତାମାନଙ୍କୁ ନ୍ୟୂନ କରି ଗଳ୍ପ ସୃଷ୍ଟି କରାଯାଇଥିବା ସ୍ୱାଭାବିକ।

ଆଦି ଶଙ୍କରାଚାର୍ଯ୍ୟ ଶ୍ରୀଜୀଉଙ୍କୁ 'ବ୍ରହ୍ମଦାରୁ' ବୋଲି ସମ୍ବୋଧନ କରି ନିଜର ଭକ୍ତି ନିବେଦନ କରିଛନ୍ତି।

'ନୀଳାଦ୍ରୌ ଶଙ୍ଖ ମଧ୍ୟେ ଶତଦଳ କମଳେ ରତ୍ନସିଂହାସନସ୍ଥଂ
ସର୍ବାଳଙ୍କାରଯୁକ୍ତଂ ନବଘନ ରୁଚିରଂ ସଂଯୁତଂ ଚାଗ୍ରଜେନ
ଭଦ୍ରାୟାଃ ବାମଭାଗେ ରଥଚରଣଯୁତଂ
ବ୍ରହ୍ମ ରୁଦ୍ରେନ୍ଦ୍ର ବନ୍ଦ୍ୟମ୍
ବେଦାନାଂ ସାରମୀଶଂ ସ୍ୱଜନ ପରିବୃତଂ ବ୍ରହ୍ମଦାରୁଂ ନମାମି'।



ଶାରଳା ମହାଭାରତରେ ଇନ୍ଦ୍ରଦ୍ୟୁମ୍ନ ଶ୍ରୀକ୍ଷେତ୍ରକୁ ଆସିବା ପୂର୍ବରୁ ସେଠାରେ ଦାରୁଦେବତା ଉପାସିତ ହେଉଥିବା ବିଷୟ ଉଲ୍ଲେଖ ଅଛି । ଶବରୀ(ଲଳିତା) ଚନ୍ଦନବନ ମଧ୍ୟରେ ବିପ୍ରକୁ(ବିଦ୍ୟାପତି) ଅନ୍ଧପୁତୁଳି ବାନ୍ଧି ବାଟ କଢାଇ ଦାରୁବ୍ରହ୍ମ ଦେଖାଇବା ପରେ ସେ ଯାଇ ଇନ୍ଦ୍ରଦ୍ୟୁମ୍ନଙ୍କୁ କହିଲେ –

'ଦାରୁବ୍ରହ୍ମ ମୂରତି ମୁଁ ଦେଖିଲି ବୋଲିବ
ଯମନିକ ବନେ ଏବେ ଚାଲନ୍ତୁ ହେ ଦେବ'

– ଶାରଳା ମହାଭାରତ, ବନପର୍ବ, ୨୧୦ ପୃଷ୍ଠା ।

ପଞ୍ଚଦଶ ଶତାବ୍ଦୀ ବେଳକୁ ସ୍ୱୀକୃତ ହୋଇଥିଲା ଯେ ରତ୍ନସିଂହାସନରେ ବିଜେ କରିଥିବା ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ ଏହି ଚାରିମୂର୍ତ୍ତି ଚାରି ନୁହଁନ୍ତି, ଏମାନେ ଚତୁର୍ଦ୍ଧାମୂର୍ତ୍ତି । ଚତୁର୍ଦ୍ଧା ଶବ୍ଦର ଅର୍ଥ ହେଉଛି ଏକତତ୍ତ୍ୱ, ଯାହା ଚାରିପ୍ରକାରେ ଅଭିବ୍ୟକ୍ତ ହୋଇଛି । ଏହାକୁ ଇଂରାଜୀରେ Four Fold ବୋଲି କୁହାଯାଇଛି । ଅର୍ଥାତ୍, ଏହା Four ନୁହେଁ Four Fold । ଏହି ଚତୁର୍ଦ୍ଧାମୂର୍ତ୍ତି ହେଉଛନ୍ତି 'ଶ୍ରୀଜଗନ୍ନାଥ' । ଅର୍ଥାତ୍, ଶ୍ରୀମନ୍ଦିର ହେଉଛି ଚତୁର୍ଦ୍ଧାମୂର୍ତ୍ତି ଜଗନ୍ନାଥଙ୍କ ମନ୍ଦିର । ସେହି ଏକ ଦେବତା ଚାରି ରୂପରେ ପ୍ରକାଶିତ ।

ତେବେ ଏହି ଚତୁର୍ଦ୍ଧାମୂର୍ତ୍ତିଙ୍କର ମୂଳବୀଜ ବା କେନ୍ଦ୍ରବିନ୍ଦୁ ହେଉଛନ୍ତି ଶ୍ରୀଜଗନ୍ନାଥ । ସମସ୍ତ ବିଗ୍ରହଙ୍କର ଏକ ରୂପ ବା ଏକ ଅକ୍ଷର ରୂପେ ଜଗନ୍ନାଥଙ୍କୁ ଗ୍ରହଣ କରାଯାଇଛି । ଶ୍ରୀଜଗନ୍ନାଥ ଚରିତାମୃତ ଗ୍ରନ୍ଥରେ ବର୍ଣ୍ଣନା କରାଯାଇଛି–

ଶ୍ରୀଜଗନ୍ନାଥ ହେଉଛନ୍ତି ସମସ୍ତ ବିଗ୍ରହଙ୍କର ସୃଷ୍ଟିକର୍ତ୍ତା ଓ ସମସ୍ତ ବିଗ୍ରହ ହେଉଛନ୍ତି ଶ୍ରୀଜଗନ୍ନାଥଙ୍କର ଅଂଶ ବିଶେଷ । ଏହି ଚତୁର୍ଦ୍ଧାମୂର୍ତ୍ତି ଚାରିଗୋଟି ଭିନ୍ନ ଭିନ୍ନ ହେଲେହେଁ ସେମାନେ ଅଦ୍ୱୟ ପରଂବ୍ରହ୍ମଙ୍କର ଚତୁର୍ବିଧ ପ୍ରକାଶ ।

'ଏକଂ ସଦ୍‌ବିପ୍ରା ବହୁଧା ବଦନ୍ତି' – ଏହି ଉପନିଷଦୀୟ ସିଦ୍ଧାନ୍ତ – ଅର୍ଥାତ୍, ଏକରୁ ଅନେକ ଓ ଅନେକରୁ ଏକ ସ୍ଥିତି ଏହାଦ୍ୱାରା ସିଦ୍ଧ ହୋଇଥାଏ ।

ତେବେ ଭକ୍ତଟିଏ ଶ୍ରୀମନ୍ଦିର ରତ୍ନସିଂହାସନରେ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଦର୍ଶନ କଲେ ମନରେ ସ୍ୱତଃ ପ୍ରଶ୍ନ ଉଠେ, ଶ୍ରୀଜୀଉମାନଙ୍କ ବିଗ୍ରହ ଏପରି ଅସଂପୂର୍ଣ୍ଣ ହେବାର କାରଣ କ'ଣ ହୋଇପାରେ ? ଏହି ପ୍ରଶ୍ନର ଉତ୍ତର ପାଇଁ ବ୍ରହ୍ମଙ୍କର ସ୍ୱରୂପ ସଂପର୍କରେ ଆଲୋଚନା କରାଯିବା ଦରକାର ।

ଶ୍ୱେତାଶ୍ୱେତ ଉପନିଷଦରେ ପରମବ୍ରହ୍ମଙ୍କର ପରିଚୟ ବର୍ଣ୍ଣନା କରାଯାଇଛି–

ଯେଉଁ ଶକ୍ତି ହସ୍ତପଦ ନଥାଇ ମଧ୍ୟ ସର୍ବାଧିକାରୀ, ଚକ୍ଷୁ ନଥାଇ ସର୍ବଦର୍ଶୀ, କର୍ଣ୍ଣ ନଥାଇ ସର୍ବ ଶ୍ରୋତା, ସେ ହିଁ ପରମବ୍ରହ୍ମ ।

ବେଦରେ ମଧ୍ୟ କୁହାଯାଇଛି –

'ସହସ୍ର ଶୀର୍ଷାଃ ପୁନଃ ଅପାଣିପାଦ' ।

ଅର୍ଥାତ୍, ବ୍ରହ୍ମ ସହସ୍ର ମସ୍ତକ ବିଶିଷ୍ଟ ହେଲେ ମଧ୍ୟ ହସ୍ତ, ପଦବିହୀନ ଅଟେ ।

ଆଦି ଶଙ୍କରାର୍ଯ୍ୟଙ୍କ ମତରେ ବ୍ରହ୍ମ ନିର୍ଗୁଣ ଅଟନ୍ତି । ବ୍ୟାସଦେବ ବ୍ରହ୍ମର ସଜ୍ଞା ଦେବାକୁ ଯାଇ କହିଛନ୍ତି – 'ଜନ୍ମାଦ୍ୟସ୍ୟ ଯତଃ' । ଅର୍ଥାତ୍, ଏହି ଜଗତର ସୃଷ୍ଟି, ସ୍ଥିତି, ଲୟ ଯାହାଙ୍କ ଦ୍ୱାରା – ସେ ବ୍ରହ୍ମ ଅଟନ୍ତି । ପାଣିନୀଙ୍କ ବ୍ୟାକରଣରେ ବ୍ରହ୍ମ ଏକ ଅବ୍ୟୟ ପଦ ଓ ଏହାର ଲିଙ୍ଗ, ବିଭକ୍ତି ନାହିଁ ବୋଲି ଦର୍ଶାଯାଇଛି । ସନ୍ଥ ତୁଳସୀ ଦାସ ବର୍ଣ୍ଣନା କରିଛନ୍ତି–

ବିନୁପଦ ଚଳଇ ସୁନଇ ବିନୁକାନା
କରବିନୁ କରମ କରଇ ବିଧିନାନା
ଆନନ ରହିତ ସକଳ ରସଭୋଗୀ
ବିନୁବାନୀ ବକତା ବଡ ଯୋଗୀ ।

ଅର୍ଥାତ୍, ଯେଉଁ ଶକ୍ତି ହସ୍ତପଦ ନଥାଇ ମଧ୍ୟ ସମସ୍ତ କାର୍ଯ୍ୟ କରିପାରନ୍ତି, ଚାରିଆଡେ ଯାଇପାରନ୍ତି, ଚକ୍ଷୁ ନଥାଇ ମଧ୍ୟ ସବୁ ଦେଖିପାରନ୍ତି, କାନ ନଥାଇ ମଧ୍ୟ ସବୁ ଶୁଣି ପାରନ୍ତି, ସେ ହେଉଛନ୍ତି ପୁରୁଷୋତ୍ତମ, ପରମାତ୍ମା, ପରମବ୍ରହ୍ମ ।

ଉପରୋକ୍ତ ସମସ୍ତ ବର୍ଣ୍ଣନାର ସାରାଂଶ ହେଉଛି ଯେ ପରଂବ୍ରହ୍ମ ହେଉଛନ୍ତି, ଅସୀମ, ଅଚିନ୍ତ୍ୟ, ନିର୍ଗୁଣ । ହସ୍ତ ପଦ ନଥାଇ ସେ ସର୍ବାଧିକାରୀ, ଚକ୍ଷୁ ନଥାଇ ସର୍ବଦର୍ଶୀ, କର୍ଣ୍ଣ ନଥାଇ



ସର୍ବଶ୍ରୋତା, ସର୍ବଜ୍ଞାତା ଓ ସର୍ବଶକ୍ତିମାନ ପୁରୁଷୋତ୍ତମ। ଅସଂପୂର୍ଣ୍ଣ ଦାରୁବ୍ରହ୍ମ ଜଗନ୍ନାଥ ହେଉଛନ୍ତି ସେହି ପରଂବ୍ରହ୍ମଙ୍କର ପ୍ରତୀକ ମାତ୍ର। ସେହି ଅସୀମ, ଅଚିନ୍ତ୍ୟ, ନିର୍ଗୁଣ ପରମବ୍ରହ୍ମଙ୍କୁ ଏକ ସ୍ଥୂଳ ତଥା ପୂର୍ଣ୍ଣାଙ୍ଗ କଳେବରରେ ସୀମିତ କରିବା ଯେହେତୁ ସମ୍ଭବ ନୁହେଁ, ତେଣୁ ସେ ଅସଂପୂର୍ଣ୍ଣ।

ଉପନିଷଦଗୁଡ଼ିକରେ ଆତ୍ମଜ୍ଞାନ ଲାଗି ମାନସିକ ତ୍ୟାଗ ସହିତ ବାହ୍ୟିକ ତ୍ୟାଗର ଆବଶ୍ୟକତା ଉପରେ ଗୁରୁତ୍ୱାରୋପ କରାଯାଇଛି।  କଠ ଉପନିଷଦରେ ବାହ୍ୟ ତ୍ୟାଗର ସ୍ୱରୂପ ବର୍ଣ୍ଣନା କରିବାକୁ ଯାଇ ଭୋଗଲାଳସା ପରିହାରକୁ ସଂପୂର୍ଣ୍ଣ ଗୁରୁତ୍ୱ ଦିଆଯାଇଛି। ଅର୍ଥାତ୍, ଇନ୍ଦ୍ରିୟ ଦମନ ହିଁ ଏହାର ଏକମାତ୍ର ପଥ ବୋଲି ବର୍ଣ୍ଣନା କରାଯାଇଛି।

'ଯଦା ସଂହରତେ ଚାୟଂ କୁର୍ମୋଙ୍ଗା ନୀବ ସର୍ବଶଃ।
ଇନ୍ଦ୍ରିୟାଣି ଇନ୍ଦ୍ରିୟାର୍ଥେଭ୍ୟ ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା'।

ଅର୍ଥାତ୍, କୂର୍ମ ଭଳି ଇନ୍ଦ୍ରିୟମାନଙ୍କୁ ଯେ ନିଜର ଆବରଣ ଭିତରେ ରଖିପାରେ ସେ ସ୍ଥିତପ୍ରଜ୍ଞ। ଶ୍ରୀଜୀଉଙ୍କ ବିଗ୍ରହ ମଧ୍ୟ ଏହାର ପ୍ରତୀକ। କାରଣ ସେ ଅପାଣିପାଦ, ଚରଣ ନଥାଇ ସେ ତ୍ରିଚରଣ (ବୌଦ୍ଧଧର୍ମର ତ୍ରିଶରଣ ନୌକାଭଳି), ବକ୍ଷ ନଥାଇ ସେ କୌସ୍ତୁଭମଣ୍ଡିତ ବକ୍ଷ।

ପୁନଶ୍ଚ ଉପରୋକ୍ତ ନିବୃତ୍ତି ମାର୍ଗ ସଂପର୍କିତ ଯୁକ୍ତିର ଆଉ ଏକ ବଳିଷ୍ଠ ପ୍ରମାଣ ହେଉଛି ମନ୍ଦିର ନିର୍ମାଣ ଶୈଳୀର ରହସ୍ୟ ଓ ବାଇଶି ପାହାଚ ତାହାର ଏକ ପ୍ରମାଣ । ଯୋଗସାର ସଂଗ୍ରହ ଗ୍ରନ୍ଥରେ ବିଜ୍ଞାନଭିକ୍ଷୁ କାମ, କେଳି, ସମ୍ଭୋଗ, ମିଥୁନ, ଉତ୍କଣ୍ଠା, ଅସୂୟା, ଈଶୂନତା, କାପଟ୍ୟ ପ୍ରଭୃତି ୨୨ଟି ଆସକ୍ତିର ସୂଚନା ଦେଇଛନ୍ତି, ଯାହା ସାଂସାରିକ ମନୁଷ୍ୟ ପକ୍ଷରେ ଦେଖାଯାଏ। ବ୍ୟକ୍ତି ଏହି ବାଇଶିଟି ପାହାଚକୁ ଅତିକ୍ରମ କଲେ ଚରମରେ ମନ୍ଦିର ଭିତରେ ପରମାତ୍ମାଙ୍କ ସହିତ ଆତ୍ମାର ମଧୁର ମିଳନ ହୁଏ ଓ ଜୀବ ଅଜୀବରେ ପରିଣତ ହୁଏ। ସେ ହୁଏ ଜୀନ ବା ଜେତା।

ଦାରୁବ୍ରହ୍ମ ଜଗନ୍ନାଥ ହେଉଛନ୍ତି ପ୍ରତୀକାତ୍ମକ ମୂର୍ତ୍ତି। ସେ ଯେତିକି ତୃମୟ, ତତୋଅଧିକ ରହସ୍ୟମୟ। ସେ ପ୍ରତୀକାତ୍ମକ ହୋଇଥିବାରୁ ତାଙ୍କଠାରେ ବିଭିନ୍ନ ଧର୍ମ ବା ମତବାଦର ଆରୋପ କରିବାରେ ପ୍ରତିବନ୍ଧକ ନଥାଏ। ବାସ୍ତବରେ ବିଭିନ୍ନ ଧର୍ମ ଓ ମତବାଦ ସହ ଏହି ଜଗନ୍ନାଥ ଧର୍ମର ସାମଞ୍ଜସ୍ୟ ଓ ଏହାର ନୂଆ ନୂଆ ବ୍ୟାଖ୍ୟା ହିଁ ଏହି ଧର୍ମକୁ ସର୍ବଜନଗ୍ରହୀତା କରାଇପାରିଛି। ବିଶ୍ୱମାନବର ପ୍ରତୀକ ରୂପେ ବଳଭଦ୍ରଙ୍କୁ ଶ୍ୱେତାଙ୍ଗ, ଜଗନ୍ନାଥଙ୍କୁ କୃଷ୍ଣାଙ୍ଗ, ସୁଭଦ୍ରାଙ୍କୁ ପୀତାଙ୍ଗ ଏବଂ ସୁଦର୍ଶନଙ୍କୁ ଲୋହିତାଙ୍ଗ ଭାବେ ଗ୍ରହଣ କରାଯାଇଛି। ମାନବବାଦର ପ୍ରତୀକ ଶ୍ରୀଜଗନ୍ନାଥ କୌଣସି ନିର୍ଦ୍ଦିଷ୍ଟ ଧର୍ମର ସଂକୀର୍ଣ୍ଣ ଗଣ୍ଡି ଭିତରେ ସୀମିତ ନ ହୋଇ ଆଜି ବିଶ୍ୱ ବ୍ୟାପକ ଓ ଗଣଦେବତା ହୋଇପାରିଛନ୍ତି ଏବଂ ଜଗନ୍ନାଥ ସମଗ୍ର ବିଶ୍ୱକୁ କୋଳାଗ୍ରତ କରିବାକୁ ସମର୍ଥ ହୋଇଛନ୍ତି ।

ପ୍ରାଧ୍ୟାପକ, ଇତିହାସ ବିଭାଗ
ଡେଲାଙ୍ଗ ମହାବିଦ୍ୟାଳୟ
ଡେଲାଙ୍ଗ, ପୁରୀ



# ଯଥା ଦେହେ ତଥା ଦେବେ

**ଡକ୍ଟର ଆରତି କର**

ଶ୍ରୀଜଗନ୍ନାଥ ଅନନ୍ତ, ଅବ୍ୟକ୍ତ, ଅଚିନ୍ତ୍ୟ, ଅସୀମ ଓ ଅରୂପ ହେଲେ ମଧ୍ୟ ରହସ୍ୟମୟ ପ୍ରଭୁ କେଉଁ ଅନାଦି କାଳରୁ ଦାରୁବିଗ୍ରହ ଧାରଣ ପୂର୍ବକ କୋଟି କନ୍ଦର୍ପର ରୂପକୁ ଜିଣି ଉଭା ହୋଇଛନ୍ତି ଶ୍ରୀମନ୍ଦିରର ରତ୍ନବେଦୀରେ । ପୁରୁଷୋତ୍ତମ କ୍ଷେତ୍ରରେ ପ୍ରଭୁ ଶ୍ରୀଜଗନ୍ନାଥ କୌଣସି ଗୋଟିଏ ସଂପ୍ରଦାୟର ଉପାସ୍ୟ ନ ସାଜି ତାଙ୍କର ଭାବଡୋରିରେ ସମଗ୍ର ଜଗତକୁ ଆକର୍ଷଣ କରି ପୂଜାପାଉଛନ୍ତି ପତିତପାବନ ଶ୍ରୀଜଗନ୍ନାଥ ଭାବରେ ।



ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଉପରେ ନାନା ଧର୍ମଗୋଷ୍ଠୀର ଦୃଷ୍ଟି ଅତି ନିବିଡ ଭାବରେ ପଡିଛି ସତ, ମାତ୍ର ଜଗନ୍ନାଥ ସଂସ୍କୃତିର ବିରାଟ ବଳୟ ମଧ୍ୟରେ ସେସବୁ ଲୀନ ହୋଇଯାଇ ବରଂ ଶ୍ରୀଜଗନ୍ନାଥ ନାନା ମତର ରଙ୍ଗରେ ରଞ୍ଜିତ ହୋଇଛନ୍ତି ସିନା, ନିନ୍ଦିତ ହୋଇ ନାହାନ୍ତି । ସମୟର ପ୍ରବାହରେ ଶ୍ରୀଜଗନ୍ନାଥ ବହୁ ଆକ୍ରମଣ ଓ ଅତ୍ୟାଚାରର ସମ୍ମୁଖୀନ ହୋଇଛନ୍ତି– ଲୁଣ୍ଠନ ଓ ଦହନର ଶିକାର ହୋଇଛନ୍ତି । ଘରେ ବିପତ୍ତି ପଡିଲେ ଗୃହସ୍ଥ ଯେପରି ତା'ର ଗଣ୍ଠିଧନକୁ ସାଇତି ରଖେ, ଲୁଚାଇ ରଖେ, ଠିକ୍ ସେମିତି ଉତ୍କଳର ଗଣ୍ଠିଧନ ଶ୍ରୀଜଗନ୍ନାଥଙ୍କୁ କେତେବେଳେ ପାତାଳି କରି ଦିଆଯାଇଛି ତ ପୁଣି କେତେବେଳେ ହାତୀ ପିଠିରେ ଦୌଡ଼ିରେ ବନ୍ଧା ହୋଇ ସେ ବୁହା ହୋଇଛନ୍ତି– ଏସବୁ ସତ୍ତ୍ୱେ ଜଗନ୍ନାଥ ମହିମା ଆଦୌ ନିଷ୍ପ୍ରଭ ହୋଇଯାଇନି ବରଂ ସେ ହିଁ ପଥଦ୍ରଷ୍ଟ ସାଜି କେତେବେଳେ କ'ଣ କରିବାକୁ ପଡିବ, ଓଡ଼ିଆ ଜାତିକୁ ନିର୍ଦ୍ଦେଶ ଦେଇଛନ୍ତି ।

ସେ ଅସାଧାରଣ, ଅତୁଳନୀୟ ଓ ଅବର୍ଣ୍ଣନୀୟ । ସେ ହିଁ ଆମମାନଙ୍କର ଉପଦେଷ୍ଟା, ସର୍ବଦ୍ରଷ୍ଟା । ମନ୍ତ୍ର, ତନ୍ତ୍ର, ପୂଜାବିଧି କିଛି ନଥାଇ ମଧ୍ୟ ପ୍ରେମ ବା ଭକ୍ତି ଭାବରେ ସେ ବନ୍ଧା ପଡିଯାଆନ୍ତି ।

ଆଚାଣ୍ଡାଳ ବ୍ରାହ୍ମଣ ସମସ୍ତେ ତାଙ୍କର ନିଜର । ସେ ଦାରୁବ୍ରହ୍ମ ହେଲେ ମଧ୍ୟ ସାଧାରଣ ମଣିଷ ପରି ତାଙ୍କର ଲୀଳା । ତେଣୁ ସେଦିନ ନୈମିଷାରଣ୍ୟରେ ଜୈମିନୀ ଋଷିଙ୍କୁ ଅନ୍ୟ ବହୁ ମୁନିଋଷି ପରମ ଆଗ୍ରହ ଓ ଉତ୍କଣ୍ଠାର ସହ ସେହି ପାବନଲୀଳା ସଂପର୍କରେ ବର୍ଣ୍ଣନା କରିବାକୁ ଅନୁରୋଧ କରିଥିଲେ । ଏହି ବ୍ରହ୍ମଙ୍କର ହସ୍ତ ନାହିଁ ମାତ୍ର ସେ ଗ୍ରହଣ କରିପାରନ୍ତି ଆଉ ଏ ସଂସାରରେ ଏମିତି କିଛି ନାହିଁ ଯାହା ପ୍ରଭୁ ଶ୍ରୀଜଗନ୍ନାଥଙ୍କର ଅଦେୟ । ଧର୍ମ, ଅର୍ଥ, କାମ, ମୋକ୍ଷ ସବୁ ସେ ପ୍ରଦାନ କରିପାରନ୍ତି । କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କର ଉକ୍ତି–

ସେ କମ୍ବୁ କଟକ ରାଜା ନାମ ଜଗନ୍ନାଥ
ଚାରି ବର୍ଣ୍ଣେ ଚଉବର୍ଗ ଦେବାକୁ ସମର୍ଥ ।





ସାଧାରଣ ମାନବ ପରି ତାଙ୍କର ଜୀବନଚର୍ଯ୍ୟା। ଦ୍ୱାପର ଯୁଗରେ ଉଦ୍ଧବ ଗୋପୀମାନଙ୍କୁ ବ୍ରହ୍ମଜ୍ଞାନ ଶୁଣାଇ ଥିଲେ ମଧ୍ୟ ଶ୍ରୀକୃଷ୍ଣପ୍ରାଣା ଗୋପୀମାନେ ବ୍ରହ୍ମଜ୍ଞାନ ଶୁଣିବାରେ ଆଦୌ ଆଗ୍ରହ ପ୍ରକାଶ ନ କରି ଚାହିଁଥିଲେ ପ୍ରଭୁଙ୍କର ସେହି ମାନବୀୟ ସ୍ନେହ, ଶ୍ରଦ୍ଧା, ଭକ୍ତି, ପ୍ରୀତି, ରାଗ ଓ ଅନୁରାଗ ମଧ୍ୟରେ ବୁଡ଼ି ରହିବାକୁ। ଭକ୍ତି ଓ ଶ୍ରଦ୍ଧା ନିକଟରେ ସେଦିନ ଉଦ୍ଧବଙ୍କର ବ୍ରହ୍ମଜ୍ଞାନ ତୁଚ୍ଛ ମନେ ହୋଇଥିଲା। ଅନୁରୂପ ଭାବରେ ଶ୍ରୀଜଗନ୍ନାଥ ମଧ୍ୟ ଭାବର ଦେବତା। ଜାତି, ଧର୍ମ, ବର୍ଣ୍ଣ, ଉଚ୍ଚ, ନୀଚ ଭେଦଭାବର ବହୁ ଊର୍ଦ୍ଧ୍ୱରେ ଥାଇ କେବଳ ମଣିଷ ମନର ଭାବକୁ ହିଁ ସେ ଗ୍ରହଣ କରିଥାଆନ୍ତି। ପଞ୍ଚସଖା ଯୁଗର ଅନ୍ୟତମ ସାଧକ ମହାପୁରୁଷ ଅଚ୍ୟୁତାନନ୍ଦଙ୍କ ଭାଷାରେ–

ଭାବ ବିନୋଦିଆ ଠାକୁର ଭକ୍ତ ବତ୍ସଳ ହରି
ଭକ୍ତଙ୍କ ପାଇଁ କଳେବର ଦଶ ମୂରତି ଧରି।

ସେ ଭକ୍ତର ଦେବତା। ସେ ଆର୍ତ୍ତୀ, ଜିଜ୍ଞାସୁ ଭକ୍ତର ଡାକ ଶୁଣି ଥାଆନ୍ତି। ସେ ହିଁ ମୁକ୍ତିଦାତା, ଅଭୟ ଦାତା ଓ କୋଟି କୈବଲ୍ୟଦାତା । ଏହି ଭକ୍ତି ତତ୍ତ୍ୱ ବା ଭାବରେ ଭକ୍ତ ବିହ୍ୱଳ ହୋଇଉଠେ ଆଉ ମନେ କରେ ପ୍ରତି ମୁହୂର୍ତ୍ତରେ ଶ୍ରୀଜଗନ୍ନାଥଙ୍କ ଉପସ୍ଥିତି।

ଭକ୍ତ ପବିତ୍ର ମନରେ, ଶ୍ରଦ୍ଧାର ସହ ଯାହା ଅର୍ପଣ କରେ ତାହା ପ୍ରଭୁ ଅତ୍ୟନ୍ତ ଆଗ୍ରହର ସହ ଗ୍ରହଣ କରନ୍ତି। ଏପରିକି ଭକ୍ତ ମନର ଗାଳି ମଧ୍ୟ ପ୍ରଭୁଙ୍କର ଏକାନ୍ତ ପ୍ରିୟ। ଭାଗବତକାର ଜଗନ୍ନାଥ ଦାସଙ୍କ ଭାଷାରେ–

ଗାଳି ମୁଁ ଶୁଣେ ଗୋପୀ ମୁଖେ
ବେଦ ନ ଶୁଣେ ଏତେ ସୁଖେ।

ଶ୍ରୀଜଗନ୍ନାଥଙ୍କ ବିନା ଆମର ପରିଚୟ ନାହିଁ। ଅବ୍ୟକ୍ତ ସନାତନ ଧର୍ମର ଅପୂର୍ବ ସିଦ୍ଧାନ୍ତ ଶ୍ରୀଜଗନ୍ନାଥ ତତ୍ତ୍ୱ । ଏ ସ୍କନ୍ଦ ପୁରାଣର ରହସ୍ୟ, ନାରାୟଣ ଦାରୁ ବିଗ୍ରହ ହେଲେ ମଧ୍ୟ ମଣିଷ ପରି ଲୀଳା କରୁଛନ୍ତି। କେବଳ ଏତିକି କରୁନାହାନ୍ତି ଯେ ସେହି ଦାରୁ ରୂପକୁ ଦର୍ଶନ କରୁଛି ତା'ର ପୁନର୍ଜନ୍ମ ନାହିଁ। ତା'ର ମୋକ୍ଷ ହିଁ ମୋକ୍ଷ। ତାଙ୍କୁ ଥରେ ଦର୍ଶନ କରିଦେଲେ ବ୍ୟକ୍ତିକୁ କୋଟି ତୀର୍ଥର ପୁଣ୍ୟ ମିଳିଯାଏ– ଦର୍ଶନାତ୍ କୋଟି ତୀର୍ଥ ଫଳାତ୍। (ସ୍କନ୍ଦ ପୁରାଣ)

ଏପରି ଠାକୁରଙ୍କୁ ଯେଉଁ ତୀର୍ଥ ଧାରଣ କରିଛି, ତା'ର ମହିମା ମଧ୍ୟ ଅନନ୍ତ, କବି ଦୀନକୃଷ୍ଣ ଭାବବିହ୍ୱଳ କଣ୍ଠରେ ଗାଇଲେ–

କେ ବର୍ଣ୍ଣି ପାରିବି ସେହି କ୍ଷେତ୍ରର ମହିମା
ଯମ ନାହିଁ ନ ଲଙ୍ଘଇ ମୁକତିର ସୀମା।

ମଣିଷ ବିଶ୍ରାମ ନିଏ ସେ ମଧ୍ୟ ବିଶ୍ରାମ ନିଅନ୍ତି। ମାତ୍ର ତାଙ୍କର ଶୋଇବା ବଡ଼ ବିଚିତ୍ର–

ରାତ୍ରି ଅର୍ଦ୍ଧଯାଏ ତୋ କବାଟ ଖୋଲାଥିବ
ରାତ୍ର ପାଞ୍ଚ ଘଡ଼ି ଥାଇ କବାଟ ଫିଟିବ
ବଡ଼ ସିଂହାର ବେଶ ପରେ ପ୍ରଭୁଙ୍କର ଶୟନ ଲୀଳା।

ପ୍ରଭାତରୁ ପାଞ୍ଚ ମୁଖ୍ୟ ସେବକ ଯାଇ ମଣିମା ମଣିମା ଡାକି ଶଯ୍ୟାତ୍ୟାଗ କରାଇଥାଆନ୍ତି। ପଢିଆରୀ, ଭିତରଛୁ ମହାପାତ୍ର, ମୁଦୁଲି ପ୍ରଭୃତି ସେବକମାନେ ସ୍ନେହସୂଚକ ଶବ୍ଦ ପ୍ରୟୋଗ କରି ପ୍ରଭୁଙ୍କୁ ଉଠାନ୍ତି। ପ୍ରଭୁ ଆମମାନଙ୍କ ପରି ଦନ୍ତ ମାର୍ଜନ କରନ୍ତି। ସ୍ନାନ ମଧ୍ୟ କରନ୍ତି। ବିମ୍ବ ସ୍ନାନ ବା ପରୋକ୍ଷ ସ୍ନାନ। ବର୍ଷକରେ ଥରେ ପ୍ରଭୁ ପ୍ରତ୍ୟକ୍ଷ ସ୍ନାନ କରିଥାଆନ୍ତି, ସ୍ନାନ ପୂର୍ଣ୍ଣିମା ଅବସରରେ।

ପ୍ରଭୁଙ୍କର ଲୀଳା ବଡ଼ ବିଚିତ୍ର, ପ୍ରଭୁଙ୍କର ମାନବ ଲୀଳା କରିବାର ତାତ୍ପର୍ଯ୍ୟ ହେଉଛି ମଣିଷକୁ ସୃଷ୍ଟି କରି ତା'ରି ମାଧ୍ୟମରେ ଲୀଳାଖେଳା କରିବା ସହିତ ଜଗତର କଲ୍ୟାଣ ଓ ମଣିଷ ପଣିଆର ବିକାଶ ସାଙ୍ଗକୁ ମୂଲ୍ୟବୋଧର ପ୍ରତିଷ୍ଠା କରିବା।

ଯାହାଙ୍କର ପୟରରୁ ସ୍ୱୟଂ ଗଙ୍ଗା ମାତାଙ୍କର ସୃଷ୍ଟି ସେ ପୁଣି ଭକ୍ତ ପ୍ରଦତ୍ତ ଜଳରେ ସ୍ନାନ କରନ୍ତି–

ଗଙ୍ଗା ଲୁଚାଏ ପାଦତଳେ, ସ୍ନାନ ଯଶୋଦା ଚଳୁ ଜଳେ।

ଯାହାଙ୍କର ପାଦ ଖୋଲିଦେଲେ ଗଙ୍ଗା ସେ ବେଳେବେଳେ ଭକ୍ତର ଭାବ ରୂପକ ଜଳରେ ଓଦା ହୋଇଯାଆନ୍ତି–

ଗରାଗରା ଶହେ ଆଠଗରା ଜଳେ
ତିନ୍ତେନା ଯା କଳେବର
ଗୋଟିଏ ଭକ୍ତର ଟୋପାଏ ଲୁହରେ
ସିଏ ହୁଏ ଓଦା ସରସର ।

ଅଧିକ ଗାଧୋଇବା ଦେହ ପକ୍ଷେ କ୍ଷତିକାରକ, ବ୍ୟକ୍ତି ଜ୍ୱରରେ ପଡିଥାଏ । ଆମର ପ୍ରଭୁ ମଧ୍ୟ ଜ୍ୱରରେ ଆକ୍ରାନ୍ତ ହୁଅନ୍ତି । ସେ ବିଶ୍ରାମ ନିଅନ୍ତି, ତାଙ୍କ ପାଇଁ ଫଳମୂଳ ବିଭିନ୍ନ ଔଷଧର ମଧ୍ୟ ବ୍ୟବସ୍ଥା କରାଯାଏ । ଭଗବାନଙ୍କର ଏକ ନାମ ବିଗତ ଜ୍ୱର, ଯାହାଙ୍କର ନାମ ନେଇଗଲେ ଜ୍ୱର ବିଗତ ହୋଇଯାଏ, ତାଙ୍କୁ ପୁଣି ଜ୍ୱର ହୁଏ । ଦେହ ଖରାପ ହେଲେ ନିଜ ଲୋକ ସେବା ଶୁଶ୍ରୁଷା କରନ୍ତି । ଭଗବାନଙ୍କର ଆତ୍ମୀୟ ବିଶ୍ୱାବସୁ ଆସନ୍ତି ସେବା କରିବାକୁ । ଦଶମୂଳରୁ ପ୍ରସ୍ତୁତ ମୋଦକ ଖାଇବା ପରେ ପ୍ରଭୁ ଆରୋଗ୍ୟ ଲାଭ କରି ସୁସ୍ଥ ହୋଇଉଠନ୍ତି । ଦେହ ଖରାପ ପରେ ଯେପରି ସ୍ଥାନ ପରିବର୍ତ୍ତନ କରି ଟିକେ ବୁଲାବୁଲି କରି ଆସିଲେ ମନ ଫୁର୍ତ୍ତି ହୋଇଯାଏ, ପ୍ରଭୁଙ୍କର ମଧ୍ୟ ସେହି ପ୍ରକାରର ଲୀଳା । ମହାପ୍ରଭୁ କର୍ମଭୂମି ଐଶ୍ୱର୍ଯ୍ୟ ପୁରୀରୁ ଯାତ୍ରା କରନ୍ତି ଜନ୍ମଭୂମି ମାଧୁର୍ଯ୍ୟ ପୁରୀକୁ । ନବଦିନାତ୍ମକ ଯାତ୍ରାର ପରିସମାପ୍ତି କରି ପୁଣି ଫେରି ଆସନ୍ତି କର୍ମଭୂମି ଶ୍ରୀମନ୍ଦିରକୁ । ଏଇ ସାଂସାରିକ କର୍ମ କରୁ କରୁ ବିଧି ବିଧାନ ଅନୁଯାୟୀ ଦୁଇଟି ଆଷାଢ଼ ମାସ ପଡିଲେ ପ୍ରଭୁଙ୍କର ନବକଳେବର ମଧ୍ୟ କରାଯାଇଥାଏ । ଜୀବନରେ ନିଷ୍ଠୁର ସତ୍ୟ ମୃତ୍ୟୁକୁ ପ୍ରତିଟି ମଣିଷ ସାମନା କରେ– ଆମର ଠାକୁର ମଧ୍ୟ ସାମନା କରନ୍ତି, ଅନ୍ୟ କୌଣସି ଦେବଦେବୀଙ୍କର ଏ ପ୍ରକାରର ପରଂପରା ନାହିଁ । ପ୍ରଭୁ ଯେଉଁ ମାସରେ ଏ ଅପୂର୍ବ ତନୁ ଧାରଣ କରନ୍ତି ସେମାସର ନାମ ମଧ୍ୟ ପୁରୁଷୋତ୍ତମ ମାସ ।

ବିଶ୍ୱ ପ୍ରସିଦ୍ଧ ରଥଯାତ୍ରା ଅବସରରେ ପ୍ରଭୁ ଓହ୍ଲାଇ ଆସନ୍ତି ଜନତାର ବଡ଼ଦାଣ୍ଡକୁ । ଭକ୍ତମାନେ ପରମ ଆଗ୍ରହରେ ପ୍ରଭୁଙ୍କ ଅଣ୍ଟାରେ ପାଟଦଉଡ଼ି ବାନ୍ଧି ତାଙ୍କୁ ପହଣ୍ଡି କରି ରଥ ଉପରକୁ ଆଣିଥାଆନ୍ତି । ଦେଖିଲେ ମନେହୁଏ ସତେ ଯେପରି ଦାରୁରୂପୀ ଶ୍ରୀଜଗନ୍ନାଥ ଝୁଲିଝୁଲି ହଲିହଲି ରଥ ଉପରକୁ ଆସୁଛନ୍ତି ।

ଛେଚା କଚା ଖାଇ ପହଣ୍ଡି କି ବିଜେ ଅଣ୍ଟାରେ ଦଉଡ଼ି ଭିଡ଼ା
ନିଜେ ଦୁଃଖ ସହି ଭକ୍ତକୁ ହସାଅ କି ସୁଖ ଏ ଠେଲାପେଲା ।
(ସାଲବେଗ)

ସ୍କନ୍ଦପୁରାଣ ବର୍ଣ୍ଣନାନୁଯାୟୀ ପ୍ରଭୁ ନୃସିଂହ ଦର ହାସରେ ଚାହିଁଲେ । ଭକ୍ତ ମନରେ ପ୍ରଶ୍ନ – ଏ ଦାରୁ ନୁହଁନ୍ତି– କାରଣ ଦାରୁ କ'ଣ କେବେ ହସିପାରେ । ମାତ୍ର ଜୈମିନୀ ଋଷି ବୁଝାଉଛନ୍ତି । ଏ ଦାରୁ ଖାଲି ହସନ୍ତିନି । ବରଂ ଅପୂର୍ବ ହସର ଛଟାରେ ଜଗତର ମନ ମୋହି ନିଅନ୍ତି । ଅଖଣ୍ଡ ଆନନ୍ଦର ସେ କର୍ତ୍ତା । ସକଳ ଦୁଃଖକୁ ଦୂର କରନ୍ତି ବୋଲି ସେ ଦାରୁବ୍ରହ୍ମ । ଶ୍ରୀ, ଐଶ୍ୱର୍ଯ୍ୟ, ବଳ, ବୀର୍ଯ୍ୟ, ରୂପ, ଜ୍ଞାନ, ଯଶ, କୀର୍ତ୍ତି– ଏ ସବୁର ଏକାକାର ରୂପ ଶ୍ରୀଜଗନ୍ନାଥ । ପ୍ରଭୁଙ୍କର ବିଶ୍ୱପ୍ରସିଦ୍ଧ ଘୋଷଯାତ୍ରା ଅବସରରେ ମହାଲକ୍ଷ୍ମୀଙ୍କର ପ୍ରଭୁଙ୍କ ପ୍ରତି କ୍ରୋଧ ମାନବବାଦର ଜ୍ୱଳନ୍ତ ଉଦାହରଣ–

ଏଇଠୁ ଆସୁଛି କହି ନଅ ଦିନ ଗଲା
ଘର କି ଘରଣୀ କଥା ମନେ ନ ପଡ଼ିଲା ।

ପ୍ରଭୁ ବାହୁଡ଼ି ଆସୁଛନ୍ତି ଶ୍ରୀମନ୍ଦିରକୁ ମାତ୍ର ମହାଲକ୍ଷ୍ମୀଙ୍କ କୋପରେ ସିଂହଦ୍ୱାର ବନ୍ଦ କରି ଦିଆଯାଇଛି, ବରଂ ତାଙ୍କୁ ଫେରିଯିବାକୁ ନିର୍ଦ୍ଦେଶ ଦେଇଛନ୍ତି ମହାଲକ୍ଷ୍ମୀ–

ଯାଅ ଯାଅ ଫେରି ନୀଳାଦ୍ରି ବିହାରୀ ଭଉଣୀକି ସଙ୍ଗେ ନିଅ
ଛାଡ଼ି ଚାଲି ଗଲେ ଦୁଃଖ କରିବେଟି ନନ୍ଦ ରାଜାଙ୍କର ଝିଅ ।

ପ୍ରତିଟି ଘରର ଦାମ୍ପତ୍ୟ ପ୍ରେମର ଅବିକଳ ଛାପ ଦେଖିବାକୁ ମିଳିଥାଏ ଜଗନ୍ନାଥ ସଂସ୍କୃତି ମଧ୍ୟରେ । ମହାଲକ୍ଷ୍ମୀ ପ୍ରଭୁଙ୍କୁ ବାଣୀ ପରେ ବାଣୀ ଶୁଣାଇ ଚାଲିଛନ୍ତି, ମାତ୍ର ପ୍ରଭୁ ଅସ୍ୱାଭାବିକ ଭାବେ ନିରବ ।

ତୁମ୍ଭ ଶ୍ରୀ ଛାମୁକୁ ସମସ୍ତେ ଆସନ୍ତି ଦରଶନ କରିବାକୁ
ତୁମେ ଯାଇଥିଲ ଗୁଣ୍ଡିଚା ମଣ୍ଡପ କାହାମୁଖ ଦେଖିବାକୁ ।

ପ୍ରଭୁ ଖୋଲି ଦେଇଛନ୍ତି ତାଙ୍କର ଭାବର ପୁସ୍ତିକା । କେବଳ ଭକ୍ତକୁ ପ୍ରାଧାନ୍ୟ ଦେବାପାଇଁ ହିଁ ମୋର ଏହି ନବଦିନାତ୍ମକ ଯାତ୍ରା– ମୁଁ ଏ ସଂସାର ଅଛି ଛନ୍ଦି । ଭକତ ପାରେ



ମୋତେ ବାନ୍ଧି।' ରାଜା ଇନ୍ଦ୍ରଦ୍ୟୁମ୍ନ ଆଉ ମା' ଗୁଣ୍ଡିଚାଙ୍କର ଅନନ୍ୟ ଭାବରେ ମୁଁ ପାଗଳ, ଯେ ମୋ ପାଇଁ ସର୍ବସ୍ୱ ତ୍ୟାଗ କରିଦେଲେ ତାଙ୍କୁ ବର୍ଷକୁ ଥରେ ମୁଁ ଦେଖାକରି ପାରିବିନି ? ଏହା ଶୁଣିଲା ପରେ ମା' ଲକ୍ଷ୍ମୀ ଠାକୁରାଣୀଙ୍କ ମନ ତରଳି ଯାଇଛି। ଅପେକ୍ଷାକୃତ ନମ୍ର ହୋଇ ପ୍ରଭୁଙ୍କୁ ଶୁଣାଉଛନ୍ତି ନିଜ ମନର ଅଭିବ୍ୟକ୍ତି–

କାନ୍ତବାଣୀ ଶୁଣି ଲକ୍ଷ୍ମୀ ଠାକୁରାଣୀ
ପଚାରନ୍ତି କରଯୋଡ଼ି
ତୁମେ ଯେବେ ପ୍ରଭୁ ସେ ସ୍ଥାନକୁ ଗଲ
ମୋତେ କିଆଁ ଗଲ ଛାଡ଼ି।

ମଣିଷ ରୂପରେ ମାନବ ପରି ଏପରି ଦୁର୍ଲଭ ଲୀଳା ସମଗ୍ର ବିଶ୍ୱରେ ବିରଳ। ପତ୍ନୀକୁ ଉପହାର ଦେଇ ସନ୍ତୁଷ୍ଟ କରିବା ପତିର ପରମ କର୍ତ୍ତବ୍ୟ । ଏହା ମଧ୍ୟ ଆମକୁ ଜଗନ୍ନାଥ ସଂସ୍କୃତି ଶିକ୍ଷା ଦେଇଥାଏ। ମା' ଲକ୍ଷ୍ମୀଙ୍କର କ୍ରୋଧ ଶାନ୍ତି ହେବା ପରେ ପ୍ରଭୁ ନିଜର ସମସ୍ତ ଦୋଷ ସ୍ୱୀକାର କରି ମା'ଙ୍କର ମାନଭଞ୍ଜନ କରି ରସଗୋଲା ଖୁଆଇ ଥାଆନ୍ତି। ଏହା ହିଁ ତ ତାଙ୍କର ବଡ଼ପଣ। ପ୍ରଭୁଙ୍କର ଅନୁରୋଧ–

ଫେଡ଼ଫେଡ଼ କମଳିନୀ ଫେଡ଼ ଗୋ କବାଟ
ତୁମ ପାଇଁ ଆଣିଅଛି କଳାମେଘୀ ପାଟ।

ଶ୍ରୀଜଗନ୍ନାଥ, ମାନବାୟିତ। ତେଣୁ ମଣିଷ ପରି ତାଙ୍କର ସାଜସଜ୍ଜା । ସେ ଶୟନ କରନ୍ତି, ଅବକାଶ କରନ୍ତି, ମଣୋହି ମଧ୍ୟ କରନ୍ତି। ସେ ରତ୍ନସିଂହାସନରେ ରାଜା ହୁଅନ୍ତି, ବିଶ୍ୱ ସମ୍ରାଟ ସେ। ଉକ୍ତ ଭାଷାରେ ସେ ମଣିମା, ସେ ମହାବାହୁ।

ମଣିମା ଶୁଣିମା ହେଉ ଗରିବ ଡାକ
ଅରକ୍ଷ ଜନକୁ ରଖ ପଙ୍କଜ ମୁଖ।

ପ୍ରଭୁ ମିତ୍ରତାର ସଫଳ ରୂପାୟନ। ତାଙ୍କ ସଦୃଶ ବନ୍ଧୁ ଏ ସଂସାରରେ ନାହାନ୍ତି। ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସେ ସମସ୍ତଙ୍କୁ କୋଳେଇ ନିଅନ୍ତି। ନିଜେ ବୃଦ୍ଧ ମହାରଣା ଭୂମିକାରେ ରହି ନିଜର ମୂର୍ତ୍ତି ଗଢନ୍ତି, ଗଜପତିଙ୍କ ସମ୍ମାନ ରକ୍ଷା ଉଦ୍ଦେଶ୍ୟରେ ଯୁଦ୍ଧ ଭୂମିରେ ଅବତୀର୍ଣ୍ଣ ହୁଅନ୍ତି, ମାଣିକ ଗଉଡୁଣୀର ଦହିକୁ ପରମ ଆଗ୍ରହରେ ଗ୍ରହଣ କରନ୍ତି, ମାଉସୀ ମା'ଙ୍କ ସ୍ନେହ ଶ୍ରଦ୍ଧାକୁ ଅଙ୍ଗୀକାର କରି ତାଙ୍କଠାରୁ ପୋଡ଼ପିଠା ଖାଆନ୍ତି। ମା' ଗୁଣ୍ଡିଚାଙ୍କୁ ଦେଇଥିବା ପ୍ରତିଶ୍ରୁତି ରକ୍ଷା କରି ପ୍ରତିବର୍ଷ ତାଙ୍କ ନିକଟକୁ ଯାଆନ୍ତି– ଏ ସବୁ ପ୍ରଭୁଙ୍କର ମାନବାୟିତ କର୍ମ।

ଶ୍ରୀଜଗନ୍ନାଥଙ୍କର ବିଭିନ୍ନ ପର୍ବପର୍ବାଣି ଓ ରୀତିନୀତି ସବୁଥିରେ ଫୁଟି ଉଠେ ମାନବୀୟ ଲୀଳାର ମାଧୁର୍ଯ୍ୟ। ସେ ଯେଉଁଠି ଥାଆନ୍ତୁ ନା କାହିଁକି– ପ୍ରତ୍ୟେକ ଅନୁଭବ କରନ୍ତି ପ୍ରଭୁ ଯେପରି ତାଙ୍କୁ ହିଁ ଚାହିଁଛନ୍ତି। ବାସ୍ତବିକ ଏ ଏକ ମୁଗ୍ଧ ଅନୁଭବ– କବି ବ୍ରହ୍ମୋତ୍ରି ମହାନ୍ତିଙ୍କ ଭାଷାରେ–

'ଦେଖୁଛି ତୁମକୁ ନିରେଖି ଯେତିକି
ମନ ମୋର ମାନୁ ନାହିଁ
ମନେ ହୁଏ ତୁମେ ଚକାଡୋଳା ସତେ
ରହି ଅଛ ଖାଲି ମୋତେ ଚାହିଁ।'

ସତରେ ବିଚିତ୍ର ସେ ଆଖି। ସେ ଆଖିରେ କି ଯାଦୁକରୀ ଶକ୍ତି, କି ଆକର୍ଷଣୀ ଶକ୍ତି ଅଛି କେଜାଣି, ଏ ଜଗତ ସେଠି ବନ୍ଧା ପଡିଯାଏ। ଭକ୍ତ ସକଳ ପ୍ରାପ୍ତିରେ ଆତ୍ମ ବିସ୍ମୃତ ହୋଇଯାଏ। ଆଖିରୁ ଝରି ଆସେ ଆନନ୍ଦର ଓ ଭାବାବେଗର ଅଶ୍ରୁ।

ଡି.ଏ.ଭି. ପବ୍ଲିକ୍ ସ୍କୁଲ, ୟୁନିଟ୍–୮
ଭୁବନେଶ୍ୱର



# ଶ୍ରୀଜଗନ୍ନାଥଙ୍କ ପରମ ଭକ୍ତ : ଚନ୍ଦନ ହଜୁରୀ

ବିମଳା ସିଂହ

ଉତ୍କର୍ଷ କଳାର ରାଜ୍ୟ ଆମ ଉତ୍କଳ ଭୂଇଁ, ବର୍ତ୍ତମାନର ଓଡ଼ିଶା । ବୀର ପ୍ରସବିନୀ ଏହି ମହାନ୍ ମାଟି । ଏହାର ସଂସ୍କୃତି, ପରମ୍ପରା ଅତି ମହାନ୍ ପୁଣି ବହୁ ପୁରୁଣା । ଏ ମାଟିର ସାହିତ୍ୟ, ଇତିହାସ ଉନ୍ନତ ଏବଂ ସମୃଦ୍ଧ । ଏହି ଉତ୍କଳ ଭୂଖଣ୍ଡ ଯେଉଁ ପ୍ରାଚୀନ ପରମ୍ପରା ଓ ସଂସ୍କୃତିକୁ ବହନ କରି ଆଜି ବିଶ୍ୱରେ ପ୍ରଭୁ ଶ୍ରୀଜଗନ୍ନାଥଙ୍କର ଅପାର କରୁଣାରୁ ପ୍ରସିଦ୍ଧି ଲାଭ କରିଛି ତା'ର ଅତୀତ ଅତୀବ ଗୌରବମୟ । ଏ ମାଟିର ସୁରକ୍ଷା ସାଙ୍ଗକୁ ଏହାର ଅଖଣ୍ଡତା ବଜାୟ ରଖିବା, ଏହାର ଭାଷା ସାହିତ୍ୟ, ସଂସ୍କୃତି ଓ ପରମ୍ପରାକୁ ଅକ୍ଷୁଣ୍ଣ ରଖିବା ପ୍ରତି ଉତ୍କଳୀୟର ପ୍ରଥମ ଓ ପ୍ରଧାନ କର୍ତ୍ତବ୍ୟ ଥିଲା, ଯାହା ଦ୍ୱାରା ସେଇ ତ୍ୟାଗୀ, ସେବକ, ଭକ୍ତ, ବୀରପୁଙ୍ଗବଗଣ, ସାହିତ୍ୟିକ, ଶିଳ୍ପୀ, ଦାର୍ଶନିକ, ଦୂରଦ୍ରଷ୍ଟା, ସଂସ୍କୃତି ପ୍ରେମୀ, ଦେଶ ସେବକ ଆଜି ଆମର ନମସ୍ୟ ଏବଂ ମାର୍ଗଦର୍ଶକ ରୂପେ ସେମାନଙ୍କ ଅବର୍ତ୍ତମାନରେ ମଧ୍ୟ ପ୍ରାତଃ ସ୍ମରଣୀୟ । ଏ ମାଟିର ମହାନତାକୁ ନେଇ ଯେଉଁମାନେ ନିଜ ଜୀବନକୁ ନିଃସ୍ୱାର୍ଥପର ଭାବରେ ଅନ୍ୟ ପାଇଁ ଉତ୍ସର୍ଗ କରିଯାଇଛନ୍ତି, ସେମାନେ ଆମର ପୂଜ୍ୟ । ଅତୀତର ଇତିହାସକୁ ଯଦି ଅନୁଧ୍ୟାନ କରିବା, ତେବେ ଜାଣିପାରିବା ଯେ କଳା ଭାସ୍କର୍ଯ୍ୟରେ ପରିପୂର୍ଣ୍ଣ ଆମ ଦେଶ ତଥା ଆମ ରାଜ୍ୟର ଧନରତ୍ନ ଉପରେ ସବୁବେଳେ ବିଦେଶୀମାନଙ୍କ ଲୋଲୁପ ଦୃଷ୍ଟି ପଡ଼ିଥିଲା । ବାରମ୍ବାର ବୈଦେଶିକ ଆକ୍ରମଣରୁ ଆମର ପୂର୍ବଜମାନେ ଏ ମାଟିକୁ ରକ୍ଷା କରନ୍ତି ମାତୃଭୂମିର ମମତା ନେଇ । ବିଦେଶୀ ଶକ୍ତି ଆଗରେ ମୁଣ୍ଡ ନ ନୁଆଁଇ ଯେଉଁମାନେ ଅନ୍ଧାର ଭିତରେ ଦୀପଶିଖାଟିଏ ହୋଇ ଜଳି ସ୍ୱାଧୀନତାର ସ୍ୱାଦ ଚଖାଇ ଯାଇଛନ୍ତି କିଛି ସମୟ ପାଇଁ ସେମାନଙ୍କ ମଧ୍ୟରେ ଏଇ ମାଟିର ପୁଅ ଚନ୍ଦନ ହଜୁରୀ ଅନ୍ୟତମ, ଯାହାଙ୍କୁ 'ସିପାହୀ ବିଦ୍ରୋହର ସାରଥୀ' ବୋଲି କୁହାଯାଇଥାଏ ଯିଏକି ଓଡ଼ିଶାର ଘରେ ଘରେ 'ଚାଖି ଖୁଣ୍ଟିଆ' ନାମରେ ସୁପରିଚିତ । ନିଜର ଜନ୍ମସ୍ଥାନଠାରୁ ବହୁ ଦୂରରେ ରହି ମଧ୍ୟ ଅନ୍ୟ ଏକ ରାଜ୍ୟର ଅଖଣ୍ଡତାକୁ ବଜାୟ ରଖିବା ପାଇଁ ବିପ୍ଳବୀ ସାଜିଥିବା ଏହି ବୀର ଏବଂ ଶ୍ରୀଜଗନ୍ନାଥଙ୍କ ପରମ ଭକ୍ତ ଭାରତ ଇତିହାସରେ ନିଜର ନାମକୁ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ କରି ରଖିବାରେ ସମର୍ଥ ହୋଇପାରିଛନ୍ତି ।




ଚନ୍ଦନ ହଜୁରୀଙ୍କର ଜନ୍ମ ପୁରୀରେ । ୧୮୨୭ ମସିହା କାର୍ତ୍ତିକ ମାସ ଶୁକ୍ଳପକ୍ଷ ଏକାଦଶୀ ତିଥିରେ ସେ ଭୀମସେନ ହଜୁରୀ ଏବଂ କମଳା ଦେବୀଙ୍କ ଔରସରୁ ଜନ୍ମ ହୋଇଥିଲେ । ଭୀମସେନଙ୍କର ପୁତ୍ର ସନ୍ତାନ ନଥିଲା । ପ୍ରଭୁ ଶ୍ରୀଜଗନ୍ନାଥଙ୍କର ଚନ୍ଦନଲାଗି ସମୟରେ ଭୀମସେନ ପୁତ୍ର ସନ୍ତାନ ପ୍ରାପ୍ତ ହୋଇଥିବାରୁ ପୁଅଟିର ନାମ ରଖିଥିଲେ 'ଚନ୍ଦନ' । ପିଲାଟି ଦିନରୁ ଚନ୍ଦନ ବାପାଙ୍କ ସହିତ ଶ୍ରୀଜଗନ୍ନାଥଙ୍କ ମନ୍ଦିରକୁ ଯାଉଥିଲେ



କିନ୍ତୁ ମହାପ୍ରସାଦ ଖାଇବା ତାଙ୍କର ଅଭ୍ୟାସରେ ପରିଣତ ହୋଇ ଯାଇଥିଲା । ତେଣୁ ତାଙ୍କୁ ସମସ୍ତେ 'ଚାଖି' ବୋଲି ଡାକୁଥିଲେ । ପିଲାଦିନେ ଚନ୍ଦନ ଭାରି ଚଗଲା ଥିଲେ । କିନ୍ତୁ ବାପାଙ୍କ ସହିତ ମନ୍ଦିର ଯାଇ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ପ୍ରତି ତାଙ୍କ ହୃଦୟରେ ଭକ୍ତିଭାବ ଜାଗ୍ରତ ହୋଇଥିଲା । ପରବର୍ତ୍ତୀ ସମୟରେ ସେ ସେଇ ଜଗନ୍ନାଥଙ୍କୁ ନେଇ ଅନେକ କାଳଜୟୀ ଜଣାଣ, ଭଜନ ରଚନା କରିପାରିଥିଲେ । ତାଙ୍କର ରଚନାସମୂହ ସଂଖ୍ୟାରେ ଅଧିକ ନ ହେଲେ ମଧ୍ୟ ଯେଉଁ କେତେକ ସାହିତ୍ୟ କୃତି ଉତ୍କଳ ବାଣୀ ଭଣ୍ଡାରକୁ ଋଦ୍ଧିମନ୍ତ କରିଛି ଏବଂ ପ୍ରତି ଓଡ଼ିଆ ପ୍ରାଣରେ ଭିନ୍ନ ସ୍ୱାଦର ଭକ୍ତି ଭାବନା ଜାଗ୍ରତ କରାଇବାରେ ସହାୟକ ହୋଇପାରିଛି ସେଥିମଧ୍ୟରୁ ନିମ୍ନ ଭଜନଟି ତାଙ୍କର ଅତି ଲୋକପ୍ରିୟ ।

''ଚକାନୟନଙ୍କୁ ପତିତ କହି
ଡକାଇ ଖର ନିଃଶ୍ୱାସ ପକାଇ
ଡକା ପକାଇ ଗରୁଡ଼ ପଛରେ
ବକାରି ମୋ ଆର୍ତ୍ତ ଶୁଣ ସତ୍ୱରେ ହେ
ଢକ୍କା ବାଜୁଛି ମହିମା ହେ
ଠକାର କରି କର୍ଣ୍ଣେ ଗିର ନ ଶୁଣ
କାହିଁକି ବିଚିତ୍ର କର୍ମା ହେ ।

ଚନ୍ଦନ ହଜୁରୀଙ୍କର ପିତାଙ୍କର ଆର୍ଥିକ ସ୍ୱଚ୍ଛଳତା ନଥିଲା । ସେସମୟରେ ମଧ୍ୟ ଆଜିକାଲିକା ପରି ଏତେ ସଂଖ୍ୟାରେ ବିଦ୍ୟାଳୟ ନଥିଲା । ତେଣୁ ତାଙ୍କୁ ଭୀମସେନ ହଜୁରୀ ସଂସ୍କୃତ ଶିକ୍ଷା ପାଇଁ ସଂସ୍କୃତ ପଣ୍ଡିତ ହରିହର ବ୍ରହ୍ମାଙ୍କ ନିକଟକୁ ପଠାଇଲେ । ଚନ୍ଦନ କିନ୍ତୁ ସଂସ୍କୃତ ଶିକ୍ଷା ପ୍ରତି ଆଗ୍ରହ ପ୍ରକାଶ ନ କରିବାରୁ ହିନ୍ଦୀ ଭାଷା ଶିକ୍ଷା କରିବା ନିମନ୍ତେ ପଣ୍ଡିତ ରାମଦୟାଲ ଠାକୁରଙ୍କ ପାଖକୁ ପଠାଇଲେ । ଚନ୍ଦନ ହଜୁରୀ ଅତି ଅଳ୍ପ ଦିନ ମଧ୍ୟରେ ହିନ୍ଦୀ ଭାଷାକୁ ଆୟତ୍ତ କରିପାରିଥିଲେ । ସେତେବେଳେ ପଣ୍ଡାମାନେ ଯାତ୍ରୀମାନଙ୍କୁ ଜଗନ୍ନାଥଙ୍କୁ ଦର୍ଶନ କରାଇବା ସେବା ସହ ସେମାନଙ୍କର ରହିବା, ଖାଇବା, ପିଇବା ଆଦି କାମର ବ୍ୟବସ୍ଥା କରୁଥିଲେ । ସମୟେ ସମୟେ ଯାତ୍ରୀମାନଙ୍କୁ ଆଣିବା ପାଇଁ ସେମାନେ ବିଭିନ୍ନ ଜାଗାକୁ ଯାଉଥିଲେ । ଏହି କ୍ରମରେ ଭୀମସେନ ହଜୁରୀ ଜଗନ୍ନାଥଙ୍କ ସେବା ସହିତ ଯଜମାନମାନଙ୍କ ଘରକୁ ଯାଉଥିଲେ । ଥରେ ଥରେ ଚନ୍ଦନ ହଜୁରୀ ମଧ୍ୟ ବାପାଙ୍କ ସହିତ ଯାଉଥିଲେ । ଥରେ ଭୀମସେନ କାଶୀ ଯାଇଥିବା ସମୟରେ ମୋରାପନ୍ତ ଜଣେ ଯଜମାନଙ୍କ ସହିତ ଦେଖାହେଲା ପ୍ରଭୁ ବିଶ୍ୱନାଥଙ୍କ ମନ୍ଦିରରେ । ସେ ମରହଟ୍ଟା ଶାସକ ଚିମ୍ନାଜୀଙ୍କର ଦେବାନ୍ ଥିଲେ । ଏକ ପୁତ୍ର ସନ୍ତାନ ଆଶାରେ ସେ ବିଶ୍ୱନାଥଙ୍କ ମନ୍ଦିରରେ ରୁଦ୍ରାଭିଷେକ କରୁଥିଲେ କାରଣ ମନ୍ଦିରର ପୂଜକ ତାଙ୍କୁ ପୁଅ ହେବ ବୋଲି କହିଥିଲେ । ଚନ୍ଦନ କିନ୍ତୁ ଏସବୁ ଜାଣିଲା ପରେ ତାଙ୍କର ପୁତ୍ର ନହୋଇ କନ୍ୟାଟିଏ ହେବ ଏବଂ ସେ ଭବିଷ୍ୟତରେ ରାଣୀ ହେବ ବୋଲି କହିଥିଲେ । କିଛିଦିନ ପରେ ସତକୁ ସତ ମୋରାପନ୍ତଙ୍କର କନ୍ୟାଟିଏ ହେଲା ଏବଂ ସେ କନ୍ୟାର ନାମ ରଖିଲେ ମାନୁବାଈ । ସେହିଦିନଠାରୁ ଭୀମସେନଙ୍କ ପରିବାର ସହ ତାଙ୍କର ପାରିବାରିକ ସଂପର୍କ ଗଢ଼ିଉଠିଲା । ମୋରାପନ୍ତ ଦୁଇ ବର୍ଷ ପରେ ଝିଅର ବାଳ ପକାଇବା ନିମନ୍ତେ ପୁରୀ ଆସି ଭୀମସେନଙ୍କର ଆତିଥ୍ୟ ଗ୍ରହଣ କଲେ । ତାହାର କେତେଦିନ ପରେ ମୋରାପନ୍ତ ବିଠୁରର ମନ୍ତ୍ରୀ ହେଲେ । ଚନ୍ଦନ ହଜୁରୀଙ୍କର ଭବିଷ୍ୟବାଣୀ ଅନୁସାରେ ଅତୀବ ସୁନ୍ଦରୀ ମାନୁବାଈଙ୍କୁ ବିଠୁରର ଶାସକ ପେଷବା ବାଜିରାଓ ମାନୁବାଈଙ୍କୁ କନ୍ୟାରୂପେ ଗ୍ରହଣ କଲେ ଏବଂ ମାନୁବାଈ ନାନା ସାହେବ ଓ ରାଓ ସାହେବଙ୍କ ସହିତ ରାଜ ଉଆସରେ ରାଜକନ୍ୟା ଭଳି ବଢ଼ିଲେ । ଚନ୍ଦନ ହଜୁରୀଙ୍କର ଭବିଷ୍ୟବାଣୀ ସତ୍ୟରେ ପରିଣତ ହେଲା ୧୮୪୮ମସିହାରେ ମାନୁବାଈଙ୍କର ବିବାହ ଝାନ୍ସୀର ରାଜା ଗଙ୍ଗାଧରଙ୍କ ସହ ସଂପନ୍ନ ହେଲା । ତେଣୁ ଭୀମସେନଙ୍କ ସହ ତାଙ୍କର ସଂପର୍କ ଅତି ନିବିଡ଼ ହୋଇଗଲା । ବିବାହ ପରେ ମାନୁବାଈ ଲୋକମୁଖରେ ଲକ୍ଷ୍ମୀବାଈ ନାମରେ ପରିଚିତ ହେଲେ । ଗଙ୍ଗାଧରଙ୍କର କିନ୍ତୁ ପୁତ୍ର ନଥିଲା । ତେଣୁ ଲକ୍ଷ୍ମୀବାଈ ବଂଶରକ୍ଷା ପାଇଁ ନିଜ ସଂପ୍ରଦାୟରୁ ଜଣଙ୍କୁ ପୋଷ୍ୟପୁତ୍ରରୂପେ ଗ୍ରହଣ କଲେ । ସେତେବେଳକୁ ଭାରତରେ ଇଷ୍ଟଇଣ୍ଡିଆ କମ୍ପାନୀ ଶାସନ କରୁଥାଏ । ଯେଉଁ ରାଜା ମହାରାଜାମାନଙ୍କର ନିଜର ସନ୍ତାନ ନଥିଲା ସେମାନଙ୍କର ସାମ୍ରାଜ୍ୟ ଇଂରେଜ ସାମ୍ରାଜ୍ୟଭୁକ୍ତ ହେବ ବୋଲି ଏକ ନୂତନ ନିୟମ ପ୍ରଣୟନ କରିଥାନ୍ତି । କିଛିଦିନ





ପରେ ଗଙ୍ଗାଧରଙ୍କ ଅକାଳ ମୃତ୍ୟୁ ଘଟିଲା । ତେଣୁ ଲକ୍ଷ୍ମୀବାଈ ପୁତ୍ର ନାବାଳକ ଥିବାରୁ ରାଣୀ ହେଲେ । କିନ୍ତୁ ଇଂରେଜମାନେ ତାହା କରାଇ ଦେଲେ ନାହିଁ । ରାଜବାଟୀରୁ ସେମାନଙ୍କୁ ବାହାର କରିଦେଇ ଏକ ଦୁର୍ଗରେ ରହିବାକୁ ନିର୍ଦ୍ଦେଶ ଦେଲେ । ତାଙ୍କର ସ୍ୱାଧୀନତା ରହିଲା ନାହିଁ । ଏପରି ସ୍ଥଳରେ ରାଣୀ ଲକ୍ଷ୍ମୀବାଈ ଚନ୍ଦନ ହଜୁରୀଙ୍କର ସାହାଯ୍ୟ ଚାହିଁଲେ । ସେ ଗୋପନରେ ଚନ୍ଦନ ହଜୁରୀଙ୍କ ନିକଟକୁ ପୂଜା ପାଇଁ ତାଙ୍କ ରାଜପ୍ରାସାଦର ଇଷ୍ଟ ଦେବୀ ମା' ଦୁର୍ଗାଙ୍କ ମୂର୍ତ୍ତିକୁ ପଠାଇଦେଲେ ଏବଂ ସାହାଯ୍ୟ ପାଇଁ ଏକ ଚିଠି ଲେଖିଲେ । ଚିଠିଟି ଥିଲା ଏହିପରି– ''ଆପଣ ଆମର ତୀର୍ଥଗୁରୁ ଏବଂ ପିତାଜୀଙ୍କର ଗୁରୁଭାଇ ଅଟନ୍ତି । ଆପଣଙ୍କର ବିଦ୍‌ବତ୍ତା ଓ ବଳ ମୋର ନିରାଶା ଭିତରେ ଆଶା ସଂଚାର କରୁଛି । ମୁଁ ବର୍ତ୍ତମାନ ବଡ଼ ବ୍ୟଥିତା ଗତ ବର୍ଷ ମୁଁ ମୋର ଋଣ ଶୁଝିବାକୁ ଚାହିଁଥିଲି । କିନ୍ତୁ କମ୍ପାନୀ ମୋ କଥାପ୍ରତି କର୍ଣ୍ଣପାତ କଲା ନାହିଁ । ବର୍ତ୍ତମାନ ମୁଁ ଧନହୀନା, ଅତି କଷ୍ଟରେ ଚଳୁଛି । ଏପରିକି ନିତ୍ୟ ଦାନର ଟଙ୍କା ନାହିଁ । ଦୁର୍ଦ୍ଦିନରେ ମତେ ସାହାଯ୍ୟ କରନ୍ତୁ, ମୁଁ ଆପଣଙ୍କର ଶୁଭାଗମନକୁ ଅପେକ୍ଷା କଲି ।''

ଚନ୍ଦନ ହଜୁରୀ ପୁରୀରେ ରହି ଶ୍ରୀଜଗନ୍ନାଥଙ୍କ ସେବାରେ ଥିଲେ । ତୀର୍ଥଯାତ୍ରୀମାନଙ୍କର ରହିବା, ଖାଇବା, ପିଇବା ଆଦି କାମରେ ବାପାଙ୍କୁ ସାହାଯ୍ୟ କରୁଥିଲେ । ଚିଠିଟି ପାଇ ତୀର୍ଥଗୁରୁ ଚନ୍ଦନ ହଜୁରୀ ଝାନ୍‌ସୀ ଆସିଲେ ଏବଂ ଗୋପନରେ ଘରକୁ ଘର ବୁଲି ପରିସ୍ଥିତି ସଂପର୍କରେ ଖବର ସଂଗ୍ରହ କଲେ । ଇଂରେଜମାନଙ୍କ ଉତ୍ପୀଡ଼ନ ଅସହ୍ୟ ଥିଲା । ତେଣୁ ଜନସାଧାରଣ ନିଜ ରାଣୀଙ୍କ ସପକ୍ଷରେ ଥିଲେ । ଚନ୍ଦନ ହଜୁରୀ ଗୋପନରେ ନାନା ସାହେବ, ତାଙ୍କର ମନ୍ତ୍ରୀ ତାନ୍ତିଆ ଟୋପେ, ଅଯୋଧ୍ୟାର ନବାବଙ୍କ ସହ ସାକ୍ଷାତ କରି ବିପ୍ଳବକୁ ଆଗକୁ ନେବାର ଶପଥ କଲେ । ତେଣୁ ଅନେକ ଦିନ ଧରି ଚନ୍ଦନ ହଜୁରୀ ଝାନ୍‌ସୀରେ ରହିଗଲେ । ବୀରତ୍ୱର ସହ ଯୁଦ୍ଧ କରି ରାଣୀ ଲକ୍ଷ୍ମୀବାଈଙ୍କର ମୃତ୍ୟୁ ହେବାରୁ ଚାନ୍ଦା ଆଦାୟ କରି ତାଙ୍କର ଶବ ସତ୍କାର କଲେ ଚନ୍ଦନ ହଜୁରୀ । ତା' ପରେ ସେ ଗୋପନରେ ବିଭିନ୍ନ ସ୍ଥାନରେ ରହିଲେ ଇଂରେଜମାନଙ୍କ କୋପ ଦୃଷ୍ଟିରୁ ନିଜକୁ ରକ୍ଷା କରିବାକୁ । ତେଣୁ ବହୁବାର ପୁରୀ ଆସିବାକୁ ଚେଷ୍ଟା କରି ମଧ୍ୟ ଆସିପାରିନଥିଲେ । ଥରେ ଝାନ୍‌ସୀର ଜଣେ ଭକ୍ତ ପୁରୀ ତୀର୍ଥ କରିବାକୁ ଆସିଥିଲେ । ତାଙ୍କୁ ଚନ୍ଦନ ହଜୁରୀଙ୍କ ବିଷୟରେ ପଚାରିବାରୁ ତାଙ୍କର ମୃତ୍ୟୁ ହୋଇଯାଇଛି ବୋଲି କହିଲେ । ତେଣୁ ଏ ଖବର ଚାରିଆଡ଼େ ପ୍ରଚାରିତ ହୋଇଯିବାରୁ ଶୋକର ଛାୟା ଖେଳିଗଲା । ହିନ୍ଦୁ ଶାସ୍ତ୍ର ଅନୁଯାୟୀ ତାଙ୍କର ଅନ୍ତ୍ୟେଷ୍ଟି କ୍ରିୟା ସମାପନ ହୋଇଥିଲା ।

କିଛି ଦିନର ବ୍ୟବଧାନରେ ଜଗନ୍ନାଥଙ୍କ କରୁଣାରୁ ଚନ୍ଦନ ହଜୁରୀ ତାଙ୍କର ବାଲ୍ୟ ବନ୍ଧୁ ଦିବ୍ୟସିଂହ ମିଶ୍ରଙ୍କ ଘରେ ଏକ କୁମାରପୂର୍ଣ୍ଣମୀରେ ପହଞ୍ଚିଲେ । ତାଙ୍କୁ ଦେଖି ବନ୍ଧୁ ଆଶ୍ଚର୍ଯ୍ୟ ହେଲେ । ଇଂରେଜମାନେ ତାଙ୍କୁ ଖୋଜୁଥିବା ଜାଣି ଏବଂ କାର୍ତ୍ତିକ ମାସ ଆରମ୍ଭ ହୋଇଥିବାରୁ ସେ ଘରକୁ ନ ଯାଇ ବନ୍ଧୁଙ୍କ ଘରେ ରହିଲେ । କିନ୍ତୁ ଗୋପନରେ ସେ ମନ୍ଦିର ଯାଉଥିଲେ । ସୌଭାଗ୍ୟ କ୍ରମେ ଥରେ ତାଙ୍କ ସ୍ତ୍ରୀ ଓ ତାଙ୍କ ଭଉଣୀଙ୍କୁ ମନ୍ଦିରରେ ଦେଖିଲେ । ତାଙ୍କ ଭଉଣୀ ପାରିନାନୀ ତାଙ୍କୁ ଚିହ୍ନି ପାରିଲେ ଏବଂ ଆନନ୍ଦରେ ତାଙ୍କ ପାଟିରୁ ବାହାରି ଆସିଲା –

''ନଈରେ ବାଲିଆ ଚହଟିଲା
କଜଳ ସିନ୍ଦୂର ନାଆଲୋ ରାଣ୍ଡ
ପୁଣି ଚାଖିଆ ଲେଉଟିଲା ।''

ତାଙ୍କର ଜୀବିତ ଖବର ପ୍ରଚାରିତ ହେବା ପରେ ମୁକ୍ତିମଣ୍ଡପ ପଣ୍ଡିତଙ୍କ ସିଦ୍ଧାନ୍ତ ଅନୁଯାୟୀ ପୁଣି କାଚ ସିନ୍ଦୂର ଲଗାଇଲେ ତାଙ୍କ ସ୍ତ୍ରୀ । ଭଗବତ୍ ଉପାସନା ଏବଂ ଜଗନ୍ନାଥଙ୍କ ପ୍ରତି ଥିବା ତାଙ୍କର ଭକ୍ତି ତାଙ୍କୁ ପୁଣି ପରିବାର ବନ୍ଧନରେ ବାନ୍ଧି ଦେଇଥିଲା । ସେ କେବଳ ଯେ ଜଣେ ଭକ୍ତ ଥିଲେ ତାହା ନୁହେଁ, ସେ ଥିଲେ ଜଣେ ଦେଶପ୍ରେମୀ ତଥା ଭାଷା ସାହିତ୍ୟ ପ୍ରେମୀ । ତାଙ୍କ ଲେଖନୀରୁ ଝରିଆସିଛି ଅନେକ କାବ୍ୟ କବିତା, ଭଜନ, ଜଣାଣ । ଝାନସୀରେ ଇଂରେଜମାନଙ୍କ ବିରୁଦ୍ଧରେ ହୋଇଥିବା ବିଦ୍ରୋହରେ ସେ ଛଦ୍ମ ବେଶରେ ଦୁଇଟି ସଂକେତକୁ ପାଥେୟ କରି ବିପ୍ଳବର ବାର୍ତ୍ତା ପ୍ରଚାର କରୁଥିଲେ । ସେ ଦୁଇଟି ଥିଲା ପଦ୍ମଫୁଲ ଏବଂ ହଳଦି ପତରର ପିଠା, ଯାହା ପ୍ରତି ଓଡ଼ିଆର ଘରେ ଘରେ ଅତି ପ୍ରିୟ ।



ସଂଖ୍ୟାରେ ଅଧିକ ନ ହେଲେ ମଧ୍ୟ ତାଙ୍କ ଦ୍ୱାରା ରଚିତ ଭଜନ, ଜଣାଣ ଉତ୍କଳ ବାଣୀ ଭଣ୍ଡାରୁ ଋଦ୍ଧିମନ୍ତ କରି ପାରିଛି । ''ମାନୁବାଇ'' କାବ୍ୟ ତାଙ୍କର ଏକ ଅନବଦ୍ୟ କୃତି । ସରଳ, ସାବଲୀଳ, ସୁମଧୁର ଓ ସୁନ୍ଦର ଶବ୍ଦ ମାଧ୍ୟମରେ ସେ ତାଙ୍କ ଭକ୍ତି ନୈବେଦ୍ୟମାଳା ଅର୍ପଣ କରିଯାଇଛନ୍ତି ଏ ଜାତିକୁ । ତାଙ୍କ ସ୍ମୃତିକୁ ଜୀବନ୍ତ ରଖିବା ନିମନ୍ତେ ତାଙ୍କ ନାମରେ ଏକ ସ୍ମୃତି ସଂସଦ ଗଢ଼ାଯାଇଛି ପୁରୀରେ । ୧୯୭୮ ତାଙ୍କର ଅନ୍ୟ ଏକ ଭଜନ ''ଚାଖିଖୁଣ୍ଟିଆ ସ୍ମୃତି ପରିଷଦ'' ତରଫରୁ ପ୍ରକାଶ ପାଇଛି, ଯେଉଁଥିରେ ପ୍ରଭୁ ଶ୍ରୀଜଗନ୍ନାଥଙ୍କର ବଡ଼ଶୃଙ୍ଗାର ବେଶ ସମୟର ନୀତିନିୟମ ଓ ଶୋଭା ବର୍ଣ୍ଣନା କରିଛନ୍ତି ।

ପ୍ରଭୁ ଶ୍ରୀଜଗନ୍ନାଥଙ୍କର ପରମ ଭକ୍ତ, ଦେଶପ୍ରେମୀ, ବିପ୍ଳବୀ ସାହିତ୍ୟ ରଥି ଚନ୍ଦନ ହଜୁରୀ ଆଜି ନାହାନ୍ତି ସତ, ହେଲେ ଜଣେ ଦୂରଦ୍ରଷ୍ଟା, ତୀର୍ଥଗୁରୁ, ଗୁରୁଭାଇ ଏବଂ କବି ଭାବରେ ନିଜର ପରାକାଷ୍ଠା ପ୍ରଦର୍ଶନ ସ୍ୱରୂପ କେବଳ ଓଡ଼ିଶା ଇତିହାସ ନୁହଁ ଭାରତ ଇତିହାସରେ ନିଜର ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ କରିପାରିବା ସହ ସମସ୍ତଙ୍କ ହୃଦୟରେ ଏକ ଅଭୁଲା ସଳିତା ହୋଇ ଜଳୁଛନ୍ତି, ଜଳୁଥିବେ ଚିରକାଳ, ଏହା ନିଃସନ୍ଦେହ ।

ପ୍ଲଟ ନଂ– ୧୮୬୮, ଲେନ୍ – ୬
ଭକ୍ତମଧୁନଗର, ଗଣ୍ଡମୁଣ୍ଡା, ଖଣ୍ଡଗିରି, ଭୁବନେଶ୍ୱର – ୩୦

# କରୁଣାମୟ ଜଗନ୍ନାଥ

ଦୁର୍ଗା ଚରଣ ନନ୍ଦ

କଲିକତା ଛାଡ଼ି ପଣ୍ଡିଚେରୀ
ବଙ୍ଗୋପସାଗର ବୁକୁଚିରି
ଫରାସୀ ଜାହଜ ଗତି କରୁଥାଏ
ସଙ୍ଗେ ଶତାଧିକ ଯାତ୍ରୀ ଧରି ।୧।
ଆଲବକ୍ ବିଟୋ କ୍ୟାପ୍ଟେନ
ସମୁଦ୍ରକୁ କଲେ ନିରୀକ୍ଷଣ
ଦୂରବୀକ୍ଷଣରେ ଦେଖିଲେ ସେ ଯାହା
ଭୟରେ ଥରିଲା ଦେହ ମନ ।୨।
ଛୁଟିଆସେ ଏକ ତିମିଙ୍ଗିଳ
ବାତ୍ୟାରେ ଆକାଶେ ଉଠେ ଜଳ
ଦୁଇଟି ବିପଦ ଏକା ସଙ୍ଗେ ଆସେ
ଧ୍ୱଂସ ରଚିବେକି ମହାକାଳ ।୩।
ଆସନ୍ନ ସଂକଟ ଶୁଣିକରି
ଜାହାଜରେ ପଡ଼ିଗଲା ହୁରି
କେତୋଟି ମୁହୂର୍ତ୍ତ ପରେ ସଭିଙ୍କର
ଜୀବନର ଲୀଳା ଯିବ ସରି ।୪।
ଶ୍ରୀ କୁଳଶେଖର ସୌଦାଗର
ପିପିଲି ନିକଟେ ତାଙ୍କ ଘର
ଜଗନ୍ନାଥ ଚିତ୍ର ସମ୍ମୁଖରେ ରଖି
ଆକୁଳରେ କହୁଥିଲେ ଗିର ।୫।
ତୁମେ ପରା ଦୁଃଖୀ ଦୁଃଖ ହର
ଏ ବିପଦୁ ପ୍ରଭୁ ରକ୍ଷାକର
ତୁମେ ସାହା ହେଲେ କି କରିପାରିବେ
ଛାର ବାତ୍ୟା ଆଉ ତିମିଙ୍ଗିଳ ।୬।
କ୍ୟାପ୍ଟେନ ବିଟୋ ଏହା ଦେଖି
ତାଙ୍କ ଆଖି ରହିଗଲା ଲାଖି
ତିମିଙ୍ଗିଳଠାରୁ ଭୟଙ୍କର ତାଙ୍କୁ
ଲାଗିଲା ପ୍ରଭୁଙ୍କ ଚକା ଆଖି ।୭।
ପଚାରିଲେ ତୁମେ ଏକିକର
ଶୋକରେ କହନ୍ତି ସୌଦାଗର
ଏ ମୋର ଠାକୁର ଡ଼ାକୁଅଛି ତାଙ୍କୁ
ଏ ସଂକଟୁ କରିଦେବେ ପାର ।୮।
ବିକଳେ କହନ୍ତି କ୍ୟାପ୍ଟେନ
ଟଳିଯିବ ଯେବେ ଏ କଷଣ
ଜାହାଜରେ ଥିବା ଧନ ତାଙ୍କ ପାଦେ
କରିଦେବି ସବୁ ସମର୍ପଣ ।୯।
ସତେ କି ମନ୍ତର କିଏ କଲା
ତିମିଙ୍ଗିଳ ଦିଗ ବଦଳିଲା
ଆକାଶରୁ ଏକ ଶବ୍ଦ ହୋଇକରି
ପବନର ବେଗ କମିଗଲା ।୧୦।
ହୋଇ କୃତ୍ୟ କୃତ୍ୟ କ୍ୟାପ୍ଟେନ
ଏକ ଘଣ୍ଟି ସହ ସବୁ ଧନ
ଜଗତନାଥଙ୍କ ମନ୍ଦିର ପାଣ୍ଡିକୁ
ଅକୁଣ୍ଠରେ କରିଦେଲେ ଦାନ ।୧୧।
ସେ ଘଣ୍ଟି ରହିଛି ଶ୍ରୀମନ୍ଦିରେ
ଏ ଭାବନା ଆଣେ ଅନ୍ତରରେ
ବିଶ୍ୱାସରେ ହରି ପ୍ରାପତ ହୁଅନ୍ତି
ତର୍କେ ଚାଲିଯାନ୍ତି ବହୁ ଦୂରେ ।୧୨।

କ୍ୱାଟର୍ସ ନଂ–ଆଇଭିଏ–୪୨/୪
ୟୁନିଟ୍–୨, ଭୁବନେଶ୍ୱର–୭୫୧୦୦୯

# ଶ୍ରୀଜଗନ୍ନାଥଙ୍କ ଉପରେ ଆଧାରିତ ଓଡ଼ିଆ ଚଳଚ୍ଚିତ୍ର

**ଦିଲ୍ଲୀପ ହାଲି**

ଜଗନ୍ନାଥ ସଂସ୍କୃତି ଓଡ଼ିଆ ଜନମାନସ, ଓଡ଼ିଆ ସଂସ୍କୃତି ମାଟି, ପାଣି, ପବନ ଏବଂ ସର୍ବୋପରି ଓଡ଼ିଶା ଭୂଖଣ୍ଡ ସହ ଓତପ୍ରୋତ ଭାବରେ ଜଡିତ । ଏହା ଆଧ୍ୟାତ୍ମିକ ଭାବରେ ସମସ୍ତ ଚେତନାରେ ପ୍ରତିଫଳିତ । ମହାପ୍ରଭୁଙ୍କ କାହାଣୀ ନେଇ ନିର୍ମିତ ହୋଇଛି ଓଡ଼ିଶାରେ ଅନେକ ଓଡ଼ିଆ ଚଳଚ୍ଚିତ୍ର । ତା' ସହିତ ଅନେକ ସଫଳତା ମଧ୍ୟ ହାସଲ କରିଛି ।



ପ୍ରଥମ ଓଡ଼ିଆ ଚଳଚ୍ଚିତ୍ର ଥିଲା 'ସୀତା ବିବାହ' । ଏହାର ଅନେକ ବର୍ଷ ପରେ ମୁକ୍ତିଲାଭ କଲା 'ଲଳିତା' । ଏହା ଶ୍ରୀଜଗନ୍ନାଥଙ୍କ ମହିମା ଆଧାରିତ ପ୍ରଥମ ଚଳଚ୍ଚିତ୍ର । ଏହାର ପ୍ରଯୋଜନା ଶ୍ରୀ ଗୌରେନ୍ଦ୍ର ପ୍ରତାପ ସିଂହଦେଓ ଏବଂ ନିର୍ଦ୍ଦେଶନା ଭାର ସମ୍ଭାଳି ଥିଲେ କଲ୍ୟାଣ ଗୁପ୍ତ । ସଂଳାପ ଓ ଗୀତ ଥିଲା କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କର । ଏଥିରେ ଅଭିନୟ କରିଥିଲେ ଲୋକନାଥ ମିଶ୍ର, ଉମା ଗୋଏଙ୍କା, ନନ୍ଦିନୀ ତ୍ରିପାଠୀ, ସୁମତୀ ଦେବୀ ଓ ବୀଣା ଦେବୀ ପ୍ରମୁଖ କଳାକାର । ଏହି ଚଳଚ୍ଚିତ୍ର ପରେ ଅର୍ଥାତ୍ ୧୯୫୦ ମସିହା ଫେବୃଆରୀ ୨ ତାରିଖରେ 'ଶ୍ରୀଜଗନ୍ନାଥ' ମୁକ୍ତିଲାଭ କଲା । ଏହା ଥିଲା ଜଗନ୍ନାଥଙ୍କୁ ନେଇ ସମ୍ପୂର୍ଣ୍ଣ କାହାଣୀ । ଏହାର ପ୍ରଯୋଜକ ଥିଲେ ସୁରେନ୍ଦ୍ର କୁମାର ଦାଶ । ନିର୍ଦ୍ଦେଶନା ଥିଲା ଚିତ୍ତରଞ୍ଜନ ମିଶ୍ରଙ୍କର । ସଂଗୀତ ରଚନା ବାଳକୃଷ୍ଣ ଦାଶ । ଅଭିନୟରେ ଥିଲେ ରାମଚନ୍ଦ୍ର ମାଣିଆ, ଗୋପାଳ ଘୋଷ, ଖଗେନ୍ଦ୍ର ମିଶ୍ର, ନିମାଇଁ ହରିଚନ୍ଦନ, ନିରଞ୍ଜନ ଶତପଥୀ, ଗ୍ଲୋରିଆ ରାଉତ, ବିଷ୍ଣୁପ୍ରିୟା ଦେବୀ, ବିଦ୍ୟୁତ୍‌ଲତା ଦେବୀ ଓ ସାମୁଏଲ ସାହୁ (ବାବି) ପ୍ରମୁଖ । ସେତେବେଳେ ଏହା ୭୦ ଦିନ ଧରି ଚାଲିଥିଲା । ଏହାପରେ ୧୯୫୯ ମସିହାରେ ନିର୍ମାଣ ହୋଇଥିଲା ଚଳଚ୍ଚିତ୍ର 'ମହାଲକ୍ଷ୍ମୀ ପୂଜା' । ଏହାର ନିର୍ଦ୍ଦେଶନା ଦେଇଥିଲେ ବିଶ୍ୱନାଥ ନାୟକ । ପ୍ରଯୋଜନା କରିଥିଲେ କବିରାଜ କୃଷ୍ଣଚନ୍ଦ୍ର ତ୍ରିପାଠୀ ଶର୍ମା । ଏହି ଚଳଚ୍ଚିତ୍ରକୁ ନେଇ ପ୍ରଯୋଜକ 'ଜୟ ଜଗନ୍ନାଥ' ନାମକରଣ କରି ହିନ୍ଦୀ ଭାଷାରେ ଡବିଂ କରି ଓଡ଼ିଶା ବାହାରେ ପ୍ରଦର୍ଶନ କରିଥିଲେ । ସେସମୟରେ ଏହା ବେଶ୍ ଲୋକପ୍ରିୟତା ହାସଲ କରିଥିଲା ।

ତା'ପରେ 'ଜୟଦେବ' ନାମରେ ୧୯୬୩ ମସିହାରେ ଏକ ଓଡ଼ିଆ ଚଳଚ୍ଚିତ୍ର ନିର୍ମାଣ କରାଯାଇଥିଲା । ନିର୍ଦ୍ଦେଶନା କଲ୍ୟାଣ ଗୁପ୍ତଙ୍କର । କିନ୍ତୁ କଥାଚିତ୍ରଟି ମୁକ୍ତିଲାଭ ପୂର୍ବରୁ ନିର୍ଦ୍ଦେଶକଙ୍କର ଦେହାନ୍ତ ହୋଇଯାଇଥିଲା । ଏଥିରେ ଅଭିନୟ କରିଥିଲେ ପ୍ରଭାବତୀ, ଶେଫାଳୀ, ବ୍ୟୋମକେଶ ତ୍ରିପାଠୀ ଏବଂ ନରେନ୍ଦ୍ର କମଳ । ଏହି ଚଳଚ୍ଚିତ୍ରଟି ପୂର୍ବରୁ ଅର୍ଥାତ୍ ୧୯୬୨ ମସିହାରେ 'ଶ୍ରୀଶ୍ରୀ ପତିତପାବନ' ନାମରେ ଏକ ଚଳଚ୍ଚିତ୍ର ନିର୍ମିତ



ହୋଇଥିଲା । ଜଗନ୍ନାଥ ଧର୍ମ ପ୍ରଚାର ଓ ପ୍ରସାର ଉଦ୍ଦେଶ୍ୟରେ ପୁରୀର ସାହିଯାତ୍ରା, ଜଗନ୍ନାଥଙ୍କ କାର୍ଯ୍ୟକ୍ରମ ସମ୍ପର୍କିତ ଫଟୋ ଏଥିରେ ସ୍ଥାନିତ ହୋଇଥିଲା । ଏହି ଫଟୋଗୁଡ଼ିକୁ ସୁକୁମାର ଗାଙ୍ଗୁଲି ଉଠାଇଥିଲେ । ଏ ଥିଲା ଏକ ପରୀକ୍ଷାମୂଳକ ଚଳଚ୍ଚିତ୍ର ।

ଏହାର କିଛିବର୍ଷ ପରେ ଗୋବିନ୍ଦ ତେଜଙ୍କ 'କୃଷ୍ଣ ସୁଦାମା', ଧୀରେନ୍ ପଟ୍ଟନାୟକଙ୍କ 'ବନ୍ଧୁ ମହାନ୍ତି' (୧୯୭୬ ମସିହା ଏବଂ କ୍ରାନ୍ତି କୁମାରଙ୍କ 'ଶ୍ରୀଜଗନ୍ନାଥ' (୧୯୭୯) ଥିଲା ଜଗନ୍ନାଥଙ୍କ ମହିମା ଉପରେ ଆଧାରିତ । 'କୃଷ୍ଣ ସୁଦାମା'ର ନିର୍ଦ୍ଦେଶକ ଥିଲେ ନିତାଇ ପାଲିତ, ସଂଗୀତ ଭୁବନେଶ୍ୱର ମିଶ୍ର ଏବଂ ନୃତ୍ୟ ନିର୍ଦ୍ଦେଶକ ଥିଲେ କେଲୁଚରଣ ମହାପାତ୍ର । ଏଥିରେ ଅଭିନୟ କରିଥିଲା – ଗୋବିନ୍ଦ ତେଜ, ଶାନ୍ତିସ୍ୱରୂପ, ଧୀର ବିଶ୍ୱାଳ, ତ୍ରିପୁରା ମିଶ୍ର, ପ୍ରଶାନ୍ତ ନନ୍ଦ, ଅନୀତା ଦାସ, ମାମିନା ଓ ପ୍ରୀତି ପଟ୍ଟନାୟକ । ଏହି ଚଳଚ୍ଚିତ୍ରଟି ଭିନ୍ନସ୍ୱାଦର ଥିଲା ଏବଂ ଦର୍ଶକମାନଙ୍କୁ ବେଶ୍ ଭଲ ଲାଗିଥିଲା । ନିତାଇ ପାଲିତ ନିର୍ଦ୍ଦେଶିତ ଚଳଚ୍ଚିତ୍ର 'ବନ୍ଧୁ ମହାନ୍ତି' ସେସମୟରେ ରାଜ୍ୟ ସରକାରଙ୍କ ଚଳଚ୍ଚିତ୍ର ପୁରସ୍କାର ପାଇଥିଲା । ତେବେ କ୍ରାନ୍ତି କୁମାରଙ୍କ 'ଶ୍ରୀଜଗନ୍ନାଥ' ଶୀର୍ଷକରେ ନିର୍ମିତ ଚଳଚ୍ଚିତ୍ର ଥିଲା ଦ୍ୱିତୀୟ ଚଳଚ୍ଚିତ୍ର । ଏଥିରେ ସଙ୍ଗୀତ ନିର୍ଦ୍ଦେଶନା ଦେଇଥିଲେ ଅକ୍ଷୟ ମହାନ୍ତି । ଏହାର ଗୀତଗୁଡ଼ିକ ଅତ୍ୟନ୍ତ ସୁମଧୁର ଓ ହୃଦୟସ୍ପର୍ଶୀ ହୋଇଥିଲା, ଯାହା ଆଜି ପର୍ଯ୍ୟନ୍ତ ମଧ୍ୟ ଶ୍ରୋତାମାନେ ମନେ ରଖିଛନ୍ତି । ଏହାର ନିର୍ଦ୍ଦେଶନା ଥିଲା ବିଜୟ ଭାସ୍କରଙ୍କର । ଏହା ବଙ୍ଗଳା, ତେଲୁଗୁ, ତାମିଲ ଓ ଆସାମୀ ଭାଷାରେ ଡବିଂ ହୋଇ ପ୍ରଦର୍ଶିତ ହୋଇଥିଲା । ଏହାର କିଛି ବର୍ଷ ପରେ 'ନୀଳମାଧବ' ନାମରେ ଚଳଚ୍ଚିତ୍ର ନିର୍ମାଣ ହୋଇଥିଲା, ଯାହାର ପ୍ରଯୋଜକ ଥିଲେ ରାଜକୁମାରୀ ଦେବୀ । ନିର୍ଦ୍ଦେଶକ ଥିଲେ ଜେ.ପି. ଭଗତ । ସଂଗୀତ ନିର୍ଦ୍ଦେଶନା ଦେଇଥିଲେ ନିର୍ମଳ କୁମାର । ଏହି ଚଳଚ୍ଚିତ୍ରର ଶୀର୍ଷକ ଗୀତ 'ନୀଳମାଧବ ହେ, ଘେନବାରେ ମୋ ମିନତି.. ଅତ୍ୟନ୍ତ ଲୋକପ୍ରିୟ ଅଟେ, ଯାହାକୁ ଗାଇଥିଲେ ଭିକାରୀ ବଳ ।

ଏହା ପରେ ୧୯୮୩ ମସିହାରେ ସୂର୍ଯ୍ୟନାରାୟଣ ମହାନ୍ତି ନିର୍ମାଣ କରିଥିଲେ ସାଲବେଗଙ୍କ କାହାଣୀକୁ ନେଇ ଓଡ଼ିଆ ଚଳଚ୍ଚିତ୍ର 'ଭକ୍ତ ସାଲବେଗ' । ଏହା ଅତ୍ୟନ୍ତ ପ୍ରଭାବଶାଳୀ ଚଳଚ୍ଚିତ୍ର ଥିଲା । ନିର୍ଦ୍ଦେଶନା ଦେଇଥିଲେ ରାଧା ପଣ୍ଡା । ସଙ୍ଗୀତ ଭୁବନେଶ୍ୱର ମିଶ୍ର । ଅଭିନୟରେ ଥିଲେ ଉତ୍ତମ ମହାନ୍ତି, ଅପରାଜିତା, ଅନୀତା ଦାସ, ଦୁଃଖୀରାମ ସ୍ୱାଇଁ, ବୀରେନ୍ ରାଉତରାୟ, ବ୍ୟୋମକେଶ ତ୍ରିପାଠୀ । ଏହାର ଗୀତଗୁଡ଼ିକ ଅତ୍ୟନ୍ତ ହୃଦୟସ୍ପର୍ଶୀ ଥିଲା । ତା'ପରେ ୧୯୮୬ ମସିହାରେ ନିର୍ମିତ ହୋଇଥିଲା ଚଳଚ୍ଚିତ୍ର 'ମାଣିକ' । ଶ୍ରୀଜଗନ୍ନାଥଙ୍କ କାଞ୍ଚିଅଭିଯାନ କାହାଣୀ ପୃଷ୍ଠଭୂମି ଉପରେ ମାଣିକ ଗଉଡୁଣୀର ବିଷୟବସ୍ତୁକୁ ନେଇ ଏହା ନିର୍ମାଣ ହୋଇଥିଲା । ନିର୍ଦ୍ଦେଶନା ଦେଇଥିଲେ ଆର୍. ଅସରାର। ସଂଗୀତ ଥିଲା ଉପେନ୍ଦ୍ର କୁମାରଙ୍କର । ଏଥିରେ ନାୟକ ଓ ନାୟିକା ଥିଲେ ବିଜୟ ମହାନ୍ତି ଓ ତନ୍ଦ୍ରା ରାୟ । ଏହାପରେ 'ଜୟଦେବ' ଶୀର୍ଷକରେ ଦ୍ୱିତୀୟ ଚଳଚ୍ଚିତ୍ର ନିର୍ମାଣ କରିଥିଲେ ଶାନ୍ତି ରାଉତ ରାୟ ୧୯୮୭ ମସିହାରେ । ନିର୍ଦ୍ଦେଶନା ଦେଇଥିଲେ ଶ୍ୟାମଳ ମୁଖାର୍ଜୀ । ଅଭିନୟରେ ଥିଲେ ଚକ୍ରପାଣି, ଶର୍ମିଳା ବିଶ୍ୱାସ, ଉତ୍ତମ ମହାନ୍ତି, ନେତ୍ରାନନ୍ଦ ମିଶ୍ର ପ୍ରମୁଖ କଳାକାର । ସଙ୍ଗୀତ ଦେଇଥିଲେ ବାଳକୃଷ୍ଣ ଦାସ ।

ତେବେ ଏହା ଅନେକ ବର୍ଷ ଅର୍ଥାତ୍ ପ୍ରାୟ ୨୦ ବର୍ଷ ପର୍ଯ୍ୟନ୍ତ ଜଗନ୍ନାଥଙ୍କ ମହିମା ସମ୍ପର୍କିତ ଓଡ଼ିଆ ଚଳଚ୍ଚିତ୍ର ଦେଖିବାକୁ ମିଳିଲା ନାହିଁ । ବଲିଉଡ ପ୍ରଯୋଜକ ଭରତ ଶାହା ୨୦୦୬ ମସିହାରେ ନିର୍ମାଣ କଲେ 'ଜୟ ଜଗନ୍ନାଥ' । ଏହାର ନିର୍ଦ୍ଦେଶନା ଦେଇଥିଲେ ସବ୍ୟସାଚୀ ମହାପାତ୍ର । ଏହା 'ଲକ୍ଷ୍ମୀ ପୁରାଣ' ଉପରେ ଆଧାରିତ ଥିଲା । ଏହା ୧୪ଟି ଭାଷାରେ ଡବିଂ ହୋଇ ଭିନ୍ନ ଭିନ୍ନ ରାଜ୍ୟରେ ମୁକ୍ତିଲାଭ କରିଥିଲା । ଏଥିରେ ସଙ୍ଗୀତ ନିର୍ଦ୍ଦେଶନା ଦେଇଥିଲେ ଅକ୍ଷୟ ମହାନ୍ତି ।

ଓଡ଼ିଆମାନଙ୍କ ଜନଜୀବନରେ ଶ୍ରୀଜଗନ୍ନାଥଙ୍କ ମହିମା ଗଭୀର ଭାବରେ ରହିଛି ଓ ରହିବ ମଧ୍ୟ । ସେଇ ଦୃଷ୍ଟିକୋଣରୁ ଚିତ୍ର ନିର୍ମାତା ଓ ନିର୍ଦ୍ଦେଶକମାନେ ଚତୁରତାର ସହିତ ଓଡ଼ିଆ ଦର୍ଶକମାନଙ୍କୁ ଆକୃଷ୍ଟ କରିବା ପାଇଁ ଶ୍ରୀଜଗନ୍ନାଥଙ୍କ ପ୍ରତି ଓଡ଼ିଆମାନଙ୍କ ଭାବାବେଗକୁ ଲକ୍ଷ୍ୟ କରି କେତେକ ସାମାଜିକ



ଚଳଚ୍ଚିତ୍ରର ନାମକରଣରେ ଶ୍ରୀଜଗନ୍ନାଥଙ୍କ ନାମକୁ ନେଇ ନାମକରଣ ଦେବା ସହ ତାଙ୍କ ମହିମାକୁ ପରୋକ୍ଷରେ କାହାଣୀରେ ଉପସ୍ଥାପନ କରିଛନ୍ତି । **ଶ୍ରୀଜଗନ୍ନାଥଙ୍କ ମହିମା ଉପରେ ଆଧାରିତ ୧୯୪୯ ମସିହାରେ 'ଲଳିତା' ଚଳଚ୍ଚିତ୍ର ପରଠାରୁ ମୁକ୍ତିଲାଭ କରିଥିବା 'ଜୟ ଜଗନ୍ନାଥ' ଚଳଚ୍ଚିତ୍ର ଏବଂ କେତେକ ସାମାଜିକ ଚଳଚ୍ଚିତ୍ର ନିମ୍ନରେ ଉଲ୍ଲେଖ କରାଗଲା ।**

| କ୍ର.ନଂ. | ମସିହା | ଚିତ୍ରର ନାମ | ପ୍ରଯୋଜନା ସଂସ୍ଥା | ନିର୍ଦ୍ଦେଶକ |
|---|---|---|---|---|
| ୧ | ୧୯୪୯ | ଲଳିତା | ଗ୍ରେଟ୍ଇଷ୍ଟର୍ଣ୍ଣ ମୁଭିଟୋନ୍ | କଲ୍ୟାଣ ଗୁପ୍ତ |
| ୨ | ୧୯୫୦ | ଶ୍ରୀଜଗନ୍ନାଥ | ରୂପଭାରତୀ ଲିମିଟେଡ୍ | ଚିତ୍ତରଞ୍ଜନ ମିତ୍ର |
| ୩ | ୧୯୫୯ | ଶ୍ରୀ ଶ୍ରୀ ମହାଲକ୍ଷ୍ମୀ ପୂଜା | ଉତ୍କଳ ଚଳଚ୍ଚିତ୍ର | ବିଶ୍ୱନାଥ ନାଏକ |
| ୪ | ୧୯୬୨ | ଜୟଦେବ | ଜେ.ଜେ. ପ୍ରଡକ୍ସନ | କଲ୍ୟାଣ ଗୁପ୍ତ |
| ୫ | ୧୯୬୨ | ଶ୍ରୀ ଶ୍ରୀ ପତିତପାବନ | ଗାଙ୍ଗୁଲୀ ପ୍ରଡକ୍ସନ | ସୁକୁମାର ଗାଙ୍ଗୁଲୀ |
| ୬ | ୧୯୬୩ | ବନ୍ଧୁ ମହାନ୍ତି | ପ୍ରିୟଦର୍ଶିନୀ ଫିଲ୍ମସ୍ | ନିତାଇ ପାଲିତ |
| ୭ | ୧୯୭୯ | ନୀଳମାଧବ | ଶ୍ରୀପତି ଫିଲ୍ମସ୍ | ଜେ.ପି.ଭଗତ |
| ୮ | ୧୯୭୯ | ଶ୍ରୀଜଗନ୍ନାଥ(ରଙ୍ଗୀନ୍) | ଶ୍ରୀକାନ୍ତି ଏଣ୍ଟରପ୍ରାଇଜର୍ସ | ଡି. ବିଜୟ ଭାସ୍କର |
| ୯ | ୧୯୮୩ | ଭକ୍ତ ସାଲବେଗ | ଜେ.ଜେ. ଫିଲ୍ମସ୍ | ରାଧା ପଣ୍ଡା |
| ୧୦ | ୧୯୮୬ | ମାଣିକ | ରୂପା ଇଣ୍ଟର ନ୍ୟାସନାଲ | ଆର.ଅସରାର |
| ୧୧ | ୧୯୮୭ | ଜୟଦେବ | ଶ୍ୟାମଲ ମୁଖାର୍ଜୀ | ଚକ୍ରପାଣି |
| ୧୨ | ୨୦୦୭ | ଜୟ ଜଗନ୍ନାଥ | ମହାପାତ୍ର ମୁଭି | ସବ୍ୟସାଚି ମହାପାତ୍ର |
| ୧୩ | ପୁଅ ମୋର କଳା ଠାକୁର | | ଇଷ୍ଟର୍ଣ୍ଣ ମିଡିଆ ଲିଃ, ପ୍ରଯୋଜନା– ଅମୀୟ ପଟ୍ଟନାୟକ | ରାଜୁ ମିଶ୍ର |
| ୧୪ | ଚକାଡୋଳା କରୁଛି ଲୀଳା | | ଇଷ୍ଟର୍ଣ୍ଣ ମିଡିଆ ଲିଃ, ପ୍ରଯୋଜକ– ଅମୀୟ ପଟ୍ଟନାୟକ | ହର ପଟ୍ଟନାୟକ |
| ୧୫ | ହିସାବ କରିବ କାଳିଆ | | ପ୍ରଯୋଜକ– ହରେକୃଷ୍ଣ ଗିରି | ସୁମନ୍ତ ଦେ |
| ୧୬ | କାଳିଆ ଭରସା | | ପ୍ରଯୋଜନା– ଦେବବ୍ରତ କର | ସିଦ୍ଧାର୍ଥ (ସୂର୍ଯ୍ୟ ମିଶ୍ର) |



| | | | |
|---|---|---|---|
| ୧୭ | ଠାକୁରେ ଅଛନ୍ତି ଚଉବାହାକୁ | ତିରୁମାଲା ପିକ୍‌ଚର୍ସ | ଡି. ବିଜୟ ଭାସ୍କର |
| ୧୮ | ଚକାଆଖି ସବୁ ଦେଖୁଚି | ପ୍ରଯୋଜକ–ଅମୀୟ ପଟ୍ଟନାୟକ | ରାଜୁ ମିଶ୍ର |
| ୧୯ | ପଥର ଖସୁଚି ବଡ ଦେଉଳୁ | ତିରୁମାଲା ପିକ୍‌ଚର୍ସ/ ମିଶ୍ର ବ୍ରଦର୍ସ | ରାଜୁ ମିଶ୍ର |
| ୨୦ | ଜଗା ବଳିଆ | ସତ୍ୟସାଇ ଫିଲ୍ମସ୍ | ପ୍ରଶାନ୍ତ ନନ୍ଦ |
| ୨୧ | ଜଗା ହାତରେ ପଘା | ଏମ୍.ଏମ୍. ଫିଲ୍ମସ୍ | ମହମ୍ମଦ ମହସୀନ |
| ୨୨ | କୋଟିଏ ମଣିଷ ଗୋଟିଏ ଜଗା | ତିରୁପତି ପିକ୍‌ଚର୍ସ | ଡି. ବିଜୟ ଭାସ୍କର |
| ୨୩ | ତୋ ବିନୁ ଅନ୍ୟ ଗତି ନାହିଁ | ସୁବାସ ରଥ | ମହମ୍ମଦ ମହସୀନ |
| ୨୪ | ଏଇ ଆଖି ଆମ ସାକ୍ଷୀ | ମା ଭୂଆସୁଣୀ ଫିଲ୍ମସ୍/ସନ୍ତୋଷ ଭୂୟାଁ | ଅରବିନ୍ଦ ପାଣ୍ଡେ |
| ୨୫ | ସକଳତୀର୍ଥ ତୋ ଚରଣେ | ବିଶ୍ୱନାଥ ପ୍ରଧାନ | ସଂଗ୍ରାମ ବିଶ୍ୱାଳ |
| ୨୬ | କୁଳନନ୍ଦନ | ରଣଜିତ୍ ସାହୁ | ହିମାଂଶୁ ପରିଜା (ଚଣ୍ଡୀ) |
| ୨୭ | ମୋ ଭାଇ ଜଗା | ସୋନୀ ଫିଲ୍ମସ୍ | ରଜନୀକାନ୍ତ ସାମନ୍ତରାୟ |
| ୨୮ | ବାହୁଡିବେ ମୋ ଜଗାବଳିଆ | ବିଭୂତି ରାଉତରାୟ | ସବ୍ୟସାଚୀ ମହାପାତ୍ର |
| ୨୯ | କଳା ମାଣିକ | ପ୍ରଯୋଜକ–ବିଶ୍ୱନାଥ ପ୍ରଧାନ | ବସନ୍ତ ସାହୁ |
| ୩୦ | ଗୋପରେ ବଢୁଛି କଳାକହ୍ନେଇ | ପ୍ରଯୋଜକ– ବିଜୟ କୁମାର | ସାଧୁ ମେହେର |
| ୩୧ | ଯାହାକୁ ରଖିବେ ଅନନ୍ତ | ପ୍ରଯୋଜକ– ବସନ୍ତ ନାୟକ | ଅସିମ୍ କୁମାର |
| ୩୨ | ଆସୁଚି ମୋ କାଳିଆ ସୁନା | ଇଷ୍ଟର୍ଣ୍ଣ ମିଡିଆ ଲିଃ | ରାଜୁ ମିଶ୍ର |
| | | ପ୍ରଯୋଜକ–ଅମୀୟ ପଟ୍ଟନାୟକ | |
| ୩୩ | ପୁଅ ମୋର ଜଗତଜିତା | ପ୍ରଯୋଜକ– ସନକ ଡେବତା | ସୁଧାଂଶୁ ମୋହନ ସାହୁ |
| ୩୪ | ସାକ୍ଷୀ ରହିଲା ଏ ସିଂହ ଦୁଆର | ଜିତେନ୍ଦ୍ର ସାହୁ | ସଞ୍ଜୟ ନାୟକ |
| ୩୫ | ବାଇଶି ପାହାଚେ ଖେଳିବ ମୀନ | ଶୁଭମ୍ ଶତକୀ ଫିଲ୍ମସ୍ | ସଞ୍ଜୟ ନାୟକ |

ବଡଗଡ, ଭୁବନେଶ୍ୱର–୧୮



# ଓଡ଼ିଶାରେ ନାଗଧର୍ମ ପ୍ରଭୁ ଶ୍ରୀଜଗନ୍ନାଥ-ଏକ ସିଂହାବଲୋକନ

ଡକ୍ଟର ମନସା ଶ୍ରୀଚନ୍ଦନ (ରାୟ)

ଯୁଗଯୁଗ ଧରି ପ୍ରଭୁ ଶ୍ରୀଜଗନ୍ନାଥ ଓ ଶ୍ରୀଜଗନ୍ନାଥ ସଂସ୍କୃତିର ଧର୍ମୀୟ ସିଦ୍ଧାନ୍ତ ଓ ଧାର୍ମିକ ବିଚାରଧାରାର ମୌଳିକ ସମ୍ମିଶ୍ରଣ ଉପଲବଧି କରାଯାଏ । ସେହି ସର୍ବଧର୍ମ ସମନ୍ୱୟର ପ୍ରତୀକ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ମଧରେ ବୈଷ୍ଣବ, ଶାକ୍ତ, ଗାଣପତ୍ୟ ସୌର, ନାଗ, ବୌଦ୍ଧ, ଜୈନ ଧର୍ମର ମତବାଦ ବୌଦ୍ଧିକ ଓ ଆଧାତ୍ମିକ ଅନୁଭୂତି ସହ ବହୁବିଧ ମାନବିକ ଅଭିବ୍ୟକ୍ତିର ପରିପ୍ରକାଶ ଦେଖିବାକୁ ମିଳେ । ଥରେ ବିଶ୍ୱାସର ଅନ୍ତଃକରଣରେ ପ୍ରଭୁଙ୍କର ସେହି କଳାବଦନକୁ ଚାହିଁଦେଲେ ସର୍ବଧର୍ମ ଏକାକାର ହୋଇ ତାଙ୍କରି କଳାରଂଗ ଭିତରେ ତଲ୍ଲୀନ ହେଲାପରି ଦିଶେ ସେହି ସର୍ବମୟ, ସର୍ବଜ୍ଞ ପ୍ରଭୁ ସମସ୍ତଙ୍କ ଭିତରେ ଏବଂ ସମସ୍ତେ ତାଙ୍କ ଭିତରେ ପରିବ୍ୟାପ୍ତ । ଶ୍ରୀଜଗନ୍ନାଥ ହିଁ ଉତ୍କଳୀୟ ଧର୍ମ ଧାରଣା ଓ ସଂସ୍କୃତିର ସମନ୍ୱୟାତ୍ମକ ପ୍ରତୀକ ଭାବରେ ବିରାଜିତ । ତେଣୁ ଉତ୍କଳ କାହିଁ କେଉଁ କାଳରୁ ଭାରତୀୟ ଧର୍ମ, ସଂସ୍କୃତି, ଦର୍ଶନର ସମନ୍ୱୟ ପୀଠଭାବେ ପ୍ରତିଷ୍ଠା ଲାଭ କରିଛି । ସେହି ଭାରତୀୟ ଧର୍ମ ମଧ୍ୟରୁ ନାଗଧର୍ମ ବା ନାଗ ଉପାସନା ଅନ୍ୟତମ ।

ଐତିହାସିକ ମତାନୁଯାୟୀ ଆଦିମ ଯୁଗର ମନୁଷ୍ୟ ଗିରିଗୁହା, ବଣଜଙ୍ଗଲରେ ବାସ କରୁଥିବା ସମୟରେ ପ୍ରକୃତି ହସ୍ତର କ୍ରୀଡ଼ନକ ଥିଲା, ପ୍ରକୃତିର ଅଗଣା ତା'ର ଆହାର ବିହାରର ଏକମାତ୍ର ଲୀଳାକ୍ଷେତ୍ର ଥିଲା । ପ୍ରକୃତି ପ୍ରତି ତା'ର ଯେତିକି ଶ୍ରଦ୍ଧା ଥିଲା, ସେତିକି ଭୟ ମଧ ଥିଲା । ଭୟରୁ ଭକ୍ତି ସୃଷ୍ଟି ହେଲାପରି ପ୍ରାକୃତିକ ବିପର୍ଯ୍ୟୟରୁ ନିଜକୁ ରକ୍ଷା କରିବା ଲାଗି ପ୍ରକୃତିର ପ୍ରତ୍ୟେକ ଉପାଦାନକୁ ପୂଜା କରିବାକୁ ଲାଗିଲା । ଯେପରି ବୃକ୍ଷଲତା, ପାହାଡ଼ପର୍ବତ, ସାଗର, ସୂର୍ଯ୍ୟ, ଚନ୍ଦ୍ର, ଇନ୍ଦ୍ର ଇତ୍ୟାଦି ମନୁଷ୍ୟକୁ ସାହାଯ୍ୟ କରୁଥିବା ଓ ଭୟ ଦେଖାଉଥିବା ଜୀବଜନ୍ତୁ ସମସ୍ତେ ପୂଜା ସ୍ଥାନରେ ରହିଲେ । ଧୀରେ ଧୀରେ ଆମ ସଂସ୍କୃତି ଉପରେ ମଧ ଏହି ଜୀବଜନ୍ତୁଙ୍କର ପ୍ରଭାବ ଦେଖିବାକୁ ମିଳିଲା । ଆମ କଳାଭାସ୍କର୍ଯ୍ୟ ଓ ସାହିତ୍ୟରେ ଦେଖାଯାଏ ପ୍ରତ୍ୟେକ ଦେବଦେବୀଙ୍କୁ ଗୋଟିଏ ଗୋଟିଏ ପଶୁପକ୍ଷୀଙ୍କୁ ବାହାନ ଆକାରରେ ଦେଇ ସେମାନଙ୍କର ସୁରକ୍ଷା ସମ୍ପର୍କରେ ପରିକଳ୍ପନା କରାଯାଇଛି । ଧର୍ମ ସହିତ ଜୀଜନ୍ତୁଙ୍କୁ ସଂଯୋଗ କରାଯାଇ ସୃଷ୍ଟି ହୋଇଛି ଅନେକ ଧର୍ମ, ସେଥିମଧ୍ୟରୁ ନାଗଧର୍ମ ଅନନ୍ୟ ଅଟେ ।

ଭାରତୀୟ ସଂସ୍କୃତି ଧର୍ମଧାରଣାରେ ନାଗଧର୍ମ ଏକ ପ୍ରାଚୀନ ଉପାସନା । ପ୍ରାଚୀନ କାଳରେ ଆଦିମାନବ ଅନ୍ୟାନ୍ୟ ଜୀବଜନ୍ତୁ ଅପେକ୍ଷା ସର୍ପଦ୍ୱାରା ଅଧିକ ମୃତ୍ୟୁବରଣ କରୁଥିଲେ । ତେଣୁ ସର୍ପ ଯେ ସମସ୍ତଙ୍କ ଅପେକ୍ଷା ଭୟଙ୍କର ଓ ତା'ରି ଭିତରେ ଅପରାଜୟ ଶକ୍ତି ରହିଛି ଜାଣି ତାହାର ଉପାସନା ଆରମ୍ଭ କଲେ । ସମୟକ୍ରମେ ଏହି ଉପାସନା ଧର୍ମର ରୂପ ନେଲା । ଏହି ଧର୍ମ ମନୁଷ୍ୟ ଏବଂ ନାଗ (ସର୍ପ)କୁ ଏକତ୍ର କଲା । ସେହି ନାଗ ମଣିଷକୁ ଭୟ, ଭଲପାଇବା, ସାଧୁତା ଏବଂ ସମ୍ମାନ ଆଦି ଅନେକ ଗୁଣକୁ ଶିକ୍ଷାଦେଲା ।

ଆର୍ଯ୍ୟୋତର ଭାରତରେ ପ୍ରଚଳିତ ଥିବା ନାଗପୂଜା ହିଁ ବୈଦିକ ଯୁଗରେ ଆର୍ଯ୍ୟୀୟ ପୂଜାର ଅଙ୍ଗୀଭୂତ ହୋଇଥିଲା । ମହୋଞ୍ଜୋଦାର ସଭ୍ୟତାରେ ନାଗଧର୍ମ ଗୃହୀତ ହୋଇଥିଲା । "Religious of India- Hopkins" ଗ୍ରନ୍ଥରେ ବର୍ଣ୍ଣିତ ଅଛି ଯେ,



ନାଗ–ଅସୁର ଓ ଦେବ ଉଭୟ ଭାବରେ ସ୍ଥାନପାଇଥିଲା। ସେହିପରି 'Early religious of India' ଗ୍ରନ୍ଥରେ 'ଯର୍ଜୁବେଦ', 'ଅଥର୍ବବେଦ', 'ଗୃହ୍ୟସୂତ୍ର' 'ପୁରାଣ' ପ୍ରଭୃତିରେ ୬୦୦ରୁ ୪୦୦ ଖ୍ରୀଷ୍ଟପୂର୍ବ ବେଳକୁ ନାଗ ପୂଜାର ଉଲ୍ଲେଖ ରହିଛି। ବୈଦିକ ଯୁଗର ଆର୍ଯ୍ୟମାନେ ପ୍ରାତଃସ୍ନାନ ସମାପନ ପରେ ସୂର୍ଯ୍ୟପୂଜା ଏବଂ ବୃକ୍ଷପୂଜା କରୁଥିଲେ ଏବଂ ସାଧାରଣ ଲୋକେ ସର୍ପପୂଜା କରୁଥିଲେ। ବୈଦିକ ଋଷିମୁନିମାନେ ଏହି ନାଗକୁ ମନୁଷ୍ୟର ଯୋଗ, ସଂଯମଶକ୍ତି ରୂପେ ଗ୍ରହଣ କରିଛନ୍ତି। ସେହିପରି ସୂର୍ଯ୍ୟ ଓ ପୃଥିବୀ ଗ୍ରହମାନଙ୍କର ଘୂର୍ଣ୍ଣନ ପ୍ରକ୍ରିୟାରେ ସର୍ପ ବା ନାଗଶକ୍ତିର ବିଦ୍ୟମାନତାକୁ ଉପଲବ୍ଧି କରି ଏହାକୁ ଦେବତା ବା ଉପଦେବତା ରୂପେ ବିଶ୍ୱାସ କରାଯାଇଛି। ବେଦରେ ଏହି ସର୍ପକୁ ନେଇ ଅନେକ ଆର୍ଯ୍ୟୋତର ଜାତି ସୃଷ୍ଟି ହୋଇଛି, ଯେଉଁମାନଙ୍କୁ 'ଫଣି', 'ଅହି', 'ଅହିବୃତ୍ତ' ଜାତି ବୋଲି କୁହାଯାଏ। ସମୟକ୍ରମେ ବ୍ରାହ୍ମଣ୍ୟଧର୍ମ ସହିତ ଜୈନ, ବୌଦ୍ଧ, ବୈଷ୍ଣବ, ଶୈବଧର୍ମ ମଧ୍ୟରେ ନାଗପୂଜା ବିଧିପୂର୍ବକ ଗ୍ରହଣୀୟ ହୋଇଥିଲା। ଭାରତର ବିଭିନ୍ନ ସ୍ଥାନରେ ଦେଖିବାକୁ ମିଳୁଥିବା ପ୍ରାଚୀନ ପ୍ରତ୍ନତତ୍ତ୍ୱ ଅନୁସାରେ ନାରାୟଣ, ସଙ୍କର୍ଷଣ ସୁପାର୍ଶ୍ୱନାଥ ଓ ପାର୍ଶ୍ୱନାଥ, ଗୌତମ ବୁଦ୍ଧଙ୍କ ସହିତ 'ନାଗ'ର ଘନିଷ୍ଠ ସମ୍ପର୍କ ଥିବା ସଂପର୍କରେ 'ଓଡ଼ିଶାର ଧର୍ମଗ୍ରନ୍ଥ'ରୁ ଜଣାଯାଏ।

ଓଡ଼ିଶାରେ ତୃତୀୟ ଚତୁର୍ଥ ଶତାବ୍ଦୀରେ ଏହି ନାଗପୂଜା ପ୍ରସିଦ୍ଧି ଲାଭ କରିଥିଲା। ଓଡ଼ିଶାର ରଣପୁରସ୍ଥ ମୈନାକଗିରି ବା ମଣିନାଗ ପର୍ବତ, ମଣିନାଗ ପୂଜାର ଅନ୍ୟତମ କେନ୍ଦ୍ରଥିବା ବିଷୟ ସତ୍ୟନାରାୟଣ ରାଜଗୁରୁଙ୍କର 'ନାଗ ଇତିହାସ'ରୁ ଜଣାଯାଏ। ଓଡ଼ିଶାର ଦକ୍ଷିଣର ଲାଙ୍ଗୁଳିଆନଦୀ ମୁହାଣରେ ଏବଂ ପୂର୍ବସୀମା ସୁବର୍ଣ୍ଣରେଖା ନଦୀ କୂଳରେ ମଣିନାଗେଶ୍ୱର ଶିବ ମନ୍ଦିର ପ୍ରତିଷ୍ଠିତ ହୋଇଥିଲା। ପୁରୀ ଜିଲ୍ଲା ନିକଟବର୍ତ୍ତୀ 'ଶୋଭନେଶ୍ୱର ମନ୍ଦିର ଶିଳାଲେଖ' ଅନୁଯାୟୀ ରାଜା ସାତବାହାନଙ୍କ ସମୟରେ ଉପକୂଳବର୍ତ୍ତୀ ଅଞ୍ଚଳରେ ନାଗବଂଶୀୟ ରାଜାମାନଙ୍କର ରାଜୁତି ସମ୍ପର୍କରେ ଜଣାଯାଏ।

'କଳିଙ୍ଗର ମନ୍ଦିର ଗାତ୍ରରେ ଦେବଦେବୀ ମୂର୍ତ୍ତି' ଗ୍ରନ୍ଥରେ ଦୁର୍ଗାଚରଣ ପଣ୍ଡାଙ୍କର ମତାନୁଯାୟୀ– କଳିଙ୍ଗର ବିଭିନ୍ନ ପ୍ରାନ୍ତରେ ବିଭିନ୍ନ ଶୈଳୀର ନାଗଦେବତାଙ୍କ ମୂର୍ତ୍ତି ସ୍ଥାପନ କରାଯାଇ ପୂଜାଅର୍ଚ୍ଚନା କରାଯାଉଥିଲା। ପାଞ୍ଚଗାଁର ଯକ୍ଷମୂର୍ତ୍ତି ନିକଟସ୍ଥ ବୃକ୍ଷମୂଳେ ଏକ ପ୍ରାଚୀନ ନାଗମୂର୍ତ୍ତିର ସନ୍ଧାନ ମିଳିଥିଲା। କୃତିଟି ଅସମାନଧାର ବିଶିଷ୍ଟ ଏକ ଖଣ୍ଡାକାର ଚଟକା ପଥର ଉପରେ ଏକ ପଞ୍ଚଫଣାଯୁକ୍ତ ନାଗର କୁଣ୍ଡଳୀ ଚିତ୍ର ଅଗଭୀର ଶୈଳୀରେ ଉତ୍କୀର୍ଣ୍ଣ ହୋଇଛି। ଏବେ ତାହା ଏକ ନୂତନ ମନ୍ଦିରରେ ପୂଜାହେବା ଜଣାଯାଏ। ଭୁବନେଶ୍ୱର ଦକ୍ଷିଣରେ ଥିବା ସୁନ୍ଦରପଦା ଗ୍ରାମର ଏକ ବୃକ୍ଷ ମୂଳେ ଗୋଟିଏ ନାଗ ଓ ଦୁଇନାଗୁଣୀଙ୍କୁ ଗ୍ରାମବାସୀମାନେ ନବନିର୍ମିତ ମନ୍ଦିରରେ ପୂଜାର୍ଚ୍ଚନା କରୁଛନ୍ତି । ପ୍ରସ୍ତର ନିର୍ମିତ ଏହି ମୂର୍ତ୍ତିର ଚିତ୍ର ଦେଖିଲେ ଜଣାଯାଏ– ଅଣ୍ଟାରେ ଦୁଇ ହାତ ରଖି ଗରିମା ଠାଣିରେ ସମରଭଙ୍ଗୀରେ ଦଣ୍ଡାୟମାନ। ଏହି ମୂର୍ତ୍ତିଗୁଡ଼ିକ ମନୁଷ୍ୟାକୃତି ହେଲେ ମଧ୍ୟ ତିନିଜଣଙ୍କ ମୁଣ୍ଡ ଉପରେ ନାଗର ପ୍ରସାରିତ ପଞ୍ଚଫେଣା ପଛରେ ତାହାର କୁଣ୍ଡଳୀ ଦେଖିବାକୁ ମିଳେ। ନାଗମାନେ ସାଧାରଣତଃ ବହୁପତ୍ନୀ ଗ୍ରହଣ କରୁଥିବାରୁ ଅନେକ ପ୍ରାଚୀନ ଭାରତୀୟ ମୂର୍ତ୍ତିରେ ନାଗରାଜାଙ୍କ ସହ ଏକରୁ ଏକାଧିକ ନାଗୀମୂର୍ତ୍ତି ଦେଖିବାକୁ ମିଳେ। ଓଡ଼ିଶାର ରାୟଗଡ଼ା ଜିଲ୍ଲାର ପାଇକପଡ଼ା ଓ ଗଂଜାମର ଆସ୍କା ନିକଟ ମାଳତୀ ଗଡ଼ଠାରେ ନାଗଦେବତାଙ୍କ ମୂର୍ତ୍ତି ଦେଖିବାକୁ ମିଳେ । ଏଥିରୁ ଓଡ଼ିଶାରେ ନାଗଧର୍ମର ବ୍ୟାପକତା ସମ୍ପର୍କରେ ସୂଚନା ମିଳେ।

ଓଡ଼ିଶାର ପୂଜା ପାର୍ବଣ, ସଂସ୍କୃତି ପରଂପରା ସହ ନାଗଧର୍ମ ଜଡ଼ିତ।

ଆମର ଲୋକାଚାର, ହୋମ, ଯଜ୍ଞ, ଗୃହଅନୁକୂଳ, ଗୃହପ୍ରତିଷ୍ଠା, ବିବାହ, ବ୍ରତଘର, କାଳସର୍ପ ଦୋଷ ପୂଜା ଆଦିରେ ନାଗମଣ୍ଡଳ କଟାଯାଇ ଅଷ୍ଟକୁଳ ନାଗ ଓ ନାଗୀଙ୍କୁ ମନ୍ତ୍ର ଉଚାରଣ ପୂର୍ବକ ପୂଜା ଓ ବନ୍ଦନା କରାଯାଏ । 'ବିହାରୀ କର୍ମକାଣ୍ଡ'ରେ ଉଲ୍ଲେଖ ଅଛି ଯେ, ଏହି ଅଷ୍ଟକୁଳ ନାଗଦେବତା ହେଉଛନ୍ତି– ଅନନ୍ତ, ବାସୁକୀ, କର୍କୋଟ, ଶଙ୍ଖ, କୁଳିକ, ତକ୍ଷକ, ଶଙ୍ଖ, ମହାଶଙ୍ଖ ଇତ୍ୟାଦିକୁ ଉପରୋକ୍ତ ଶୁଭକାର୍ଯ୍ୟରେ ଏବଂ ବିବାହ



ସମୟରେ ବେଦୀର ପୂର୍ବଦିଗରେ ଗୋଟିଏ ଗର୍ଭ ଖୋଳି ତାହାକୁ ଗୋମୟ ଜଳରେ ଲେପନ କରି ଗର୍ଭର ଦକ୍ଷିଣରେ ଗଣେଶଙ୍କର ପୂଜାପରେ ଅଷ୍ଟନାଗ କୁଳର ବନ୍ଦନା ପୂର୍ବକ କାର୍ଯ୍ୟସିଦ୍ଧି ନିମନ୍ତେ ଡ଼କାଯାଏ ।

ଆଜି ବି ବିଭିନ୍ନ କର୍ମକାଣ୍ଡରେ ଏହି ପୂଜାବିଧି ଦେଖିବାକୁ ମିଳେ। ଆମ ଲୋକସଂସ୍କୃତିରେ ବିଶ୍ୱାସ ରହିଛି– ନାଗସ୍ୟ ଗୋତ୍ରୀୟଙ୍କ ଇଷ୍ଟ ଦେବତା ନାଗ ହେତୁ ସେମାନେ ନାଗ ସାପ ଦେଖିଲେ ନୂଆଲୁଗା ପକାଇ ହଳଦି ଓ କ୍ଷୀରରେ ସ୍ନାନ କରାଇ କ୍ଷୀର ଖାଇବାକୁ ଦିଅନ୍ତି । ନାଗନାଗୁଣି ନାଚିବା ସମୟରେ ନୂତନ ବସ୍ତ୍ର ପକାଯାଏ, ତା'ଉପରେ ସେମାନେ ନାଚିଲେ ସେହି ବସ୍ତ୍ର ନେଇ ଶୁଭକାମରେ ଗଲେ କାର୍ଯ୍ୟ ସିଦ୍ଧି ହୁଏ। ସେହିପରି ନାଗ ମାରିଥିବା ବ୍ୟକ୍ତି ହାତରେ ଫସଲ ଉପୁଜେ ନାହିଁ। 'ସ୍ୱପ୍ନ ବିଚାର'ରେ ସର୍ପର ସ୍ୱପ୍ନକୁ କାମଭାବ ବୋଲି କହୁଥିବାବେଳେ ଲୋକବିଶ୍ୱାସ ଅଛି ସ୍ୱପ୍ନରେ ନାଗକୁ ଦେଖିଲେ ଶୁଭଫଳ, ମୃତ୍ୟୁ, ମହାଦେବଙ୍କ କୃପାଲାଭ, ଠାକୁରଙ୍କ ପାଖରେ ଯାଚଜ୍ଞା ଇତ୍ୟାଦି କାରଣ ହୋଇପାରେ। ତେଣୁ ବାରମ୍ବାର ସର୍ପ ଦର୍ଶନକଲେ ମହାଦେବଙ୍କ ପାଖରେ କତାଦଉଡ଼ି ସହ ଭୋଗ ଅର୍ପଣ କରାଯାଏ। 'ଜ୍ୟୋତିଷଶାସ୍ତ୍ର'ରେ ବର ଓ କନ୍ୟାର ମେଳକରେ ନାଗନାଡ଼ି ମେଳକ ଦେଖାଯାଏ।

ତେବେ ଏହି ନାଗ ଧର୍ମ ସହ ପ୍ରଭୁ ଶ୍ରୀଜଗନ୍ନାଥଙ୍କର ରହିଛି ଅବିଚ୍ଛେଦ୍ୟ ସମ୍ପର୍କ। ପରଂବ୍ରହ୍ମଙ୍କର ଅଣାକାର, ନିରାକାର ଶୂନ୍ୟବ୍ରହ୍ମଙ୍କର ତିନୋଟି ମୁଖ୍ୟ ଅବତାର ମଧ୍ୟରୁ ଗୁଣଅବତାର (ରାମାବତାର ତ୍ରେତୟାଯୁଗ) ଅଂଶାବତାର (ଶ୍ରୀକୃଷ୍ଣ ଦ୍ୱାପରଯୁଗ) ଶକ୍ତ୍ୟାଦେଶ ଅବତାର (ସନକ, ନାରଦ ଆଦି ମୁନିରଷି) ଇତ୍ୟାଦି। ପ୍ରଭୁ ପରଂବ୍ରହ୍ମ ଏହି ସାକାର ରୂପ ଧାରଣ କରି ଧର୍ମର ସଂସ୍ଥାପନା ପାଇଁ ବାରମ୍ବାର ଧରାବତରଣ କରନ୍ତି କଳିଯୁଗରେ ପ୍ରଭୁ ଶ୍ରୀଜଗନ୍ନାଥ ରୂପରେ ପୂଜା ପାଉଥିଲେ ମଧ୍ୟ କୃଷ୍ଣାବତାର ଓ ରାମାବତାରର ବହୁ ପୂଜାନୀତି, ଉତ୍ସବ, ବେଶ, ପର୍ବପର୍ବାଣି ତାଙ୍କ ପାଇଁ ରଖା ଯାଇଛି। ଯେଉଁ ଧର୍ମର ଉପାସକ ଶ୍ରୀକ୍ଷେତ୍ର ଆସି ଶ୍ରୀମନ୍ଦିରରେ ପ୍ରଭୁ ଜଗନ୍ନାଥଙ୍କୁ ଦେଖିଛନ୍ତି, ସେମାନେ ନିଜର ଇଷ୍ଟଙ୍କୁ ପ୍ରଭୁଙ୍କ ପାଖରେ ଆରୋପିତ କରିଛନ୍ତି । ବୈଷ୍ଣବୀୟମାନେ ଶ୍ରୀଜଗନ୍ନାଥଙ୍କ ନିକଟରେ ଶ୍ରୀକୃଷ୍ଣଙ୍କର ଅଭେଦତ୍ୱ ପରିକଳ୍ପନା କରିଥିବାବେଳେ, ରାମାନୁଜପନ୍ଥୀମାନେ ଶ୍ରୀଜଗନ୍ନାଥଙ୍କ ନିକଟରେ ଶ୍ରୀରାମଙ୍କର ଅଭେଦତ୍ୱ ପରିକଳ୍ପନା କରିଛନ୍ତି । ତେଣୁ ରାମାୟଣର ରାମ ହିଁ ଶ୍ରୀଜଗନ୍ନାଥ ଏବଂ ମହାଭାରତର ଶ୍ରୀକୃଷ୍ଣ ମଧ୍ୟ ଶ୍ରୀଜଗନ୍ନାଥ। ପ୍ରଭୁ ଶ୍ରୀଜଗନ୍ନାଥଙ୍କ ସହ ନାଗଧର୍ମର ସମ୍ପର୍କ କିପରି ଥିଲା, ତାହା ଶ୍ରୀରାମ, ଶ୍ରୀକୃଷ୍ଣ ଓ ଶ୍ରୀଜଗନ୍ନାଥଙ୍କର ପୁରାଣ ଆଧାରିତ ବିଭିନ୍ନ ଲୀଳାଖେଳାରୁ ଜଣାଯାଏ।

ରାମାୟଣରୁ ଜଣାଯାଏ– 'ସୁନ୍ଦରାକାଣ୍ଡ'ରେ ବର୍ଣ୍ଣିତ ଅଛି ରାମଚନ୍ଦ୍ରଙ୍କର ଆଜ୍ଞା ପାଇ ସୀତାଙ୍କୁ ଖୋଜିବା ପାଇଁ ହନୁମାନ ଲଙ୍କାକୁ ଯିବା ସମୟରେ ଦେବତାମାନେ ହନୁମାନଙ୍କର ବୁଦ୍ଧିକୁ ପରୀକ୍ଷା କରିବା ନିମନ୍ତେ ନାଗମାତା ସୁରସାଙ୍କୁ ରାକ୍ଷସୀ ରୂପ ଧାରଣ କରି ପଠାଇଥିଲେ।

'ରାମାୟଣ' ଲଙ୍କାକାଣ୍ଡରେ ବର୍ଣ୍ଣିତ ଅଛି – ଯୁଦ୍ଧ ଆରମ୍ଭ ହେବା ପରେ ମେଘନାଦ ବାନର ସେନାଙ୍କର କ୍ଷତିସହ ଲକ୍ଷ୍ମଣ, ଅଙ୍ଗଦ, ସୁଗ୍ରୀବଙ୍କ ଉପରେ ନାନା ଅସ୍ତ୍ର ପ୍ରହାର କରିବାକୁ ଲାଗିଲା। ଜାମ୍ବବାନ ଏହା ସହି ନପାରି ତା' ଉପରେ ଶକ୍ତ ଆଘାତ କରିବାରୁ ମେଘନାଦ କ୍ରୋଧିତ ହୋଇ ଦୃଶ୍ୟ ଅଦୃଶ୍ୟର ମାୟାଯୁଦ୍ଧ ଆରମ୍ଭ କଲା। ପରେ ସର୍ପବାଣ ପ୍ରୟୋଗ କରିବାରୁ ବାଣମାନେ ସର୍ପହୋଇ ଲକ୍ଷ୍ମଣଙ୍କୁ ବାନ୍ଧି ପକାଇଲେ। ଦେବର୍ଷି ନାରଦ ଗରୁଡ଼ଙ୍କୁ ଡ଼ାକିଲେ ଏବଂ ସେ ଆସି ସର୍ପମାନଙ୍କୁ ଭକ୍ଷଣ କରିବାରୁ ନାଗଫାଶ ବନ୍ଧନ ଫିଟିଗଲା।

ସେହିପରି ଦ୍ୱାପର ଯୁଗରେ 'ମହାଭାରତର' କାହାଣୀରେ ଏହି ନାଗନାଗୀ କଥା ଭିନ୍ନ ଭିନ୍ନ ପ୍ରସଙ୍ଗରେ ବର୍ଣ୍ଣନା କରାଯାଇଛି। 'ମହାଭାରତ'ର ସଭା ପର୍ବରେ ବର୍ଣ୍ଣିତ ଅଛି ଯେ, ବ୍ୟାସଦେବ ଶ୍ରୀକୃଷ୍ଣଙ୍କୁ ପଣ୍ଡୁଙ୍କର ସମସ୍ତ ପାପକ୍ଷୟ ପାଇଁ ପାତାଳର ଅଧିକାରୀ ବାସୁକୀ ନାଗବଳ ଧରି ଆସି ଷୋଳଦିନ ପୂଜା କରିବା ପାଇଁ ଅର୍ଜୁନଙ୍କୁ ପଠାଇବା ପାଇଁ କହିଛନ୍ତି। ଲକ୍ଷେ ଯୋଜନର ପାତାଳେ ଅର୍ଜୁନ ପ୍ରବେଶ କରିବା ମାତ୍ରେ ନାଗମାନେ ତାଙ୍କ ଅଭିପ୍ରାୟ ଜାଣି ଆଶ୍ଚର୍ଯ୍ୟ ହୋଇ ଅନନ୍ତ ନାଗ ବାସୁକିଙ୍କୁ



ଭେଟାଇଛନ୍ତି । ବାସୁକି ଖୁସୀ ହୋଇ ନୃତ୍ୟଗୀତର ଆୟୋଜନ କରିଛନ୍ତି ଏବଂ ଆସିବାର କାରଣ ପଚାରିଛନ୍ତି। ଅର୍ଜୁନ ନାଗବଳ ନେଇଯିବା କଥା କହିବାରୁ, ଅନନ୍ତନାଗ ପୃଥିବୀର ମହାଭାର ବହନ କରିଥିବାରୁ ନିମନ୍ତ୍ରଣ ରକ୍ଷା କରିପାରିବେ ନାହିଁ ବୋଲି କହିଥିଲେ। ମାତ୍ର ଅର୍ଜୁନ ନିଜ ଧନୁବଳରେ ଧରାକୁ ଧାରଣ କରିବାକୁ କହିବାରୁ ରାଜସ୍ୱୟଜ୍ଞ ଉପଲକ୍ଷେ ଅନନ୍ତ ନାଗ ଯାଇଥିଲେ। ସେଠାରେ ଅନନ୍ତନାଗର କନ୍ୟା ସନ୍ଧ୍ୟାବଳୀ ପତିବ୍ରତା ନାରୀ ପରି ଅର୍ଜୁନଙ୍କର ସେବାରେ ନିୟୋଜିତ ଥିଲେ। ପରେ ସେହି ସେହି ନାଗବାଳୀଙ୍କୁ ସେ ବିବାହ କରିଥିଲେ।

'ମହାଭାରତ'ର 'ମଧ୍ୟପର୍ବ'ରେ ଉଲୁପି ବିବାହ ପ୍ରସଙ୍ଗରେ ନାଗକନ୍ୟା ଉଲୁପି ଅର୍ଜୁନଙ୍କୁ ସରଯୁ ନଦୀରେ ସ୍ନାନ କରୁଥିବା ଦେଖି ନିଜର ଉଲୁକ ବିଦ୍ୟା ବଳରେ ନଦୀ ଭିତରେ ଥିବା ବାସଭବନକୁ ନେଇଗଲା। ଅର୍ଜୁନଙ୍କର ଶୌର୍ଯ୍ୟରେ ବିମୋହିତ ହୋଇ ତାଙ୍କୁ ବିବାହ କରିବାକୁ ଚାହିଁଥିଲା। ଅର୍ଜୁନ ତାଙ୍କ ସୌନ୍ଦର୍ଯ୍ୟରେ ଆକୃଷ୍ଟ ହୋଇ ବିବାହ କରିଥିଲେ ଏବଂ ତାଙ୍କଠାରୁ ଉଲୁକବିଦ୍ୟା ଏବଂ ନାଗାନ୍ତବିଦ୍ୟା ଶିକ୍ଷା କରିଥିଲେ।

'ମହାଭାରତ'ର 'ଆଦ୍ୟପର୍ବ'ରେ ପ୍ରଭୁ ଶ୍ରୀକୃଷ୍ଣଙ୍କର ବଡ଼ଭାଇ ବଳରାମ ଦୁର୍ଯ୍ୟୋଧନ ଶହେ ଭାଇଙ୍କୁ ଗଦାଯୁଦ୍ଧ ଶିକ୍ଷା ଦେବାରେ ସେମାନେ ଯେଉଁ ଜୟକାର କରିଛନ୍ତି ସେଥିରୁ ବଳରାମ ଯେ ଅନନ୍ତନାଗ ତାହା ଜଣାଯାଏ ।

ମହାଭାରତର ଅନ୍ୟ ଏକ ଆଖ୍ୟାନ ଅନୁଯାୟୀ ବାସୁକିଙ୍କର ଭଉଣୀ ଜରତ୍କାରୁ ନିଜ ନାମଧାରୀ ବ୍ୟକ୍ତିଙ୍କୁ ବିବାହ କରିବାକୁ ଚାହିଁ ଋଷି ଜରତକାରୁଙ୍କୁ ବିବାହ କଲେ। ଋଷି ତପସ୍ୟା ନିମନ୍ତେ ବନଚାରଣ କରିବାକୁ ଯିବା ସମୟରେ ପତ୍ନୀଙ୍କର କ୍ରନ୍ଦନ ଦେଖି 'ଅସ୍ତି' ଅର୍ଥାତ୍ ତୁମ ଗର୍ଭରେ ମୋର ସନ୍ତାନ ଅଛି ବୋଲି କହିଥିଲେ। ପରେ ଯେଉଁ ପୁତ୍ର ସନ୍ତାନ ଜନ୍ମ ହେଲା ତାହାର ନାମ ରଖିଲେ ଆସ୍ତିକ, ଯିଏ ସର୍ପ ବା ନାଗମାନଙ୍କର ଭଣଜା ଅଟନ୍ତି। ତେଣୁ ପିତୃହନ୍ତା ସର୍ପ ତକ୍ଷକଙ୍କ ପ୍ରତିଶୋଧ ନେବା ପାଇଁ ରାଜା କରିଥିବା ସର୍ପ ଯଜ୍ଞରେ ଅନେକ ସର୍ପ ନାଶ ଯିବାରୁ ସର୍ପମାନେ ଆସ୍ତିକଙ୍କ ଶରଣାଗତ ହେଲେ। ସର୍ପମାନଙ୍କର ଅନୁରୋଧ ରଖି ଆସ୍ତିକ ଜନ୍ମେଜୟଙ୍କ ପାଖକୁ ଯାଇ ସର୍ପ ଯଜ୍ଞ ବନ୍ଦ କରିଥିଲେ। ସର୍ପବଂଶ ଏଥିରେ ଆସ୍ତିକଙ୍କ ଉପରେ ଖୁସୀ ହୋଇ ତାଙ୍କୁ ବରପ୍ରଦାନ କରିଥିଲେ ଯେ, ଯେଉଁମାନେ ଆସ୍ତିକ ନାମ ଉଚାରଣ କରିବେ ତାଙ୍କୁ ସର୍ପଦଂଶନ କରିବେ ନାହିଁ। ଆଜି ବି ଲୋକବିଶ୍ୱାସ ରହିଛି ଘରକୁ ବାରମ୍ବାର ସର୍ପ ପ୍ରବେଶ କଲେ ଘରର କାନ୍ଥରେ ଆସ୍ତିକ ଲେଖିବ ଏବଂ ସର୍ପକୁ ସ୍ୱପ୍ନରେ ଦେଖିଲେ ବୃନ୍ଦାବତୀ ଗଛର ମାଟିରେ ତିନିଥର 'ଓଁ ଜନ୍ମେଜୟ ନମଃ' ଲେଖିଲେ ସ୍ୱପ୍ନ ଦେଖିବ ନାହିଁ। ମାତା ଜରତକାରୁ ପୁତ୍ର ଆସ୍ତିକର ମୂର୍ତ୍ତି ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ଭଗ୍ନ ଅବସ୍ଥାରେ ଦେଖିବାକୁ ମିଳେ।

ଅନେକ ପୁରାଣ ଗ୍ରନ୍ଥରେ ବାସୁକିଙ୍କର ମାତା ମନସା ଦେବୀ ବୋଲି ଉଲ୍ଲେଖ ରହିଛି। କେହି କେହି ତାଙ୍କୁ ଶିବଙ୍କର କନ୍ୟା ବା ଭଉଣୀ ବୋଲି ମଧ୍ୟ କୁହନ୍ତି। ତେବେ ସେ କାଶ୍ୟପଋଷିଙ୍କ ମାନସ କନ୍ୟା ହୋଇଥିବାରୁ ତାଙ୍କୁ ମନସା ଦେବୀ ବୋଲି କୁହାଯାଏ। ପ୍ରଭୁ ଶ୍ରୀଜଗନ୍ନାଥଙ୍କର ବଡ଼ଭାଇ ବଳରାମଙ୍କର ତାଙ୍କ ସହ ସମ୍ପର୍କ ରହୁଥିବାରୁ ଏହି ନାଗମାନେ ବୈଷ୍ଣବ ମତବାଦ ସହ ଜଡ଼ିତ। ତେଣୁ ମନସା ପୂଜାକୁ ନାଗଧର୍ମ ଓ ବୈଷ୍ଣବଧର୍ମରେ ସମାନ ସ୍ଥାନ ଦିଆଯାଇଥାଏ। ମନସା ଦେବୀ ଧନ ସମ୍ପଦର ରକ୍ଷକ ଥିବାରୁ ତାଙ୍କର ଯେଉଁ ମୂର୍ତ୍ତି କୋଣାର୍କର ବୟାଳିଶି ବାଟୀରେ ଦେଖିବାକୁ ମିଳେ ସେଥିରେ ଉପରୋକ୍ତ ମୂର୍ତ୍ତିର ଆସନ ତଳେ ସାତଗୋଟି ପୂର୍ଣ୍ଣକୁମ୍ଭ ବା ନିଧିଭାଣ୍ଡ ସ୍ଥାନିତ ହୋଇଛି। ଓଡ଼ିଶା ରାଜ୍ୟ ସଂଗ୍ରହାଳୟ, ପ୍ରାଚୀନଦୀ ଅବବାହିକାର ଅମରେଶ୍ୱର, ପୁରୀ ଜିଲ୍ଲାର ଭିଲ୍ଲିଗ୍ରାମ, କଟକ ଜିଲ୍ଲାର ବଟେଶ୍ୱରଠାରେ ମନସା ଦେବୀଙ୍କର ମୂର୍ତ୍ତି ଦେଖିବାକୁ ମିଳେ ବୋଲି କଳିଙ୍ଗ ମନ୍ଦିର ଗାତ୍ରରେ ଦେବଦେବୀ ମୂର୍ତ୍ତି ଗ୍ରନ୍ଥରେ ଦୁର୍ଗାଚରଣ ପଣ୍ଡା ଉଲ୍ଲେଖ କରିଛନ୍ତି। ଶ୍ରୀମହାଭାଗବତରେ ମହାମୁନି ଶୁକ ବିଷ୍ଣୁଙ୍କର କୂର୍ମ ଅବତାରରେ ସମୁଦ୍ର ମନ୍ଥନର କାହାଣୀରେ ବାସୁକୀ ନାଗକଥା ଉଲ୍ଲେଖ କରିଛନ୍ତି। ସମୁଦ୍ର ମନ୍ଥନରେ ବାସୁକୀକୁ ଦଉଡ଼ି ରୂପେ ବ୍ୟବହାର କରାଯାଇ ମନ୍ଦର ପର୍ବତରେ ଗୁଡ଼ାଇଦେଲେ କିନ୍ତୁ ବାସୁକୀ ସହ ପର୍ବତ କେଉଁ ଆଡ଼େ ହଜି ଯିବାରୁ ପ୍ରଭୁ କୂର୍ମ ରୂପ ଧାରଣ



କରି ଅତଳ ଜଳରେ ବୁଡ଼ିଯାଇଥିବା ମନ୍ଦିର ବେଷ୍ଟିତ ବାସୁକୀକୁ ସ୍ୱପୃଷ୍ଠରେ ଉଦ୍ଧାର କଲେ। ବାସୁକୀ ନାଗର ଶରୀରରେ ମନ୍ଥନ ଜନିତ ଯନ୍ତ୍ରଣାରୁ ମୁଖରୁ ବାହରିଥିବା ବିଷକୁ ମହାଦେବ ପାନକରି ନୀଳକଣ୍ଠ ହୋଇଥିଲେ।

ଲିଙ୍ଗପୁରାଣରେ ବିଷ୍ଣୁ, ଶିବ ଓ ହଳାୟୁଧ (ମଳଭଦ୍ର)ଙ୍କ ମଧ୍ୟରେ ଅଭେଦ ସୂଚିତ ହୋଇଛି, ଶିବଙ୍କୁ ଦଣ୍ଡ ମହାପ୍ରଭୁ ରୂପେ ପୂଜା କରାଯାଏ। ପୁରୀ ଶ୍ରୀମନ୍ଦିରରେ ପୂଜିତ ସୁଦର୍ଶନ ଏକଦା ଶିବରୂପୀ ବଳଭଦ୍ରଙ୍କର ଆୟୁଧ ରୂପେ ଅଥବା ସ୍ୱୟଂ ଶିବ ରୂପେ ପୂଜା ପାଉଥିବାର ସମ୍ଭାବନାକୁ ଏଡ଼ାଇ ଦିଆଯାଇନପାରେ । ନାଗ ଜାତିମାନେ ଶିବଙ୍କ ଭୂଷଣ ନାଗକୁ ଶିବ ରୂପେ ପୂଜା କରୁଥିଲେ। ବଳଭଦ୍ରଙ୍କ ମସ୍ତକରେ ସପ୍ତଫେଣା ନାଗ ରହିଛି। ବଳଭଦ୍ର ଏହି ନାଗଜାତିର ଉପାସ୍ୟ ଦେବତା ଥିଲେ ବୋଲି ପ୍ରହ୍ଲାଦ ପ୍ରଧାନଙ୍କର 'ସାହିତ୍ୟାୟନ'ରେ ଉଲ୍ଲେଖ ରହିଛି। ଷଷ୍ଠ–ସପ୍ତମ ଶତାବ୍ଦୀରେ ମଧ୍ୟ–ପୂର୍ବ ଓଡ଼ିଶାରେ ମଣିନାଗଶ୍ୱେର ନାଗଦେବତା ହିନ୍ଦୁମାନଙ୍କର ବଳଦେବ ବା ବଳଭଦ୍ର ଭାବରେ ପୂଜିତ ହେଉଥିବା ଅନୁମାନ କରାଯାଏ। The cult of Jagannath' ରେ ଉଲ୍ଲେଖ ଅଛି ଯେ, ଶବରୀ ନାରାୟଣ ରୂପେ ଶ୍ରୀଜଗନ୍ନାଥ ପରିଣତ ହେବାପରେ ସ୍ତମ୍ଭେଶ୍ୱରୀ ରୂପେ ମା'ସୁଭଦ୍ରା ଓ ମଣିନାଗେଶ୍ୱର ଶ୍ରୀବଳଭଦ୍ର ରୂପେ ପରିଣତ ହୋଇଥାଇ ପାରନ୍ତି। ବିଭିନ୍ନ ଶୈବପୀଠ ଏବଂ ଶିବ ମନ୍ଦିରରେ ଲିଙ୍ଗ ପାଖରେ ନାଗର ପୂଜା କରାଯାଏ। କାରଣ ଲିଙ୍ଗ ହେଉଛି ସୃଷ୍ଟିର ପ୍ରତୀକ ଏଠାରେ ନାଗ ହେଉଛି କାଳର ପ୍ରତୀକ। ପୁରୁଷ ନାରୀର ମିଳନରେ ଯେବେଠାରୁ ନାରୀ ନିଜ ସନ୍ତାନକୁ ଗର୍ଭଧାରଣ କରେ ସେବେଠାରୁ ମୃତ୍ୟୁ ବା କାଳ ଜନ୍ମର ପଛରେ ଗୋଡ଼ାଏ। ତେଣୁ ଜନ୍ମ ହେଲାପରେ ଜୀବ ପଛରେ ମୃତ୍ୟୁ ଥାଏ। ସର୍ପ ଶିବଙ୍କ ଭୂଷଣ, ଅନେକ ନଟରାଜ ମୂର୍ତ୍ତିରେ ଶିବ ଦୁଇ ହସ୍ତ ମସ୍ତକ ଉପରେ ସର୍ପ ଧାରଣ କରିଥାନ୍ତି। ଏହା ଯେକୌଣସି କାଳ ବା ମୃତ୍ୟୁକୁ ନିୟନ୍ତ୍ରଣ କରିବାର ସଙ୍କେତକୁ ବହନ କରେ। ଗଣେଶଙ୍କର ଏହିପରି ନଟ ମୂର୍ତ୍ତିରେ ମଧ୍ୟ ସର୍ପର ପଇତା ଏବଂ ଦୁଇ ହସ୍ତତ ଉପରକୁ କରି ନାଗସର୍ପ ଧରିଥିବା ଦୃଶ୍ୟ ଦେଖିବାକୁ ମିଳେ।

ସର୍ପମାନଙ୍କ ମଧ୍ୟରେ ମୁଁ ବାସୁକି ନାଗମାନଙ୍କ ମଧ୍ୟରେ ମୁଁ ଶେଷନାଗ ଅଟେ। ଶ୍ରୀଜଗନ୍ନାଥ ବା ଶ୍ରୀକୃଷ୍ଣଙ୍କର ଅନ୍ୟନାମ ପନ୍ନଗନାରାୟଣ। ଏଠାରେ ପନ୍ନଗ ବା ଅନନ୍ତ ଶ୍ରୀବଳଭଦ୍ର ହେଉଛନ୍ତି ଆଧାରଶକ୍ତି ଏବଂ ବିଷ୍ଣୁ ବା ଶ୍ରୀଜଗନ୍ନାଥ ହେଉଛନ୍ତି ଆଧେୟ, ତେଣୁ ବିଷ୍ଣୁ କ୍ଷୀର ସାଗରରେ ଅନନ୍ତ ଶୟନ କରିଥାନ୍ତି। ତାହା ଦେଖିଲେ ମନେ ହୁଏ ଜଳ ପାତ୍ରରେ ଥିଲାବେଳେ ପାତ୍ର ଆଧାର ଶକ୍ତି ମାତ୍ର ଜଳ ହେଉଛି ଆଧେୟ ଅନନ୍ତଶୟନରତ ବିଷ୍ଣୁ ମସ୍ତକ ଉପରେ ଅନନ୍ତ ନାଗର ସପ୍ତଫେଣା ଛତ୍ର ସଦୃଶ ଜଗି ରହିଥାଏ। ଏଠାରେ ସେବକ ଓ ସେବିତର ସମ୍ପର୍କ କିପରି ତାହା ଦେଖିବାକୁ ମିଳେ।

ଶ୍ରୀମନ୍ଦିରର ଭିତରବେଢାର ମୁକ୍ତିମଣ୍ଡପର ବାମପାର୍ଶ୍ୱରେ ଅନନ୍ତନାଗ ଉପରେ ଶୟନ କରୁଥିବା ଅନନ୍ତ ବାସୁଦେବଙ୍କ ମୂର୍ତ୍ତି ପୂଜା କରାଯାଏ। ଭାଦ୍ରବ ଶୁକ୍ଳ ଅନନ୍ତ ଚତୁର୍ଦ୍ଦଶୀ ଏହି ମନ୍ଦିରରେ ଭକ୍ତମାନେ ପାଳନ କରନ୍ତି। ସେହିପରି ଶ୍ରୀମନ୍ଦିରର ପରିସରରେ ଭଅଣ୍ଡ ରାସ୍ତା ବା ଭୋଗରାସ୍ତାର ଉପର କାନ୍ଥରେ ପ୍ରଭୁଙ୍କର ଅନନ୍ତ ଶୟନର ପୂର୍ଣ୍ଣାଙ୍ଗ କାରୁକାର୍ଯ୍ୟର ଭାସ୍କର୍ଯ୍ୟ ମୂର୍ତ୍ତିରେ ଅଷ୍ଟାଦଶ ପୁରାଣର ଉଲ୍ଲେଖ ଦେଖିବାକୁ ମିଳେ।

ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥଙ୍କର କାଳୀୟଦଳନ ବେଶ ପ୍ରତିବର୍ଷ ଭାଦ୍ରବ ମାସ କୃଷ୍ଣପକ୍ଷ ଏକାଦଶୀ ଦିନ ଅନୁଷ୍ଠିତ ହୁଏ। ଦ୍ୱାପର ଯୁଗରେ ଯମୁନା ନଦୀର ନିକଟବର୍ତ୍ତୀ କାଳନ୍ଦୀ ହ୍ରଦରେ ରହୁଥିବା କାଳୀୟ ନାଗଠାରୁ ବ୍ରଜବାସୀଙ୍କୁ ରକ୍ଷା କରବା ପାଇଁ ନିଜେ ଶ୍ରୀକୃଷ୍ଣ କାଳିନ୍ଦୀର ଫଣା ଉପରେ ନୃତ୍ୟ କରି ଦଳନ କରିଥିଲେ ତାହାକୁ ସ୍ମୃତିରେ ରଖି ମାର୍କଣ୍ଡେଶ୍ୱର ପୋଖରୀକୁ ଯମୁନା ନଦୀ ରୂପେ ଗ୍ରହଣ କରାଯାଇ ଏହି କାଳୀୟ ଦଳନ ଉତ୍ସବ ବିଧିପୂର୍ବକ ପାଳନ କରାଯାଏ। ଶ୍ରୀଜଗନ୍ନାଥଙ୍କର ରଂଗ କଳାହେତୁ ନାମ କେବଳ କାଳିଆ ନୁହେଁ ବରଂ କାଳୀୟଦଳନ କରିଥିବାରୁ ତାଙ୍କ ନାମ କାଳିଆ ଅଟେ।

ଶ୍ରୀଜଗନ୍ନଥଙ୍କ ବୁଦ୍ଧ ଅବତାର ହୋଇଥିବାରୁ ବିଷ୍ଣୁଙ୍କର ଦଶାବତାର ମଧ୍ୟରେ ବୁଦ୍ଧଙ୍କୁ ଅନ୍ତର୍ଭୁକ୍ତ କରାଯାଇଛି। ଶ୍ରୀଜଗନ୍ନାଥଙ୍କ ଚେତନାରେ ବିଶ୍ୱର ସର୍ବଧର୍ମର ସମନ୍ୱୟ ଦେଖିବାକୁ ମିଳେ। ବୌଦ୍ଧ ଧର୍ମର ତ୍ରିରତ୍ନ ତଥା ବୁଦ୍ଧ, ଧର୍ମ,



ସଂଘରୁ ଶ୍ରୀଜଗନ୍ନାଥ, ଭଳଭଦ୍ର ଏବଂ ସୁଭଦ୍ରାଙ୍କ ସୃଷ୍ଟି । ଭାରତ ତଥା ଓଡ଼ିଶାର ବହୁ ବୌଦ୍ଧସ୍ତୂପରେ ନାଗମୂର୍ତ୍ତି ଦେଖିଲେ ଜଣାଯାଏ ଯେ, ଅନେକ ନାଗବଂଶୀ କ୍ଷତ୍ରୀୟ, ବୈଶ୍ୟ ଓ ଶୁଦ୍ରମାନଙ୍କୁ ନାଗ କୁହାଯାଉଥିଲା । ସେମାନେ ବୌଦ୍ଧସଂଘର ସେବାରେ ନିୟୋଜିତ ଥିଲେ । ଏକଦା ଉରୁବିଲ୍ୱ ବନ ମଧ୍ୟରେ ବୁଦ୍ଧଦେବ ତପସ୍ୟା କରିବାପରେ ବନରେ ବାସ କରୁଥିବା ମୁଚଲିନ୍ଦ ନାମକ ନାଗରାଜ ତାଙ୍କୁ ସୁରକ୍ଷା ପ୍ରଦାନ କରିଥିବାର ଦୃଶ୍ୟ ଅନେକ ବୌଦ୍ଧସ୍ତୂପର ମୂର୍ତ୍ତିକଳାରେ ଦେଖିବାକୁ ମିଳେ, ଯାହାକୁ ମୁଚଲିନ୍ଦ ବୁଦ୍ଧ ବୋଲି କୁହାଯାଏ । ବୌଦ୍ଧଗ୍ରନ୍ଥମାନଙ୍କରେ ନାଗରାଜ ଏଲାପତ୍ର, ଅପାଳକ ନାମକ ନାଗମାନଙ୍କର ଅନେକ ଆଖ୍ୟାନ ଦେଖିବାକୁ ମିଳେ ।

ପ୍ରଭୁ ଶ୍ରୀଜଗନ୍ନାଥଙ୍କର ନାଗସହ ସମ୍ପର୍କ ବିଶ୍ୱପ୍ରସିଦ୍ଧ ରଥଯାତ୍ରାରୁ ଜଣାଯାଏ ବଳଭଦ୍ରଙ୍କର ମୂର୍ତ୍ତି ସମ୍ପର୍କରେ ସ୍କନ୍ଦପୁରାଣରେ ବର୍ଣ୍ଣିତ ଅଛି ।

ନାଗ ଭଳଭଦ୍ରଙ୍କର ଶିରୋଦେଶରେ ସପ୍ତଫଣାଯୁକ୍ତ ନାଗରାଜ ଶୋଭାପାଏ, ଯାହାକି ମହାକାଳ ଶିବଙ୍କର ପ୍ରତୀକ ପ୍ରଳୟ ଦେବତା ଭାବରେ ଗ୍ରହଣ କରାଯାଏ । ସେହି ବଡ଼ଠାକୁରଙ୍କର ରଥର ଦେବତା ହେଉଛନ୍ତି ଅନନ୍ତନାଗ ଏବଂ ରଥର ଦଉଡ଼ି ହେଉଛନ୍ତି ବାସୁକୀ, ସେହିପରି ସୁଭଦ୍ରାଙ୍କର ଦେବୀଦଳନ  ରଥର ଦଉଡ଼ି ନାମ ସ୍ୱର୍ଣ୍ଣଭୁଜ ନାଗ, ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ନନ୍ଦିଘୋଷ ରଥର ଦଉଡ଼ି ହେଉଛି ଶଙ୍ଖଚୂଡ଼ ନାମକ ନାଗୁଣୀ, କେବଳ ସେତିକି ନୁହେଁ ସର୍ପ ମନ୍ତ୍ରରେ ବଶୀଭୂତ ହେଲାପରି ପ୍ରଭୁ ଶ୍ରୀଜଗନ୍ନାଥ ମଧ୍ୟ ମନ୍ତ୍ରରେ ବଶୀଭୂତ ହୋଇଥାନ୍ତି । ନବକଳେବର ସମୟରେ ପ୍ରଭୁଙ୍କର ଦାରୁ ଚିହ୍ନଟର ଲକ୍ଷଣ ମଧ୍ୟରେ ଦାରୁବୃକ୍ଷ ନିକଟରେ ନାଗସର୍ପ ନିବାସ କରୁଥିବା ଉଇହୁଙ୍କାକୁ ମଧ୍ୟ ଗ୍ରହଣ କରାଯାଏ ।

ଶ୍ରୀଜଗନ୍ନାଥଙ୍କ ସହିତ ନାଗର ସମ୍ପର୍କ କେବଳ ନୁହେଁ ବରଂ ଅନେକ ଶ୍ରୀଜଗନ୍ନାଥଙ୍କୁ ନାଗସର୍ପ ବୋଲି କହିଛନ୍ତି । କବିସୂର୍ଯ୍ୟ ବଳଦେବ ରଥ  ତାଙ୍କର 'ସର୍ପଜଣାଣ' କବିତାରେ ନାଗାନ୍ତକବିଦ୍ୟାର ତନ୍ତ୍ର ଚେତନାକୁ ପ୍ରତିଫଳିତ କରାଇଛନ୍ତି । କୁହାଯାଏ କବିସୂର୍ଯ୍ୟ ବଳଦେବ ରଥଙ୍କର ପତ୍ନୀ ଯେତେବେଳେ ସର୍ପଦଂଶନରେ ପୀଡ଼ିତ ଥିଲେ, ସେତେବେଳେ ପତ୍ନୀଙ୍କ ଆରୋଗ୍ୟ କାମନା କରି ଶ୍ରୀଜଗନ୍ନାଥଙ୍କ ନିକଟରେ ମନ୍ତ୍ରପୂତ ଭକ୍ତିରେ ସ୍ତୁତି ଗାନ କରିବାରୁ ତାଙ୍କ ସ୍ତ୍ରୀ ଆରୋଗ୍ୟ ଲାଭ କରିଥିଲେ । ପରେ ସେ ବ୍ୟାଜ ସ୍ତୁତି ଅଳଙ୍କାରରେ 'ସର୍ପଜଣାଣ' ରଚନା କରିଥିଲେ । ଶ୍ରୀଜଗନ୍ନାଥଙ୍କର ରୂପ, ରଙ୍ଗ, ଢଙ୍ଗକୁ ଆଖିରେ ରଖି କବି ଶ୍ରୀଜଗନ୍ନାଥଙ୍କୁ ସାପବୋଲି କହିଥିଲେ । ଯଦି ଯେ କାଳ ସର୍ପ ନୁହଁନ୍ତି ତେବେ ମନ୍ତ୍ରପୂତ ଭକ୍ତି ଗୀତରେ ସ୍ତ୍ରୀଙ୍କୁ କିପରି ଆରୋଗ୍ୟ କଲେ ? ତେଣୁ ଶ୍ରୀଜଗନ୍ନାଥ ସେହି ସର୍ପ ରୂପେ ସଂହାରକର୍ତ୍ତା ସାଜି କବିଙ୍କ ସ୍ତ୍ରୀଙ୍କର ପ୍ରାଣବାୟୁ ନେଇଥିଲେ ଏବଂ ପ୍ରାଣକର୍ତ୍ତା ରୂପେ ତାଙ୍କ ପ୍ରାଣକୁ ସର୍ପ ପରି ବିଷ ନେଇ  ଫେରାଇଛନ୍ତି ।

କବି ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ କାଳସର୍ପ ବୋଲି କହି ପ୍ରମାଣ ସହ ବୁଝାଇଛନ୍ତି । ସର୍ପ ଯେପରି ଚକ୍ରାକାରରେ ଶୟନ କରୁଥିବାରୁ ତା'ର ନାମ ଚକ୍ରୀ । ପ୍ରଭୁ ସେପରି ସୁଦର୍ଶନ ଚକ୍ର ଧାରଣ କରୁଥିବାରୁ ତାଙ୍କ ନାମ ଚକ୍ରୀ । ସର୍ପ କୁଣ୍ଡଳାକୃତିରେ ଶୟନ କରୁଥିବାରୁ କୁଣ୍ଡଳୀ ଏବଂ ପ୍ରଭୁ ମକର କୁଣ୍ଡଳ ପରିଧାନ କରୁଥିବାରୁ କୁଣ୍ଡଳୀ, ସର୍ପର ପାଦ ନଥିବାରୁ ଗୂଢପଦ, ଶ୍ରୀଜଗନ୍ନାଥଙ୍କ ପାଦକୁ ବ୍ରହ୍ମା, ଶିବ ସୁଦ୍ଧା ଦେଖିନାହାଁନ୍ତି, ତେଣୁ ସେ ମଧ୍ୟ ଗୂଢପଦ । ସର୍ପକୁ କାକୋଦର କୁହାଯାଏ ଏବଂ ପ୍ରଭୁଙ୍କ ଉଦରରେ ବିଶ୍ୱବ୍ରହ୍ମାଣ୍ଡ ଥିବାରୁ କାକଟିଏ ନିଶ୍ଚୟ ଥିବ ତେଣୁ ସେ କାକୋଦର । ସର୍ପର କାନ ନଥିବାରୁ ସେ ଚକ୍ଷୁରେ ସବୁ ଜାଣେ ଓ ଶୁଣେ, ଚକ୍ଷୁଶ୍ରବା, ପ୍ରଭୁ ଶ୍ରୀଜଗନ୍ନାଥଙ୍କ କାନକୁ କେହି କେବେ ଦେଖିନାହିଁ ତେଣୁ ସେ ମଧ୍ୟ ଚକ୍ଷୁଶ୍ରବା । ସର୍ପର ଫଣା ଥିବାରୁ ସେ ଭୋଗୀ, ପ୍ରଭୁ ଶ୍ରୀମନ୍ଦରରେ ଷାଠିଏ ପଉଟି ଭୋଗର ଅଧିକାରୀ ହୋଇଥିବାରୁ ଏବଂ ରାଜକୀୟ ଭୋଗରେ ରହୁଥିବାରୁ ସେ ମହାଭୋଗୀ ଅଟନ୍ତି । 'ସଗୋତ୍ର ପ୍ରତିହିଂସ୍ରକ' ହୋଇଥିବାରୁ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଦ୍ୱାପର ଯୁଗରେ କୃଷ୍ଣଲୀଳା ସମୟରେ ନିଜ ଗୋତ୍ରୀୟ କାଳୀୟ ନାଗ ପ୍ରତି ହିଂସା ଦେଖାଇଛନ୍ତି ଏବଂ କାଳିଆ ନାମକୁ ଗ୍ରହଣ କରିଛନ୍ତି । ସର୍ପ କାହାରି ହିତରେ ଆସୁନଥିବାରୁ ତାକୁ ଅହି ବୋଲି କୁହାଯାଏ । ଠିକ୍ ସେପରି ପ୍ରଭୁ କଂସ, କେଶୀ ଆଦି ରାକ୍ଷସଙ୍କର ଅହି ବା ଶତ୍ରୁ ଅଟନ୍ତି ।



ସାପୁଆ କେଳା ଯେପରି ସର୍ପକୁ ବଶୀଭୂତ କରି ନିଜ ପେଟରାରେ ରଖିଦିଏ, ସେହିପରି ପ୍ରଭୁଙ୍କୁ ମଧ୍ୟ ଭକ୍ତ ନିଜ ହୃଦୟ ରୂପକ ପେଟରାରେ ବଶୀଭୂତ କରି ରଖି ପାରିବେ ବୋଲି କବି କହିଛନ୍ତି। କବିଙ୍କର ପୂର୍ଣ୍ଣ ଭକ୍ତିଭାବକୁ ଯୁକ୍ତି ମାଧ୍ୟମରେ ବାଢି ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ସର୍ପ ବୋଲି ଯେପରି ବର୍ଣ୍ଣନା କରିଛନ୍ତି, ତାହା ନିନ୍ଦା ନୁହେଁ ବରଂ ସ୍ତୁତିଗାନ କରିଛନ୍ତି।

ପ୍ରଭୁ ଶ୍ରୀଜଗନ୍ନାଥଙ୍କର ଅନ୍ୟ ଅବତାରକୁ ନେଇ ରଚିତ 'ମହାଭାରତ' ଓ ଅନ୍ୟାନ୍ୟ ପୁରାଣ ଶାସ୍ତ୍ରରେ ବହୁପ୍ରକାର ମୁଖ୍ୟ ନାଗମାନଙ୍କୁ ଦେଖିବାକୁ ମିଳେ। 'ଆଦିପର୍ବ' ରେ ସୌତି ଅଠସ୍ତରୀଟି ମୁଖ୍ୟ ନାଗ ସମ୍ପର୍କରେ ଉଲ୍ଲେଖ କରିଛନ୍ତି, 'ହରିବଂଶ'ରେ ଦୁଇ ପ୍ରକାର ନାଗ ମଧ୍ୟରୁ ଗୋଟିଏ ୨୬ ଏବଂ ଅନ୍ୟଟି ୧୮ ପ୍ରକାରର 'ଭାଗବତ'ରେ ୧୫ ପ୍ରକାର, 'ବାୟୁ ପୁରାଣ'ରେ ୪୧ 'ନୀଳମାତା'ରେ ୫୦୦ ପ୍ରକାର ନାଗର ଉଲ୍ଲେଖ ରହିଛି (Serpert worship in ancient India Page 13) । ଏହି ନାଗମାନଙ୍କ ମଧ୍ୟରୁ ମୁଖ୍ୟ ହେଲେ ଶେଷନାଗ, ବାସୁକୀ, ତକ୍ଷକ, ଏଲାପତ୍ର, କର୍କୋଟକ, ଶଙ୍ଖ, ମଣି ଇତ୍ୟାଦିଙ୍କ ମଧ୍ୟରୁ ଅନେକ ନାଗ ଶ୍ରୀମନ୍ଦିର ଓ ଶ୍ରୀଜଗନ୍ନାଥଙ୍କ ସହ ସମ୍ପୃକ୍ତ। ମୂର୍ତ୍ତି ଖନନ କରିବାର ବିଧି ଅନୁଯାୟୀ 'ଶିଳ୍ପ ପ୍ରକାଶ' ଶାସ୍ତ୍ରାନୁଯାୟୀ ଶ୍ରୀମନ୍ଦିର ଗାତ୍ରରେ ଯେଉଁ ଶିଳ୍ପକଳା ହୋଇଛି, ତାହା ନିମ୍ନରେ ନାଗ ଲୋକ (ପାତାଳ) ମଧ୍ୟରେ ମର୍ତ୍ତ୍ୟଲୋକ ଉର୍ଦ୍ଧ୍ୱରେ ଦେବଲୋକର ମୂର୍ତ୍ତି ଦେଖିବାକୁ ମିଳେ। ଓଡ଼ିଶାରେ ଶ୍ରୀମନ୍ଦିର ସହ ଅନେକ ମନ୍ଦିରରେ ନାଗର ସୌନ୍ଦର୍ଯ୍ୟ, ଠାଣି, ଗତି, ପ୍ରକୃତିକୁ ନେଇ ଚିତ୍ରଶିଳ୍ପୀ ବା କଳାକାର ମନ୍ଦିର ଗାତ୍ରମାନଙ୍କରେ, ଏକକନାଗ, ଯୁଗଳ ନାଗ, ପଞ୍ଚନାଗ, ସତନାଗର ଯୋଡ଼ାକୁ ଛନ୍ଦି ମନ୍ଦିରର ମୁଖ୍ୟ ଦୁଇ ପାର୍ଶ୍ୱରେ ନାଗବନ୍ଧ ବା ନାଗଛନ୍ଦର ପଥରରେ ଖୋଦିତ କରିଥିବା ଦେଖିବାକୁ ମିଳେ। ତେବେ ଦେବାଦେବୀ ଅନୁଯାୟୀ ନାଗଛନ୍ଦ ବା ନାଗବନ୍ଧ ସ୍ୱତନ୍ତ୍ର ଅଟେ। ଶ୍ରୀମନ୍ଦିରର ବେଢା ମଧ୍ୟରେ ବିମଳାଙ୍କ ମନ୍ଦିରର ବାମପାର୍ଶ୍ୱରେ ଥିବା ବେଣିମାଧବ ମନ୍ଦିରର ବାମ ପାର୍ଶ୍ୱ ସମ୍ମୁଖ ଠଣାରେ ମନସା ଦେବୀଙ୍କର ମୂର୍ତ୍ତି ପୂଜିତ ହେଉଥିବା ଜଣାଯାଏ। ସେହିପରି ଶ୍ରୀଜଗନ୍ନାଥ ବଲ୍ଲଭ ମଠର ମୁଖ୍ୟ ଦ୍ୱାରର ଉପର ଭାଗରେ ବିଷ୍ଣୁଙ୍କର ଅନନ୍ତ ଶୟନର କଳାଭାସ୍କର୍ଯ୍ୟ ଦେଖିବାକୁ ମିଳେ। ଶ୍ରୀମନ୍ଦିରରେ ଅନନ୍ତବ୍ରତ, ନାଗପଞ୍ଚମୀ, ନାଗଲଚଉଠି, ମନସା ପୂଜା ଆଦି ବ୍ରତ ପୂଜାରେ ଓଡ଼ିଶାରେ ନାଗପୂଜାର ଐତିହ୍ୟ ଓ ନାଗଧର୍ମର ଲୋକପ୍ରିୟତାକୁ ଦର୍ଶାଯାଉଛି ।

ସାମ୍ପ୍ରତିକ କାଳର ମନୁଷ୍ୟ ଅଶେଷ ବସ୍ତୁବାଦୀ ଜ୍ଞାନର ଅଧିକାରୀ ହୋଇଥିବାରୁ ଧର୍ମ ଧାରଣରେ ମନୋନିବେଶ ତା'ପାଇଁ ଅନେକ ପ୍ରଶ୍ନବାଚୀ ସୃଷ୍ଟି କରୁଛି। ସମୟର ମୂଳରେ ଧର୍ମକୁ ତଉଲୁଥିବା ମନୁଷ୍ୟ ଧର୍ମକୁ ଅନ୍ଧବିଶ୍ୱାସ, କୁସଂସ୍କାର ବୋଲି କହୁଛି। ସବୁ ଧର୍ମ ସଂସାରକୁ ଧାରଣ କରିଛି ଓ କରୁଥିବ ମଧ୍ୟ। ନାଗଧର୍ମରୁ ସୃଷ୍ଟି ନାଗ ସଂସ୍କୃତି, ନାଗ ଉପାସନା ଆଜି ଶ୍ରୀଜଗନ୍ନାଥଙ୍କ ସଂସ୍କୃତି ସହ ଓତପ୍ରୋତଭାବେ ଜଡ଼ିତ। କାଳୀୟନାଗର ନାମକୁ ବହନ କରିଥିବା ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଭକ୍ତ ଯେତେଦିନ ଯାଏଁ ଶ୍ରଦ୍ଧାରେ ପ୍ରେମରେ କାଳିଆ ବୋଲି ଡ଼ାକୁଥିବ, ସେତେଦିନ ଯାଏଁ ଶ୍ରୀଜଗନ୍ନାଥଙ୍କ ସହ ନାଗଧର୍ମର ବୈଶିଷ୍ଟ୍ୟ ସ୍ୱୀକାର କରାଯାଉଥିବ କହିଲେ ଅତ୍ୟୁକ୍ତି ହେବ ନାହିଁ।

ପୋଷ୍ଟ ଡକ୍ଟରାଲ ଫେଲୋ
ଆଧୁନିକ ଭାରତୀୟ ଭାଷା ସାହିତ୍ୟ ସଂସ୍ଥାନ
ଦିଲ୍ଲୀ ବିଶ୍ୱବିଦ୍ୟାଳୟ– ୧୧୦୦୦୭, ନୂଆଦିଲ୍ଲୀ





# ଚିନ୍ତା ଚେତନାରେ ଶ୍ରୀଜଗନ୍ନାଥ

**ଚୌଧୁରୀ ବିଷ୍ଣୁ ପ୍ରସାଦ ନନ୍ଦ**

ଅତି ପୁରାତନ ଏହି ଜଗନ୍ନାଥ ତତ୍ତ୍ୱ – ଅତି ଦୁର୍ଭେଦ୍ୟ। ବିଶ୍ୱର ସବୁଠାରୁ ପୁରାତନ ଶାସ୍ତ୍ର ଋଗ୍‌ବେଦର ଦଶମ ମଣ୍ଡଳ – ୧୫୫ ସୂକ୍ତ –୩ ନମ୍ବର ମନ୍ତ୍ରରେ ଏହି ଦାରୁବିଗ୍ରହଙ୍କର ବର୍ଣ୍ଣନା ଅଛି। ବେଦ ଯେମିତି ଅପୌରୁଷେୟ – ଅପ୍ରକଟ, ଶ୍ରୀଜଗନ୍ନାଥ ସେମିତି ଅପୌରୁଷେୟ। ଭକ୍ତର ଅନୁକମ୍ପାରେ ସିଏ ନାନା ରୂପରେ ଆବିର୍ଭୂତ ହୁଅନ୍ତି। ଏତଦ୍‌ବ୍ୟତୀତ ସମସ୍ତ ଆର୍ଯ୍ୟ ଶାସ୍ତ୍ରମାନଙ୍କରେ ଏହି ଦାରୁବ୍ରହ୍ମ ଜଗନ୍ନାଥଙ୍କ ବିଷୟରେ ଭୂରିଭୂରି ଉଦାହରଣମାନ ରହିଛି।

ମାତ୍ର ବର୍ତ୍ତମାନର ଶ୍ରୀଜଗନ୍ନାଥଙ୍କର ଏ ପ୍ରକାର ରୂପ ଉପରେ ଶ୍ୱେତାଶ୍ୱେତ ଉପନିଷଦ କହନ୍ତି– ଯାହାର ପ୍ରାକୃତିକ ହାତଗୋଡ ନାହିଁ ଅଥଚ ସିଏ ଦ୍ରୁତ ଗତିରେ ଚଳ ପ୍ରଚଳ କରି ପାରନ୍ତି ଚକ୍ଷୁ ନଥାଇ ମଧ୍ୟ ସବୁ ଦେଖିପାରନ୍ତି କର୍ଣ୍ଣ ନ ଥାଇ ମଧ୍ୟ ସବୁ ଶୁଣିପାରନ୍ତି, ଯାହା କେହି ଜାଣି ନଥାନ୍ତି ସେ ସବୁକୁ ସିଏ ଭଲଭାବରେ ଜାଣନ୍ତି ତାଙ୍କୁ ହିଁ କୁହାଯାଏ ଆଦିପୁରୁଷ। ସଂପୂର୍ଣ୍ଣ ହୋଇ ମଧ୍ୟ ସାଧାରଣଙ୍କ ଆଖିରେ ସିଏ ଅସଂପୂର୍ଣ୍ଣ। ଅପୂର୍ବ ରୂପଟିଏ ଧାରଣ କରି ସିଏ ବସିରହିଛନ୍ତି ସୁନ୍ଦର ଏକ ପରିବେଶ ଭିତରେ।

ଜଗନ୍ନାଥ ଏକ ବିରାଟ ଆନନ୍ଦର ପ୍ରତୀକ। ବିରାଟ ତାଙ୍କର ସିଂହାସନ, ବିରାଟ ତାଙ୍କର ସିଂହାର, ବିରାଟ ତାଙ୍କର ଦେଉଳ, ବିରାଟ ତାଙ୍କର ଅଗଣା, ବିରାଟ ତାଙ୍କର ଦାଣ୍ଡ, ବିରାଟ ତାଙ୍କର ମହୋଦଧି, ବିରାଟ ତାଙ୍କର ଯାତରା।' ଏହି ବିରାଟର ସମ୍ଭାର ବହନ କରି ତାଙ୍କର ଏହି ଜଗତର ନାଥ ଜଗନ୍ନାଥ ନାମଟିର ସାର୍ଥକତା, ଯାହା ଆମର କ୍ଷୁଦ୍ର ମନକୁ ବିରାଟ କରିଦିଏ ଓ ଆମର ସେ କ୍ଷୁଦ୍ରମନ ଭିତରୁ ମୁଁ ବା ଅହଂଟି ବାହାରି ଆସି, ମଥାଟିକୁ ତାଙ୍କରି ପାଦପଦ୍ମତଳେ ନୁଆଁଇ ଦିଏ। ତେଣୁ ଆପେ ଆପେ ହୃଦୟରୁ ବାହାରି ଆସେ, ପ୍ରଭୋ ! ତୁମେ ବିରାଟ, ତୁମେ ମହାନ୍– ତୁମେ ସର୍ବଶକ୍ତିମାନ୍ ତୁମେ ସତ୍ୟ, ତୁମେ ଶିବ, ତୁମେ ସୁନ୍ଦର। ତୁମର ସେହି ବିରାଟ ସୁନ୍ଦର ରୂପ ମାଧୁରୀ ମୋ ମନରେ ସଦା ଝଟକୁଥାଉ ।

ଆଜିର ଏହି ଅହଂକାରରେ ପରିପୂର୍ଣ୍ଣ ବିନାଶଶୀଳ ବିଦେଶୀ ସଭ୍ୟତାକୁ ଆଦରି ନେଇ ମଣିଷ ଭୁଲିଯାଇଛି ତାହାର ପ୍ରକୃତ ସୌନ୍ଦର୍ଯ୍ୟରେ ଭରା ସଂସ୍କୃତିକୁ। ବିଶେଷ କରି ଆଜିର ଯୁବ ସମାଜ ବିଦେଶୀ ଚାକଚକ୍ୟରେ ଆତ୍ମଭୋଳା ଧର୍ମରେ ଗ୍ଲାନି, ଅସାମାଜିକ ହୋଇଉଠିଛି ସମାଜ ଏହି ଘଡ଼ିସନ୍ଧି ବେଳାରେ ସେହି ଅରୂପ ଜଗନ୍ନାଥ, ଚେତନାର ଅଭ୍ୟୁତ୍‌ଥାନ ପାଇଁ ପୁଣିଥରେ ତିନି ରୂପରେ ଆବିର୍ଭୂତ ହୋଇଛନ୍ତି – ଶ୍ରୀରାମକୃଷ୍ଣ, ଶ୍ରୀ ମା'ସାରଦା, ସ୍ୱାମୀ ବିବେକାନନ୍ଦ। ଅତୀତର ଶ୍ରୀରାମ ଓ ଶ୍ରୀକୃଷ୍ଣ, ଏଥର ଆସିଛନ୍ତି ଏକଇ ଦେହରେ ଶ୍ରୀରାମକୃଷ୍ଣ ପରମହଂସ ହୋଇ। ଶ୍ରୀଜଗନ୍ନାଥଙ୍କ ପାଖକୁ ସିଏ ଯାଇପାରି ନାହାନ୍ତି। ମାତ୍ର ଶ୍ରୀଜଗନ୍ନାଥଙ୍କର ଏକାତ୍ମ ବୋଲି ସିଏ ଦାବି କରିଯାଇଥିବା ଦୃଶ୍ୟାବଳୀରୁ କିଛି ଆଜିର ଏହି ଆଲେଖ୍ୟ।

୧୮୮୫ ଖ୍ରୀଷ୍ଟାବ୍ଦ, ଜୁଲାଇ ମାସ ୧୫ ତାରିଖ ଦିନ ଶ୍ରୀରାମକୃଷ୍ଣ ତାଙ୍କର ଜଣେ ଅନ୍ତରଙ୍ଗ ଭକ୍ତ, ଶ୍ରୀମ' ବା ମହେନ୍ଦ୍ର ନାଥ ଗୁପ୍ତଙ୍କୁ ଏକାନ୍ତରେ ଡାକି କହିଲେ, ମାଷ୍ଟର ! ଆଜି ତୁମକୁ ଗୋଟିଏ ଅତି ଗୋପନ କଥା କହିବି ଶୁଣ । ଥରେ ନିବିଡ଼ ଭାବାନ୍ତର ଅବସ୍ଥାରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଚିନ୍ତା ଅତି ଗଭୀର ଭାବରେ ମୋର ଜାଗ୍ରତ ହେଲା। ମୁଁ ଅନୁଭବ କଲି ମହାପ୍ରଭୁ



ଶ୍ରୀଜଗନ୍ନାଥ ଯେମିତି ପୂର୍ଣ୍ଣ କଳେବରରେ ମୋ ପାଖରେ ଛିଡା ହୋଇଛନ୍ତି ଆଉ ମୁଁ ତାଙ୍କୁ ଅତି ଆପଣାର ପରି ମୋ ଭିତରେ ଅନୁଭବ କରୁଛି । ଜଗଜ୍ଜନନୀ ମା' ବ୍ରହ୍ମମୟୀ କାଳୀଙ୍କୁ ମୁଁ ଯେମିତି ସବୁବେଳେ ମୋ ଭିତରେ ଦେଖେ, ଠିକ୍ ସେମିତି, ଅତି ଆବେଗରେ ମୁଁ ତାଙ୍କୁ କୁଣ୍ଢାଇ ପକାଇବା ପାଇଁ ଦୁଇ ହାତ ବଢ଼ାଇ ଆଗେଇ ଗଲା ବେଳକୁ ତଳେ ପଡ଼ି ଗଲି ଆଉ ମୋର ହାତଟା ଭାଙ୍ଗିଗଲା । ମୋତେ ଜଣାଗଲା ସିଏ ଯେମିତି ମୋତେ କହୁଛନ୍ତି, ମୁଁ ପରା ଏହି (ନିଜକୁ ଦେଖାଇ) ଶରୀର ଧାରଣ କରିଛି । ମଣିଷ ଭିତରେ ଦେବଭାବ ଜାଗ୍ରତ କରାଇବା ପାଇଁ ମହାପ୍ରଭୁ ଶ୍ରୀଜଗନ୍ନାଥ, ଶ୍ରୀରାମକୃଷ୍ଣ ଶରୀର ଧାରଣ କରିଛନ୍ତି । ଅବତାର ପୁରୁଷ ଶ୍ରୀରାମ କୃଷ୍ଣ ତାଙ୍କ ଭକ୍ତଙ୍କ ଆଗରେ ଅନେକଥର କହିଛନ୍ତି, – ମୁଁ ହିଁ ଶ୍ରୀକ୍ଷେତ୍ରର ଶ୍ରୀଜଗନ୍ନାଥ । ଭକ୍ତ– ଶ୍ରୀଯୁକ୍ତ ମହେନ୍ଦ୍ର ଗୁପ୍ତ (ମାଷ୍ଟର ମ')ଙ୍କୁ ଶ୍ରୀକ୍ଷେତ୍ରକୁ ପଠାଇଥିଲେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରି ଆସିବା ପାଇଁ । କେବଳ ଦର୍ଶନ ନୁହେଁ, ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ରତ୍ନସିଂହାସନ ଉପରେ ନିବିଡ଼ ଭାବରେ ଆଲିଙ୍ଗନ କରି ଆସିବା ପାଇଁ ଠାକୁରଙ୍କର ନିର୍ଦ୍ଦେଶ ଥିଲା । ମାତ୍ର ଶ୍ରୀମନ୍ଦିରର ତଥା ହିନ୍ଦୁର ରୀତି ଅନୁସାରେ ଶ୍ରୀବିଗ୍ରହଙ୍କୁ ସ୍ପର୍ଶ କରିବା ଅସମ୍ଭବ ।

ଶ୍ରୀମନ୍ଦିରର ଗର୍ଭଗୃହରେ ପହଞ୍ଚି ମାଷ୍ଟର ମହାଶୟ ଶ୍ରୀମହାପ୍ରଭୁଙ୍କର ଦର୍ଶନ କଲେ, ମାତ୍ର ଶ୍ରୀବିଗ୍ରହଙ୍କୁ ଆଲିଙ୍ଗନ କରିବେ ବା କେମିତି ? ମହାଚିନ୍ତାରେ ପଡ଼ିଗଲେ । ଶ୍ରୀରାମ କୃଷ୍ଣଙ୍କର ଦ୍ୱିତୀୟ ନିର୍ଦ୍ଦେଶଟି କେମିତି ପାଳନ କରିବେ ? ଏହି ଅସମ୍ଭବ କାର୍ଯ୍ୟଟିକୁ ସମ୍ଭବ କରିବା ପାଇଁ ମଧ ଠାକୁର ରାମକୃଷ୍ଣ ଅପ୍ରତ୍ୟକ୍ଷ ଭାବରେ ବ୍ୟବସ୍ଥା କରିଦେଇଥିଲେ । ଶ୍ରୀମନ୍ଦିର ବେଢ଼ାର ଅନ୍ୟାନ୍ୟ ଦେବଦେବୀଙ୍କୁ ଦର୍ଶନ କରି କିଛି ପ୍ରଣାମୀ ଦେବା ପାଇଁ ଖୁଚୁରା ପଇସା କିଛି ପକେଟ୍‌ରେ ନେଇ ଯିବା ପାଇଁ ମାଷ୍ଟର ମହାଶୟଙ୍କୁ କହିଥିଲେ । ସେହି ଖୁଚୁରା ପଇସା ସବୁର ବ୍ୟବହାର ଏହିଠାରେ କଲେ ମାଷ୍ଟର ମହାଶୟ । ପକେଟରେ ଥିବା ଅଧୁଲି – ସୁଉକି, ଅଣି–ଦୋ'ଣୀ, ପଇସା– ଅଧଲା ସବୁକୁ ଗର୍ଭଗୃହର ଚଟାଣରେ ଜୋର୍‌ରେ ବିଞ୍ଚି ଦେଲେ । ଖୁଚୁରା ପଇସାର ଝଙ୍କାର ଶବ୍ଦରେ ସେବକମାନେ ପଇସା ଗୋଟେଇବାରେ ଲାଗିଗଲେ । ଠିକ୍ ଏହି ଅବସରରେ ମାଷ୍ଟର୍ ମ', ସିଂହାସନ ଉପରକୁ ଚଢ଼ିଯାଇ ଶ୍ରୀଜଗନ୍ନାଥଙ୍କ ବିଗ୍ରହକୁ ପ୍ରାଣଭରି କୁଣ୍ଢାଇ ଧରି, କାହାରି ନଜର ପଡ଼ିବା ପୂର୍ବରୁ ତଳକୁ ଡେଇଁପଡ଼ି ଲୋକ ଗହଳିରେ ମିଶିଗଲେ ।

ପୁରୀରୁ ଫେରି ଆସି ମାଷ୍ଟର୍ ମହାଶୟ ଶ୍ରୀରାମ କୃଷ୍ଣଙ୍କ ଆଗରେ ଘଟଣାଟି ବର୍ଣ୍ଣନା କରିବାରେ ଠାକୁର ରାମକୃଷ୍ଣ ଅତି ଖୁସି ହୋଇଗଲେ ଓ ମାଷ୍ଟର୍ ମହାଶୟଙ୍କୁ ଅତି ଆବେଗରେ କୁଣ୍ଢାଇ ପକାଇ ଭାବ ଗଦ୍‌ଗଦ କଣ୍ଠରେ କହି ଉଠିଲେ,– ମୁଁ..... ମୁଁ ସାକ୍ଷାତ୍ ଜଗନ୍ନାଥଙ୍କୁ ଆଲିଙ୍ଗନ କରିବାର ସୁଖ ଅନୁଭବ କରୁଛି.... ଓଃ.... କି ଭାଗ୍ୟ.... କି ଭାଗ୍ୟ !! ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରି ଆସିଥିବା ଲୋକ ଜଣକ ସ୍ୱୟଂ ଜଗନ୍ନାଥ ବୋଲି ଶ୍ରୀରାମ କୃଷ୍ଣ ଭାବ– ଭକ୍ତିରେ ବିଭୋର ହୋଇଉଠନ୍ତି ।

ପ୍ରବଳ ଭାବୋତ୍ସାହରେ ଶ୍ରୀଚୈତନ୍ୟ ଦେବ ଶ୍ରୀଜଗନ୍ନାଥଙ୍କ ସାଙ୍ଗରେ ଏକାକାର ହୋଇଯିବା ପରି, ଶ୍ରୀରାମ କୃଷ୍ଣ ଏକାକାର ହୋଇଯିବେ ଓ ପଞ୍ଚ ଭୁତରେ ଗଢ଼ା ଶରୀରରୁ ଆତ୍ମାଟି ବାହାରିଯାଇ ମହାପ୍ରଭୁଙ୍କ ସାଙ୍ଗରେ ମିଶିଯିବ ବୋଲି ଶ୍ରୀରାମ କୃଷ୍ଣ ଜଗନ୍ନାଥଙ୍କ ପାଖକୁ ଯିବା ପାଇଁ ଚାହିଁ ନଥିଲେ କିମ୍ବା ମା' ଆଦ୍ୟାଶକ୍ତିଙ୍କ କାମ ପାଇଁ ଆସିଥିବା ଶ୍ରୀରାମ କୃଷ୍ଣଙ୍କୁ ତାଙ୍କ ମା'ଙ୍କର ନିର୍ଦ୍ଦେଶ ନଥାଇପାରେ !

ମହାପ୍ରଭୁ ଶ୍ରୀଜଗନ୍ନାଥ ଓ ଶ୍ରୀରାମ କୃଷ୍ଣଙ୍କ ଅଭିନ୍ନତା ସମ୍ବନ୍ଧରେ ଆଉ ଟିକିଏ ଗଭୀରତାକୁ ଦୃଷ୍ଟି ଦେଲେ ଦେଖାଯାଏ–

ନୀଳାଦ୍ରି ମଣ୍ଡନରେ ରତ୍ନସିଂହାସନ ଉପରେ ବିଜେ ପ୍ରଭୁ ଶ୍ରୀଜଗନ୍ନାଥ ହିଁ ଆଦ୍ୟାଶକ୍ତି ଦକ୍ଷିଣକାଳୀକା । ଏହି ଆଦ୍ୟାଶକ୍ତି ଦକ୍ଷିଣ କାଳୀକା, – ସୃଷ୍ଟି ସ୍ଥିତି ସଂହାର କାରିଣୀ, ସୃଷ୍ଟିର ବିଭିନ୍ନ ସ୍ଥାନରେ ବିଭିନ୍ନ ରୂପରେ, ତାଙ୍କର କାମ ପାଇଁ ଭିନ୍ନ ଭିନ୍ନ ରୂପ ଧାରଣ କରନ୍ତି । ଏହି ଆଦ୍ୟାଶକ୍ତି ଦକ୍ଷିଣ କାଳୀ ଏଥରକ ତାଙ୍କର କାମ ପାଇଁ ଶ୍ରୀରାମ କୃଷ୍ଣ ରୂପ ଧାରଣ କରିଛନ୍ତି । ମା' ଦକ୍ଷିଣକାଳୀ ଓ ଶ୍ରୀରାମ କୃଷ୍ଣ ଏକ ଅଭିନ୍ନ । ଏହାର କିଛି ନିର୍ଦ୍ଦିଷ୍ଟ ଦୃଷ୍ଟାନ୍ତ ଓ ପ୍ରମାଣ, ତାଙ୍କ ଅବତାର ଲୀଳାରେ ଘଟିଥିବା ସତ୍ୟ ଘଟଣା ଉପରେ ଦୃଷ୍ଟିପାତ କରିବା ।



ଶ୍ରୀରାମ କୃଷ୍ଣ ଦିନେ ଦକ୍ଷିଣେଶ୍ୱରରେ ତାଙ୍କ ଘର ଭିତରେ ଖାଇ ବସିଛନ୍ତି। ପାଖରେ ତାଙ୍କର ଶ୍ରୀମା ସାରଦା ଦେବୀ ବସି ପଙ୍ଖା କରୁଛନ୍ତି ଓ ନାନା ପ୍ରକାର କଥା କହି, ଭାବରେ ଭୋଳା ଠାକୁରଙ୍କୁ ଖୁଆଉଛନ୍ତି। ହଠାତ୍ ଗୋଟାଏ ଅଲୌକିକ ଦୃଶ୍ୟ ଦେଖି ମା' ସାରଦା ଦେବୀ ସ୍ତମ୍ଭିତ ହୋଇଗଲେ। ହାତର ପଙ୍ଖା ସ୍ଥିର ହୋଇଗଲା। ଠାକୁରଙ୍କୁ କିଛି ସମୟ ସ୍ଥିର ଭାବରେ ଚାହିଁ ଓ ଦେଖି ସାଷ୍ଟାଙ୍ଗ ଲମ୍ବହୋଇ ପ୍ରଣିପାତ ହୋଇଗଲେ।

ଶ୍ରୀରାମ କୃଷ୍ଣଙ୍କ ଖାଇବା ବନ୍ଦ ହୋଇଗଲା। ଶ୍ରୀମା ସାରଦା ଦେବୀ ଅତି ସନ୍ତର୍ପଣରେ ମୁହଁ ଉଠାଇ ଚାହିଁ ଦେଖିଲେ ଓ ଯୋଡ଼ ହସ୍ତରେ ଉଠି ବସିଲେ। ରାମକୃଷ୍ଣ ଏହାର କାରଣ ଜାଣିବାକୁ ଚାହିଁବାରୁ ମା' ଅତି ଶଙ୍କାଭରା କଣ୍ଠରେ କହିଲେ, ମୁଁ.... ମୁଁ.... ଦେଖୁଛି... ତୁମେ ତ ତୁମ ହାତରେ ଖାଉଛ, ମାତ୍ର ତୁମ କାନ୍ଧ ଉପରୁ ତୁମ ମୁହଁ ଓ ମୁଣ୍ଡଟି ମନ୍ଦିରର ମା'କାଳୀଙ୍କର। ସେହି ମୁହଁରେ ତୁମ ହାତର ଭାତ ଗୁଣ୍ଡା ସିଏ ଖାଉଛନ୍ତି। ଶ୍ରୀରାମ କୃଷ୍ଣ କହିଲେ, ହଁ ତୁମେ ଠିକ୍ ଦେଖିଛ, ସିଏ ଆଉ ମୁଁ କଣ ଅଲଗା.... ?

ଅନ୍ୟ ଏକ ଦିନର ଘଟଣା। ଠାକୁର ଶ୍ରୀରାମ କୃଷ୍ଣ ତାଙ୍କ ରହିବା ଘରେ ଖାଇ ବସିଥା'ନ୍ତି। ପାଖରେ ତାଙ୍କର ଥାନ୍ତି ଲକ୍ଷ୍ମୀ ଦିଦି, ଶ୍ରୀରାମ କୃଷ୍ଣଙ୍କ ଝିଆରୀ। ଶ୍ରୀରାମ କୃଷ୍ଣ ଏକ ମନରେ ଖାଉଥା'ନ୍ତି। ଲକ୍ଷ୍ମୀଦିଦି ଦେଖିଲେ, ଠାକୁର ଭାତ ଗୁଣ୍ଡାଟିକୁ ପାଟି ପାଖକୁ ନେବା ମାତ୍ରେ ପାଟି ଭିତରୁ ସାପ ଜିଭ ପର ଜିଭଟିଏ ଲହ ଲହ ହୋଇ ବାହାରି ଆସି ସେ ଗୁଣ୍ଡାଟିକୁ ଠାକୁରଙ୍କ ହାତରୁ ପାଟି ଭିତରକୁ ନେଇଯାଉଛନ୍ତି। ଅଳ୍ପ ବୟସର ଲକ୍ଷ୍ମୀ ଡରିଗଲେ ଓ ଚିତ୍କାର କରି ଉଠିଲେ। ଲକ୍ଷ୍ମୀଙ୍କୁ ଏତାଦୃଶ ଚିତ୍କାରର କାରଣ ଜାଣିବାକୁ ଚାହିଁବାରୁ ଲକ୍ଷ୍ମୀ ଡ଼ରି ଡ଼ରି ଘଟଣାଟି କହିଲେ। ଠାକୁର ସାମାନ୍ୟ ହସି ଦେଇ ପୂର୍ବ ପରି ଖାଇବାକୁ ଲାଗିଲେ। ଏହିପରି ନାନା ପ୍ରକାରର ଦୃଷ୍ଟାନ୍ତ ସବୁରୁ ଶ୍ରୀରାମ କୃଷ୍ଣ ଯେ ଶ୍ରୀଜଗନ୍ନାଥଙ୍କର ଅନୁରୂପ ବୋଲି କହିବାଟା ଅସଙ୍ଗତ ହୋଇ ନ ପାରେ। ଶ୍ରୀରାମ କୃଷ୍ଣ ଦେବଙ୍କର ଗଭୀର ବିଶ୍ୱାସ ଯେ ଶ୍ରୀଭଗବାନଙ୍କର ନବମ ଅବତାର 'ବୁଦ୍ଧ' ଏବେ ଏହି ଶ୍ରୀଜଗନ୍ନାଥ ରୂପ ଧରି ରତ୍ନସିଂହାସନରେ ବିରାଜମାନ। ବିଷ୍ଣୁପାଦ ନଖକୋଣାଦ୍‌ଭୁତ ପାବନୀ ଗଙ୍ଗା ଜଳ ପରି ପବିତ୍ର ଶ୍ରୀଜଗନ୍ନାଥଙ୍କର ମହାପ୍ରସାଦ କଣିକାଟି, ଅତି ପବିତ୍ର। ଏହାର ସେବନରେ ମଣିଷ ମନରେ ପବିତ୍ର ଭାବ ଜାଗ୍ରତ ହୁଏ ଓ ମଣିଷର ଅସଂଯତ ମନ ସଂଯତ ହୋଇ ଈଶ୍ୱରାଭିମୁଖି ହୋଇଯାଏ। ତଦନୁଯାୟୀ କଦବା କୌଣସି ସାଂସାରିକ ଲୋକଙ୍କ ସାଙ୍ଗରେ କଥାବାର୍ତ୍ତା କଲେ ବା ସମୟ କଟାଇବା ପରେ ନିଜ ଆତ୍ମାର ପବିତ୍ରତା ପାଇଁ, କଣିକାଏ ନିର୍ମାଲ୍ୟ ସାଙ୍ଗରେ ବୁନ୍ଦାଏ ଗଙ୍ଗାଜଳ ସେବନ କରନ୍ତି ଶ୍ରୀରାମକୃଷ୍ଣ ଏବଂ ଭକ୍ତ ବା ଶିଷ୍ୟ କେହି ଅସୁସ୍ଥ ହୋଇ ପଡ଼ିଲେ ଶ୍ରୀଜଗନ୍ନାଥଙ୍କର ନିର୍ମାଲ୍ୟ କଣିକାଏ ସେବନ କରିବାକୁ ନିର୍ଦ୍ଦେଶ ଦେଇଥା'ନ୍ତି। ଶ୍ରୀଜଗନ୍ନାଥଙ୍କର ଶ୍ରୀମହାପ୍ରସାଦ ଜାତି ଜାତି ଭିତରେ, ଉଚ୍ଚନୀଚ ଭିତରେ ସମନ୍ୱୟତା ରକ୍ଷା କରେ। ଶ୍ରୀମହାପ୍ରସାଦ କେବେହେଲେ ଉଚ୍ଛିଷ୍ଟ ହୁଏ ନାହିଁ। ଶ୍ରୀମହାପ୍ରସାଦ ସଦା ପବିତ୍ର।

ଶ୍ରୀଜଗନ୍ନଥଙ୍କୁ ଦର୍ଶନ କରିବା ପାଇଁ ଇଚ୍ଛା କରି ଘରୁ ବାହାରିଥିବା ଲୋକଟି କେବେ ହେଲେ ବାଟବଣା ହେବ ନାହିଁ। ତାଙ୍କ ଭକ୍ତକୁ ସିଏ ତାଙ୍କ ପାଖକୁ ଯେମିତି ହେଲେ ଟାଣି ନେଇ ଯିବେ। ଅପଲକ ନେତ୍ରରେ ହାତ ଦୁଇଟିକୁ ଆଗକୁ ବଢ଼େଇ ଦେଇ ଅହୋ ରାତ୍ର ଭକ୍ତକୁ ତାଙ୍କର ଆହ୍ୱାନ କରୁଛନ୍ତି .... 'ଆ.... ଆ.... ମୋ ଧନ, ସଂସାର ଜଞ୍ଜାଳରେ ତୁ ଅଣନିଶ୍ୱାସୀ ହୋଇ ଗଲୁଣି। ଘଡ଼ିକ ପାଇଁ ଚାଲି ଆ' ମୋ ପାଖକୁ।

ଶ୍ରୀରାମକୃଷ୍ଣଙ୍କ ପାଖକୁ କେହି ଭକ୍ତ ଜଣେ ଆସିଲେ, ସଂସାରରେ ବଞ୍ଚି ରହିବାର ସୁ–ଉପଦେଶ ଗ୍ରହଣ କରି ଫେରିଯିବା ବେଳକୁ ଶ୍ରୀରାମ କୃଷ୍ଣ ତାକୁ କହନ୍ତି– ଆବାର ଏସୋ... ଆଉ ଥରେ ଆସ। ଶ୍ରୀରାମ କୃଷ୍ଣ ଅବତାରରେ 'ଆବାର ଏସୋ' ଏହି ଶବ୍ଦଯୁଗଳ ଠାକୁରଙ୍କର ଭକ୍ତ ପ୍ରତି ଡୋରି ବା ଆକର୍ଷଣ। ସମସ୍ତ ସାଧନାରେ ସିଦ୍ଧି ଲାଭ କଲା ପରେ ଶ୍ରୀଜଗନ୍ନାଥଙ୍କ ମାନବ ଶରୀର – ଶ୍ରୀରାମ କୃଷ୍ଣ, ଦକ୍ଷିଣେଶ୍ୱରରେ ଗୋଟାଏ କୋଠା ଛାତ ଉପରକୁ ଉଠିଯାଇ, ଚିତ୍କାର କରି ଡାକୁଥିଲେ। ଆରେ.... କିଏ କୋଉଠି ଅଛ, ଆସରେ...ମୁଁ ସଂସାରୀ ଲୋକଗୁଡ଼ାଙ୍କ ସାଙ୍ଗରେ କଥା କହି କହି ଅଣନିଃଶ୍ୱାସୀ ହୋଇଗଲିଣି–



ଶ୍ରୀମନ୍ଦିରର ନୀଳଚକ୍ର ଉପରେ  ପତିତପାବନ ବାନା ଅହରହ ଆକର୍ଷିତ କରୁଛି ଭକ୍ତମାନଙ୍କୁ... 'ଆରେ ଆସରେ, ମୁଁ ପରା ଏଇଠି ଏ ନୀଳକନ୍ଦରରେ ବସିଛି, ତୋର ଭୟ କ'ଣ ଚାଲିଆ !'

୧୮୮୫ ମସିହା ଅଗଷ୍ଟ ୧୦ ତାରିଖ, ଭକ୍ତଙ୍କ ଗହଣରେ ଭଗବତ ଚର୍ଚ୍ଚାରେ ମଗ୍ନ ଶ୍ରୀରାମ କୃଷ୍ଣ। ଭକ୍ତମାନେ ମଧ୍ୟ ଭାବବିଭୋର ହୋଇ ଚାହିଁ ରହିଛନ୍ତି ଠାକୁରଙ୍କ ଅମୃତ ବାଣୀକୁ। ଦ୍ୱାରମୁହଁ ପାଖରେ ସନ୍ତାନ ହରା ବିଧବା ବ୍ରାହ୍ମଣୀ ଜଣେ ଶୋକ ସନ୍ତପ୍ତ ହୃଦୟରେ ଲୁହ ଛଳଛଳ ଆଖିରେ ଶ୍ରୀରାମ କୃଷ୍ଣଙ୍କ ମୁହକୁ ଚାହିଁ ରହିଛନ୍ତି। ଏହି ସମୟରେ ମାଷ୍ଟର ମହାଶୟ ଗଙ୍ଗାସ୍ନାନ ପରେ ସେ ଘର ଭିତରକୁ ପଶିଆସିଲେ। ମାଷ୍ଟର ମହାଶୟଙ୍କୁ ଶ୍ରୀଜଗନ୍ନାଥଙ୍କ ମହାପ୍ରସାଦରୁ କଣିକାଏ ଦେବା ପାଇଁ ଠାକୁର ବ୍ରାହ୍ମଣୀଙ୍କୁ କହିଲେ ଓ ନିଜେ ମଧ୍ୟ କଣିକାଏ ଖାଇବା ପାଇଁ କହିଲେ। ସବୁ ଦୁଃଖ ଶୋକ ଦୂର ହୋଇଯିବ ଏହି ନିର୍ମାଲ୍ୟ କଣିକାର ସେବନରେ। ମାଷ୍ଟର ମହାଶୟ କିନ୍ତୁ ଠାକୁରଙ୍କୁ ପ୍ରଣାମ ପରେ ଶିବ ମନ୍ଦିରରେ ପ୍ରଣାମ ପାଇଁ ଯିବାକୁ ବାହାରିବା ବେଳକୁ ଶ୍ରୀରାମ କୃଷ୍ଣ ମାଷ୍ଟରଙ୍କୁ ବାଧା ଦେଇ କହିଲେ, ...ନା ନା, ଗାଧୋଇ ସାରି ପ୍ରଥମେ ମହାପ୍ରଭୁଙ୍କ ନିର୍ମାଲ୍ୟ କଣିକାଏ ସେବନ କରିବା ପରେ ଅନ୍ୟ ଯେକୌଣସି ଠାକୁରଙ୍କ ଦର୍ଶନକୁ ଯାଇପାର। ହଁ, ଭୋଜନ ପୂର୍ବରୁ ନିର୍ମାଲ୍ୟ କଣିକାଟିଏ ନିଶ୍ଚୟ ସେବନ କରିବ।

ଶ୍ରୀରାମ କୃଷ୍ଣଙ୍କ ଝିଆରୀ, ଆବାଲ୍ୟ ବ୍ରହ୍ମଚାରିଣୀ ଲକ୍ଷ୍ମୀ ଦିଦି, ତାଙ୍କର ଏକ ପ୍ରତ୍ୟକ୍ଷ ଅନୁଭୂତି କଥା ବେଳେବେଳେ କହିଥା'ନ୍ତି। – ଶ୍ରୀରାମ କୃଷ୍ଣ ଦେବ ଥରେ ବଳରାମ ବସୁଙ୍କ ଘରକୁ ଯାଇଥା'ନ୍ତି। ଭକ୍ତ ବଳରାମ, କିଛି ମହାପ୍ରସାଦ ଆଣି ଶ୍ରୀରାମ କୃଷ୍ଣଙ୍କ ହାତରେ ଦେଲେ। ଠାକୁର ରାମକୃଷ୍ଣ ସେହି ଶ୍ରୀଜଗନ୍ନାଥ ପ୍ରସାଦକୁ ଧରି, ମଥାରେ ଲଗାଇବା ମାତ୍ରେ ସମାଧିସ୍ଥ ହୋଇଗଲେ, ସ୍ଥିର ନିଶ୍ଚଳ ଶରୀର, ଅର୍ଦ୍ଧ ନିମିଳିତ ଦୃଷ୍ଟି, ଶ୍ୱାସ ପ୍ରଶ୍ୱାସ ଗତି ଅତି କ୍ଷୀଣ, ଶ୍ରୀମହାପ୍ରସାଦ ଧରିଥିବା ହାତଟି ମଥାରେ ସ୍ଥାଣୁ ହୋଇ ରହିଯାଇଛି, ଅପୂର୍ବ ଜ୍ୟୋତିର୍ମୟ ଦେହ କାନ୍ତି। ପାଖରେ ଥିବା ଭକ୍ତ ସକଳ ସ୍ଥିର ନିର୍ବାକ ଦୃଷ୍ଟିରେ ଚାହିଁ ରହିଥା'ନ୍ତି। ବେଶ୍ କିଛି ସମୟ ପରେ ସହଜ ଅବସ୍ଥାକୁ ଆସି ଶ୍ରୀରାମ କୃଷ୍ଣ କହିଲେ– .... ମହାପ୍ରଭୁଙ୍କର ଶ୍ରୀମହାପ୍ରସାଦ ସ୍ପର୍ଶ କରିବା ମାତ୍ରେ ମୁଁ ଅନୁଭବ କଲି, ମୁଁ ଯେମିତି ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥଙ୍କ ପାଖକୁ ଚାଲିଯାଇଛି ଏବଂ ମହାପ୍ରଭୁଙ୍କ ଦେହରେ ମିଶି ମିଶି ଯାଉଛି....। ସେଠାରେ ଦେଖୁଛି... ସବୁଗୁଡାକ ବଡ଼–ବିରାଟ। ବଡ଼ ସିଂହାସନ, ବଡ଼ ଠାକୁର, ବଡ଼ ଦେଉଳ, ବଡ଼ ଅଗଣା, ବଡ଼ ସିଂହଦ୍ୱାର, ବଡ଼ ଦାଣ୍ଡ, ବଡ଼ ସାଗର... ସବୁକିଛି ବଡ଼। ସେହି ବୃହତ୍ ବା ବଡ଼ ଭିତରେ ଏ ଆତ୍ମାଟା ପଞ୍ଚଭୂତର ଖୋଳଟା ଭିତରୁ ବାହାରିଯାଇ ମିଶିଯିବ ସେହି ବୃହତ୍‌ଙ୍କ ଭିତରେ। ଖୋଳଟା ଖାଲି ପଡ଼ି ରହିବ...।

ଯୁଗେ ଯୁଗେ ଏହି ଜଗନ୍ନାଥ ହିଁ ଅବତାର ହୋଇ ଆସନ୍ତି, ଧର୍ମର ସମାଜର ତଥା ମାନବ ଜାତିର ଭାରସାମ୍ୟ ରକ୍ଷା ପାଇଁ। ପାଶ୍ଚାତ୍ୟ ଜଗତର ଧର୍ମଗୁରୁ ଈଶ୍ୱରପୁତ୍ର ଯୀଶୁ ଭାରତକୁ ଆସିଥିଲେ ଓ ଶ୍ରୀଜଗନ୍ନାଥ କ୍ଷେତ୍ର ପୁରୀରେ ଚାରି ବର୍ଷ ରହିଥିଲେ । ଯୀଶୁଖ୍ରୀଷ୍ଟ ସେସମୟରେ ଶ୍ରୀଜଗନ୍ନାଥ ଚିନ୍ତା ଚେତନାରେ ଉଦ୍‌ବୁଦ୍ଧ ହୋଇଥିବେ ନିଶ୍ଚୟ। ପବିତ୍ର ବାଇବେଲର ଉପଦେଶଗୁଡ଼ିକ ବେଦବେଦାନ୍ତର ସୂକ୍ତ ଓ ମନ୍ତ୍ର ସଦୃଶ – ଲୋକ କଲ୍ୟାଣ ପାଇଁ ପ୍ରଯୁଜ୍ୟ।

ବୁଦ୍ଧଙ୍କର ପ୍ରତିଟିବାଣୀ ଓ ଉପଦେଶ ସନାତନ ବେଦ ବେଦାନ୍ତ ସଦୃଶ। କେହି କେହି ମନୀଷୀଙ୍କ ଉକ୍ତିରେ 'ଶ୍ରୀଜଗନ୍ନାଥ ହିଁ ବୁଦ୍ଧ ଅବତାର ହୋଇଥିଲେ, ଅହିଂସା ଧର୍ମ ପ୍ରଚାର ପାଇଁ।'

ଅଦ୍ୱୈତବାଦ ପ୍ରବର୍ତ୍ତକ ଭଗବାନ ଶଙ୍କର ମଧ୍ୟ ଶ୍ରୀଜଗନ୍ନାଥଙ୍କ ଆରାଧନା କରିଛନ୍ତି ତଥା ପୁରୀ ଧାମରେ ଅଦ୍ୱୈତବାଦ ମଠ ସ୍ଥାପନା କରିଛନ୍ତି।

ମହାବୀର ଜୈନ ଓ ନାନକ ପ୍ରଭୃତି ସବୁ ଧର୍ମ ସଂସ୍ଥାପକଗଣ ଶ୍ରୀଜଗନ୍ନାଥଙ୍କୁ ହିଁ ନିଜ ନିଜର ଇଷ୍ଟ ଭାବରେ ଗ୍ରହଣ କରିଛନ୍ତି।

ମହାପ୍ରଭୁ ଶ୍ରୀଜଗନ୍ନାଥ ହିଁ ତାଙ୍କ ଲୀଳାରେ ନାନା ପ୍ରକାରର ପରିବେଶ ସୃଷ୍ଟି କରି ତାଙ୍କ ଭକ୍ତଙ୍କୁ ରକ୍ଷା କରିଛନ୍ତି ଓ ସାହାଯ୍ୟ କରିଛନ୍ତି। ପୁରାଣମାନଙ୍କରେ ମହାପ୍ରଭୁଙ୍କର ନାନା



ପ୍ରକାରର ମାରଣ ତାରଣ ବିଷୟମାନ ବର୍ଣ୍ଣିତ ହୋଇଛି । ଯଥା– ଗଜ ଉଦ୍ଧାରଣ, ମୃଗୁଣୀତାରଣ, ଦ୍ରୌପଦୀଙ୍କ ଲଜ୍ଜା ନିବାରଣ, ଦ୍ୱିତୀୟ ପାଣ୍ଡବଙ୍କୁ ବିଷ ଲଡୁ ପ୍ରକୋପରୁ ରକ୍ଷା, ପାଣ୍ଡବଙ୍କୁ ଜତୁଗୃହ ଦହନରୁ ରକ୍ଷା କରିବା ଇତ୍ୟାଦି ଇତ୍ୟାଦି... ।

ଶ୍ରୀରାମ କୃଷ୍ଣ ଅବତାରରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ଅପୂର୍ବ କୃପାର ଏକ ସତ୍ୟ ଘଟଣା–

ଶ୍ରୀରାମ କୃଷ୍ଣଙ୍କର ଭାଇଙ୍କ ଝିଅ ଝିଆରୀ, ଲକ୍ଷ୍ମୀ ଦିଦି ଜଣେ ମହାନ ସାଧିକା । ଶ୍ରୀରାମ କୃଷ୍ଣଙ୍କର ଅବର୍ତ୍ତମାନରେ ଶ୍ରୀକ୍ଷେତ୍ର ବାସ ଆଦରି ନେଇଥା'ନ୍ତି । ପୁରୀର ଗୌଡ଼ ବାଡ଼ ସାହିରେ ତାଙ୍କର ବାସ । ମହୋଦଧିରେ ସ୍ନାନ, ଦିନର ଦୁଇବେଳା ଶ୍ରୀମନ୍ଦିରରେ ଶ୍ରୀପ୍ରଭୁଙ୍କର ଦର୍ଶନ ଏବଂ ଦିନର ବାକିତକ ସମୟ ଧ୍ୟାନ ଓ ଧାରଣାରେ ତାଙ୍କର ଦୈନନ୍ଦିନ ଜୀବନ ପ୍ରବାହ । ସେଦିନ ଲକ୍ଷ୍ମୀ ଦିଦି ମହୋଦଧି ସ୍ନାନକୁ ଯାଇଛନ୍ତି– ସ୍ୱର୍ଗଦ୍ୱାର ପାଖକୁ । ସମୁଦ୍ରରେ ଗାଧୋଉଥିବା ସମୟରେ କ'ଣ କେମିତି ହେଲା କେଜାଣି ଲକ୍ଷ୍ମୀ ଦିଦି ସେହି ଢ଼େଉ ଭିତରେ ଭାସି ଭାସି ଚାଲିଲେ । କୂଳକୁ ଆସି ପାରିଲେ ନାହିଁ । ଅତି ଅସହାୟ ଭାବରେ ସମୁଦ୍ର ଭିତରେ ବୁଡ଼ିଯିବା ପରି ଅବସ୍ଥା । ସମୁଦ୍ର ଲହଡ଼ିରେ ଉବୁଟୁବୁ ହୋଇଯାଇ ପହଞ୍ଚିଲେଣି ପ୍ରାୟ ମାଇଲିଏ ଦୂରରେ । ଚକ୍ରତୀର୍ଥ ପାଖରେ ବଞ୍ଚିବାର ଆଶା କମ୍ । ଠିକ୍ ଏହି ସମୟରେ, ଅଚାନକ ଗୋଟିଏ ଗାଈଜଗା ପିଲା ସମୁଦ୍ର ଭିତରୁ ତାଙ୍କୁ ଛାଣି ଆଣି କୂଳରେ ଛାଡ଼ିଦେଲା । ଲକ୍ଷ୍ମୀଦିଦି ବଞ୍ଚିଗଲେ । ସଂବିତ୍ ପାଇ ଯେତେ ଖୋଜିଲେ ସେ ପିଲାଟିକୁ ଆଉ ଦେଖିବାକୁ ପାଇଲେ ନାହିଁ । ଚକ୍ରତୀର୍ଥ ପାଖର ବେଳାଭୁମି ପୂରା ପୂରି ଶୂନ୍‌ଶାନ୍ । ଲକ୍ଷ୍ମୀଦଦି ଫେରିଲେ ତାଙ୍କ ଘରକୁ । ସନ୍ଧ୍ୟାରେ, ନିୟମାନୁଯାୟୀ ଗଲେ ଶ୍ରୀମନ୍ଦିରକୁ ।

ମନ୍ଦିରରେ ପ୍ରବଳ ଭିଡ଼ । ଜଗମୋହନ, ନାଟମନ୍ଦିର, ଗର୍ଭଗୃହ ଜନାକୀର୍ଣ୍ଣ । ଭିଡ଼ ଠେଲି ଲକ୍ଷ୍ମୀଦିଦି ଯାଇ ପହଞ୍ଚିଲେ ଗର୍ଭଗୃହର ଶେଷ ପାହାଚରେ । ଆଗରେ ରତ୍ନସିଂହାସନ । ସିଂହାସନ ଉପରେ ବିରାଜମାନ ଚତୁର୍ଦ୍ଧାମୂର୍ତ୍ତି । ଗର୍ଭଗୃହର ଛାଇ ଆଲୁଅ ଭିତରେ ଠାକୁରମାନେ ଆଜି ଆହୁରି ଉଜ୍ଜ୍ୱଳ ଦିଶୁଛନ୍ତି । ଶ୍ରୀଜଗନ୍ନାଥଙ୍କ ଦର୍ଶନ ପରେ ଲକ୍ଷ୍ମୀଦିଦିଙ୍କ ଦୃଷ୍ଟି ପହଁରିଗଲା ଯୋଗମାୟା ସୁଭଦ୍ରାଙ୍କ ଉପରକୁ, ତା'ପରେ ବଡ଼ ଠାକୁର । ପ୍ରଭୁ ବଳଭଦ୍ରଙ୍କୁ ଚାହିଁ ଦେଇ ଲକ୍ଷ୍ମୀ ଦିଦି ଚମକି ପଡ଼ିଲେ, ବୁଦ୍ଧି ଭ୍ରମ ହୋଇଗଲା ତାଙ୍କର । ଇଏ କିଏ ? କିଏ ଇଏ ଠିଆ ହୋଇଛନ୍ତି ରତ୍ନ ସିଂହାସନ ଉପରେ ! ଜଣେ ମଣିଷ ! ଲକ୍ଷ୍ମୀ ଦିଦି ଆଖି ମଳି ପୁଣି ଚାହିଁ ଦେଖିଲେ...., ଦେଖିଲେ... ତାଙ୍କୁ ସମୁଦ୍ର ଢ଼େଉ ଭିତରୁ ଉଦ୍ଧାର କରି ଆଣିଥିବା ସେହି ଗାଈଆଳ ପିଲା ଜଣକ ରତ୍ନ ସିଂହାସନ ଉପରୁ ତାଙ୍କ ଆଡ଼କୁ ଚାହିଁ ମୁରୁକି ମୁରୁକି ହସୁଛି ।' ତେବେ... ତେବେ କ'ଣ ପ୍ରଭୁ ନିଜେ ଯାଇ ତାଙ୍କୁ ସମୁଦ୍ରର ସେ ଉତ୍ତାଳ ସ୍ରୋତ ଭିତରୁ ଛାଣିଆଣି କୂଳରେ ଛାଡ଼ି ଦେଇଥିଲେ ? କୃତଜ୍ଞତାରେ ଭରିଗଲା ଲକ୍ଷ୍ମୀ ଦିଦିଙ୍କ ହୃଦୟ, ଝର ଝର ହୋଇ ଲୁହ ଧାର ଗଡ଼ି ଆସିଲା ଦୁଇ ଆଖିରୁ । ଭକ୍ତିପୂର୍ଣ୍ଣ ପ୍ରଣାମଟିଏ ଜଣେଇଲେ ମହାପ୍ରଭୁଙ୍କ ପାଦପଦ୍ମରେ ।

ଏହା ତ ଶତାଧିକ ବର୍ଷ ତଳର ଘଟଣା । ମାତ୍ର ୧୯୭୧ ମସିହାର ନିଜେ ଅଙ୍ଗେ ନିଭେଇଥିବା ପ୍ରତ୍ୟକ୍ଷ ଘଟଣାଟିଏ ।

୧୯୭୧ ମସିହାର ସ୍ନାନ ପୂର୍ଣ୍ଣିମା । ସରକାରୀ ଚାକିରିରେ ପରିବହନ ବିଭାଗରେ ମୁଁ ଜଣେ ଟ୍ରାଫିକ୍ ଇନିସ୍‌ପେକ୍ଟର । ଆମ ବିଭାଗର ଉଚ୍ଚ କର୍ମକର୍ତ୍ତା କେଇଜଣଙ୍କ ସାଙ୍ଗରେ ମହାପ୍ରଭୁଙ୍କ ସ୍ନାନ ଯାତ୍ରା ଦେଖିବାକୁ ଯାଇଛି । ମଧ୍ୟାହ୍ନ ପୂର୍ବର ଘଟଣା । ସ୍ନାନବେଦୀରେ ମହାପ୍ରଭୁମାନେ ବିରାଜମାନ । ସିଂହଦ୍ୱାର ସାମନା ବାଗେଡ଼ିଆ ଧର୍ମଶାଳା ଆଗରେ ଗାଡ଼ି ରଖି ମୋ ସାଥିରେ ଆସିଥିବା ଅଫିସରମାନେ ଗଲେ ସ୍ନାନବେଦୀ ଉପରେ ମହାପ୍ରଭୁଙ୍କୁ ଦେଖିବାକୁ । ମୁଁ ଗାଡ଼ି ପାଖରେ ଠିଆହୋଇ ରହିଲି । ସ୍ନାନବେଦୀ ଉପରେ ସେବାୟତମାନେ ପାଣି ଆଣି ଶ୍ରୀଜୀଉମାନଙ୍କ ମୁଣ୍ଡରେ ଢ଼ାଳୁଥାନ୍ତି । ବଡ଼ଦାଣ୍ଡ କଡ଼ରେ ଠିଆହୋଇ ଏକ ଲୟରେ ମୁଁ ଚାହିଁ ରହିଥାଏ ମହାପ୍ରଭୁଙ୍କ ସ୍ନାନ ସମୟର ଦୃଶ୍ୟକୁ । ମୋ ଛାତି ଭିତରେ ମୁଁ ଅନୁଭବ କରୁଥାଏ ଗୋଟାଏ ଅବ୍ୟକ୍ତ କୋହ, ମନହଉଥାଏ– ପ୍ରଭୁଙ୍କ ପାଖକୁ ଟିକିଏ ଚାଲିଯା'ନ୍ତି କି ? ମାତ୍ର ଉପାୟଶୂନ୍ୟ, ମୋତେ ବା ତାଙ୍କ ପାଖକୁ ଛାଡ଼ିବେ କାହିଁକି ? ସେସମୟରେ ସିଂହଦ୍ୱାର ତଥା ସ୍ନାନବେଦୀ, ବଡ଼ ବଡ଼ ଗଣ୍ୟମାନ ଲୋକଙ୍କର ଜାଗା । ଗୋଟାଏ ଅଜଣା କୋହ ଉଠିଲା ମନରେ । ମନରେ ମୋର ଗୋଟାଏ



ଅଭିମାନ ଦେଖା ଦେଲା । ଠାକୁର, ପତିତଙ୍କୁ ଓ ଗରିବଙ୍କୁ ଦେଖା ଦବା ପାଇଁ ସିନା ବାହାରକୁ ଆସୁଛନ୍ତି, ହେଲେ ସିଏ ବଡ଼ ବଡ଼ିଆଙ୍କର । ଗରିବ କିମ୍ୱା ପତିତଟିଏ ତାଙ୍କ ପାଖକୁ ଯାଇପାରିବ ନାହିଁ । ଆଖି ଦୁଇଟି ମୋର ବୁଜି ହୋଇ ଆସିଲା – ଏହି ..... ବୁଜି ହୋଇଯିବାଟି, ଭକ୍ତିର କି ଅଭିମାନର ସ୍ଥିର କରି ପାରିଲି ନି । ହଠାତ୍ ମୋର ସଂବିତ୍ ଫେରିଲା । କାହାର ଗୋଟିଏ ପିଲାଳିଆ କଣ୍ଠ ସ୍ୱରରେ । ଚାହିଁ ଦେଖିଲି, ପିଲାଟିଏ, ଏଗାର ବାରବର୍ଷର ବ୍ରାହ୍ମଣ ପିଲାଟିଏ । ସୁନ୍ଦର ଗୌର ବର୍ଣ୍ଣର । ହଳଦିଆ ଲୁଗାଖଣ୍ଡେ କଛାମାରି ପିନ୍ଧିଛି – କାନ୍ଧରେ ହଳଦି ରଙ୍ଗର ଗାମୁଛା ଆଉ ଉଜ୍ଜ୍ୱଳ ପଇତା । କପାଳରେ ଚନ୍ଦନ ଟିପା । ଛୋଟିଆ ଗଡୁଟିଏ ହାତରେ ଧରିଛି । ଅପୂର୍ବ ଗୋଟାଏ କଣ୍ଠସ୍ୱରରେ କହୁଛି... ନେ ରେ, ମାଜଣା ପାଦୁକ ଟିକିଏ ନେ ! ଯନ୍ତ୍ରଚାଳିତ ପରି ମୁଁ ମୋ ହାତଟିକୁ ବଢ଼ାଇ ଦେଲି । ବାଳକ ପାଦୁକ ଟିକିଏ ଢ଼ାଳିଦେଲା ମୋ ଡାହାଣ ପାପୁଲିରେ– ଉଶ୍ୱାସ ଭକ୍ତିରେ ମୁଁ ସେ ପାଦୁକ ପାଇଦେଲି । ଆଖି ଖୋଲି ଦେଖିଲା ବେଳକୁ ସେ ବାଳକ ଆଉ ମୋ ପାଖରେ ନାହିଁ– ଆଖି ପିଛୁଳାକେ କୁଆଡ଼େ ଉଭେଇ ଯାଇଛି । ବହୁ ଖୋଜିଲି ମାତ୍ର ଦେଖିବାକୁ ପାଇଲି ନାହିଁ । ମୋ ପାଟି ଭିତର, ମୋର କଣ୍ଠନଳୀ ମୋର ଛାତି ଭିତରେ ଚନ୍ଦନ ଆଉ ତୁଳସୀର ବାସ୍ନା ପାଇଲି । ମନ ଭିତରେ କେମିତିଆ ଗୋଟାଏ ଅହେତୁକ ଆନନ୍ଦ ଅନୁଭବ କଲି ।

ସେହି ୧୯୭୨ ମସିହାର ଶ୍ରୀଗୁଣ୍ଡିଚା ଦିନର ଆଉ ଏକ ପ୍ରତ୍ୟକ୍ଷ ଘଟଣା । ପ୍ରଭୁଙ୍କ ପହଣ୍ଡି ବିଜେ ବେଳକୁ ମୁଁ କୌଣସିମତେ, ସେହି ଭିଡ଼ ଭିତରେ ସିଂହଦ୍ୱାର ପାଖରେ ପହଞ୍ଚି ଯାଇପାରିଛି । ବଡ଼ ବଡ଼ିଆଙ୍କ ଦୃଷ୍ଟି ଆଢୁଆଳରେ ଗୋଟିଏ କଡ଼କୁ ଅତି ସନ୍ତର୍ପଣରେ ଛିଡ଼ାହୋଇ ରହିଛି । ବଡ଼ ଠାକୁରଙ୍କ ପହଣ୍ଡି ସରିଯାଇଛି । ତାଳଧ୍ୱଜ ରଥ ଉପରକୁ ଉଠି ଯାଇଛନ୍ତି ବଡ଼ ଠାକୁର । ମା' ସୁଭଦ୍ରେ ଦର୍ପଦଳନରେ ବିଜେ କରି ସାରିଛନ୍ତି । ପ୍ରଭୁ ସୁଦର୍ଶନ ମଧ୍ୟ ବିଜେ ହୋଇସାରିଛନ୍ତି । ମାତ୍ର ଅଚଳ ମହାମେରୁ ସାଜିଛନ୍ତି ହଟିଆ ଠାକୁର ଶ୍ରୀଜଗନ୍ନାଥ ନନ୍ଦିଘୋଷର ଚାରମାଳ ତଳେ ବସି ରହିଛନ୍ତି । ସେବକମାନେ ଯେତେ ଚେଷ୍ଟା କଲେ ବି ଅଚଳ । ପହଣ୍ଡି ସାରି ସହଳ ସହଳ ରଥଟଣା ଆରମ୍ଭ କରିଦବା ପାଇଁ କର୍ମକର୍ତ୍ତାମାନେ ବ୍ୟସ୍ତ । କିନ୍ତୁ ଇଚ୍ଛାମୟଙ୍କ ଇଚ୍ଛାରେ ଏ ସୃଷ୍ଟିର ସବୁକିଛି । ମଣିଷର ଇଚ୍ଛାରେ କ'ଣ ସୃଷ୍ଟିକର୍ତ୍ତା ପରିଚାଳିତ ? ନା ।

ବ୍ୟତିବ୍ୟସ୍ତ ହୋଇପଡ଼ିଲେ ସେବାୟତ ଓ ସରକାରୀ ପ୍ରଶାସକ । ମୁଖ୍ୟମନ୍ତ୍ରୀ ମଧ୍ୟ ସେଠାରେ ଉପସ୍ଥିତ ଥା'ନ୍ତି । ମହାପ୍ରଭୁଙ୍କୁ ରଥ ଉପରକୁ ନେବାକୁ ମୁଖ୍ୟମନ୍ତ୍ରୀ ନିର୍ଦ୍ଦେଶ ଦେଲେ । ମାତ୍ର ସେବକମାନେ ଅଡ଼ି ବସିଲେ । ଏହି ସମୟରେ ଦେଖାଗଲା ସ୍ୱୟଂ ଗଜପତି ମହାରାଜା, ଠାକୁରଙ୍କ ଚଳନ୍ତି ପ୍ରତିମା, ପାଦରେ ଚାଲି ଚାଲି ଭିଡ଼ ଭିତରେ ରଥ ପାଖକୁ ଆସୁଛନ୍ତି । ତାଙ୍କ ସାଙ୍ଗରେ ଅଛନ୍ତି ସରକାରୀ ପ୍ରଶାସକ । ମହାରାଜା ପ୍ରଥମେ ବଡ଼ ଠାକୁରଙ୍କୁ ପ୍ରଣାମ ନିବେଦନ କରି, ପରେ ମା'ଙ୍କୁ ପ୍ରଣତି ଜଣାଇ ଯାଇ ଠିଆହେଲେ ଜଗନ୍ନାଥଙ୍କ ଛାମୁରେ ଏବଂ ପ୍ରଣାମ ନିବେଦନାନ୍ତେ, ଭାବ ଗଦ୍‌ଗଦ କଣ୍ଠରେ କହିଲେ, ... ମଣିମା, କାହିଁକି ଏତେ ରଷୁଛନ୍ତି ? ଚାଲନ୍ତୁ, ରଥ ଉପରକୁ ଚାଲନ୍ତୁ । ଜଗତ ପରା ଚାହିଁ ରହିଛି ଆପଣଙ୍କୁ ନନ୍ଦିଘୋଷ ଉପରେ ଦର୍ଶନ କରିବା ପାଇଁ । ଏତକ କହି ଗଜପତି ଶ୍ରୀଠାକୁରଙ୍କ ପିଠିରେ ହାତ ବୁଲାଇ ଦେଲେ । ବାସ୍, ପ୍ରଭୁଙ୍କର ଭକ୍ତ ଶିରୋମଣିଙ୍କର ନିଉଛାଳିରେ ଦୀର୍ଘ ସମୟ ଧରି ଅଚଳ ମହାମେରୁ ହୋଇ ବସି ରହିଥିବା ଛଳିଆ ଠାକୁର ତାଙ୍କର ସେବକମାନଙ୍କ ଦ୍ୱାରା ତୂଳାସମ ଉପରକୁ ଉଠିଗଲେ ।

ଜୟ ଜଗନ୍ନାଥ ଧ୍ୱନିରେ କମ୍ପି ଉଠିଲା ଗଗନମଣ୍ଡଳ । ପରେ ପରେ ଆଉ କିଛି ମୁଁ ଜାଣିପାରିଲିନି, – ସେହି ଜନ ସମୁଦ୍ରର ଭିଡ ଭିତରେ ଶୂନ୍ୟେ ଶୂନ୍ୟେ ମୁଁ ନିଜକୁ ଆବିଷ୍କାର କଲି ରଥଠାରୁ ବେଶ୍ କିଛି ଦୂରରେ – ମରୀଚକୋଟ ଗଳି ପାଖରେ । ଚିନ୍ତା ଚେତନାରେ ଶ୍ରୀଜଗନ୍ନାଥ । ସିଏ ଅସୀମ, ଅନନ୍ତ, ତାଙ୍କର କଳନା ନାହିଁ । ତାଙ୍କୁ ଜାଣିବାକୁ ଚିହ୍ନିବାକୁ ହେଲେ ଦରକାର ଐକାନ୍ତିକ ଭକ୍ତି ଓ ଗଭୀର ବିଶ୍ୱାସ ଆଉ ପୂର୍ଣ୍ଣ ସମର୍ପଣ ।

ପ୍ଲଟ୍ ନଂ–୭୮୫/୧୮୮୭
ଗ୍ରାମ/ପୋଷ୍ଟ– ମହାଲକ୍ଷ୍ମୀ ବିହାର, ସାମ୍ପୁର, ଭୁବନେଶ୍ୱର



# ଶ୍ରୀମନ୍ଦିରରେ ଶ୍ରୀଗଣେଶ ଓ ଗଜାନନ ବେଶ ରହସ୍ୟ

ଅଧ୍ୟାପକ ଡକ୍ଟର ଅଶୋକ କୁମାର ମହାନ୍ତି

ଜଗତର ନାଥ ଜଗନ୍ନାଥ ହିଁ ବିଶ୍ୱ ସଂସ୍କୃତିର ଆଦି ଦେବତା। ପ୍ରାକ୍‌ବୈଦିକ କାଳରୁ ଯେତେବେଳେ ଋଷି, ମୁନି, ଦେବତାମାନଙ୍କ ଦ୍ୱାରା ଏ ଭୂମିରେ ପ୍ରଣବ ସ୍ୱରୂପ ବ୍ରହ୍ମଙ୍କ ଉପାସନା ହେଉଥିଲା, ସେତେବେଳେ ଜଗତରେ କୌଣସି ବିଗ୍ରହଙ୍କର ଉପାସନା, ପୂଜାପଦ୍ଧତି କିଛି ନଥିଲା। ଦେବତା, ଗନ୍ଧର୍ବ ଆସି ମହୋଦଧି ତଟରେ ଏକ ନୀଳମଣି ମଧ୍ୟରେ ବ୍ରହ୍ମଙ୍କ ପ୍ରଣବ ସ୍ୱରୂପ ଦର୍ଶନ କରୁଥିଲେ। ବିଶ୍ୱାବସୁ ମଧ୍ୟ ଏହି ଗନ୍ଧର୍ବ ପୁରୁଷଙ୍କ ମଧ୍ୟରୁ ଜଣେ ଥିଲେ। ପରବର୍ତ୍ତୀ ସମୟରେ ରାଜା ଇନ୍ଦ୍ରଦ୍ୟୁମ୍ନ ଏ କ୍ଷେତ୍ରର ସନ୍ଧାନ ପାଇଲା ପରେ ଏକ ବିରାଟ ସଂସ୍କୃତି ଜାଗ୍ରତ ହୋଇ ଜଗନ୍ନାଥଙ୍କ ସ୍ୱରୂପ ମଧ୍ୟରେ ସ୍ୱୟଂ ପ୍ରତିଷ୍ଠିତ ହୋଇଥିଲା। ଅନେକ ଯୁଗ, ସୃଷ୍ଟି, ପ୍ରଳୟକୁ ନେଇ ସ୍ୱତଃ ସ୍ୱୟଂ ପ୍ରତିଷ୍ଠିତ ହୋଇ ଜଗତରେ ବିଦିତ ହେଲେ 'ଶ୍ରୀଜଗନ୍ନାଥ' । ଅନେକ ମତ, ଅନେକ ପଥ, ଅନେକ ସିଦ୍ଧାନ୍ତକୁ ନେଇ ଏ କ୍ଷେତ୍ରରେ ଯେଉଁ ସଂସ୍କୃତି ସର୍ବଧର୍ମର ପ୍ରତୀକ ଉପାସନାକୁ ନେଇ ପ୍ରତିଷ୍ଠିତ, ତାହା ସମସ୍ତ ଧର୍ମ, ରୀତି, ପରମ୍ପରା, ବିଚାରଧାରାର ଊର୍ଦ୍ଧ୍ୱରେ । ସମନ୍ୱୟଭାବର ଶ୍ରେଷ୍ଠ ନିଦର୍ଶନ ଓ ଜଗତର ଶ୍ରେଷ୍ଠ ଉପାସ୍ୟ ଉପାସନାର ଶାଶ୍ୱତ ଅବସ୍ଥାନ। ଶ୍ରୀଜଗନ୍ନାଥ କୌଣସି ଅବତାର ସ୍ୱରୂପ ନହେଲେ ବି ସମସ୍ତ ଜଗତଜୀବନ ଅବତାର ପୁରୁଷଙ୍କ ସତ୍ତାକାରକ ପ୍ରତୀକ ବିଗ୍ରହ।

ଶ୍ରୀମନ୍ଦିରରେ ତାଙ୍କର ନୀତିକାନ୍ତି, ବେଶଭୂଷାରେ, ପର୍ବପର୍ବାଣିରେ ଅନେକ ଅବତାର, ଅନେକ ମତବାଦର ସ୍ୱରୂପ ଲକ୍ଷ୍ୟ କରାଯାଇପାରେ। ତେଣୁ ରାମ, କୃଷ୍ଣ, ବାମନ, ନୃସିଂହ, ବଳରାମ, ପର୍ଶୁରାମ, ବୁଦ୍ଧ ଆଦି ବେଶ ଅବତାର ଲୀଳାସମ୍ଭୂତ। ଏହିସବୁ ବେଶ ପରମ୍ପରାରେ ବିଚିତ୍ର ନୁହେଁ। ପ୍ରଭୁ ଗଜଉଦ୍ଧାରଣ ବେଶ ହୁଅନ୍ତି। କିନ୍ତୁ ନିଜେ ସ୍ୱତନ୍ତ୍ରଭାବେ ଗଜବେଶୀ, ହାତୀମୁହାଁ ଓ ଶ୍ରୀଗଣେଶ ବେଶ ହେବାରେ କୌଣସି ଅବତାରର ପ୍ରଭାବ ଲକ୍ଷ୍ୟ କରାଯାଇନପାରେ। ତେଣୁ ଗଜାନନ ବେଶ ଅନ୍ତରାଳରେ ଅନେକ ରହସ୍ୟ ବିଦ୍ୟମାନ। ଏହା ଏ ପ୍ରବନ୍ଧର ଆଲୋଚ୍ୟ ବିଷୟ।

ଶ୍ରୀମନ୍ଦିରରେ ବଟଗଣେଶ, ନାଟଗଣେଶ, ଭଣ୍ଡଗଣେଶ, ଚାରଗଣେଶ ଆଦି ପୂଜା ପାଆନ୍ତି।

ଗାଣପତ୍ୟମାନଙ୍କ ମତରେ ଗଣେଶ ସିଦ୍ଧିଗଣେଶ, ନିଧିଗଣେଶ, ବୁଦ୍ଧିଗଣେଶ, ବିଦ୍ୟାଦାତା ଗଣେଶଭାବରେ ଖ୍ୟାତ। ଗଣେଶ ଅଗ୍ରପୂଜ୍ୟ। ପୁଣି ପୁରାଣ ଓ ଶିଳ୍ପଶାସ୍ତ୍ରମାନଙ୍କରେ ଗଣେଶଙ୍କର ଯେଉଁ ୨୪ଟି ମୂର୍ତ୍ତି ବର୍ଣ୍ଣିତ ହୋଇଛି, ତନ୍ମଧ୍ୟରୁ ଲକ୍ଷ୍ମୀଗଣେଶଙ୍କ ମୂର୍ତ୍ତି ଅନ୍ୟତମ।

ଲକ୍ଷ୍ମୀ ଧନଦାତ୍ରୀ। ଗଣେଶ ଧନଦାତା। ତେଣୁ ପ୍ରତ୍ୟେକ ବ୍ୟବସାୟ ଅନୁଷ୍ଠାନରେ ଲକ୍ଷ୍ମୀ ଓ ଗଣେଶ ଏକତ୍ର ପୂଜା ପାଆନ୍ତି। ଗଣେଶଙ୍କୁ ପ୍ରଥମେ କିଏ ପୂଜା କରିଥିଲେ ତାହାର ପ୍ରମାଣ ମିଳିନାହିଁ। କିନ୍ତୁ ଅଗ୍ରପୂଜ୍ୟ ଗଣେଶ ସମସ୍ତ ଶୁଭକର୍ମରେ କଳସ ସ୍ୱରୂପ ପୂଜା ପାଆନ୍ତି। ଏପରିକି ଶିବପାର୍ବତୀ, ଲକ୍ଷ୍ମୀ–ନାରାୟଣଙ୍କ ବିବାହ ଉତ୍ସବରେ ମଧ୍ୟ ଗଣେଶ ପୂଜିତ ହେଉଥିବାରୁ ସେ ବିନାୟକ। ମହାବିନାୟକ। କୁହାଯାଇଛି ଗଣେ ନାରାୟଣେ ରୁଦ୍ରେ ଅମ୍ବିକେ ଭାସ୍କରେ ତଥା। ପଞ୍ଚଦେବତାଙ୍କ ଅଗ୍ରେ ଶ୍ରୀଗଣେଶ ପୂଜିତ। ଶ୍ରୀମନ୍ଦିରରେ ପ୍ରତ୍ୟହ ସୂର୍ଯ୍ୟପୂଜାରେ କଳସ ବସେ ଓ ପଞ୍ଚଦେବତା ଭିନ୍ନ ନୁହନ୍ତି।



କର୍ମଲକ୍ଷ୍ମୀ, ଭାଗ୍ୟଲକ୍ଷ୍ମୀ, ଧନଲକ୍ଷ୍ମୀ, ଐଶ୍ୱର୍ଯ୍ୟଲକ୍ଷ୍ମୀ, ବୀରଲକ୍ଷ୍ମୀ, ଗଜଲକ୍ଷ୍ମୀ, ସୌନ୍ଦର୍ଯ୍ୟଲକ୍ଷ୍ମୀ, ବିଜୟଲକ୍ଷ୍ମୀ, ବାକ୍ୟଲକ୍ଷ୍ମୀ ଆଦି ଅଷ୍ଟଲକ୍ଷ୍ମୀ ହିନ୍ଦୁ ପରମ୍ପରାରେ ପରିକଳ୍ପିତ। ଦ୍ୱାଦଶ ଶତାବ୍ଦୀରେ ରାମାନୁଜ ପୁରୀ ଆସିବାପରେ ଶ୍ରୀମନ୍ଦିର ବେଢ଼ା ମଧ୍ୟରେ ମହାଲକ୍ଷ୍ମୀଙ୍କ ମନ୍ଦିର ନିର୍ମିତ ହୋଇଥିଲା। ତା'ପୂର୍ବରୁ ରତ୍ନଗିରି ବୌଦ୍ଧ ତୋରଣରେ, ମହାବିନାୟକ ଓ ମୁକ୍ତେଶ୍ୱର ଆଦି ଶିବମନ୍ଦିରମାନଙ୍କରେ ଗଜଲକ୍ଷ୍ମୀଙ୍କ ଚିତ୍ର ଖୋଦିତ ହୋଇଛି। ସେତେବେଳେକୁ ଶ୍ରୀଜଗନ୍ନାଥଙ୍କ ଘରଣୀରୂପେ ଯଦି ଲକ୍ଷ୍ମୀ ଗୃହୀତ ହୋଇଥାନ୍ତେ ତେବେ ଶିବମନ୍ଦିରଗାତ୍ରରେ କାହିଁକି ଖୋଦିତ ହୁଅନ୍ତେ ? ସମ୍ଭବତଃ ଲକ୍ଷ୍ମୀ ଗଣେଶଙ୍କ ଭଳି ସୌଭାଗ୍ୟର ଦେବୀଭାବେ ପୂଜା ପାଉଥିଲେ। ସେଥିପାଇଁ ଗଣେଶଙ୍କ ସହିତ ଲକ୍ଷ୍ମୀଙ୍କୁ ସଂଯୋଗ କରାଯାଇଛି। ଶ୍ରୀଜଗନ୍ନାଥଙ୍କୁ ଗଣେଶଭାବେ କଳ୍ପନା କରାଯାଇ ତାଙ୍କସହ ଲକ୍ଷ୍ମୀଙ୍କୁ ଯୋଗ କରାଯାଇ ପରବର୍ତ୍ତୀ କାଳରେ ସ୍ନାନପୂର୍ଣ୍ଣମୀ ଦିନ ଗଣେଶ ବା ଗଜାନନ ବେଶ କରାଯାଏ।

ହିନ୍ଦୁ ସଂସ୍କୃତିରେ ଯକ୍ଷ, ଗନ୍ଧର୍ବ, କିନ୍ନର, ନାଗ ଆଦି ପୂଜା ପରମ୍ପରାସିଦ୍ଧ। ଯକ୍ଷମାନେ ଲମ୍ବୋଦର ବୋଲି କଥିତ ହୁଅନ୍ତି। ନାଗର ଅନ୍ୟନାମ ହସ୍ତୀ। ଗଣେଶ ମୂର୍ତ୍ତିରେ ଲମ୍ବୋଦର ଓ ହସ୍ତୀର ଆକୃତି ସମ୍ମିଶ୍ରଣ କରାଯାଇଛି। ଶ୍ରୀଜଗନ୍ନାଥ ବୃହତ୍ ଉଦରବିଶିଷ୍ଟ ହୋଇଥିବାବେଳେ ବଳଭଦ୍ରଙ୍କ ମସ୍ତକରେ ନାଗଚିତ୍ର ଅଙ୍କିତ। ଶ୍ରୀଜଗନ୍ନାଥ ଓ ଶ୍ରୀବଳଭଦ୍ରଙ୍କ ମଧ୍ୟରେ କୌଣସି ପ୍ରଭେଦ ନଥିବାବେଳେ ତାଙ୍କଠାରେ ଯକ୍ଷ ଓ ନାଗଙ୍କ ସଂକେତ ସନ୍ନିବେଶିତ କରାଯାଇଛି। ତେଣୁ ଯକ୍ଷ ଓ ନାଗପୂଜାର ପ୍ରତୀକସ୍ୱରୂପ ଦେବସ୍ନାନ ପୂର୍ଣ୍ଣମୀରେ ଲମ୍ବୋଦର ଓ ହାତୀବେଶ ପରିକଳ୍ପନା କରାଯାଇଥାଇପାରେ।

କଳ୍ପବଟ ମୂଳରେ ଦକ୍ଷିଣଦିଗକୁ ମୁଖକରି ବଟଗଣେଶ ପୂଜା ପାଆନ୍ତି। ସେହି ବଟଗଣେଶ ବା କଳ୍ପଗଣପତି ସକଳ ସିଦ୍ଧିଦାତା ତଥା ସମସ୍ତ କାମନାର ପୂରକ। ଶ୍ରୀଗଣେଶ ଚତୁର୍ଥୀଦିନ ଏଠାରେ ଲଡୁ ଓ କ୍ଷୀର ଭୋଗ କରାଯାଏ।

ଶ୍ରୀମନ୍ଦିର ସମାଚାର ଅନୁଯାୟୀ ରାଘବଦାସ ନାମରେ ଜଣେ ବାବାଜୀ ଗଣେଶଙ୍କୁ ପୂଜା କରୁଥିଲେ। ଦ୍ୱାଦଶ ଶତାବ୍ଦୀରେ ବର୍ତ୍ତମାନର ଶ୍ରୀମନ୍ଦିର ତୋଳା ହେଲାବେଳେ ବାରମ୍ବାର ଚାର ଛିଣ୍ଡିବାରୁ ଗଣେଶଙ୍କୁ ପୂଜାକରି ଚାର ସ୍ଥିର କରିଥିଲେ। ଏବେବି ଶ୍ରୀମନ୍ଦିର ବେଢ଼ା ମଧ୍ୟରେ ସେହି ଗଣେଶ ପୂଜା ପାଇଥାନ୍ତି। ତାଙ୍କୁ ଚାରଗଣେଶ କୁହାଯାଏ।

ବିମଳାଙ୍କ ମନ୍ଦିର ପ୍ରାୟ ସମ୍ମୁଖରେ ଦକ୍ଷିଣାଭିମୁଖ ହୋଇ ନୃତ୍ୟଗଣପତିଙ୍କ ମନ୍ଦିର। କଳାମୁଗୁନି ପଥରର ଗଣେଶମୂର୍ତ୍ତି ମୂଷିକ ଉପରେ ନୃତ୍ୟ କରୁଥିବା ଭଙ୍ଗୀରେ ବିଦ୍ୟମାନ। ଉକ୍ତ ନୃତ୍ୟଗଣେଶ ଅଷ୍ଟଭୁଜ ଅଟନ୍ତି। ଉପରେ ଦୁଇହାତରେ ସର୍ପ। ସର୍ପ ମସ୍ତକ ଉପରେ ଭଙ୍ଗା ହୋଇ ରହିଛି। ଉପର ଡାହାଣ ହାତରେ ସେ ସର୍ପର ଫଣା ଧରିଛନ୍ତି। ବାମର ଗୋଟିଏ ହାତରେ ଅଙ୍କୁଶ ଏବଂ ଅନ୍ୟଏକ ହାତରେ ଲଡୁ ବା ମୋଦକ ରହିଛି। ଲଡୁ ଉପରେ ଶୁଣ୍ଢ ରଖାଯାଇଥିବା ଦୃଷ୍ଟିଗୋଚର ହୁଏ। ଏଭଳି ମୂର୍ତ୍ତି ଅନ୍ୟତ୍ର ବିରଳ। ଏଠାରେ ମଧ୍ୟ ଯକ୍ଷ ଓ ନାଗପୂଜାର ନିଦର୍ଶନ ହୋଇଥାଇପାରେ।

କୁର୍ମ ପ୍ରାଚୀରର ପଶ୍ଚିମଦ୍ୱାରର ଦକ୍ଷିଣଦ୍ୱାରକୁ ଏବଂ ସାକ୍ଷୀଗୋପାଳ ମନ୍ଦିରର ପାର୍ଶ୍ୱରେ ପୂର୍ବାଭିମୁଖ କଳାମୁଗୁନି ପଥରେ ଗଣେଶ ମୂର୍ତ୍ତି। ଏହି ଗଣେଶ ଚାରିଭୁଜ ବିଶିଷ୍ଟ। ତାଙ୍କକୋଳରେ ସିଦ୍ଧିଦେବୀ ଉପବେଶନ କରିଛନ୍ତି ଏବଂ ଗଣେଶଙ୍କ ଶୁଣ୍ଢ ଶକ୍ତିଙ୍କ ଭଗରେ ଭର୍ତ୍ତିହୋଇ ରହିଥିବାରୁ ଲୋକମୁଖରେ ଉକ୍ତ ଗଣେଶଙ୍କୁ ଭଣ୍ଡଗଣେଶ, କାଞ୍ଚିଗଣେଶ, କାମଦ ଗଣେଶ ବୋଲି କୁହାଯାଇଥାଏ। ୧୪୬୪ ଖ୍ରୀଷ୍ଟାବ୍ଦରେ ପୁରୀ ରାଜା ଶ୍ରୀ ପୁରୁଷୋତ୍ତମ ଦେବ କାଞ୍ଚିର ରାଜା ଶାଳ୍ୱ ନରସିଂହଦେବଙ୍କୁ ପରାସ୍ତକରି ଏହି ମୂର୍ତ୍ତି କାଞ୍ଚିରୁ ଆଣିଥିଲେ ବୋଲି ଇତିହାସରୁ ଜଣାଯାଏ। ଏ ରହସ୍ୟ କାଞ୍ଚିଅଭିଯାନ ପ୍ରସଙ୍ଗରେ ଉନ୍ମୋଚିତ।

ଜ୍ୟେଷ୍ଠମାସ ପୂର୍ଣ୍ଣମୀତିଥି ଦେବସ୍ନାନ ପୂର୍ଣ୍ଣିମା ଦିନ ଚତୁର୍ଦ୍ଧାମୂର୍ତ୍ତି ପହଣ୍ଡି ବିଜେକରି ସ୍ନାନବେଦୀକୁ ଆସନ୍ତି। ଠାକୁରମାନେ ସ୍ନାନପରେ ହାତୀବେଶ ବା ଗଜାନନବେଶ ହୁଅନ୍ତି। ସୋଲ, ଜରି, ଜମ୍ଭୁରା, କଦଳୀ ପାଟୁକାରେ ତରାସଚୂଳ ଓ କରପଲ୍ଲବ ଆଦି ଲାଗିକରି ବଳଭଦ୍ରଙ୍କୁ ଧଳାହାତୀ ଓ ଶ୍ରୀଜଗନ୍ନାଥଙ୍କୁ କଳାହାତୀ ରୂପରେ ସଜାଇ ଦିଆଯାଏ।



ସ୍ନାନମଣ୍ଡପ ଓ ବଡ଼ଦାଣ୍ଡରେ ଭକ୍ତଗଣ ଠିଆହୋଇ ଏ ଅପୂର୍ବ ବେଶ ଦର୍ଶନ କରିଥାଆନ୍ତି ।

ଏ ପ୍ରସଙ୍ଗରେ ଏକ କାହାଣୀ ରହିଛି । ପଞ୍ଚଦଶ ଶତାବ୍ଦୀରେ ମହାରାଷ୍ଟ୍ରରୁ ମହାଗଣପତ୍ୟ ସଂପ୍ରଦାୟର । ଶ୍ରୀଗଣପତିଭଟ୍ଟ ଶ୍ରୀକ୍ଷେତ୍ର ଆସି ଶ୍ରୀଜଗନ୍ନାଥ ତାଙ୍କ ଇଷ୍ଟ ଗଣପତି ନୁହନ୍ତି ବୋଲି ପ୍ରଣିପାତ କଲେନାହିଁ ଓ ନିରାଶହୋଇ ଶ୍ରୀକ୍ଷେତ୍ର ତ୍ୟାଗକରି ମୁକ୍ତେଶ୍ୱରଙ୍କ ପର୍ଯ୍ୟନ୍ତ ଚାଲିଗଲେ । ଭାବଗ୍ରାହୀ ଶ୍ରୀଜଗନ୍ନାଥ ସ୍ୱପ୍ନାଦେଶ କଲେ ଗଣପତି ଭଟ୍ଟଙ୍କୁ । ସେ ଜ୍ୟେଷ୍ଠପୂର୍ଣ୍ଣିମା ଦିନ ଶ୍ରୀକ୍ଷେତ୍ରକୁ ଆସି ଦେଖିଲେ ସ୍ନାନବେଦୀରେ ଧଳାଗଣେଶ ଓ କଳାଗଣେଶ ଶୋଭା ପାଉଛନ୍ତି । ସେ ପ୍ରଣିପାତ କରି ପ୍ରାର୍ଥନା କଲେ–

ତ୍ୱମେବ ବକ୍ରତୁଣ୍ଡଶ୍ଚ, ତ୍ୱମେବ ଗଣନାୟକଃ
ଶୁକ୍ଳବର୍ଣ୍ଣ ସ୍ୱରୂପେଣ, ଗୌରୀପୁତ୍ର ବିନାୟକଃ ।।
କୃଷ୍ଣରୂପମୟ କୃଷ୍ଣଃ, ଶିବରୂପମୟ ହରଃ
ସାକ୍ଷାତ୍ ଦେବଜଗନ୍ନାଥଃ ବିଘ୍ନବିନାୟକ ସ୍ୱୟଂ ।।

ସ୍ନାନପୂର୍ଣ୍ଣମୀ ଦିନ ଶ୍ରୀଜଗନ୍ନାଥ ମହାଗଣପତି, ବଳଭଦ୍ର ଖଦିର ଗଣପତି ଓ ସୁଭଦ୍ରା ମାତଙ୍ଗୀବେଶ ଧାରଣ କରିଥାନ୍ତି । ଏହି ରୂପରେ ପ୍ରତିବର୍ଷ ଦର୍ଶନ ଦେବା ପଛର କାହାଣୀ ଐତିହାସିକ ସତ୍ୟ ଅପେକ୍ଷା ବେଶି କିମ୍ବଦନ୍ତୀପ୍ରସୂତ, ଯାହାକି ପ୍ରାଣକୁ ଛୁଏଁ ।

ଐତିହାସିକମାନଙ୍କ ମତରେ ୧୭୫୧ ଖ୍ରୀଷ୍ଟାବ୍ଦରୁ ୧୮୦୩ପର୍ଯ୍ୟନ୍ତ ଓଡ଼ିଶା ମରହଟ୍ଟାମାନଙ୍କ ଅଧୀନରେ ରହିଥିବାବେଳେ ଶ୍ରୀଜଗନ୍ନାଥ ମନ୍ଦିରର ବହୁବିଧ ଉନ୍ନତି ସାଧିତ ହୋଇଥିଲା । ମରହଟ୍ଟାବର୍ଗୀମାନେ ଅତ୍ୟାଚାରୀ ହୋଇଥିଲେ ହେଁ ସେମାନେ ହିନ୍ଦୁ ଥିବାରୁ ହିନ୍ଦୁର ଦେବତା ଶ୍ରୀଜଗନ୍ନାଥଙ୍କ ମନ୍ଦିରର ଉନ୍ନତିପାଇଁ ସର୍ବଦା ଚେଷ୍ଟିତ ଥିଲେ । ମରହଟ୍ଟାମାନଙ୍କ ରାଜତ୍ୱ କାଳରେ ସୁବର୍ଣ୍ଣରେ ନିର୍ମିତ ଲକ୍ଷ୍ମୀଙ୍କ ମୂର୍ତ୍ତି ନିର୍ମାଣ କରାଯାଇ ଶ୍ରୀଜଗନ୍ନାଥଙ୍କ ବାମପାର୍ଶ୍ୱରେ ରଖାଯାଇଥିଲା ଏବଂ ପୁରାତନ ଲକ୍ଷ୍ମୀଙ୍କ ବିଗ୍ରହକୁ ଭଣ୍ଡାର ଘରେ ରଖାଯାଇଥିଲା । ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀର ପଥରବନ୍ଧାକାର୍ଯ୍ୟ ସଂପନ୍ନ କରାଯାଇଥିଲା । ଏହି ସମୟରେ ଝୁଲଣଯାତ୍ରା ଆରମ୍ଭ କରାଗଲା । ଏହି ସମୟରେ ଇନ୍ଦୋରର ରାଣୀ ଅହଲ୍ୟାବାଈ ଶ୍ରୀକ୍ଷେତ୍ରକୁ ଆସି ଧର୍ମଶାଳା ଓ ମଠ ଆଦି ନିର୍ମାଣଲାଗି ଲକ୍ଷଲକ୍ଷ ଟଙ୍କା ଦାନ କରିଥିଲେ । ମୋଗଲ ଓ ଆଫଗାନମାନଙ୍କ ସମୟରେ ବିଧ୍ୱସ୍ତ ମନ୍ଦିରଗୁଡ଼ିକର ପୁନରୁଦ୍ଧାର କରାଯାଇଥିଲା । ଏହି ସମୟରେ ମନ୍ଦିରର ପରିଚାଳନାଭାର ଦେଉଳ ପରିଛାଙ୍କ ଉପରେ ନ୍ୟସ୍ତ ଥିଲା । ପରିଚାଳନା ସୁବିଧା ପାଇଁ କାଳକ୍ରମେ ଚାରିଜଣ ପରିଛା ନିଯୁକ୍ତ ହୋଇଥିଲେ । ଏହି ପରିଛାମାନେ କରଣ ସଂପ୍ରଦାୟର । କୌଣସି ସେବକ ସେବାପୂଜାରେ ହେଳା କଲେ କିମ୍ବା ନିଷ୍ଠା ନରଖିଲେ ଉଚିତ ଦଣ୍ଡ ଭୋଗିବାକୁ ପଡୁଥିଲା ।

ଏଣୁ କେହି କେହି ଗବେଷକ ବିଶ୍ୱାସ କରନ୍ତି ଯେ, ମରହଟ୍ଟାମାନଙ୍କ ଆରାଧ୍ୟ ଗଣପତି ହୋଇଥିବାରୁ, ସେହି ସମୟର ମରହଟ୍ଟା ଶାସକମାନଙ୍କଦ୍ୱାରା ଶ୍ରୀଜଗନ୍ନାଥଙ୍କ ଗଜାନନ ବା ହାତୀବେଶ ପ୍ରଚଳନ କରାଯାଇଥିବ, ଯାହାକି ଐତିହାସିକ ଦୃଷ୍ଟିକୋଣରୁ ସତ୍ୟ ହୋଇଥାଇପାରେ । ଶାସକର ଶାସିତ ଉପରେ ଆରୋପିତ ଚିହ୍ନକୁ ଲୁଚାଇବାକୁ ଯାଇ ଆମେ ଏକ କିମ୍ବଦନ୍ତୀର ଆଶ୍ରୟ ନେଇଥାଇପାରୁ । ତଥାପି ଶ୍ରୀଜଗନ୍ନାଥଙ୍କୁ ଯିଏ ଯେମିତି ଦେଖିବାକୁ ଚାହିଁଛି, ପ୍ରଭୁ ତାଙ୍କୁ ସେହି ରୂପରେ ଦେଖାଦେବା କଥା ଅପ୍ରାସଙ୍ଗିକ ନୁହେଁ । ରାମାନୁଜ ଓ ତୁଳସୀଦାସଙ୍କୁ ଶ୍ରୀରାମ, ଶ୍ରୀଚୈତନ୍ୟଙ୍କୁ ଶ୍ରୀକୃଷ୍ଣ ଓ ତୋତାପୁରୀଙ୍କୁ ଦକ୍ଷିଣକାଳୀରୂପେ ଦର୍ଶନ ଦେଇଥିବା ଠାକୁର ଗଣପତି ଭଟ୍ଟଙ୍କୁ ଶ୍ରୀଗଣେଶ ରୂପରେ ଦର୍ଶନ ଦେବା ତାଙ୍କ ଲୀଳାରହସ୍ୟ ପରିବୃତ୍ତ, ଯାହାକୁ ଦେବାଃ ନ ଜାନାନ୍ତି, କୁତୋ ମନୁଷ୍ୟାଃ ।

ଡେଲାଙ୍ଗ କଲେଜ
ଡେଲାଙ୍ଗ, ପୁରୀ–୭୫୨୦୧୫



# ପୋଥି ଓ ପଟ୍ଟଚିତ୍ରରେ ଜୟଦେବକୃତ ଗୀତଗୋବିନ୍ଦ

ପ୍ରଫେସର ଡାକ୍ତର ସର୍ବେଶ୍ୱର କର

ପ୍ରାଚୀନ କାଳରୁ ଉତ୍କଳ ଭୂଖଣ୍ଡ ଏକ ମହାନ୍ ସାରସ୍ୱତପୀଠ ଭାବେ ପ୍ରସିଦ୍ଧି ଲାଭ ପୂର୍ବକ ଜାତୀୟସ୍ତରରେ ନିଜକୁ ପରିଚିହ୍ନିତ କରିପାରିଛି। ଓଡ଼ିଶା ଜନ୍ମିତ ବହୁ ସାରସ୍ୱତ ସାଧକ ନିଜସ୍ୱ ଲେଖନୀ ମୁନରେ ଅନେକ କାବ୍ୟ-କବିତା, ପୁରାଣ-ଶାସ୍ତ୍ର, ଚିକିତ୍ସାଶାସ୍ତ୍ର, ଜ୍ୟୋତିର୍ବିଜ୍ଞାନ ଆଦି ରଚନା କରିଯାଇଛନ୍ତି। ସେତେବେଳେ ମୁଦ୍ରଣଯନ୍ତ୍ରର ସୁବିଧା ସୁଯୋଗ ନଥିଲା। ତେଣୁ ଲେଖକମାନେ ତାଳପତ୍ର ଏବଂ ଭୂଜପତ୍ରରେ ଲେଖନୀ ଦ୍ୱାରା ଇଚ୍ଛା କରୁଥିବା କଥାମାନ ଲେଖିଥିଲେ। ସମୟର ପରିବର୍ତ୍ତନ ପରିପେକ୍ଷୀରେ ସମ୍ପ୍ରତି କାଗଜ ହେଉଛି ଲିଖନର ମୁଖ୍ୟ ଉପାଦାନ। କାଗଜ ଓ ମୁଦ୍ରଣଯନ୍ତ୍ରର ସହଜ ଉପଲବ୍ଧ ପୂର୍ବରୁ ତାଳପତ୍ରମାନଙ୍କରେ ମୁନିଋଷିମାନେ ଲେଖନୀ ସାହାଯ୍ୟରେ ଲେଖାପଢ଼ା ସମ୍ପାଦନା କରୁଥିଲେ। ପ୍ରାଚୀନ ଭାରତର ଅନେକ ପୁରାଣଶାସ୍ତ୍ର ପୋଥିରେ ରଚିତ ହୋଇଥିଲା।



କାଗଜର ଉଦ୍ଭାବନ ବା ବ୍ୟବହାର ସର୍ବପ୍ରଥମେ ଚୀନମାନେ କରିଥିଲେ। ୭୫୧ରେ ଚୀନ୍ ଓ ଆରବୀୟଙ୍କ ମଧ୍ୟରେ ହୋଇଥିବା ଯୁଦ୍ଧରେ ଆରବବାସୀଙ୍କୁ କାଗଜ ବ୍ୟବହାରର ସୁଯୋଗ ଦେଇଥିଲା। ପରେ ପରେ ୧୨୦୦ ମସିହା ବେଳକୁ ଆରବରୁ କାଗଜ ପ୍ରସ୍ତୁତି କୌଶଳ ସ୍ପେନକୁ ଯାଇଥିଲା। ପ୍ରାୟ ୧୫୦୦ ମସିହା ବେଳକୁ ସମଗ୍ର ୟୁରୋପ ମହାଦେଶରେ କାଗଜର ବହୁଳ ବ୍ୟବହାର ସମ୍ଭବ ହେଲା।

ଉତ୍କଳୀୟ ପୋଥି ହେଉଛି ଉତ୍କଳୀୟଙ୍କ ସର୍ବଶ୍ରେଷ୍ଠ ସାରସ୍ୱତ ସମ୍ପଦ। ଅତୀତର ଘଟଣାବଳୀ ଓ ଐତିହ୍ୟ ସାଧାରଣତଃ ତାଳପତ୍ର ପୋଥିମାନଙ୍କରୁ ମିଳିଥାଏ। ଆୟୁର୍ବେଦ ଭଳି ମହାନ୍ ଚିକିତ୍ସାଶାସ୍ତ୍ରମାନ ଏହି ଭଳି ପୋଥି ମଧ୍ୟରେ ସୀମିତ ଥିଲା। ଭାରତରେ ବ୍ୟବହୃତ ଲେଖନର ମାଧ୍ୟମ ଥିଲା ବଡ଼ ବଡ଼ ବୃକ୍ଷର ପତ୍ର ଓ ଛାଲି। ପ୍ରାକ୍-ଖ୍ରୀଷ୍ଟ ଚତୁର୍ଥ ଶତାବ୍ଦୀରେ ଗ୍ରୀକ୍ ପରିବ୍ରାଜକବୃନ୍ଦଙ୍କ ସୂଚନା ଅନୁଯାୟୀ ଜଣାଯାଏ ଯେ, ଭୂର୍ଜପତ୍ର ଏବଂ ତୁଳାରପଟ୍ଟ ଥିଲା ଭାରତୀୟଙ୍କ ଲିଖନର ମୁଖ୍ୟ ମାଧ୍ୟମ। ଅନେକ ବୌଦ୍ଧଶାସ୍ତ୍ର ଭୂଜପତ୍ରରେ ଲିଖିତ ହୋଇଥିବାର ସୂଚନା ମଧ୍ୟ ମିଳିଥିଲା। ପ୍ରାଚୀନ ଉତ୍କଳର ସଂସ୍କୃତ ବିଦ୍ୱାନ କାଳିଦାସଙ୍କ ସମସ୍ତ ରଚନାବଳୀ ତାଳପତ୍ର, ଭୁର୍ଜପତ୍ର ଲିଖିତ ହୋଇଥିବା କଥା ଗବେଷକମାନେ ଜାଣିପାରିଛନ୍ତି। ତେଣୁ ନିର୍ବିବାଦରେ ଏହା ସ୍ୱୀକାର କରାଯାଏ ଯେ, ଉତ୍କଳୀୟ ଲିପି କର୍ମରେ ଇତିହାସରେ ତାଳପତ୍ରର ଗୁରୁତ୍ୱ ସର୍ବାଧିକ।



ଭାରତବର୍ଷରେ ପ୍ରାୟ ଦ୍ୱାଦଶ–ତ୍ରୟୋଦଶ ଶତାବ୍ଦୀ ପରେ ଧୀରେ ଧୀରେ କାଗଜର ପ୍ରଚଳନ ହେତୁ କାଗଜ ଏକ ମାଧ୍ୟମ ରୂପେ ପରିଗଣିତ ହେଲା । ଏହା ପୂର୍ବରୁ ତାଳପତ୍ର ଯେ ମୁଖ୍ୟ ମାଧ୍ୟମ ଥିଲା, ତାହା ସ୍ୱୀକାର କରିବାକୁ ପଡ଼ିବ । ଉତ୍କଳୀୟମାନେ ପୋଥିକୁ ଭଗବତ୍ ଜ୍ଞାନରେ ପୂଜା କରୁଥିଲେ । ତେଣୁ ପୋଥିସହ ଓଡ଼ିଆଙ୍କ ଧାର୍ମିକ ଚିନ୍ତାଧାରା ନିହିତ ଥିଲା । ମଠ ଓ ମନ୍ଦିରମାନଙ୍କରେ ପୋଥିଗୁଡ଼ିକ ସାଇତି ରଖାଯାଇ ପୂଜାପାଠ କରାଯାଇଥିବାର ପ୍ରମାଣ ରହିଛି ।

ସର୍ବବିଧିର ସମନ୍ୱୟାତ୍ମକ ପୀଠ ହେଉଛି ଦିବ୍ୟ ନୀଳାଚଳ । ତେଣୁ ଭାରତବର୍ଷର ବହୁ ସାଧୁସନ୍ଥ ଏଠାକୁ ନିଜର ସାଧନ, ଭଜନ, ଲିଖନ ପାଇଁ ଚାଲିଆସିଛନ୍ତି । ଯୀଶୁଖ୍ରୀଷ୍ଟ ଏଠାରେ ୧୨ବର୍ଷ ରହି ବେଦ ଅଧ୍ୟୟନ କରିଥିବା କଥା ମଧ୍ୟ ଶୁଣାଯାଏ । ବହୁ ଉତ୍କଳୀୟ ସାଧୁ ପଣ୍ଡିତ ଜୀବନର ଅଧିକାଂଶ ସମୟ ଶ୍ରୀକ୍ଷେତ୍ର ମାଧ୍ୟମରେ କଟାଇଥିବା ଜଣାଯାଏ । ଜଗନ୍ନାଥଙ୍କ ପରମ ଭକ୍ତ ଭକ୍ତକବି ଜୟଦେବ ଜନ୍ମିତପୀଠ କେନ୍ଦୁବିଲ୍ୱ ପରିତ୍ୟାଗ କରି ସପରିବାରେ ଜଗନ୍ନାଥ ଧାମକୁ ଚାଲିଆସିଥିଲେ । ଏହା ହେଉଛି ଦ୍ୱାଦଶ ଶତାବ୍ଦୀର କଥା । ଏଠାରେ କବି ଅବସ୍ଥାନ ପୂର୍ବକ ସଂସ୍କୃତିରେ ବହୁ କାବ୍ୟକବିତା ରଚନା କରିଥିଲେ । ସେଥିମଧ୍ୟରୁ ଗୀତଗୋବିନ୍ଦ ଏକ ଶ୍ରେଷ୍ଠ ଆଧ୍ୟାତ୍ମିକ ଗ୍ରନ୍ଥ, ଯାହାକି ସଂସ୍କୃତ ସାହିତ୍ୟର ଏକ ଅମୂଲ୍ୟ ସମ୍ପଦ ବୋଲି ବିବେଚନା କରାଯାଏ ।

ସଂସ୍କୃତ ସାହିତ୍ୟରେ ଜଣେ ସର୍ବଶ୍ରେଷ୍ଠ କବି ଭାବେ ଜୟଦେବ ଚିର ସ୍ମରଣୀୟ, ଯାହାଙ୍କ ଅମର ଲେଖନୀରୁ ନିଃସୃତ ହୋଇଛି ଗୀତଗୋବିନ୍ଦ । ଗୀତଗୋବିନ୍ଦର ରଚନାକାଳ ଯେହେତୁ ଦ୍ୱାଦଶ ଶତାବ୍ଦୀ, ତେଣୁ ଅନୁମିତ ହୁଏ ତାଳପତ୍ର ଜରିଆରେ ଏହା ଲିଖିତ ହୋଇଥିଲା । ସମଗ୍ର ଉତ୍କଳର ଗୌରବକୁ ପ୍ରଖ୍ୟାପନ କରି ସଂସ୍କୃତ ସାହିତ୍ୟକୁ ବିଶ୍ୱଦରବାରରେ ପ୍ରତିପାଦନ ନିମିତ ଜୟଦେବଙ୍କ ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ଗୀତଗୋବିନ୍ଦକୁ ରଚନା କରି ଦୈନନ୍ଦିନ ଶ୍ରୀମନ୍ଦିରରେ ଜଗନ୍ନାଥଙ୍କୁ ଶୁଣାଉଥିଲେ । ଏହା ରାଧା–କୃଷ୍ଣ ଅପ୍ରାକୃତିକ ପ୍ରେମଲୀଳାର ସ୍ୱର୍ଗୀୟ କାବ୍ୟ – ପଂକ୍ତି । ଏହାର କାନ୍ତ–କୋମଳ–ପଦାବଳୀକୁ ସୁଲଳିତ କଣ୍ଠରେ ଗାନ କରାଗଲାବେଳେ ଭକ୍ତବୃନ୍ଦ ଏକ ଚିତ୍ତରେ ଶ୍ରବଣ କରି କୃତାର୍ଥ ହେଉଥିଲେ ।

ଜୟଦେବଙ୍କ ଗୀତଗୋବିନ୍ଦ ଅବଲମ୍ବନରେ ଦଶାବତାର ଓ ରାଧାକୃଷ୍ଣଲୀଳା ଚିତ୍ର ସମ୍ବଳିତ ପୋଥି ଏବଂ ପଟ୍ଟଚିତ୍ର ଦୃଷ୍ଟିଗୋଚର ହୁଏ । ଅତ୍ୟନ୍ତ ସାବଲୀଳ ଓ ନିଖୁଣ ଶୈଳୀରେ ଦଶାବତାରର ଲେଖା ଓ ଚିତ୍ର ତାଳପତ୍ରରେ ଦେଖିବାକୁ ମିଳୁଅଛି । ତେଣୁ ତାଳପତ୍ର ଓ ପୋଥି, ପୁରାଣ ଓ କାବ୍ୟକବିତା ଉଭୟ ପରିପୂରକ । ଉତ୍କଳ ପ୍ରାନ୍ତରେ ସଂସ୍କୃତ ଭାଷାର ଲୋକପ୍ରିୟତା ସ୍ୱଚିତ୍ତରେ ଉତ୍କଳର ପୋଥି ବିଭବ କେତେ ଉନ୍ନତ । ଯଥାର୍ଥରେ କହିଲେ ଉତ୍କଳୀୟ ଧର୍ମ, ସଂସ୍କୃତି ଓ ସାହିତ୍ୟ ସହ ପ୍ରାଚୀନ ପୋଥିବିଭବର ସମ୍ପର୍କ ଅତୀବ ନିବଡ଼ ।

ଡ଼ିନ୍ ଓ ମେଡ଼ିକାଲ ନିର୍ଦ୍ଦେଶକ
ଶ୍ରୀ ଶ୍ରୀ କଲେଜ ଅଫ୍ ଆୟୁର୍ବେଦିକ ସାଇନ୍ସ ଓ ରିସର୍ଚ୍ଚ
ବାଙ୍ଗାଲୋର–୫୬୦୦୮୨





# ସେ ତ ଓଡ଼ିଆଙ୍କ ଠାକୁର : ଶ୍ରୀଜଗନ୍ନାଥ

ଡକ୍ଟର ଗୋପାଳଚନ୍ଦ୍ର ବାରିକ

ସେ ଦାରୁବ୍ରହ୍ମ। ଦାରୁବ୍ରହ୍ମଙ୍କ ମୂଳତତ୍ତ୍ୱ ଏବଂ ଲୀଳା ତାଙ୍କର ସାମାଜିକ ପୁଣି ଅଲୌକିକ। ଶ୍ରୀଜଗନ୍ନାଥ ହିଁ ଆମ ଓଡ଼ିଆ ଜାତିର ପ୍ରାଣ ଆଉ ପ୍ରତିଷ୍ଠାତା। ଓଡ଼ିଶାର ଧର୍ମ ସଂସ୍କୃତି, ଇତିହାସ, ସାହିତ୍ୟ, ଶିଳ୍ପ, ଭାସ୍କର୍ଯ୍ୟର ଦିଗ୍‌ଦର୍ଶକ ତଥା ବ୍ୟକ୍ତିଗତ, ପାରିବାରିକ ଓ ସାମାଜିକ ଜୀବନର ପ୍ରାଣକେନ୍ଦ୍ର। ସେଥିପାଇଁ ସେ ଓଡ଼ିଆ ଜାତିର ପ୍ରାତଃ ସ୍ମରଣୀୟ ଆରାଧ୍ୟ ଦେବତା ଓ ପ୍ରାଣର କଳା ଠାକୁର । ଏବେ ନୁହେଁ ବହୁ ପ୍ରାଚୀନ କାଳରୁ ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ର କରି ଓଡ଼ିଶାର ଜନ ଜୀବନରେ ଏକ ସମନ୍ୱୟାତ୍ମକ ସାଂସ୍କୃତିକ ପରିଭାଷାର ସ୍ରୋତ ପରିବାହିତ ହୋଇ ଆସୁଅଛି, ଯାହାକି ଓଡ଼ିଆ ଜାତିର ଜୀବନଚର୍ଯ୍ୟାକୁ ସରସ ସୁନ୍ଦର , ସମୃଦ୍ଧ, ସୃଜନଶୀଳ କରି ସଂସ୍କାରବୋଧର ମାର୍ଗକୁ ଆପଣେଇ ପାରିଛି।



ଓଡ଼ିଆ ଜାତି ଜନ୍ମଠାରୁ ଅନ୍ତିମ ସଂସ୍କାର ପର୍ଯ୍ୟନ୍ତ ଶ୍ରୀଜଗନ୍ନାଥଙ୍କର ସ୍ମରଣ, ମନନ, ଚିନ୍ତନ ଓ ଭଜନରେ ମନୋନିବେଶ କରି ତୃପ୍ତି ଲାଭ କରିପାରିଛି। ବିପଦ, ଆପଦରେ ଏଇ ଜାତି ଶ୍ରୀଜଗନ୍ନାଥ ନାମକୁ ସ୍ମରଣ କରି ତା'ର ଗନ୍ତବ୍ୟ ପଥରେ ଆଗେଇ ଚାଲିଛି। ମନ ଯେତେ ଅପବିତ୍ର ଥିଲେ ବି ତାଙ୍କର ନିର୍ମାଲ୍ୟ କିଣିବାକୁ ମୁଖେ ଦେଇ ପବିତ୍ରତାକୁ ଉପଲବ୍ଧ କରିପାରିଛି। ସମସ୍ତ ଧାର୍ମିକ , ସାମାଜିକ ତଥା ବିଭିନ୍ନ ପୂଜା ପାର୍ବଣରେ ଶ୍ରୀଜଗନ୍ନାଥ ହେଉଛନ୍ତି ଇଷ୍ଟଦେବ। ତାଙ୍କର ଅଲୌକିକ ଲୀଳାର ସୋପାନରେ ଭକ୍ତମାନଙ୍କ ସହିତ ଭାବର ଆଦାନ ପ୍ରଦାନ ପୂର୍ବକ ସେମାନଙ୍କର ମନୋରଞ୍ଜନ ବୌଦ୍ଧିକ ଚିନ୍ତାଧାରା ପରିସ୍ଫୁଟ ହୋଇଥାଏ। ଶ୍ରୀଜଗନ୍ନାଥ ଓଡ଼ିଆଙ୍କ ଜନ ଜୀବନ ସହିତ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ। ଯେମିତି ପ୍ରାଣର ଆଉ ପରିବାରର ଜଣେ ସଦସ୍ୟ। ପ୍ରାଣର ପ୍ରାଣ ହୋଇ ସେ ଆମର ପରମପ୍ରିୟ ସେ ଶ୍ରୀକ୍ଷେତ୍ରର ନାଥ ନୁହଁନ୍ତି ସେ ଜଗତର ନାଥ ଆଉ ଜଗତ ତାଙ୍କର ପ୍ରାଣ। ଯିଏକି ସତ୍ୟ ସନାତନ, ପରମବ୍ରହ୍ମ, ପୂର୍ଣ୍ଣବ୍ରହ୍ମ– ଦାରୁବ୍ରହ୍ମ, ଆଉ ମାନବବ୍ରହ୍ମର ପ୍ରତୀକ। ଯୁଗଯୁଗ ଧରି ତାଙ୍କର ମହିମା ଏ ମାନବ ସମାଜରେ ପ୍ରକଟିତ। ସତ୍ୟ ଯୁଗରେ ଶ୍ରୀହରି ନୃସିଂହନାଥ, ତ୍ରେତୟାରେ ଶ୍ରୀରାମ –ରଘୁନାଥ, ଦ୍ୱାପରରେ ଶ୍ରୀକୃଷ୍ଣ– ଗୋପୀନାଥ ଏବଂ କଳିଯୁଗରେ ନାମବ୍ରହ୍ମ ସ୍ୱରୂପ ରାମକୃଷ୍ଣଙ୍କ ସମ୍ମିଶ୍ରିତ ରୂପ ପୁଣି ଦାରୁଦେବତା। ଭକ୍ତମାନଙ୍କ ପାଇଁ ବିନା ସାଧନା କିମ୍ବା ତପସ୍ୟାର କେବଳ ନାମ ଜପ କରି ମୁକ୍ତି ହେବାର ସହଜପଥ। ତେଣୁ ସେହି ଶ୍ରୀଜଗନ୍ନାଥଙ୍କ ସହିତ



ଅଭିନତ୍ୱ ପ୍ରାପ୍ତ କରିବାକୁ ହେଲେ ବ୍ରହ୍ମାନନ୍ଦରେ ତଲୀନ ହୋଇ ମାନବ ଜୀବନକୁ ଧନ୍ୟ କରେ। ଶ୍ରୀଜଗନ୍ନାଥ ସଂସ୍କୃତିର ମାନବବାଦର ମୂଳରେ ରହିଛି ଧର୍ମୀୟ ଉଦାରତା । ଶାନ୍ତିପୂର୍ଣ୍ଣ ସହାବସ୍ଥାନର ପ୍ରେରଣା, ମଣିଷ ମଣିଷ ମଧ୍ୟରେ ଭ୍ରାତୃଭାବ ସଂହତି ରକ୍ଷା, ପିତା ମାତା, ସଖା ଆଦି ଅଲୌକିକ ମାନବିକତାର ଗଭୀର ସ୍ପନ୍ଦନ।

ଓଡ଼ିଆ ଜନ ଜୀବନରେ ଭାବ ଓ ଆତ୍ମୀୟତାର ଅଭୁତପୂର୍ବ ସୌରଭ ସୃଷ୍ଟି ହୋଇଛି। ଅନ୍ତତଃ ଥରୁଟିଏ ପୁରସ୍ତମ ଯାଇ ଗରୁଡ଼ ଖୁମ୍ବକୁ କୁଣ୍ଢାଇ ଧରି ଶ୍ରୀଜଗନ୍ନାଥଙ୍କ ଅପଲକ ଚକା ଆଖିକୁ ଦର୍ଶନ କଲେ ଜୀବନର ସମସ୍ତ ବ୍ୟାକୁଳତା ଏହିଠାରେ ପରିସମାପ୍ତି ହୋଇଯାଇଥାଏ। ବଡ଼ଦାଣ୍ଡର ଶରଧା ବାଲିରେ ଠିଆହୋଇ ନିମିଷକ ନୟନରେ ଥରେ ନୀଳଚକ୍ରରେ ଫରଫର ଉଡୁଥିବା ସେହି ପତିତପାବନ ବାନାକୁ ଦର୍ଶନ ନ କଲେ ଯେମିତି ଲାଗେ କ'ଣ ଗୋଟିଏ ହଜାଇ ଦେଇଛି। ସବୁ ଦିନର ପୁଣ୍ୟଫଳ ମୋଠାରୁ ଉଭେଇ ଯାଇଛି। ଚାରିଆଡ଼େ ଯେମିତି ଅନ୍ଧାର ଦିଶୁଛି। ଏଇତ ହେଉଛି ଓଡ଼ିଆ ଜାତିର ଆତ୍ମୀୟତା। ଖାଲି ସେତିକି ନୁହେଁ, ମହାପ୍ରଭୁଙ୍କ ଦର୍ଶନ ସାରି ଯଦି ଆନନ୍ଦ ବଜାରରେ ମହାପ୍ରସାଦ ସେବା ନ ହୋଇଛି ତେବେ ମହାପ୍ରଭୁଙ୍କ ପ୍ରାଣର କ୍ଷୁଧା ତୃପ୍ତ ହୁଏ ନାହିଁ। ଖାଇସାରି ଯଦି ଟଙ୍କ ତୋରାଣୀ ଟିକେ ନ ପିଇଛ ତେବେ ଆତ୍ମା ପରିତୃପ୍ତ ହୁଏ ନାହିଁ। ଏଇତ ଓଡ଼ିଆର ଠାକୁର । ଆମ ପରିବାରର ଜଣେ ଶ୍ରେଷ୍ଠ ମୁରବୀ ଯାହାକୁ ଆମେ ନିଜର ପରିପ୍ରକାଶ କରିପାରିଛୁ।

ନିର୍ମାଲ୍ୟ କଣିକାଏଟିଏ ମିଳିଗଲେ ସେ ଭାବିନିଏ ତା'ର ଶେଷ ଇଚ୍ଛା ମହାବାହୁ ପୂର୍ଣ୍ଣ କରିଛନ୍ତି। ତାକୁ ସ୍ୱର୍ଗରେ ଆସନ ମିଳିଯାଇଛି। ସେଇଥିରେ ତା'ର ମୁକ୍ତି। ସେଥିପାଇଁ ପ୍ରତ୍ୟେକ ଓଡ଼ିଆଙ୍କ ଘରେ ଘରେ ନିର୍ମାଲ୍ୟ ସାଇତା ହୋଇ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଅମୂଲ୍ୟ ସମ୍ପତ୍ତି ହୋଇ ରହି ଆସୁଅଛି। ଖାଲି ସେତିକି ନୁହେଁ ସ୍ୱର୍ଗଦ୍ୱାରରେ ଶବଦାହ କିମ୍ବା ବ୍ରାହ୍ମଣ ଦେବତାମାନଙ୍କୁ ମହାପ୍ରସାଦ ସେବା କରାଇଲେ ମୋକ୍ଷପ୍ରାପ୍ତ ହୋଇଥାଏ ବୋଲି ବିଶ୍ୱାସ ଅଛି। ମହାବାହୁ ଆମର ସଂସ୍କୃତି, ଚାଲିଚଳନ, ପାରିବାରିକ ସଂପୃକ୍ତି ତଥା ବିବାହ, ଉପନୟନ କିମ୍ବା ମାଙ୍ଗଳିକ କାର୍ଯ୍ୟ, ଗୃହ ପ୍ରତିଷ୍ଠା ଓ ସାମାଜିକ ଜୀବନରେ ଓତୋପ୍ରୋତ ଭାବରେ ଜଡ଼ିତ। ସଂକ୍ଷେପରେ ଉଲ୍ଲେଖ କଲେ ଓଡ଼ିଆଙ୍କ ଜନ ଜୀବନ, ସାମାଜିକ ପରମ୍ପରା, ରୀତିନୀତି ଓ ଆଧ୍ୟାତ୍ମିକ ଚେତନା ଶ୍ରୀଜଗନ୍ନାଥଙ୍କ ଅଦୃଶ୍ୟ ଇଙ୍ଗିତରେ ପରିଚାଳିତ। ଓଡ଼ିଶା ବାହାରେ ହେଉ ବା ବିଶ୍ୱରେ ହେଉ ଓଡ଼ିଆଙ୍କ ପରିଚୟ, ଆମେ ଜଗନ୍ନାଥ ଦେଶର ଲୋକ। ତାଙ୍କ ବିନା ଓଡ଼ିଆଙ୍କର ପରିଚୟ ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ। ଓଡ଼ିଆଙ୍କ ଚେତନାରେ ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ର କରି ଯେଉଁ କାହାଣୀ, କିମ୍ବଦନ୍ତୀ, ଲୋକୋକ୍ତି ଢ଼ଗଢ଼ମାଳି ଓ ପ୍ରବଚନ ସୃଷ୍ଟି ହୋଇଛି, ତାହା ବିଶ୍ୱବାସୀଙ୍କୁ ବିସ୍ମୟାଭିଭୂତ କରିଛି ଏବଂ ସେମାନେ ଏହାର ଉପାଦୟତାକୁ ଉପଲବ୍ଧି କରି ତାକୁ ପାଇବା ପାଇଁ ଏଇ ଓଡ଼ିଆ ମାଟିକୁ ଧାଇଁ ଆସୁଛନ୍ତି। ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ର କରି ଅନେକ ସଂଗୀତ, ଗୀତ, ନାଟକ, ଗବେଷଣା ହୋଇଛି । କେତେ ଗବେଷକ ଗବେଷଣା କରୁଛନ୍ତି ତଥାପି ତା'ର ସମୁଦ୍ରରୁ ଟୋପେ ପାଣି ଶୁଖିଲା ପରି।

ସ୍ୱନକ୍ଷତ୍ର ତିଥି ସୁନିଆଁଠାରୁ ଶ୍ରୀଜଗନ୍ନାଥଙ୍କର ସହିତ ବାମନଙ୍କ ନାମରେ ଓଡ଼ିଆଙ୍କ ନବ ବର୍ଷ ଆରମ୍ଭ ହୁଏ। ସେହି ତିଥିରେ ଓଡ଼ିଆ ଜାତିର ଚଳନ୍ତି ପ୍ରତିମା ଗଜପତି ମହାରାଜା ଶ୍ରୀଜଗନ୍ନାଥଙ୍କୁ ସ୍ୱର୍ଣ୍ଣମୁଦ୍ରା ଭେଟି ଦେଇ ନୂତନ ଅଙ୍କ ବା ନୂଆ ବର୍ଷ ପ୍ରଚଳନ କରାଇଥାନ୍ତି ଓ ଓଡ଼ିଆ ଜାତିର ମଙ୍ଗଳ କାମନା କରି ଶ୍ରୀଜଗନ୍ନାଥଙ୍କ ପାଖରେ ନିଜକୁ ନିଉଛାଳି କରାନ୍ତି। ଓଡ଼ିଆମାନେ ସେମାନଙ୍କର ପ୍ରାଣପ୍ରିୟ ପ୍ରଭୁଙ୍କ ସହିତ ମଙ୍ଗଳମୟ ଦଧି ଶବ୍ଦ ସଂଯୋଗ କରି ଶ୍ରୀଜଗନ୍ନାଥଙ୍କୁ ଦଧିବାମନ ନାମରେ ପୂଜା କରିଆସୁଛନ୍ତି । ଓଡ଼ିଆ ଜାତି ଈଶ୍ୱର ବିଶ୍ୱାସୀ ଆଉ ସରଳ ଜୀବନଯାପନ କରିବାରେ ସିଦ୍ଧହସ୍ତ। ଶ୍ରୀଜଗନ୍ନାଥଙ୍କ ଦର୍ଶନକୁ ମନେ ପକାଇବାକୁ ଯାଇ ଶ୍ରୀଜଗନ୍ନାଥଙ୍କୁ ବାମନ ରୂପରେ ଦୋଳିରେ ଦୋଳଗୋବିନ୍ଦ ଏବଂ ମଦନମୋହନ ଭାବରେ ଚନ୍ଦନ ଚାପ ଖେଳାଇଥାନ୍ତି। ବିଶ୍ୱାସ ଏହି ତିନି ରୂପ ଦର୍ଶନ କଲେ ମୋକ୍ଷ ପ୍ରାପ୍ତ ହୋଇଥାଏ।

ଆମ ପରଂପରାରେ ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ର କରି ବାରମାସରେ ତେର ପର୍ବ ପାଳିତ ହୋଇଆସୁଛି । ଆମର



ଗୃହିଣୀମାନେ ବାର ମାସରେ ତେର ପର୍ବ ପରି ଓଷା, ବ୍ରତ ପାଳନ କରିଥାନ୍ତି । ଶ୍ରୀଜଗନ୍ନାଥଙ୍କର ଉପାସନା ଓଡ଼ିଶାର ପୁରପଲ୍ଲୀରେ ଜନପ୍ରିୟ ହୋଇ ଉଠିଛି । ତେଣୁ ଓଡ଼ିଶାର ଧର୍ମ କହିଲେ ଶ୍ରୀଜଗନ୍ନାଥଙ୍କର ଉପାସନା ହିଁ ବୁଝାଏ । ଓଡ଼ିଆ ଜାତିର ଐତିହ୍ୟ, ପରଂପରା, ଧର୍ମ– ଦର୍ଶନ ଆଦି ପ୍ରତ୍ୟେକ ସ୍ତରରେ ଶ୍ରୀଜଗନ୍ନାଥ ସଂସ୍କୃତିର ମହିମା ଯୁଗେ ଯୁଗେ ଉଦ୍‌ଘୋଷିତ ହେଉଛି । ଜାତି–ବର୍ଣ୍ଣ–ଧର୍ମ ନିର୍ବିଶେଷରେ ଓଡ଼ିଆ ଜାତିର ରାଷ୍ଟ୍ର ଦେବତା–ଜଗନ୍ନାଥ ସର୍ବଧର୍ମ ସମନ୍ୱୟର ଦେବତା ଭାବରେ ପରିଚିତ । ମହାପ୍ରଭୁ ସର୍ବ ଦେବାଧିପତି ହେଲେ ମଧ୍ୟ ସେ ଓଡ଼ିଆ ଜାତିର ହୃଦୟାଧିପତି ଦେଖାଯାଏ । ମହାପ୍ରଭୁଙ୍କ ନିକଟରେ ଜାତି, ବର୍ଣ୍ଣ, ଭେଦଭାବ ନାହିଁ । ଦେଖାଯାଇଛି ମହାପ୍ରସାଦ ବ୍ରାହ୍ମଣଠାରୁ ଚଣ୍ଡାଳ ଛଡ଼େଇ ସେବନ କରିଥାନ୍ତି । ଏଥିରେ ଭ୍ରାତୃଭାବ ଜାଗ୍ରତ ହୋଇ ଓଡ଼ିଆଣୀ ଜାତିର ମହତ ବୃଦ୍ଧି କରେ । ପ୍ରଭୁ ଅଳଙ୍କାର ପ୍ରିୟ, ଓଡ଼ିଆ ଜାତିର ସ୍ମୃତିକୁ ମନେରଖିବାକୁ ଓଡ଼ିଆଣୀ ନାମରେ ଅଳଙ୍କାର ତିନି ଠାକୁର ପରିଧାନ କରିଥାନ୍ତି । ଓଡ଼ିଆ ଜାତିର ବାନ୍ଧକଳା ବସ୍ତ୍ର ମଧ୍ୟ ପରିଧାନ କରିଥାନ୍ତି ।

ତିନି ଧୂପ ପାଞ୍ଚ ଅବକାଶ ଓ ଛତିଶା ପାଟକଙ୍କୁ ସେବାର ସୁଯୋଗ ଦେଇ ଶ୍ରୀଜଗନ୍ନାଥ କେବଳ ଓଡିଆ ଜାତିର ଉପାସ୍ୟ ବୋଲାଉ ନାହାନ୍ତି, ଅଧିକନ୍ତୁ ଓଡିଆର ସମ୍ରାଟ ଭାବରେ ଆରାଧିତ ହେଉଛନ୍ତି । ଓଡିଆ ଜାତିର ଖାଦ୍ୟକୁ ଆପଣେଇ ନେଇ ଦୈନନ୍ଦିନ ପରିଚର୍ଯ୍ୟାରେ ଛପନଭୋଗ ଲାଗି କରାଯାଇ ଓଡିଆଙ୍କ ପିଠା, ମିଠା, ପଖାଳ, ମଣ୍ଡା, ଗଇଁଠା, ବେସର, ଶାଗ, ଅମାଲୁ, ଖଇରଚୁନ ଓ ନାନାଦି ବ୍ୟଞ୍ଜନ ଭୋଗଭୁକ୍ତ ହୋଇଛି । ଶ୍ରୀଜଗନ୍ନାଥ ସାଧାରଣ ଓଡିଆଙ୍କଠାରୁ କେବେହେଁ ଦୂରେଇ ଯାଇନାହାଁନ୍ତି । ସେ ସକଳ ଓଡିଆଙ୍କର ଆରାଧ୍ୟ ଦେବତା । ଓଡିଆ ଜାତିର ଠାକୁର ଲକ୍ଷେ ରାଜାଙ୍କର ମଉଡମଣି ଗଜପତି ମହାରାଜା ସକଳ ରାଜକୀୟ ସ୍ୱାଭିମାନ ପରିହାର ପୂର୍ବକ ରଥଯାତ୍ରାରେ ରଥରେ ଛେରାପହଁରା ସେବା ସଂପନ୍ନ ପୂର୍ବକ ଓଡିଆ ଜାତିର ମଙ୍ଗଳକାମନା କରି ଜାତିର ମାନକୁ ଟେକ ରଖିଛନ୍ତି । ସେ ହେଉଛନ୍ତି ଚଳନ୍ତି ପ୍ରତିମା । ଖାଲି ସେତିକି ନୁହେଁ ଶ୍ରୀଜଗନ୍ନାଥ କାଞ୍ଚି ଅଭିଯାନ କରି ଜାତିର ସମ୍ମାନ ବୃଦ୍ଧି କରିଛନ୍ତି । ସେଥିପାଇଁ ଏ ଜାତି ତା'ର ଠାକୁରଙ୍କୁ ସ୍ଥାନ କାଳ ପାତ୍ର ନିର୍ବିଶେଷରେ ସର୍ବମଙ୍ଗଳ ଶ୍ରୀଜଗନ୍ନଥ କହି ସମସ୍ତ ଶୁଭ କାର୍ଯ୍ୟ ସମ୍ପାଦନ କରିଥାନ୍ତି । କାଞ୍ଚି ଅଭିଯାନ ପାଇଁ ଯିବା ସମୟରେ ଓଡିଆ ଜାତିର ପ୍ରସିଦ୍ଧ ଖାଦ୍ୟ ଦହି ମାଣିକଠାରୁ ଖାଇ ଆତ୍ମସନ୍ତୋଷ ଲାଭ କରିଛନ୍ତି ।

ଶ୍ରୀଜଗନ୍ନାଥ ଜଗତମୟ ବ୍ରହ୍ମାଣ୍ଡ ସ୍ୱରୂପ ବିଶ୍ୱବ୍ୟାପୀ ଏବଂ ସର୍ବଧର୍ମ ସମନ୍ୱୟର ପ୍ରତୀକ ଜଗନ୍ନାଥଙ୍କୁ ବାଦ ଦେଲେ ଓଡ଼ିଆର ଅସ୍ତିତ୍ୱ ନାହିଁ । ପୁରୀ ଜଗନ୍ନାଥ ଧାମର ପବିତ୍ରତା ଓ ଏହାର ଭୌଗଳିକ ଅବସ୍ଥିତି ଯୋଗୁଁ ପୃଥିବୀର ବିଭିନ୍ନ ଦେଶରୁ ବହୁ ଭକ୍ତ ଏହି କ୍ଷେତ୍ରରେ ସମବେତ ହୁଅନ୍ତି । ବିଶେଷତଃ ଠାକୁରଙ୍କ ମହାପ୍ରସାଦ ସେବନରେ ଜାତି ଧର୍ମ ନିର୍ବିଶେଷରେ ସମସ୍ତ ଜାତିର ଲୋକ ନିର୍ବିକାର ଚିତ୍ତରେ ସେବନ କରି ନିଜକୁ ପରମ ଭାଗ୍ୟବାନ ମନେକରନ୍ତି । ଓଡ଼ିଆ ଜାତୀୟ ଜୀବନର ଚିନ୍ତା ଓ ଚେତନାରେ ଶୟନେ, ସ୍ୱପନେ ଓ ଜାଗରଣେ ଶ୍ରୀଜଗନ୍ନାଥଙ୍କ ସ୍ଥିତି ଅନୁଭବ ହୋଇଥାଏ । ବ୍ରହ୍ମ ବିଚାରରେ ସେ ଅବ୍ୟକ୍ତ, ଅଚିନ୍ତ୍ୟ, ଅଜ୍ଞେୟ ଓ ଅବର୍ଣ୍ଣନୀୟ । ସେ ଦେବତା ହୋଇଥାଇପାରନ୍ତି କିନ୍ତୁ ଓଡ଼ିଆ ଭାବ ମାନସରେ ମନୁଷ୍ୟ ପରି ଶୁଅନ୍ତି, ଖାଆନ୍ତି, ଯାତ୍ରା କରନ୍ତି, ଧୂଳିଧୂସରିତ ହୁଅନ୍ତି, ଭକ୍ତ ସାଙ୍ଗରେ ମେଳା ଓ ଉତ୍ସବ କରନ୍ତି, ପୁଣି ମାନ ଅଭିମାନ ରାଗରୋଷ ମଧ୍ୟ କରିଥାଆନ୍ତି । ଓଡ଼ିଆମାନେ ତାଙ୍କ ଦୈନନ୍ଦିନ ସେବାପୂଜା ଓ ପର୍ବପର୍ବାଣିରେ ମାନବୀୟ ଜୀବନଚର୍ଯ୍ୟା ପରିସ୍ଫୁଟନ ପୂର୍ବକ ତାଙ୍କ ଲୀଳାରେ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ହୋଇଯାଆନ୍ତି । ଓଡ଼ିଆଙ୍କ ଚିନ୍ତା , ଚେତନା, ଚଳଣି, ଭାଷା , ସାହିତ୍ୟ , ସଂସ୍କୃତି ସଂଗୀତ ନୃତ୍ୟ, ଭାସ୍କର୍ଯ୍ୟ, ଇତିହାସ, ରାଜନୀତି, ପ୍ରତ୍ୟେକଟିରେ ଶ୍ରୀଜଗନ୍ନାଥଙ୍କ ସ୍ନେହ, ସଦିଚ୍ଛା ଏବଂ ତାଙ୍କର ଆଶୀର୍ବାଦପୂରି ରହିଛି । ସେଥିପାଇଁ ଓଡ଼ିଶାର ଜନ ମାନସ ଏବଂ ତାଙ୍କର ସେବକମାନେ କହିଥାନ୍ତି ସେ ଆମର ଭାଇ, ବନ୍ଧୁ, ସଖା, ସହୋଦର ।

ଶ୍ରୀରାମ ନଗର, ମଧୁପାଟଣା
କଟକ–୭୫୩୦୧୦



# ସକଳ ତୀର୍ଥ ଜଗତର ନାଥ ଶ୍ରୀଜଗନ୍ନାଥ

ଊର୍ମିଳା ମିଶ୍ର

ଶ୍ରୀଜଗନ୍ନାଥ ପୂର୍ଣ୍ଣବ୍ରହ୍ମ। ମହନୀୟ ଜଗନ୍ନାଥ ସଂସ୍କୃତିର ମୂଳାଧାର ହେଉଛନ୍ତି ପ୍ରଭୁ ଶ୍ରୀଜଗନ୍ନାଥ। ସ୍ୱୟଂ ଶ୍ରୀଜଗନ୍ନାଥ ହେଉଛନ୍ତି ମାନବବାଦର ପ୍ରତୀକ। ସେ ବିଶ୍ୱ ବ୍ରହ୍ମାଣ୍ଡର ନାଥ ଓ ଦେବତା ଭାବରେ ହିଁ ପରିଚିତ। ତାଙ୍କ ପାଖରେ ସମସ୍ତେ ସମାନ।



ହିନ୍ଦୁମାନଙ୍କର ପରମ ପବିତ୍ର କ୍ଷେତ୍ର ଚାରିଧାମ ବଦ୍ରିଧାମ, ଦ୍ୱାରିକା ଧାମ, ପୁରୀଧାମ ଓ ରାମେଶ୍ୱର ଧାମ ମଧ୍ୟରେ ବିଷ୍ଣୁଙ୍କର ବିଶେଷ ପ୍ରିୟସ୍ଥଳ ଶ୍ରୀକ୍ଷେତ୍ର। ପ୍ରାଚୀନ ପୁରାଣ କପିଳ ସଂହିତାରେ ଏହି କ୍ଷେତ୍ରକୁ ସାକ୍ଷାତ ବୈକୁଣ୍ଠ ଓ ଏହାକୁ କ୍ଷେତ୍ରମାନଙ୍କର ମଣି ବୋଲି ବର୍ଣ୍ଣନା କରାଯାଇଛି। ଏହି କ୍ଷେତ୍ରର ମହିମା ଯେତେ ବର୍ଣ୍ଣନା କଲେ ମଧ୍ୟ ତାହା ଅପୂର୍ଣ୍ଣ ହୋଇଯାଏ।

ଓଡ଼ିଶାର ଆଦିକବି ସାରଳା ଦାସଙ୍କଠାରୁ ଆରମ୍ଭ କରି ବଳରାମ ଦାସ, ଜଗନ୍ନାଥ ଦାସ, ଦିବାକର ଦାସ, ଅର୍ଜୁନ ଦାସ, ସାଲବେଗ, ମହାଦେବ ଦାସ, ହୃଷିକେଶ ଦାସ, ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ ଦାସ, ଅଭିମନ୍ୟୁ ସାମନ୍ତ ସିଂହାର, କବିସୂର୍ଯ୍ୟ ବଳଦେବ ରଥ, ରାଧାନାଥ ରାୟ, ମଧୁସୂଦନ ରାଓ, ନନ୍ଦ କିଶୋର ବଳ, ବୈଷ୍ଣବ ପାଣି, ଗୋପବନ୍ଧୁ ଦାସ, ନୀଳକଣ୍ଠ ଦାସଙ୍କ ରଚନାରେ ପାବନପୁରୁଷୋତ୍ତମ ଶ୍ରୀକ୍ଷେତ୍ରରେ ପ୍ରତିଷ୍ଠିତ ଠାକୁର – ବଡ଼ ଠାକୁର, ସେବକ–ବଡ଼ପଣ୍ଡା, ଦାଣ୍ଡ–ବଡ଼ଦାଣ୍ଡ, ପ୍ରସାଦ – ମହାପ୍ରସାଦ, ବାଲି – ଶରଧାବାଲି, ମଶାଣି – ସ୍ୱର୍ଗଦ୍ୱାର, ବଡ଼ଦେଉଳର ନେତ – ପତିତପାବନ । ଏହି କ୍ଷେତ୍ରର ରଥଯାତ୍ରା ହିଁ ସମଗ୍ର ମାନବ ଜାତିର ମହାମିଳନର ଏକ ମହାନ ପର୍ବ।

ଏହି କ୍ଷେତ୍ରରୁ ଭଗବାନଙ୍କର ସବୁ ଅବତାର ମଧ୍ୟ ଉତ୍ପତ୍ତି । ଏହି ପୁରୁଷୋତ୍ତମ କ୍ଷେତ୍ରରେ ପାଦଥାପି ଦାରୁବ୍ରହ୍ମଙ୍କୁ ଦର୍ଶନ କଲେ ମୋକ୍ଷଲାଭ ହୋଇଥାଏ ଓ ସେହିଠାରେ ପ୍ରାଣତ୍ୟାଗ କରୁଥିବା ସମସ୍ତ ଜୀବ ବୈକୁଣ୍ଠ ପ୍ରାପ୍ତ ହୋଇଥାନ୍ତି। ସେଥିପାଇଁ ଭକ୍ତ କବି ମଧୁସୂଦନ ରାଓ ଶ୍ରୀକ୍ଷେତ୍ରର ମହିମା ବର୍ଣ୍ଣନା କରିଛନ୍ତି –

ସୁର ଗଣପତି ଶିବଶକ୍ତି ବିଷ୍ଣୁ ରୂପେ
ଭଗବାନ ରାଜନ୍ତି ଯହିଁ
ଯେ ଯଥା ଭାବର ସେ ତଥା ଦେଖଇ
ଅନୁରୂପ ସିଦ୍ଧି ଲଭଇ ତହିଁ
ମହୋଦଧି ତୀରେ ରାଜଇ ଯା'ଶିରେ
ପାପ ତାପ ନାଶି ପୁଣ୍ୟ କେତନ
ସୁଦୂର ଆଗତ ବିଶ୍ୱାସ ଭକତ
ଗତିମୁକ୍ତି ଯହିଁ କରେ ଦର୍ଶନ।





ପାବନ ପୁରୁଷୋତ୍ତମ ଶ୍ରୀକ୍ଷେତ୍ର ପୁରୀଧାମରେ ପରଂବ୍ରହ୍ମ ଶ୍ରୀଜଗନ୍ନାଥଙ୍କ ପାଦପଦ୍ମରେ ହିଁ ସକଳ ତୀର୍ଥ ବିଦ୍ୟମାନ। କଥିତ ଅଛି, ଯିଏ ଯେତେ ତୀର୍ଥ କୋଟି ଦର୍ଶନ କଲେ ମଧ୍ୟ ଯଦି ଶ୍ରୀଜଗନ୍ନାଥଙ୍କୁ ଦର୍ଶନ ନକରନ୍ତି ତେବେ ତାହା ଅପୂର୍ଣ୍ଣ ରହିଯାଏ । ଶ୍ରୀଜଗନ୍ନାଥ ହେଉଛନ୍ତି ନିରାକାର, ନିର୍ଗୁଣ ପୂର୍ଣ୍ଣବ୍ରହ୍ମ। ବ୍ରହ୍ମ ହେଉଛନ୍ତି ସତ୍ ଚିତ୍ ଆନନ୍ଦ। ତିନି ଦାରୁ ବିଗ୍ରହ ହେଉଛନ୍ତି ସଚ୍ଚିଦାନନ୍ଦ ଅବ୍ୟକ୍ତ ସ୍ୱରୂପ। ସେ ହେଉଛନ୍ତି ଅନାମ, ଅରୂପ, ଚେତନା, ଚୈତନ୍ୟ ଓ ଚିନ୍ମୟ ମଧ୍ୟ। କିନ୍ତୁ ନିତାନ୍ତ ଭକ୍ତର ଭାବଭକ୍ତିରେ ଭଗବାନ ହୋଇଯାନ୍ତି ନିର୍ଗୁଣରୁ ଗୁଣମୟ ଓ ଅରୂପରୁ ରୂପଧାରୀ। ଭକ୍ତ ଯେତେବେଳେ ଭାବ ଭକତିର ପ୍ରେମର ବନ୍ଧନରେ ଭଗବାନଙ୍କର ନିକଟତର ହୋଇଥାଏ, ସେତେବେଳେ କେତେ ରଙ୍ଗରେ କେତେ ଢ଼ଙ୍ଗରେ ପ୍ରଭୁ ମଧ୍ୟ ହୋଇଯାଆନ୍ତି ଭକ୍ତର ଅନ୍ତରଙ୍ଗ। ଭକ୍ତକୁ କେତେବେଳେ ହସାନ୍ତି ତ କେତେବେଳେ କନ୍ଦାନ୍ତି, କେତେବେଳେ ସର୍ବସ୍ୱ ଦେଇଦିଅନ୍ତି ତ ପୁଣି କାହାକୁ ଦାଣ୍ଡର ଫକିର କରି ସର୍ବସ୍ୱ ଟାଣି ନେଇଥାନ୍ତି।

ମହାପ୍ରଭୁ ହେଉଛନ୍ତି ପ୍ରେମର ପୂଜାରୀ। ଭାବ ବିନୋଦିଆ ଭାବଗ୍ରାହୀ ଓ ନଟବର ହଟିଆ ଠାକୁର। ଜ୍ଞାନୀଜନଙ୍କ ପାଇଁ ସେ ପରଂବ୍ରହ୍ମ। ଯୋଗୀଜନଙ୍କ ପାଇଁ ସେ ପରମାତ୍ମା। ହେଲେ ଭକ୍ତ ପାଇଁ ସେ ସବୁକିଛି ବେଶ ଧାରଣ କରିପାରନ୍ତି ଯଥା ସ୍ୱାମୀ, ସ୍ତ୍ରୀ, ପିତା, ପୁତ୍ର, ମାଆ, ପୁଅର ସମ୍ପର୍କ ବି ହୋଇପାରେ । ପ୍ରଭୁ ସେବକର ସମ୍ପର୍କ ବି ହୋଇପାରେ। ଭଗବାନଙ୍କ ପ୍ରତି ଆସକ୍ତି ବଢ଼ିଲେ ସାଂସାରିକ୍ତ ଆସକ୍ତି ନଷ୍ଟ ହୋଇ ଆରମ୍ଭ ହୁଏ ଗଭୀର ଅନୁରାଗ। ଏହିସବୁ ପ୍ରକାର ସମ୍ପର୍କରେ ରହିଛି ଅତି ଆପଣାର ଭାବ ଓ ଚରମ ଆନନ୍ଦ। ପ୍ରକୃତ ଭକ୍ତ ଏହି ସମ୍ପର୍କର ଭାବ ଡ଼ୋରିରେ ହିଁ ଭଗବାନଙ୍କୁ ବାନ୍ଧି ଦିଏ। ଭକ୍ତପାଇଁ ଏ ଜଗତ ବି ଜଗନ୍ନାଥମୟ। ଯିଏ ତାଙ୍କୁ ଯେଉଁ ଭାବରେ ଦେଖିଛି ସେ ତାଙ୍କୁ ସେହି ଭାବରେ ହିଁ ଉପଲବ୍ଧି କରିଛି। ତାଙ୍କର ଲୀଳା ଅତି ବିଚିତ୍ର। ମହାପ୍ରଭୁ କାହାପାଇଁ ରାମକୃଷ୍ଣ, କାହାପାଇଁ ଭୋଳାଶଙ୍କର ତ ଆଉ କାହାପାଇଁ ମହାକାଳୀ ରୂପ। ଆଉ କାହାପାଇଁ ଶ୍ରୀଗଣେଶ ତ ଆଉ କାହାପାଇଁ ସଙ୍କଟମୋଚନ ମହାବୀର ହନୁମାନ। ଏଣୁ ସବୁ ରୂପ ଓ ସବୁ ନାମ ମଧ୍ୟରେ ହିଁ ପୂରି ରହିଛନ୍ତି ଜଗତର ନାଥ ଶ୍ରୀଜଗନ୍ନାଥ।

କଥିତ ଅଛି, ଶ୍ରୀରାମଚନ୍ଦ୍ରଙ୍କ ଭକ୍ତ ତୁଳସୀ ଦାସ ସମସ୍ତ ବିଷ୍ଣୁତୀର୍ଥ ଦର୍ଶନ ଉଦ୍ଦେଶ୍ୟରେ ପୁରୀ ଶ୍ରୀମନ୍ଦିରରେ ଉପସ୍ଥିତ ହେବା ମାତ୍ରେ ପ୍ରଭୁ ଶ୍ରୀରାମଚନ୍ଦ୍ର, ଲକ୍ଷ୍ମଣ ଓ ଦେବୀ ସୀତାଙ୍କୁ ଦର୍ଶନ ପରିବର୍ତ୍ତେ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କୁ ଦର୍ଶନ କରିଥିଲେ । ଏଣୁ ତୁଳସୀ ଦାସ ଅତି ମନ ଦୁଃଖରେ ନିରାଶ ହୋଇ ଶ୍ରୀକ୍ଷେତ୍ର ନିକଟବର୍ତ୍ତୀ ମାଳତୀପାଟପୁର ଗ୍ରାମରେ ରାତ୍ରିଯାପନ କଲେ। ସେହିଦିନ ରାତିରେ ଭକ୍ତ ତୁଳସୀଦାସଙ୍କୁ ସ୍ୱପ୍ନାଦେଶ ହେଲା ଯେ, ଯିଏ ପ୍ରଭୁ ଶ୍ରୀରାମ ସିଏ ହିଁ ମହାପ୍ରଭୁ ଜଗତର ନାଥ ଶ୍ରୀଜଗନ୍ନାଥ।

ମହାପ୍ରଭୁଙ୍କର ଅପାର କରୁଣାରେ ସମସ୍ତେ କାଳିଆ ସାଆନ୍ତର ଚକାଡ଼ୋଳାକୁ କଳା ବାଦଲରେ ଝଲସୁ ଥିବାର ଦେଖିପାରନ୍ତି ସେହି ଚକାଡୋଳାରେ ଥରେ ମାତ୍ର ଏ ଚର୍ମଚକ୍ଷୁ ମିଶିଗଲେ ଭକ୍ତମାନେ ଆତ୍ମ ବିଭୋର ହୋଇ ଉଠନ୍ତି। ନୟନରୁ ଅବାରିତ ଆନନ୍ଦାଶ୍ରୁ ଆପେ ଆପେ ବୋହି ଆସେ। ସତରେ ବିଶ୍ୱ ବ୍ରହ୍ମାଣ୍ଡରେ ଏଭଳି ଏକ ପୁଣ୍ୟଧାମ ଓ ପୁଣ୍ୟତୀର୍ଥର ନାମ ସ୍ମରଣ ମାତ୍ରକେ ମନ ଆନନ୍ଦରେ ପୁଲକିତ ହୋଇଉଠେ। ସମଭାବ ସୃଷ୍ଟିକାରୀ ଶ୍ରୀଜଗନ୍ନାଥ ପରଂବ୍ରହ୍ମଙ୍କର ବାରମାସରେ ତେର ପର୍ବର ରଚନା ନିଶ୍ଚିତ ରୂପେ ନରନାରୀ ଓ ଦେବାଦେବୀଙ୍କୁ ଆଶ୍ଚର୍ଯ୍ୟ କରିଦେଇଥାଏ।

ଭାରତରର ମୁଖ୍ୟ ଚାରିଧାମ ଭିତରେ ଶ୍ରେଷ୍ଠଧାମ ହେଉଛି ପୁରୁଷୋତ୍ତମ କ୍ଷେତ୍ର ବା ଜଗନ୍ନାଥ ଧାମ। ପ୍ରତ୍ୟେକ ଜାତିକୁ ସମ୍ମାନ ଦେବା ଏହି ପୁରୁଷୋତ୍ତମ ଚେତନାର ମୂଳନୀତି। ଏହାହିଁ ପରମ ପବିତ୍ର କ୍ଷେତ୍ର ପ୍ରଭୁ ଶ୍ରୀଜଗନ୍ନାଥଙ୍କର ମଧୁର ନାମ ପତିତପାବନ। ଭକ୍ତଙ୍କ ନିକଟରେ ସେ ସଗୁଣ ଓ ସାକାର। ସେ ପୁଣି ପରମ ପୁରୁଷୋତ୍ତମ, ପତିତପାବନ, ଆରତତ୍ରାଣ, କୃପାସିନ୍ଧୁ, ଦୀନବନ୍ଧୁ, ଅନାଥର ନାଥ ଓ ସର୍ବମଙ୍ଗଳ ଶ୍ରୀଜଗନ୍ନାଥ।

ଶ୍ରୀଜଗନ୍ନାଙ୍କର ଅମୃତମୟ ଚେତନାରେ ବିଶ୍ୱର ସବୁ ଧର୍ମ ଦର୍ଶନ ତତ୍ତ୍ୱ ଓ ମତର ସମନ୍ୱୟ ଘଟିଛି, ଆଦ୍ୟରେ ଶବର ଉପଜାତିର ଠାକୁର ଭାବେ ପୂଜା ଶ୍ରୀଜଗନ୍ନାଥ ଜୈନ, ବୌଦ୍ଧ,



ଶୈବ, ଶାକ୍ତ, ବୈଷ୍ଣବ ଗାଣପତ୍ୟ ଓ ସୌର ଆଦି ନାନା ଧର୍ମ ତଥା ବିଭିନ୍ନ ସମ୍ପ୍ରଦାୟର ଠାକୁର ଭାବେ ବିବେଚିତ ହୋଇଛନ୍ତି। ଶ୍ରୀଜଗନ୍ନାଥ ହେଉଛନ୍ତି ଆର୍ଯ୍ୟ ଅନାର୍ଯ୍ୟ ସଂସ୍କୃତିର ମିଳନ କ୍ଷେତ୍ର। ଶ୍ରୀଜଗନ୍ନାଥ ଧର୍ମ ବିଶ୍ୱ ବ୍ୟାପକତା ଲାଭ କରିଛି। ସର୍ବଧର୍ମ ସମନ୍ୱୟର ପ୍ରତୀକ ଶ୍ରୀଜଗନ୍ନାଥଙ୍କ ପ୍ରଶଂସାରେ ଶତମୁଖ ହୋଇଛନ୍ତି– ଯବନ ହରିଦାସ, କବୀର ଓ ସାଲବେଗ। ସାଲବେଗଙ୍କ ପ୍ରାର୍ଥନାରେ ଶ୍ରୀଜଗନ୍ନାଥଙ୍କ ରଥ ବଡ଼ଦାଣ୍ଡରେ ହିଁ ଅଟକି ଯାଇଥିଲା। ଗଜପତି ରାମଚନ୍ଦ୍ରଙ୍କ ପାଇଁ ପତିତପାବନଙ୍କ ମୂର୍ତ୍ତି ସିଂହଦ୍ୱାର ପାଖରେ ବଡ଼ ଦେଉଳ ଆଗରେ ହିଁ ଗଢ଼ା ଯାଇଥିଲା ଏବଂ ଏହା ଆଜି ମଧ୍ୟ ବିଦ୍ୟମାନ।

ସବୁ ଧର୍ମ କ୍ଷେତ୍ରରେ ଠାକୁରଙ୍କୁ ଅର୍ପିତ ନୈବେଦ୍ୟ ପ୍ରସାଦ ଭାବେ ପରିଚିତ ହେଲାବେଳେ ଶ୍ରୀଜଗନ୍ନାଥଙ୍କ ପ୍ରସାଦ 'ମହାପ୍ରସାଦ' ଭାବରେ ହିଁ ବିଶ୍ୱ ବିଖ୍ୟାତ।

ପରଂବ୍ରହ୍ମ ଶ୍ରୀଜଗନ୍ନାଥ ହେଉଛନ୍ତି ସମସ୍ତ ତୀର୍ଥମାନଙ୍କର ତୀର୍ଥରାଜ। ଜଗତର ସମସ୍ତ ତୀର୍ଥ ଓ ପୁଣ୍ୟଧାମ ଶ୍ରୀକ୍ଷେତ୍ରରେ ହିଁ ବିଦ୍ୟମାନ। ଦାରୁ ବିଗ୍ରହ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କଲେ ସର୍ବତୀର୍ଥ ଦର୍ଶନର ଫଳ ମିଳିଥାଏ।

ତତ୍ତ୍ୱଦର୍ଶୀ ଉଦ୍ଧବ ଦ୍ୱାପର ଯୁଗର ଶେଷ ପର୍ଯ୍ୟାୟରେ ଶ୍ରୀକୃଷ୍ଣଙ୍କୁ କହିଥିଲେ–

ସକଳ ତୀର୍ଥ ତୋ ଚରଣେ, ବଦ୍ରିକା ଯିବି କି କାରଣେ।

(ଭାଗବତ ୧୧ଶ ସ୍କନ୍ଧ ୩୦ ଅଧ୍ୟାୟ) କଳିଯୁଗରେ ଶ୍ରୀଜଗନ୍ନାଥଙ୍କୁ ହିଁ ସୂଚିତ କରେ। ଏଣୁ କୁହାଯାଇଛି ଶ୍ରୀଜଗନ୍ନାଥଙ୍କୁ ଦର୍ଶନ ମାତ୍ରେ ସର୍ବତୀର୍ଥର ଫଳ ପ୍ରାପ୍ତି ହୋଇ ସାକ୍ଷାତ ମୁକ୍ତି ମିଳିଥାଏ। ଏହି ଭବସାଗରରୁ ପାରି ହେବାର ନୌକା ହିଁ ଏହି 'ଚକାଡ଼ୋଳା'।

ହେ ଜନ୍ମଦାତା ପିତା ହେ ପ୍ରାଣର ନାଥ, ତୁମେ ମାତା ତୁମେ ପିତା ବନ୍ଧୁ ଓ ସମସ୍ତଙ୍କର ସଖା ମଧ୍ୟ। ହେ ମହାପ୍ରଭୁ ! ତୁମେ ପରଂବ୍ରହ୍ମ ପରମାତ୍ମା। ହେ ହୃଦୟର ନାଥ ତୁମ ଶ୍ରୀଚରଣ କମଳରେ ହିଁ ବାର ବାର ପ୍ରଣାମ କରି ଏହି ପବିତ୍ର ଶୁଭବାସରେ କେବଳ ପ୍ରଭୁ ଶରଣ ଭିକ୍ଷା ମାଗୁଛି।

ମାର୍ଫତ– ଶ୍ରୀଚରଣ ମିଶ୍ର
ସା/ପୋ– ମହୁଲିଆ
ଭାୟା–ବଡ଼ମ୍ବା, ଜି–କଟକ

---



# ଶତର

ଶକ୍ତି ପ୍ରସାଦ ପ୍ରଧାନ

ରତ୍ନାକର ତୀର ନୀଳକନ୍ଦର, ସରସା ବରଷା ଧାର ତହିଁର
ଶରଧା ରଂକ ରଜା ଶରଧାର, ଜ୍ୱର ଦୂର ଖର ରଥ ପଥର
ରଥାଂଗ ରବ ରଟେ ବାରବାର, ମର ଅମର ରଥର ଉପର
ନୀରଧର ଜରଜର ଶରୀର, ଦିବାକର ନିଶାକର ନେତ୍ରର
ରଙ୍ଗଣୀ ରଂଗ ଅଧର ସୁନ୍ଦର, ସାରଂଗଧର ସରସୀଜଧର
ଭୂଧର ଧର ପୀତାଂବର ଧର, ରତ୍ନର ହୀରକହାର ଗୋପୀର
ଧରଣୀଧର ମାୟାଧର ସାର, ରଘୁବର ଦଶରଥ କୁମର
ଶରଣ ପଞ୍ଜର ରମାରମଣ, ପରମେଶ୍ୱର ଶ୍ରୀରଂଗାଚରଣ
ରହସ୍ୟ ରଂଜିତ ରସିକ ସାର, ନିସ୍ତାରକ ନିସ୍ତାର ନିରନ୍ତର
ଚିର ଅଭିସାର ଦୂର ବିଦୁର, ଦୂର ଅକ୍ରୂର ଆବର ଧୀବର
ନିରଶନ ନିରସନ ବଂଧୁର, ନିରତେ ଆରତ କର ନିବାର
ହର ମୋହର ଆରତ ସତ୍ୱର, ରଖ ସରବ ଶକ୍ତିର ଆଧାର ।

ଗବେଷକ, ଫାର୍ମାସୀ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର





# ଯୋଗ ସଂସ୍କୃତି ଓ ଶ୍ରୀଜଗନ୍ନାଥ

କାଞ୍ଚନାରାୟଣ ମହାନ୍ତି

ଯୋଗ ଓ ପ୍ରାଣାୟାମର ସୃଷ୍ଟି ଏହି ଭାରତବର୍ଷରୁ । ମୁନିରଷିମାନେ ଯୋଗ ପ୍ରାଣାୟାମ ଦ୍ୱାରା ବହୁବର୍ଷକାଳ ନିରାମୟ ଜୀବନ ବିତାଉଥିଲେ । ଆମ ବୈଦିକ ଶାସ୍ତ୍ରରେ ତାହାର ପ୍ରମାଣ ରହିଛି । ତ୍ରେତୟାରେ ରଷି ବାଲ୍ମୀକି ଶହ ଶହ ବର୍ଷ ଧରି ଯୋଗ ସାଧନା ସହ ରାମ ନାମ ଜପ କରି ଈଶ୍ୱର ଉପଲବ୍ଧି କରିଥିଲେ । ମହାଜ୍ଞାନୀ ରାବଣ ଯୋଗ ମାଧ୍ୟମରେ ଭଗବାନ ପରମେଶ୍ୱର ଶିବଙ୍କୁ ସନ୍ତୁଷ୍ଟ କରିପାରିଥିଲେ । ସତ୍ୟଯୁଗରେ ସ୍ୱୟଂ ବେଦପତି ବ୍ରହ୍ମା ଯୋଗ ଓ ତପସ୍ୟା ମାଧ୍ୟମରେ ବିଶ୍ୱଦର୍ଶନ କରୁଥିଲେ । ଭଗବାନଙ୍କୁ ସ୍ୱୟଂ ଯୋଗେଶ୍ୱର କୃଷ୍ଣ ବୋଲି କୁହାଯାଏ ।



ଆଜିକାଲି ଯୋଗ କରି ରୋଗ ଭଲ ହୋଇ ଶରୀରକୁ ସୁସ୍ଥସବଳ ଓ ନୀରୋଗ ରଖିବାକୁ ଯୋଗ ବା 'ୟୋଗ' ବୋଲି ଗ୍ରହଣ କରି ନିଆଯାଇଛି ।

ଯୋଗରୁ ଦର୍ଶନ, ଦର୍ଶନରୁ ପ୍ରାପ୍ତି । ଯୋଗ ହିଁ ସବୁକିଛି । ଏହା ସ୍ମରଣ ଶକ୍ତି ବୃଦ୍ଧି, ଆୟୁ ବୃଦ୍ଧି ଏବଂ ମାନସିକ ଓ ଶାରୀରିକ ଶାନ୍ତି ଓ ସୁସ୍ଥତା ପ୍ରଦାନ କରିଥାଏ । ପଞ୍ଚସଖାଙ୍କ ମଧ୍ୟରୁ ଅତିବଡୀ ଜଗନ୍ନାଥ ଦାସ 'ନୀଳାଦ୍ରି ବିଳାସ'ରେ ଗ୍ରନ୍ଥର ଆରମ୍ଭରେ ଲେଖିଛନ୍ତି- ଶ୍ରୀବାସୁଦେବାୟ ନମଃ ଦେବେଶ୍ୱରାୟ ଅଜପୁରୁଷାତ୍ମନେ ଯୋଗେଶ୍ୱରାଧୀଶ୍ୱର ବିଶ୍ୱଦେହିନେ ଯଶସ୍ୱିନେ ଶ୍ରୀଜଗନ୍ନାଥାୟ ନମଃ (ଶ୍ରୀମନ୍ଦିର : ପୁରାତନ ସଂଖ୍ୟା, ଶ୍ରୀ ଭଗବାନ ପଣ୍ଡା, ପୃ-୧୪)

ଶ୍ରୀଜଗନ୍ନାଥ ହିଁ ଚତୁର୍ଦ୍ଧାମୂର୍ତ୍ତି ରୂପରେ ଓ ଯୋଗାରୂଢ଼ ଅବସ୍ଥାରେ ଦର୍ଶନ ଦେଇଥାନ୍ତି । ଯୋଗ ମାଧ୍ୟମରେ ହିଁ ଜୀବାତ୍ମା ଭକ୍ତ ଓ ପରମାତ୍ମା ଭଗବାନଙ୍କର ମିଳନ ସମ୍ଭବ ହୋଇଥାଏ । ପଙ୍କିଳ ନଦୀ ସାଗରରେ ମିଶି ଯେପରି ପବିତ୍ର ହୋଇ ନିଜର ସତ୍ତା ହରାଇ ମିଶିଯାଏ । ଠିକ୍ ସେମିତି ମାନବ ଶତ ଶତ କଳ୍ମଷ ନେଇ ଭକ୍ତି ମାଧ୍ୟମରେ ଯୋଗଯୁକ୍ତ ହୋଇ ଭଗବାନଙ୍କ ସାନ୍ନିଧ ଲାଭ କରି ମୁକ୍ତିଲାଭ କରିଥାଏ ।

ଗବେଷଣା ମାଧ୍ୟମରେ ଭଗବାନ ଲାଭ ହୋଇନଥାନ୍ତି ଯୋଗଯୁକ୍ତ ହୋଇ ମୁକ୍ତିଲାଭ ନିମିତ୍ତ ନିର୍ମଳ ଭକ୍ତି ଆବଶ୍ୟକ ।

ସତ୍ୟଯୁଗରେ ଭଗବାନ ବିଷ୍ଣୁ ଶହେ ଯୁଗ ପର୍ଯ୍ୟନ୍ତ ଧ୍ୟାନସ୍ଥ ହୋଇ ରହିଥିଲେ । ତ୍ରେତୟାରେ ଶ୍ରୀରାମଙ୍କୁ ବଶିଷ୍ଠ ଯୋଗ ଶିକ୍ଷାରେ ସିଦ୍ଧି ପ୍ରଦାନ କରିଥିଲେ । ଦ୍ୱାପରରେ ଭଗବାନ ଶ୍ରୀକୃଷ୍ଣ



ଯୋଗ ସିଦ୍ଧି ହେତୁ ସେ ଯୋଗେଶ୍ୱର ଭାବେ ଖ୍ୟାତ ଆଉ କଳିଯୁଗରେ ସଂଜ୍ଞା ହେଲା– ଯୋଗଃ କର୍ମସୁ କୌଶଳମ୍ ।

ଶ୍ରୀଜଗନ୍ନାଥ ସମନ୍ୱୟର ପ୍ରତୀକ ଭାବେ ଦାରୁବ୍ରହ୍ମ ରୂପେ ଶ୍ରୀକ୍ଷେତ୍ରରେ ବିରାଜମାନ କରିଛନ୍ତି । ସେ ହେଉଛନ୍ତି ଶୈବମାନଙ୍କର ପରମ ଶିବ, ଗାଣପତ୍ୟଙ୍କର ଇଷ୍ଟ ଗଣପତି, ବୌଦ୍ଧମାନଙ୍କର ବୁଦ୍ଧ, ଶାକ୍ତମାନଙ୍କର ଆଦ୍ୟାଶକ୍ତି ଦକ୍ଷିଣକାଳୀ, ବୈଷ୍ଣବମାନଙ୍କର ବିଷ୍ଣୁ, କୃଷ୍ଣ ଓ ମଦନମୋହନ । ସର୍ବଧର୍ମ ସମନ୍ୱୟର ପ୍ରତୀକ ଶ୍ରୀଜଗନ୍ନାଥ ଭୈରବ ଓ ମା' ବିମଳା ଭୈରବୀ ଭାବରେ ତନ୍ତ୍ର ମତରେ ପୂଜିତ । ଯୋଗ ମତରେ ସେ ହିଁ ପରଂବ୍ରହ୍ମ ଓ ପରମାତ୍ମା, ମହାଯୋଗୀ ଭାବରେ ରତ୍ନ ସିଂହାସନରେ ଯୋଗାରୂଢ଼ । ଏଣୁ ଶ୍ରୀକ୍ଷେତ୍ର ବେଦ, ତନ୍ତ୍ର, ଯୋଗ ଏହି ତ୍ରିଶାସ୍ତ୍ରର କ୍ଷେତ୍ର ବା ପୀଠ ଭାବରେ ପ୍ରସିଦ୍ଧ । ଶ୍ରୀଜଗନ୍ନାଥ ସଂସ୍କୃତି ବିଶ୍ୱସଂସ୍କୃତି ଦରବାରରେ ଏକ ସ୍ୱତନ୍ତ୍ର ସ୍ଥାନ ବଜାୟ ରଖିଥିବାରୁ ଏହି ସଂସ୍କୃତିଦ୍ୱାରା ଆକୃଷ୍ଟ ହୋଇ ସାରା ବିଶ୍ୱରୁ ସାଧୁସନ୍ଥମାନେ, ଭକ୍ତମାନେ ଓ ପର୍ଯ୍ୟଟକମାନେ ଆସି ଶ୍ରୀକ୍ଷେତ୍ରରେ ରୁଣ୍ଡ ହୁଅନ୍ତି । ବାରମାସରେ ତେର ଯାତ୍ରା । ସାତସାହିରୁ ଯାତ୍ରା ଦର୍ଶକମାନଙ୍କୁ ମୁଗ୍ଧ କରେ ଓ ମନରେ ଆନନ୍ଦ ପ୍ରଦାନ କରେ । ଏହି କ୍ଷେତ୍ରରେ ଭକ୍ତ ନିଜର ଆତ୍ମାକୁ ପରମାତ୍ମା ଶ୍ରୀଜଗନ୍ନାଥଙ୍କ ନିକଟରେ ସମର୍ପଣ କରୁଥିବାରୁ ଭକ୍ତ ଓ ଭଗବାନଙ୍କର ଯୋଗ ହେତୁ ଏହି କ୍ଷେତ୍ର ବୈକୁଣ୍ଠ ଓ ପୁରୁଷୋତ୍ତମ ଭାବରେ ଖ୍ୟାତିଲାଭ କରିଛି । ଏଣୁ 'ତନ୍ତ୍ରଯାମଳ' ଗ୍ରନ୍ଥରେ କୁହାଯାଇଛି–

'ଭାରତେ ଚୋତ୍କଳ ଦେଶେ
ଭୂସ୍ୱର୍ଗେ ପୁରୁଷୋତ୍ତମ ।
ଦାରୁରୂପୀ ଜଗନ୍ନାଥୋ
ଭକ୍ତାନାମଭୟ–ପ୍ରଦଃ ।'

ଦାରୁରୂପୀ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ମା' ସୁଭଦ୍ରା ଓ ଶ୍ରୀସୁଦର୍ଶନ ଏହି ଚତୁର୍ଦ୍ଧାମୂର୍ତ୍ତି ରତ୍ନ ସିଂହାସନରେ ଯୋଗାରୂଢ଼ ହୋଇଥିଲେ ମଧ୍ୟ ଏହି ଚତୁର୍ଦ୍ଧାମୂର୍ତ୍ତି ମଧ୍ୟରୁ ତିନି ମୂର୍ତ୍ତି ମଧ୍ୟରେ ନବକଳେବର ଅବସରରେ ଆତ୍ମା ଓ ବ୍ରହ୍ମର ଉପସ୍ଥାପନ କରାଯାଉଥିବାରୁ ଶ୍ରୀମନ୍ଦିରର ତ୍ରିତତ୍ତ୍ୱ ହିଁ ପ୍ରଧାନ ଓ ଏହା ଯୋଗ ସଂସ୍କୃତିର ଆଧାର ବୋଲି ସ୍ପଷ୍ଟ ପ୍ରମାଣିତ । ଉପନିଷଦ୍ ଯୁଗରେ ଏହି ତିନିଦାରୁ ଏକ ଦାରୁରେ ଅବସ୍ଥାନ କରୁଥିଲେ । 'ଯଃ ବ୍ରହ୍ମା ସଃ ବିଷ୍ଣୁ ସଃ ଏବ ମହେଶ୍ୱରଃ' ଏହି ତିନିମୂର୍ତ୍ତି ଯୋଗ ସଂସ୍କୃତି ଅନୁସାରେ ଅ, ଉ, ମ ବା ଓଁ ପ୍ରଣବାକାର ବୋଲି ପରିକଳ୍ପିତ । ତ୍ରିତତ୍ତ୍ୱରେ ଅ, ଉ, ମ ଓ ଏକ ତତ୍ତ୍ୱ ରେ 'ଓଁ' ଅଟନ୍ତି । ତନ୍ତ୍ର ଅନୁସାରେ ମହାନିର୍ବାଣ ତନ୍ତ୍ର ପ୍ରମାଣ କରେ–

'ତାରା ସାକ୍ଷାତ୍ ଶୂଳପାଣି ସୁଭଦ୍ରା ଭୁବନେଶ୍ୱରୀ ।
ନୀଳାଦ୍ରୌ ତୁ ଜଗନ୍ନାଥଃ ସାକ୍ଷାତ୍ ଦକ୍ଷିଣକାଳିକା ।।'

ଏ ସମସ୍ତ ତତ୍ତ୍ୱ ମଧ୍ୟରେ ସର୍ବଶ୍ରେଷ୍ଠ ବୀଜମନ୍ତ୍ର ପ୍ରଣବାକାର ରୂପ ହିଁ ଅ–ବ୍ରହ୍ମା, ଉ–ବିଷ୍ଣୁ, ମ–ମହେଶ୍ୱର, ଏହି ତ୍ରିଦେବଙ୍କ ସମନ୍ୱୟ 'ଓଁ' ଭାବରେ ଯୋଗଶାସ୍ତ୍ରସମ୍ମତ । ଯୋଗ ସଂସ୍କୃତି ଭିତ୍ତିରେ ଶ୍ରୀଜଗନ୍ନାଥ ହିଁ ପ୍ରଣବାକାର ମୋକ୍ଷ ପ୍ରଦାୟକ ମହାଯୋଗୀ ପୁରୁଷୋତ୍ତମ ଅଟନ୍ତି । ଯୋଗ ସାଧନାର ସୃଷ୍ଟି କର୍ତ୍ତା ହିଁ ପରମପୁରୁଷ ଓ ଏହି ଏକତତ୍ତ୍ୱରୁ ତ୍ରିତତ୍ତ୍ୱର ଉଦ୍ଭବ ହୋଇଥିବାରୁ ଏ ତିନିହେଁ ଯଥା : ବ୍ରହ୍ମା, ବିଷ୍ଣୁ ଓ ଶିବ ମହାଯୋଗୀ ଅଟନ୍ତି । ଯୋଗଶାସ୍ତ୍ରର ପ୍ରଣେତା ମହର୍ଷି ଯୋଗୀ ପତଞ୍ଜଳିଙ୍କ ମତରେ, ଯୋଗର ସଂଜ୍ଞା 'ଯୋଗଶ୍ଚିତ୍ତବୃତ୍ତି ନିରୋଧଃ' ଏହି ନ୍ୟାୟରେ ଶ୍ରୀଜଗନ୍ନାଥ ହିଁ ସାକ୍ଷାତ୍ ଯୋଗୀରାଜ ଭାବରେ ବିଦ୍ୟମାନ ।

'ଜ୍ଞାନ–ବିଜ୍ଞାନ–ତୃପ୍ତାତ୍ମା କୂଟସ୍ଥୋ ବଜିତେନ୍ଦ୍ରିୟଃ ।
ଯୁକ୍ତି ମିତ୍ୟୁଚ୍ୟତେ ଯୋଗୀ ସମଲୋଷ୍ଟ୍ରାଶ୍ମ କାଞ୍ଚନ ।'

ଅର୍ଥାତ୍ ଯେ ଆତ୍ମଜ୍ଞାନୀ ତଥା ଆତ୍ମବିଜ୍ଞାନରେ ପରିତୃପ୍ତ, ସେ ବିକାରଶୂନ୍ୟ ଓ ଇନ୍ଦ୍ରିୟଜିତ୍ । ସାମାନ୍ୟ ପଦାର୍ଥକୁ ଲୋଷ୍ଟ୍ରପ୍ରସ୍ତର ତଥା କାଞ୍ଚନ ସମ ଜ୍ଞାନ କରନ୍ତି । ସେହି ହିଁ କେବଳ ଯୋଗାରୂଢ଼ ଯୋଗୀ ବୋଲି ଶାସ୍ତ୍ର ସ୍ୱୀକୃତ । ସ୍କନ୍ଦ ପୁରାଣରେ ବର୍ଣ୍ଣିତ ଅଛି–

'ଧାରଣାଧ୍ୟାନ ଯୋଗାନଂ ଦୁଷ୍କରାଣାଂ ବିନାପି ସଃ
ମୋକ୍ଷାୟ ଭଗବାନ ଆବିର୍ବଭୂବ ପୁରୁଷୋତ୍ତମଃ ।'



ମହର୍ଷି ପତଂଜଳିଙ୍କ ଯୋଗ ସୂତ୍ରାନୁସାରେ ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧାରଣା, ଧ୍ୟାନ ଓ ସମାଧି ଏହି ଆଠ ଅଙ୍ଗକୁ ନେଇ ଅଷ୍ଟାଙ୍ଗ । ଏହି ଅଷ୍ଟାଙ୍ଗ ଯୋଗ ଭିତ୍ତିରେ ରତ୍ନ ସିଂହାସନ ଉପରେ ଅଷ୍ଟଦେବତା ବିଦ୍ୟମାନ । ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ମା'ସୁଭଦ୍ରା (ଯୋଗମାୟା), ସୁଦର୍ଶନ (ତେଜ ବା ସୂର୍ଯ୍ୟ), ଭୂଦେବୀ, ଶ୍ରୀଦେବୀ, ମାଧବ ଓ ରତ୍ନ ସିଂହାସନ ହିଁ ପୀଠଦେବତା, ଶ୍ରୀଚକ୍ର ଉପରେ ଆଧାରିତ ଅଷ୍ଟଦେବତା ଅଟନ୍ତି । ଯୋଗଶାସ୍ତ୍ରରେ 'ଯୋଗ' ଶବ୍ଦର ସଂଜ୍ଞା ନିରୂପଣ କରାଯାଇଛି - 'ଜୀବତ୍ମା-ପରମାତ୍ମନୋଃ ସଂଯୋଗ। ଯୋଗ ଇତ୍ୟୁଚ୍ୟତେ ।'

ଜୀବାତ୍ମା ହିଁ ଭକ୍ତ ଓ ପରମାତ୍ମା ହିଁ ଭଗବାନ । ଶ୍ରୀପୁରୁଷୋତ୍ତମ ଜଗନ୍ନାଥ ହୋଇଥିବାରୁ ଓ ଆତ୍ମା-ପରମାତ୍ମାର ମିଳନ ହେଉଥିବାର ଏହି କ୍ଷେତ୍ର ବୈକୁଣ୍ଠ, ମର୍ତ୍ତ୍ୟବୈକୁଣ୍ଠ ଓ କୈବଲ୍ୟଧାମ ନାମରେ ସୁବିଦିତ । ରତ୍ନସିଂହାସନରେ ଶ୍ରୀଜୀଉମାନେ ଅବସ୍ଥାନ କରିଥିବା ଶ୍ରୀମନ୍ଦିର ଏକ ମାନବ ଶରୀର ସ୍ୱରୂପ । ଏହାର ଶୀର୍ଷ ଦେଶରେ ନୀଳଚକ୍ର ସାତ୍ତ୍ୱିକ ସ୍ୱରୂପ ସହସ୍ରାର ବିରାଜିତ । ଯେପରି ଯୋଗତତ୍ତ୍ୱାନୁସାରେ ମୂଳାଧାର ଚକ୍ରରୁ ସୁପ୍ତ କୁଣ୍ଡଳିନୀ ଶକ୍ତି ସାଧନା ମାଧ୍ୟମରେ ଉର୍ଦ୍ଧ୍ୱରେତା ହୋଇ ସହସ୍ରାରରେ ପହଞ୍ଚିଲେ ଦିବ୍ୟଶକ୍ତି ଜାଗ୍ରତ ହୁଏ, ସେହିପରି ମା' ସୁଭଦ୍ରା ଯୋଗମାୟା କୁଣ୍ଡଳିନୀ ଶକ୍ତିରୂପେ ଶ୍ରୀମନ୍ଦିର ରୂପୀ ପୁରୁଷର ମୂଳାଧାର ଚକ୍ରରେ ଅବସ୍ଥାପିତା । ଅର୍ଥାତ୍ ଶ୍ରୀମନ୍ଦିରର କେନ୍ଦ୍ର ସ୍ଥଳରେ ଯୋଗମାୟା ଉପସ୍ଥିତ ରହିଛନ୍ତି । ନିମ୍ନସ୍ତରରୁ କୁଣ୍ଡଳିନୀ (ସର୍ପ) ଜାଗ୍ରତ ହୋଇ ଷଡ଼ଚକ୍ରଭେଦ କରି ଇଡ଼ା, ପିଙ୍ଗଳା ଓ ସୁଷୁମ୍ନା ଏହି ତିନିନାଡ଼ୀ ଗହଣରେ ଉର୍ଦ୍ଧ୍ୱରେତା କରି ଇଡ଼ା, ପିଙ୍ଗଳା ଓ ସୁଷୁମ୍ନା ଏହି ତିନିନାଡ଼ୀ ଗହଣରେ ଉର୍ଦ୍ଧ୍ୱରେତା ହୋଇ ମଝିରେ ଥିବା ମହାଶିବ ସଦାଶିବ ବଳଭଦ୍ରଙ୍କ ମସ୍ତକରେ ବିଶ୍ରାମ ନେଇ ସହସ୍ରାରୁ ଗତି କରିବାରେ ସହସ୍ରାରରେ ଅବସ୍ଥାନ କରିଥିବା ନୀଳଚକ୍ର ମୋକ୍ଷ ପ୍ରଦାନ କରନ୍ତି । ଯୋଗ ହିଁ ମୋକ୍ଷ ପ୍ରଦାୟକ । ଭାଗବତରେ ମଧ୍ୟ କୁହାଯାଇଛି-

ନମୋଽକିଞ୍ଚନ ବରାୟ ନିବୃତ୍ତଣ୍ଟ ଗୁଣ ତ୍ରୟେ
ଆତ୍ମାରାମାୟ ରାମାୟ କୈବଲ୍ୟ ପତ ୟେନମଃ ।

ଶ୍ରୀଜଗନ୍ନାଥଙ୍କୁ ମଧ୍ୟ କୈବଲ୍ୟ ପତି ବୋଲି ଆଖ୍ୟା ଦିଆଯାଇଛି । ସ୍କନ୍ଦ ପୁରାଣରେ ଶ୍ରୀଜଗନ୍ନାଥ ହିଁ ଯୋଗ ସଂସ୍କୃତିର ଗୁହ୍ୟ ସିଂହ ବୋଲି ବର୍ଣ୍ଣନା କରାଯାଇଛି ।

ଯୋଗ ସଂସ୍କୃତି ଭିତ୍ତିରେ ଶ୍ରୀଜଗନ୍ନାଥ ପ୍ରଣବାକାର ଏହି ପରମାତ୍ମା ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର, ଅ-ଉ-ମ, ସ୍ୱର୍ଗ-ମର୍ତ୍ତ୍ୟ-ପାତାଳ ଓ ସତ୍ତ୍ୱ -ରଜ-ତମ ତ୍ରିଗୁଣ ଭେଦରେ ତ୍ରିରୂପ ଧାରଣ କରିଛନ୍ତି ।

'ବଳଭଦ୍ରଃ କୁଣ୍ଡଳୀ ଚ ଜଗନ୍ନାଥସ୍ତୁ ଦଣ୍ଡକମ୍ ।
ତାରକଂ ସୁଭଦ୍ରିକା ଜ୍ଞେୟା ଅର୍ଦ୍ଧମାତ୍ରା ସୁଦର୍ଶନମ୍ ।'

ପୁଣି ମଧ୍ୟ ଶାସ୍ତ୍ରରେ କୁହାଯାଇଛି-

'ଅକାରେ ଲୀୟତେ ବ୍ରହ୍ମା ଉକାରେ ଲୀୟତେ ହରିଃ
ମକାରେ ଲୀୟତେ ରୁଦ୍ରଃ ପ୍ରଣବୋ ହି ପ୍ରକାଶ୍ୟତେ ।'

ତୈତ୍ତେରୀୟ ଶ୍ରୁତିର ଅଷ୍ଟମ ଅନୁବାକ୍‌ରେ ପ୍ରମାଣ କରାଯାଇଛି-

'ଅକାରେ ଜାଗ୍ରତେ ନେତ୍ରେ ବର୍ତ୍ତତେ ସର୍ବଜନ୍ତୁଷୁ ।
ଉକାରେ କଣ୍ଠତଃ ସ୍ୱପ୍ନେ ମକାରୋ ହୃଦି ସୁପ୍ତିତଃ ।।'

ପୁଣି ମଧ୍ୟ କୁହାଯାଇଛି-

'ଓଁକାରଂ ସର୍ବଶାସ୍ତ୍ରାଣି ଅର୍ଦ୍ଧଂ ଭାଗବତଂ ସ୍ମୃତମ୍
ଗୀତା ବିନ୍ଦୁ ସ୍ୱୟଂ କୃଷ୍ଣଃ ତତ୍ପରେ ପରମୋ ରସଃ ।'

ଏଣୁ ସମସ୍ତ ଶାସ୍ତ୍ର ଏହି ଯୋଗ ସଂସ୍କୃତିଭିତ୍ତିକ ଆଦିମନ୍ତ୍ର ବା ବୀଜମନ୍ତ୍ର ଓଁକୁ ସମସ୍ତ ମନ୍ତ୍ରର ପୂର୍ବରେ ବିନିଯୋଗ ହୁଏ । ଯୋଗ ସଂସ୍କୃତିଭିତ୍ତିକ ଶ୍ରୀଜଗନ୍ନାଥଙ୍କ ପୂଜାରେ ପୂଜା ପଣ୍ଡାଙ୍କଦ୍ୱାରା ଆସନ ଶୁଦ୍ଧି, ଭୂତଶୁଦ୍ଧି, ପ୍ରାଣାୟାମ, ଧାରଣା, ଧ୍ୟାନ ଇତ୍ୟାଦି ସହିତ ବାନ୍ଧ, ମୁଦ୍ରାଦିର ପ୍ରଦର୍ଶନର ପରମ୍ପରା ରହିଛି ।

ଯୋଗଶାସ୍ତ୍ରାନୁସାରେ ଜୀବାତ୍ମା କୁଣ୍ଡଳିନୀ ସ୍ୱରୂପ ବଳଭଦ୍ରଙ୍କ ମଥାରେ ବିରାଜିତ । ପରମାତ୍ମା ଶ୍ରୀଜଗନ୍ନାଥ ସ୍ୱରୂପ ଓ ପ୍ରକୃତି ହିଁ ସୁଭଦ୍ରା (ଯୋଗମାୟା) ଅଟନ୍ତି । ଯୋଗମାୟା



ଶରୀର ରୂପୀ ଶ୍ରୀମନ୍ଦିରର ନିମ୍ନଦେଶରେ ସୁପ୍ତ କୁଣ୍ଡଳିନୀ (ମା' ସୁଭଦ୍ରିକା) ମୂଳାଧାର ଚକ୍ରରେ ବିଦ୍ୟମାନ ହୋଇ ଜାଗ୍ରତ ହୋଇ ଇଡ଼ା, ପିଙ୍ଗଳା ଓ ସୁଷୁମ୍ନା ଏହି ତିନି ନାଡ଼ୀର ଗହଣରେ ସହସ୍ରାର ଆଡ଼କୁ ଗତି କରନ୍ତି । ଶ୍ରୀଜଗନ୍ନାଥ ତତ୍ତ୍ୱରେ ବର୍ଣ୍ଣିତ ଅଛି–

'ଇଡ଼ା ରୂପୀ ଜଗନ୍ନାଥଃ ବଳଭଦ୍ରଶ୍ଚ ପିଙ୍ଗଳା
ସୁଷୁମ୍ନା ସୁଭଦ୍ରା ମାତା ଚ ଯୋଗମାୟା ପ୍ରକୀର୍ତ୍ତିତା ।'

ଏହି ଯୋଗପୁରୁଷ ଶ୍ରୀମନ୍ଦିରରେ ଯୋଗଶକ୍ତିଙ୍କ ବିକାଶ ଧାରା ହିଁ ସମ୍ପୂର୍ଣ୍ଣ ଶାସ୍ତ୍ର ସ୍ୱୀକୃତ । ଶରୀରରେ ଥିବା ଷଡ଼ଚକ୍ରରେ ସୂର୍ଯ୍ୟ, ଗଣପତି (ସୁଦର୍ଶନ), ବିଷ୍ଣୁ (ଜଗନ୍ନାଥ), ଶିବ (ବଳଭଦ୍ର), ଅଦ୍ୟାଶକ୍ତି (ସୁଭଦ୍ରା) ଓ ଅଗ୍ନି (ତେଜ) ଏହି ଷଡ଼ଦେବତା ବିଦ୍ୟମାନ । ଏମାନଙ୍କୁ ଧ୍ୟାନ କଲେ ଏହା ଧ୍ୟାନର ଦ୍ୱିବିଧ ମଧ୍ୟରୁ ସଗୁଣ ଧ୍ୟାନର ସଫଳତା ବହନ କରେ ।

'ଯୋଗସ୍ୱରୋଦୟ' ଅନୁସାରେ ବର୍ଣ୍ଣିତ ଅଛି–

'ଷଡ଼ଚକ୍ରଂ କଳାଧାରଂ ତ୍ରିଲକ୍ଷ୍ୟଂ ବ୍ୟୋମପଞ୍ଚକମ୍ ।
ସ୍ୱଦେହେ ଯୋ ନ ଜାନାତି ସ ଯୋଗୀ ନାମଧାରକଃ ।।'

ଏହି ଷଡ଼ଚକ୍ର ମୂଳାଧାର, ସ୍ୱାଧିଷ୍ଠାନ, ମଣିପୁର, ଅନାହତ, ବିଶୁଦ୍ଧ ଓ ଆଜ୍ଞାଚକ୍ରକୁ ଭେଦ କରି କୁଣ୍ଡଳିନୀ ଯାଇ ସହସ୍ରାରରେ ପହଞ୍ଚିଲେ ମାନବର ଦିବ୍ୟଶକ୍ତିର ବିକାଶ ହୁଏ । ଏହି ଯୋଗପୁରୁଷ ଶ୍ରୀମନ୍ଦିରର ନିମ୍ନଦେଶରେ ଗୁପ୍ତସ୍ଥାନ ଶ୍ରୀଚକ୍ର ଅବସ୍ଥାନ କରିଥିବା ରନ୍ ସିଂହାସନର କେନ୍ଦ୍ର ବିନ୍ଦୁରେ ମା' ସୁଭଦ୍ରିକା ଯୋଗମାୟା ଭାବରେ ଅବସ୍ଥାନ କରିଛନ୍ତି । ଏହାଙ୍କର ଶକ୍ତି ହିଁ କୁଣ୍ଡିଳିନୀ ଶକ୍ତି । ତାହା ଇଡ଼ା, ପିଙ୍ଗଳା, ସୁଷୁମ୍ନାଙ୍କ ଗହଣରେ ଊର୍ଦ୍ଧ୍ୱରେତା ହୋଇ ଶୀର୍ଷ ଦେଶରେ ଥିବା ସହସ୍ରାରକୁ ଗମନ କଲେ ଦିବ୍ୟସତ୍ତାର ଅନୁଭୂତ ହୁଏ ଓ ପରିଶେଷରେ ମାନବ ମୁକ୍ତିଲାଭ କରେ । ମୂଳାଧାର ଚକ୍ରରେ ଯୋଗମାୟା କୁଣ୍ଡଳିନୀ (ସୁଭଦ୍ରିକା), ସ୍ୱାଧୀଷ୍ଠାନ ଚକ୍ରରେ ଶ୍ରୀଜଗନ୍ନାଥ (ହରି), ମଣିପୁର ଚକ୍ରରେ ଅଗ୍ନିଦେବତା (ତେଜ), ଅନାହାତ ଚକ୍ରରେ ବାୟୁ ଦେବତା, ବିଶୁଦ୍ଧ ଚକ୍ରରେ ଶିବ (ବଳଭଦ୍ର) ଓ ଆଜ୍ଞାଚକ୍ରରେ ବ୍ରହ୍ମା, ବିଷ୍ଣୁ ଓ ଶିବ ତଥା ଇଡ଼ା, ପିଙ୍ଗଳା ଓ ସୁଷୁମ୍ନା ଏହି ତିନି ନାଡ଼ୀର ସଂଗମ ସ୍ଥଳ ହୋଇଥିବାରୁ ଏକ ବିନ୍ଦୁରେ ସହସ୍ରାରକୁ ଗମନ କରିଥାନ୍ତି । ଆଜ୍ଞାଚକ୍ର ଉପରେ ବ୍ରହ୍ମରନ୍ଧ୍ର ଓ ବ୍ରହ୍ମରନ୍ଧ୍ରି ଉପରେ ସହସ୍ରାର ଅବସ୍ଥାନ କରିଥାନ୍ତି । ଏହାକୁ ପ୍ରକାରାନ୍ତରେ ପରମ ଶିବ, ପରମାତ୍ମା, ପରଂବ୍ରହ୍ମ ବୋଲି କୁହାଯାଇଥାଏ । ଶ୍ରୀଜଗନ୍ନାଥ ତତ୍ତ୍ୱରେ ଯୋଗତତ୍ତ୍ୱ ଓ ଯୋଗ ସଂସ୍କୃତିର ଭାବଧାରାର ସତ୍ତା ଥିବାରୁ ଶ୍ରୀଜଗନ୍ନାଥଙ୍କୁ ଯୋଗରୂପୀ ଜନାର୍ଦ୍ଦନ ନାମରେ ଧ୍ୟାନ କରାଯାଉଛି ।

---

# ଲଗାଇଲେ ଡୋରି ଯିବି ତୋର ପୁରୀ

ଡକ୍ଟର ସୁକାନ୍ତି ତ୍ରିପାଠୀ

ଲଗାଇଲେ ଡ଼ୋରି ଯିବି ତୋର ପୁରୀ
ରଥରେ ଦେଖିବି ତୋତେ
ତୋତେ ଦେଖୁଥିବି ତୁ ମୋତେ ଦେଖିବୁ
କାମନା ପୂରିବ ଯେତେ ।
ଚକାନୟନରେ ମିଶେଇ ମୋ ଆଖି
ଝରାଇବି ଆଖି ଲୁହ
ବଡ଼ଦାଣ୍ଡେ ତୋର ବାମନ ରୂପକୁ
ଦେଖିବି ମୁଁ ହୋଇ ମୋହ
ଖୋଳ କରତାଳ ହରିବୋଲ ତାଳେ
ନାଚିବି ଚାହିଁ ତୋ ରଥେ ।



ଗଜପତି ରାଜା ସୁନା ଖଡ଼ିକାରେ
ମାରଜନା ଦେବେ କରି
ଡାହୁକ ଡାକରେ ଭକ୍ତ ଭକତିରେ
ଟାଣିବେ ରଥ ଦଉଡ଼ି
ରହି ରହି ଚାଲୁଥିବ ତିନି ରଥ
ଆଶା ମୋ ପୂରିବ ସତେ ।

ଏନ୍–୫/୪୨୮
ଆଇ.ଆର୍.ସି.ଭିଲେଜ୍, ଭୁବନେଶ୍ୱର



# ଓଡ଼ିଆ ସାହିତ୍ୟରେ ଶ୍ରୀଜଗନ୍ନାଥ

ଡକ୍ଟର ସିଦ୍ଧାର୍ଥ କାନୁନ୍‌ଗୋ

ଶ୍ରୀଜଗନ୍ନାଥ ଦେଶ ରୂପେ ସୁପରିଚିତ ଓଡ଼ିଶାର ଜନଜୀବନର ପ୍ରାଣକେନ୍ଦ୍ର ହେଉଛନ୍ତି ଶ୍ରୀଜଗନ୍ନାଥ । ଶ୍ରୀଜଗନ୍ନାଥ ହେଉଛନ୍ତି ଉତ୍କଳୀୟ ସାମାଜିକ, ସାଂସ୍କୃତିକ ତଥା ଆଧ୍ୟାତ୍ମିକ



ଜନଜୀବନର ଧ୍ରୁବତାରା । ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ରକରି ରଚିତ ହୋଇଛି ବିପୁଳ ଓଡ଼ିଆ ସାହିତ୍ୟ । ସାରଳା ମହାଭାରତଠାରୁ ଆରମ୍ଭ କରି ଆଧୁନିକ ଯୁଗ ପର୍ଯ୍ୟନ୍ତ ଯେତେ ଭକ୍ତି ରସାତ୍ମକ ସାହିତ୍ୟ ସୃଷ୍ଟି ହୋଇଛି, ସେ ସବୁଥିରେ ଶ୍ରୀଜଗନ୍ନାଥ ହିଁ କେନ୍ଦ୍ରବିନ୍ଦୁ ରୂପେ ପରିକଳ୍ପିତ ହୋଇଛନ୍ତି । ତେଣୁ ଓଡ଼ିଆ ସାହିତ୍ୟରେ ଶ୍ରୀଜଗନ୍ନାଥଙ୍କ ପ୍ରଭାବ ସହଜରେ ଅନୁମେୟ ।

ସାରଳା ଦାସ ପ୍ରଚଣ୍ଡ କବିତ୍ୱ ଓ ପ୍ରତିଭା ବଳରେ ଶ୍ରୀକୃଷ୍ଣଙ୍କ ପିଣ୍ଡ ଶ୍ରୀଜଗନ୍ନାଥଙ୍କଠାରେ ଆରୋପିତ କରାଇ ଶ୍ରୀଜଗନ୍ନାଥ ଯେ କଳିଯୁଗରେ ପତିତ ଉଦ୍ଧାର ପାଇଁ ଆବିର୍ଭୂତ ହୋଇଛନ୍ତି– ଏହା ବ୍ୟକ୍ତ କରିଛନ୍ତି–

ଦ୍ୱାପର ଯୁଗ ଶେଷରେ ଦେବ ଜଗନ୍ନାଥ
ବଉଦ୍ଧ ରୂପରେ ବିଜେ କରିବେ ଯେ ଥେ ।
(ସଭାପର୍ବ)

ପୁନଶ୍ଚ–

ଏ ସମୟେ ପ୍ରବେଶିଲେ ପ୍ରଭୁ ଚକ୍ରଧର
ଦେବଗଣଙ୍କର ମଧ୍ୟରେ ଯାଇଣ ବସିଲେ
ସମସ୍ତଙ୍କୁ ଚାହିଁ ପ୍ରଭୁ ଏମନ୍ତ କହିଲେ ।
ଯାଉଅଛୁ ଆଜି ଆମ୍ଭେ ଶ୍ରୀ ନୀଳ କନ୍ଦରେ
ପୂଜା ଘେନିବୁ ସେଠାରେ ଏ କଳି ଯୁଗରେ ।
(ମୂଷଳୀ ପର୍ବ)

ସାରଳା ଦାସଙ୍କ ପରବର୍ତ୍ତୀ କବି ନୀଳାମ୍ବର ଦାସ ସ୍ୱରଚିତ 'ଦେଉଳ ତୋଳା' ପୋଥିରେ ଶ୍ରୀଜଗନ୍ନାଥ ମାହାତ୍ମ୍ୟ ବର୍ଣ୍ଣନା କରିଛନ୍ତି । ସାରଳା ଦାସଙ୍କ ପରେ ପଞ୍ଚସଖା ଯୁଗରେ ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ରକରି ଓଡ଼ିଆ ସାହିତ୍ୟରେ ବେଶ୍ କିଛି ରଚନା ହୋଇଛି ।

ବଳରାମ ଦାସ ଜଗମୋହନ ରାମାୟଣରେ ଶ୍ରୀଜଗନ୍ନାଥଙ୍କ ସ୍ତୁତି ଗାନ କରିବା ସଙ୍ଗେ ସଙ୍ଗେ ଏହାର ରଚୟିତା ସ୍ୱୟଂ ଶ୍ରୀଜଗନ୍ନାଥ ବୋଲି କହିଛନ୍ତି –

ଜଗମୋହନ ବୋଲି ସେ ରାମାୟଣ ଗ୍ରନ୍ଥ
ଯେଥର କବି ସେ ନୀଳଗିରି ଜଗନ୍ନାଥ ।
ସେ ହରି ମୋହର କର୍ଣ୍ଣେ ବିଜେ କରିଛନ୍ତି
ଆପଣା ଚରିତ ଯେ ଆପେ ବଖାଣନ୍ତି । (ଉତ୍ତରାକାଣ୍ଡ)

ଓଡ଼ିଆ ଭାଗବତର ସ୍ରଷ୍ଟା ଅତିବଡ଼ୀ ଜଗନ୍ନାଥ ଦାସ ଶ୍ରୀଜଗନ୍ନାଥଙ୍କୁ ବିଷ୍ଣୁ ରୂପେ ପରିକଳ୍ପନା କରି ତାଙ୍କ ପାଦ ପଦ୍ମରେ ଆଶ୍ରୟ ନେବା ପାଇଁ ଇଚ୍ଛା ପ୍ରକାଶ କରିଛନ୍ତି ।

ନମସ୍ତେ ପ୍ରଭୁ ଜଗନ୍ନାଥ   ଅନାଥ ଲୋକଙ୍କର ନାଥ
ହୋଇଲୁ ଦଶ ଅବତାର   ନାଶିଲୁ ଅବନୀରୁ ଭାର ।
ସେହି ପ୍ରକାରେ ମୋର ମାନ   ତୋ ପଦେ ରହୁ ଭଗବାନ ।
କହଇ ଜଗନ୍ନାଥ ଦାସ   କମଳା ଚରଣକୁ ଆଶ ।

ପଞ୍ଚସଖା ଯୁଗର ଅନ୍ୟତମ ସାଧକ ଶିଶୁ ଅନନ୍ତ ଦାସ ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱର ମହତ୍ତ୍ୱ ପ୍ରତିପାଦନ କରିବାକୁ ଯାଇ ସ୍ୱରଚିତ 'ହେତୁ ଉଦୟ ଭାଗବତ'ରେ ଲେଖିଛନ୍ତି –

ପରମ ପୁରୁଷ ଦେଉଳ   ନୀଳଚକ୍ର ଯେ ଶୂନ୍ୟଠୁଳ
ନେତ ଯେ ବ୍ରହ୍ମା ବିଷ୍ଣୁ ହର   ଉଡୁଣ ଅଛି ଫର ଫର
ଦେଉଳେ ବ୍ରହ୍ମାଣ୍ଡ ଗୋସାଇଁ   ସ୍ୱରୂପେ ବିହରଇ ।
(ହେତୁ ଉଦୟ ଭାଗବତ)

ଶ୍ରୀଜଗନ୍ନାଥ ପ୍ରଣବ– ବ୍ରହ୍ମ, ଏକାକ୍ଷର, ବ୍ରହ୍ମ ନିରଞ୍ଜନ ଓ ଜ୍ୟୋତିବ୍ରହ୍ମ ଅଟନ୍ତି । ଅଚ୍ୟୁତାନନ୍ଦ ଏ ପ୍ରସଙ୍ଗରେ ତାଙ୍କର 'ଆକାର ବ୍ରହ୍ମଯନ୍ତ୍ର' ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି–

'ଜଗନ୍ନାଥ ବଳଭଦ୍ର ସୁଭଦ୍ରା ଯେ ସୁଦର୍ଶନ ରୂପଚାରି
ଚତୁର୍ଦ୍ଧାମୂର୍ତ୍ତି ଯେ ଏକ ଆତ୍ମା ଭିନ୍ନ ଭିନ୍ନରେ ସେ ରୂପଧରି
ସିଂହାସନ ଘେନି ପଞ୍ଚ ଆତ୍ମା ସେହୁ ଭିନ୍ନ ଭିନ୍ନ ପଞ୍ଚ ନାମ
ପଞ୍ଚ ଆତ୍ମା ପଞ୍ଚ ରୂପରେ ବିଜୟ ନୀଳାଚଳେ ଦାରୁବ୍ରହ୍ମ ।'
(ଆକାର ବ୍ରହ୍ମଯନ୍ତ୍ର)

ପଞ୍ଚସଖାଙ୍କ ମଧ୍ୟରୁ ଅନ୍ୟତମ ସାଧକ ଯଶୋବନ୍ତ ଦାସଙ୍କ 'ଶିବ ସ୍ୱରୋଦୟ' ଗ୍ରନ୍ଥରେ ଶ୍ରୀଜଗନ୍ନାଥଙ୍କ ପ୍ରତି ଭକ୍ତି ନିବେଦନ କରି ଲେଖିଛନ୍ତି–

ଜୟ ଜୟ ଜଗନ୍ନାଥ ଜଗତ ଧାରଣ
ଜୟ ବଳଭଦ୍ର ଭଦ୍ରା ଜୟ ସୁଦର୍ଶନ ।
କୋଟି କୋଟି ପତିତ ପାବନ ଦେବହରି
ତିନି ଭୁବନରେ ନାଥ ନୀଳାଦ୍ରି ବିହାରୀ ।
(ଶିବ ସ୍ୱରୋଦୟ)

ସାରଳା ଦାସଙ୍କ ପରବର୍ତ୍ତୀ କବି ଅର୍ଜୁନ ଦାସ ସ୍ୱରଚିତ ରାମବିଭା କାବ୍ୟରେ ଶ୍ରୀଜଗନ୍ନାଥଙ୍କ ପ୍ରତି ହୃଦୟର ଭକ୍ତି ଅର୍ପଣ କରି ଗାଇଛନ୍ତି –

ପ୍ରସନ୍ନ ହୋଇଣ ବିଜେ ନୀଳଗିରି ବାସ
ଶିରେ କରଯୋଡ଼ି ଉଭା ଅରଜୁନ ଦାସ ହେ ।(ରାମବିଭା)

ପଞ୍ଚସଖା ଯୁଗରେ ପ୍ରସିଦ୍ଧ ନାରୀ କବି ତଥା ଶ୍ରୀଚୈତନ୍ୟଙ୍କ ପରମ ଭକ୍ତ ମାଧବୀ ଦେବୀ ମଧ୍ୟ ତାଙ୍କ ରଚନାରେ ଜଗନ୍ନାଥଙ୍କୁ ବର୍ଣ୍ଣନା କରିବାକୁ ଭୁଲି ନାହାନ୍ତି । ତାଙ୍କ ରଚନାଗୁଡ଼ିକ ଅତ୍ୟନ୍ତ ଭକ୍ତି ରସାତ୍ମକ ତଥା ହୃଦୟସ୍ପର୍ଶୀ –

ଚକାନୟନ ହେ ! ଜଗୁଜୀବନ ଶ୍ରୀହରି
କାତର ଜଣାଣ କରୁଛି ଛାମୁରେ ଶୁଣ ପ୍ରଭୁ ଶ୍ରୁତି ଡେରି ।
(ଘୋଷା)
ମୁଁ ଛାର ନିର୍ମାଖୀ ତୁମର ସେବକୀ ପଣକୁ ଅଯୋଗ୍ୟା ନାରୀ
କରୁଛି ଦଇନି ଯୋଡ଼ିକର ବେନି ଶୁଣ ମାଧବୀ ଗୁହାରୀ ।
(ଶ୍ରୀଗନ୍ନାଥଙ୍କ ଜଣାଣ ଭଜନ– ପୃ. ୩୧–୩୨)

ଅର୍ଜୁନ ଦାସଙ୍କ ପରବର୍ତ୍ତୀ କବି ତଥା 'ଉଷାଭିଳାଷ' କାବ୍ୟର ରଚୟିତା ଶିଶୁ ଶଙ୍କର ଅର୍ଜୁନ ଦାସଙ୍କ ଦ୍ୱାରା ପ୍ରଭାବିତ ହୋଇ ଶ୍ରୀକ୍ଷେତ୍ର ଅଧିପତି ଶ୍ରୀଜଗନ୍ନାଥଙ୍କ ମାହାତ୍ମ୍ୟ ବର୍ଣ୍ଣନା କରିଛନ୍ତି –

ନୀଳଗିରି ନାୟକ କମଳାଦେବୀ ପତି
ତାହାର ପଦ୍ମପାଦକୁ ଭଜୁ ମୋର ମତି
କହଇ ଶିଶୁ ଶଙ୍କର ତୁଚ୍ଛ ବୁଦ୍ଧିହୀନ
ଦ୍ୱାଦଶ ଛାନ୍ଦରେ ଭାଷା ହୋଇଲା ସମ୍ପୂର୍ଣ୍ଣ । (ଉଷାଭିଳାଷ)

ଷୋଡ଼ଶ ଶତାବ୍ଦୀର କବି ଦେବ ଦୁର୍ଲଭ ଦାସ ସ୍ୱରଚିତ 'ରହସ୍ୟ ମଞ୍ଜରୀ' (୪) କାବ୍ୟରେ ଗୋପୀଶ୍ରେଷ୍ଠ ଶ୍ରୀରାଧା ମହତ୍ତ୍ୱ ପ୍ରତିପାଦନ କରିଥିଲେ ମଧ୍ୟ ଏଥିରେ ଶ୍ରୀଜଗନ୍ନାଥ ଏବଂ ଶ୍ରୀକୃଷ୍ଣଙ୍କ ଅଭେଦତ୍ୱ ପରିକଳ୍ପିତ –

ଏକଦିନେ ଏକାନ୍ତ ମନ୍ଦିରେ ଜଗନ୍ନାଥ
ମଣିମୟ ପଲଙ୍କ ଉପରେ ବିରାଜିତ ।



ବେଳ ଜାଣି ରୁକ୍ମିଣୀ ରମଣୀ ଶିରୋମଣି
ପତି ପାଶେ ଏ କଲି ପ୍ରବେଶ ଠାକୁରାଣୀ ।।
(ଦ୍ୱିତୀୟ ଛାନ୍ଦ, ୧ମ ପଦ)

ଦେବ ଦୁର୍ଲଭ ଦାସଙ୍କ 'ରହସ୍ୟ ମଞ୍ଜରୀ' ପରି ଦୀନକୃଷ୍ଣ ଦାସ ସ୍ୱରଚିତ 'ରସକଲ୍ଲୋଳ'ରେ ଶ୍ରୀଜଗନ୍ନାଥଙ୍କ ବର୍ଣ୍ଣନା କରିଛନ୍ତି ।

କୋଟି ବ୍ରହ୍ମାଣ୍ଡ ପ୍ରଭୁ ଜଗନ୍ନାଥ
କରନ୍ତି ପୂର୍ଣ୍ଣ ଜନ ମନୋରଥ
କଲି ମୁଁ ଏହି ଘେନି ଅଭିମତ
କରିବାକୁ ରସକଲ୍ଲୋଳ ଗୀତ
କହିଲେ ସେ ଯେଣୁ
କରେ ମାତ୍ର ଲେଖିଲି ମୁଁ ତେଣୁ । (ରସକଲ୍ଲୋଳ)

ରୀତି ଯୁଗରେ ସର୍ବଶ୍ରେଷ୍ଠ କବି ଉପେନ୍ଦ୍ର ଭଞ୍ଜ ସ୍ୱରଚିତ କାବ୍ୟରେ ଜଗନ୍ନାଥ ଚେତନାର ନବ ଉନ୍ମେଷ ଘଟାଇଥିବାର ମନେହୁଏ । 'ସୁଭଦ୍ରା ପରିଣୟ' କାବ୍ୟରେ କବି ଲେଖିଛନ୍ତି–

ସିନ୍ଧୁ ତଟେ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରାଜ
ସାଧୁ ଜନେ ! ଅଛି ତହିଁ ବହୁତ ଆଶ୍ଚର୍ଯ୍ୟ ହେ ।
ସେ ଭୂମି ପ୍ରବେଶ ବ୍ରହ୍ମହତ୍ୟା ପାପ ହରେ
ସାକ୍ଷାତ ହୋଇଛି ଏ କପାଳ ମୋଚନରେ ଯେ ।
(ସୁଭଦ୍ରା ପରିଣୟ)

ଉପେନ୍ଦ୍ର ଭଞ୍ଜ ଶ୍ରୀଜଗନ୍ନାଥଙ୍କଠାରେ ଶ୍ରୀକୃଷ୍ଣଙ୍କର ଅଭେଦତ୍ୱ କଳ୍ପନା କରି ଶ୍ରୀଜଗନ୍ନାଥଙ୍କ ଶ୍ରେଷ୍ଠତ୍ୱ ପ୍ରତିପାଦନ କରିଛନ୍ତି । ପାହାଡ଼ିଆ କେଦାର ରାଗରେ ସ୍ୱରଚିତ 'ବୈଦେହୀଶ ବିଳାସ' କାବ୍ୟର ମଙ୍ଗଳା ଚରଣରେ କବି କହିଛନ୍ତି –

ବନ୍ଦଇ ଦୀନ ବାନ୍ଧବ ହରି ଯେ ତମ ଚକ୍ର ଖଣ୍ଡନକାରୀ
ସଦା କମଳାନନ୍ଦ ବିସ୍ତାରି ସ୍ୱଭାବେ ଇନ ଯେ ।
ବିଭୁ ଅନନ୍ତ–ଅଙ୍କ–ବିହାରୀ କର ପ୍ରତାପ ଯା'ର ସଞ୍ଚରି
ନିଶାଚରଙ୍କ ଉଲ୍ଲାସ ହରି ପୂଜେ ସୁମନ ଯେ !
ବଇତନୟେ ଯାହା, ଅଗ୍ରତେ ସ୍ଥିତ ଯେ,
ବଇକୁଣ୍ଠ ପଙ୍କଜ–ଲୋକ ତୋଷିତ ଯେ,
ବିକାଶ ଅଖଣ୍ଡିତ–ମଣ୍ଡଳେ ସିଂହ ଭାବରେ କ୍ରୀଡ଼ିତ କାଳେ
ଭାବେ ତରଣୀ ହୋଇ ମଞ୍ଜୁଳେ ଗିରି ଉଦିତ ଯେ ।
(ବୈଦେହୀଶ ବିଳାସ)

ଅଷ୍ଟାଦଶ ଶତାବ୍ଦୀର କବି କବିସୂର୍ଯ୍ୟ ବଳଦେବ ରଥଙ୍କ ରଚନାରେ ଶ୍ରୀଜଗନ୍ନାଥ ଚେତନା ପ୍ରକାଶ ପାଇଛି । ଶ୍ରୀଜଗନ୍ନାଥ ଜଣାଣରେ ଭକ୍ତର ବେଦନାଭରା ନିବେଦନ ଯେପରି ପ୍ରକାଶ ପାଇଛି, ତାହା ବିଶେଷ ପ୍ରଣିଧାନଯୋଗ୍ୟ–

ହେ କ୍ଷୀରମୟ ସିନ୍ଧୁ–ଜେମା–ଜୀବବନ୍ଧୁ
ଜଗତ ପତି ଜଗନ୍ନାଥ !
ସମଦୃଷ୍ଟିର ପତାକା ଟେକି
ଏହି ପକ୍ଷପାତ ନୀତି ହେ ମହାପ୍ରଭୁ !
କିଏ କ'ଣ କଲା, ଆଉ ମୁଁ କଲିନାହିଁ !
କିଏ ବା କ'ଣ ଦେଲା, ଆଉ ମୁଁ
ନଦେବାର ଏତିକି ସରିହେଲି !

କେବଳ ହିନ୍ଦୁ କବି ନୁହଁନ୍ତି ଯବନ କବିଙ୍କ ଲେଖନୀ ଶ୍ରୀଜଗନ୍ନାଥଙ୍କ ବର୍ଣ୍ଣନାରୁ ମୁକ୍ତ ନୁହେଁ । ସାଲବେଗଙ୍କ ଭଜନଗୁଡ଼ିକ ରଚିତ ହେବାର ପ୍ରାୟ ତ୍ରିଶତ ବର୍ଷ ଅତିକ୍ରାନ୍ତ ହୋଇଯାଇଥିଲେ ମଧ୍ୟ ବର୍ତ୍ତମାନ ପର୍ଯ୍ୟନ୍ତ ସେଗୁଡ଼ିକ ଅତ୍ୟନ୍ତ ଲୋକପ୍ରିୟ ଅଟେ–

ଆହେ ନୀଳ ଶଇଳ, ପ୍ରବଳ ମତ୍ତ ବାରଣ
ମୋ ଆରତ ନଳିନୀ ବନକୁ କର ଦଳନ ।
କିମ୍ବା
ଜଗବନ୍ଧୁ ହେ ଗୋସାଇଁ
ତୁମ୍ଭ ଶ୍ରୀଚରଣ ବିନୁ ଅନ୍ୟ ଗତି ନାହିଁ ।

ଅଷ୍ଟାଦଶ ଶତାବ୍ଦୀର କବି ତଥା ଶ୍ରୀକ୍ଷେତ୍ର ନିବାସୀ ବନମାଳୀଙ୍କ ଜଣାଣ ଏବଂ ଭଜନଗୁଡ଼ିକ ମଧ୍ୟ ଶ୍ରୀଜଗନ୍ନାଥ ଭକ୍ତରସାଶ୍ରିତ –

ଜଗନ୍ନାଥ ହୋ, କିଛି ମାଗୁନାହିଁ ତୋତେ
ଧନ ମାଗୁନାହିଁ ଜନ ମାଗୁନାହିଁ
ମାଗୁଛି ଶରଧା ବାଲିରୁ ହାତେ ।



କିମ୍ବା–

ଦୀନବନ୍ଧୁ ଦଇତାରି
ଦୁଃଖ ନଗଲା ମୋହରି
ହେଲ କି ନିଷ୍ଠୁର ଚିତ୍ତ
ନୀଳାଚଳେ ବିଜେ କରି ।

ମଧ୍ୟଯୁଗର ରାଧାନାଥ, ମଧୁସୂଦନ ଇତ୍ୟାଦି କବିମାନଙ୍କ ଲେଖନୀରେ ଶ୍ରୀଜଗନ୍ନାଥ ଏବଂ ନୀଳାଚଳ ଧାମର ମହତ୍ତ୍ୱ ପ୍ରତିପାଦିତ ହୋଇଛି । 'ଚନ୍ଦ୍ରଭାଗା' କାବ୍ୟରେ ଜଗନ୍ନାଥଙ୍କ 'ପୁଷ୍ୟାଭିଷେକ' ବିଷୟରେ କବି ସୂଚନା ଦେବା ସଙ୍ଗେ ସଙ୍ଗେ ପାର୍ବତୀ କାବ୍ୟରେ ନୀଳାଚଳର ଦୋଳ ମହୋତ୍ସବ ସମ୍ପର୍କରେ ବର୍ଣ୍ଣନା କରିଛନ୍ତି । ପୁନଶ୍ଚ 'ମହାଯାତ୍ରା' କାବ୍ୟରେ ପାଣ୍ଡବମାନେ ସ୍ୱର୍ଗାରୋହଣ ପଥରେ ହିମାଚଳ ଦେଇ ଆସି ପହଞ୍ଚିଛନ୍ତି ଉତ୍କଳର ପବିତ୍ର ନୀଳାଚଳ ଧାମରେ–

ନାନା ତୀର୍ଥ ସେବି, ସ୍ୱରେ ଆସିଣ ମିଳିଲେ
ଉତ୍କଳ ପ୍ରାଚ୍ୟ–ନୀର ପ୍ରାଚୀର ଆକୃତି
ନୀଳ–ଫେନାକୁଳ–ତୁଙ୍ଗ–ତରଙ୍ଗ–ଭଙ୍ଗୁର
ନୀଳାଚଳ ତଟେ ଯହିଁ ଲୋଟେ ବାରାନିଧି
ଗମ୍ଭୀର ନିର୍ଘୋଷେ ଘୋଷି ବିଶ୍ୱ ଚରାଚରେ ।

ସେହିପରି ସ୍ୱଭାବ କବି ଗଙ୍ଗାଧର 'ପ୍ରଣୟବଲ୍ଲରୀ', 'ତପସ୍ୱିନୀ' ଏବଂ 'ଉତ୍କଳ ଲକ୍ଷ୍ମୀ' ଇତ୍ୟାଦି କାବ୍ୟମାନଙ୍କରେ ପୁରୁଷୋତ୍ତମ କ୍ଷେତ୍ରର ମନୋଜ୍ଞ ଚିତ୍ର ବର୍ଣ୍ଣନା କରିଛନ୍ତି । ତପସ୍ୱିନୀର ପଞ୍ଚମ ସର୍ଗରେ ନୀଳାଚଳ ଧାମର ବର୍ଣ୍ଣନା କରିବାକୁ ଯାଇ କବି କହୁଛନ୍ତି–

ଉଜ୍ଜ୍ୱଳ ଚିକ୍କଣ ନୀଳ ପତର
ପୁନ୍ନାଗ–କାନନ ଶ୍ୟାମଳତର
ଉଡ଼ି ଓଡ଼ିଶାରୁ ଥିଲା କି ଯାଇ,
ଦେଉଥିଲା ସତ୍ୟ ମନ ରଞ୍ଜାଇ
ନୀଳାଚଳେ ରୂପ ଧରି – ବିଜେ ଅବା
ରାମ ଲଭିବାକୁ ସୀତା
ପ୍ରୀତି–ସାଗର ଲହରୀ ।

ସତ୍ୟବାଦୀ ଯୁଗର ପ୍ରଖ୍ୟାତ କବି ଗୋପବନ୍ଧୁ ଦାସ ସ୍ୱରଚିତ ରଚନାରେ ବହୁ କ୍ଷେତ୍ରରେ ଜଗନ୍ନାଥ ତଥା ଜଗନ୍ନାଥ ଧାମର ମହତ୍ତ୍ୱ ପ୍ରତିପାଦନ କରିଛନ୍ତି । ଉଦାହରଣ ସ୍ୱରୂପ –

ଜଗତ ସରସେ ଭାରତ କମଳ
ତା' ମଧ୍ୟେ କେଶର ପୁଣ୍ୟ ନୀଳାଚଳ
ଥିଲେ ଥାଇ ଯହିଁ ଭାରତ ବକ୍ଷରେ
ମଣିବି ମୁଁ ଅଛି ଆପଣା କକ୍ଷରେ
ମୋ ନେତ୍ରେ ଭାରତ ଶିଳା ଶାଳଗ୍ରାମ
ପ୍ରତି ସ୍ଥଳ ମୋର ପ୍ରିୟ ପୁରୀଧାମ ।
ସକଳ ସଲୀଳ ପଞ୍ଚତୀର୍ଥ ଜଳ
ପ୍ରତି ଧର୍ମାଳୟ ମୋର ନୀଳାଚଳ ।

ଆଧୁନିକ ଯୁଗରେ ମଧ୍ୟ ସଚ୍ଚି ରାଉତରାୟ, ସୁରେନ୍ଦ୍ର ମହାନ୍ତି, ସଦାଶିବ ରଥଶର୍ମା ଇତ୍ୟାଦିଙ୍କ ପରି ବହୁ କବି ଓ ଲେଖକଙ୍କ ଶ୍ରୀଜଗନ୍ନାଥଙ୍କ ସମ୍ପର୍କରେ ରଚିତ ଅନେକ କବିତା ଏବଂ ପ୍ରବନ୍ଧ ଓଡ଼ିଆ ସାହିତ୍ୟର ଶ୍ରୀବୃଦ୍ଧି ମଣ୍ଡନ କରିଛି ।

ଓଡ଼ିଶାର ଧର୍ମ, ସଂସ୍କୃତି ତଥା ସାମାଜିକ ଜୀବନରେ ଜଗନ୍ନାଥ ଅତ୍ୟନ୍ତ ପ୍ରଭାବଶାଳୀ । ଓଡ଼ିଆ ସାହିତ୍ୟ ଏହାର ଏକ ପ୍ରତିଫଳନ ମାତ୍ର । ଶ୍ରୀଜଗନ୍ନାଥଙ୍କୁ ନେଇ ଓଡ଼ିଆ ସାହିତ୍ୟ ଯେ ସମୃଦ୍ଧିଶାଳୀ, ଏଥିରେ ସନ୍ଦେହର ଅବକାଶ ନାହିଁ ।

ଯୁଗ୍ମ ନିର୍ଦ୍ଦେଶକ
ସ୍ଥାନୀୟ ପାଣ୍ଠି ସମୀକ୍ଷା ନିର୍ଦ୍ଦେଶାଳୟ
ଭୁବନେଶ୍ୱର–୭୫୧୦୦୧





# ଶ୍ରୀଜଗନ୍ନାଥ ଓ ରଥଯାତ୍ରା

ଡକ୍ଟର ଦୁର୍ଗାପ୍ରସନ୍ନ ଚୌଧୁରୀ

ପ୍ରଭୁ ଲୀଳାମୟ, ସେ ନିର୍ବିକାର ଅନନ୍ତ ତଥା ଚଳନ୍ତି ଠାକୁର, ଭକ୍ତମାନଙ୍କ ଦୁଃଖ ଲାଘବ କରନ୍ତି । ତାଙ୍କର ଲୀଳା କିଏବା ନ ଜାଣେ, ନିତ୍ୟ ନୈମିତ୍ତିକ କଳାଠାକୁର ସବୁଠାରେ, ସବୁ ସମୟରେ ଓ ସମସ୍ତ ଆତ୍ମାରେ ଆବିର୍ଭୂତ । ସେ ଅଭିମାନୀ, ଚତୁର ଓ ବିଶାଳ କାୟାଧାରୀ ଅଟନ୍ତି । ମାନବ ଜାତି ତାଙ୍କ ପାଇଁ କ'ଣ ଅବା ଅନୁଚିନ୍ତା କରିପାରିବ, ସେ ସ୍ୱପ୍ନରେ ଆସନ୍ତି ଓ ଅପସରି ଯାଆନ୍ତି, ଆମର ସମସ୍ତ ଚେଷ୍ଟା ଓ ଉପଚେଷ୍ଟା ତାଙ୍କର ନିର୍ଦ୍ଦେଶନାରେ ଚାଲେ ।




ଜଗନ୍ନାଥ ପରଂବ୍ରହ୍ମ ନିରାକାର ପୁରୁଷ ହେଲେ ହେଁ ପୁରୀ ଶ୍ରୀଜଗନ୍ନାଥ ଚେତନାରେ ପୁରୁଷୋତ୍ତମ ଓ ଦାରୁଦେବତା ରୂପେ ପୂଜିତ ଓ ଅର୍ଚ୍ଚିତ ହେଉଛନ୍ତି । ଦାରୁଦେବତାର ଅର୍ଥ ହେଉଛନ୍ତି ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ଦେବୀ ସୁଭଦ୍ରା ଓ ସୁଦର୍ଶନଙ୍କ ଚତୁର୍ଦ୍ଧାମୂର୍ତ୍ତିର ସମାହାର । ସମସ୍ତ ତତ୍ତ୍ୱର ସମଷ୍ଟି ହିଁ ପୁରୁଷୋତ୍ତମ । ନାରଦ ଏହି ଭାବକୁ ପ୍ରକଟ କରି ନୀଳ ତତ୍ତ୍ୱଧର ବା ନୀଳାଦ୍ରିର ପୁରୁଷୋତ୍ତମଙ୍କୁ ସର୍ବେଶ୍ୱର ତତ୍ତ୍ୱ ବୋଲି ବର୍ଣ୍ଣନା କରିଛନ୍ତି । ପିପ୍‌ପଲାଦ୍ ଶାଖାର ପ୍ରଣବ ପରକ ଉପନିଷଦରେ ଉଲ୍ଲେଖ ଅଛି, ସର୍ବେଶ୍ୱର ହେଉଛନ୍ତି ସାକ୍ଷାତ ବ୍ରହ୍ମ । ପୁରୁଷୋତ୍ତମ ବ୍ରହ୍ମ ହିଁ ବ୍ରହ୍ମମୟ ପୁରୁଷ ।

ତାଙ୍କରି ପାଇଁ ସୃଷ୍ଟି ହୋଇଛି କେତେ କାହାଣୀ କିମ୍ବଦନ୍ତୀ, କେତେ ପୁରାଣ ଇତିହାସ, ତତ୍ତ୍ୱ ଦର୍ଶନ, ମତ–ପଥ, ସାହିତ୍ୟ, ଧର୍ମଧାରା ସେ ଲୀଳାମୃତ ଅସରନ୍ତି । ଦାରୁ ଦେବତାରୁ ପରଂବ୍ରହ୍ମ ଅବତାରମାନଙ୍କର ଅବତାରୀ । ଯୁଗେ ଯୁଗେ ପ୍ରକଟିତ ହୋଇଛନ୍ତି ବିଭିନ୍ନ ସ୍ୱରୂପରେ । ଦୁଷ୍ଟ ଦମନ ସନ୍ଥମାନଙ୍କୁ ପାଳନ କରିଛନ୍ତି । ଦୁଃଖରୁ ପୋଛି ନେଇଛନ୍ତି । ସଂକଟରୁ ତୋଳି ଆଣିଛନ୍ତି । ସତ୍ୟରେ ନୃସିଂହ ନାରାୟଣ, ତ୍ରେତୟାରେ ଶ୍ରୀରାମ, ଦ୍ୱାପରରେ କୃଷ୍ଣ ପୁଣି କଳିଯୁଗରେ କରି ଚାଲିଛନ୍ତି ଅଜସ୍ରଲୀଳା ପରମବ୍ରହ୍ମ ଜଗନ୍ନାଥ ରୂପରେ ।

ଜନ୍ମ ମରଣର ଉର୍ଦ୍ଧ୍ୱରେ ଯେଉଁ ଅନନ୍ତ ସତ୍ତା ଏଇ ମର୍ତ୍ତ୍ୟବୈକୁଣ୍ଠରେ ଉଭା ହୋଇଛନ୍ତି, ଟିକିଏ ଦର୍ଶନ ପାଇଲେ





ପ୍ରାଣରେ ତୃପ୍ତି ଆସିବ, ଆନନ୍ଦ ବିଭୋର ଭକ୍ତ ଜନ ସମୁଦ୍ରରେ ତିନିରଥ ଘର୍ଘର ନାଦ କରି ଗଡି ଚାଲିବ ଆଉ ସେ ଚିରସୁନ୍ଦରଙ୍କର ଲାବଣ୍ୟ ଉତ୍ସବର ଭକ୍ତିସାଗରରେ ନିଜକୁ ଲୀନ କରିଦେବ । କବିଗୁରୁ ରବିନ୍ଦ୍ରନାଥଙ୍କ ଭାଷାରେ ରଥ, ପଥ, ଦଉଡି ସବୁ ଦେବତା । ଭାବର ଭଗବାନ ଶ୍ରୀଜଗନ୍ନାଥ । ସେ ନିରାକାର ପୁଣି ଆକାରର ଏକ ବିଚିତ୍ର ସମନ୍ୱୟ ବା ପ୍ରତୀକ । ଜୀବନ୍ତ ଦେବତା । ତାଙ୍କର ଲୀଳା ଅବର୍ଣ୍ଣନୀୟ କିନ୍ତୁ ତାଙ୍କୁ ବର୍ଣ୍ଣନା କରାଯାଏ । ସେ ଲୀଳାଖେଳା ଜଗନ୍ନାଥ ସଂସ୍କୃତିରେ ପରସ୍ତ ପରସ୍ତ ହୋଇ ସଜ୍ଜିତ ହୋଇ ରହିଛି । ସମର୍ପଣ ଭାବ, ଆର୍ତ୍ତ ଆହ୍ୱାନ ଭକ୍ତିର ରସାପ୍ଳୁତ ଗଦଗଦ ଉତ୍କଣ୍ଠାଭାବ ଭିତରେ ତାଙ୍କୁ ପ୍ରତ୍ୟକ୍ଷ ଅନୁଭବ କରିହୁଏ । ଚାଲନ୍ତୁ ନନ୍ଦିଘୋଷ ରଥରେ ସେହି ଦାରୁବ୍ରହ୍ମ ସ୍ୱୟଂ ପରମାତ୍ମାଙ୍କ ଦର୍ଶନ କରି ସଂସାର ରଥରେ ଯାତ୍ରା ପରେ ନିର୍ବାଣ ଲଭିବା ।

ଶ୍ରୀଜଗନ୍ନାଥ ଚେତନାର ବିଶ୍ୱ ବ୍ୟାପକତା ମୂଳରେ ରହିଛି ଧର୍ମୀୟ ଉଦାରତା, ଶାନ୍ତିପୂର୍ଣ୍ଣ ସହାବସ୍ଥାନର ପ୍ରେରଣା, ମଣିଷ ମଣିଷ ମଧ୍ୟରେ ଥିବା ମୈତ୍ରୀ ଚେତନାର ବିସ୍ତାର, ଜାତି–ଜାତି ମଧ୍ୟରେ ସଂହତି ରକ୍ଷାର ସନ୍ଦେଶ, ସର୍ବୋପରି ଅଲୌକିକ ମାନବିକତାର ଗଭୀର ସ୍ପନ୍ଦନ । ସବୁ ଧର୍ମ, ସବୁ ବର୍ଣ୍ଣ, ସବୁ ସମ୍ପ୍ରଦାୟ ଏବଂ ସବୁ ଭାଷାର ଊର୍ଦ୍ଧ୍ୱରେ ଶ୍ରୀଜଗନ୍ନାଥଙ୍କର ଆଦର୍ଶ, ଚେତନା ସମଗ୍ର ବିଶ୍ୱବାସୀଙ୍କୁ ଏକତ୍ର ଓ ଅଭିନ୍ନ ହେବାର ପ୍ରେରଣା ଯୋଗାଇ ଆସିଛି । ବିଶ୍ୱର ଅଧିକାଂଶ ଦେଶରେ ଜଗନ୍ନାଥ ଚେତନା ଓ ସଂହତି ଆଜି ପ୍ରତୀୟମାନ ହୁଏ ।

ପ୍ରାଚୀନ ଯୁଗରୁ ଅଦ୍ୟାବଧି ଭାରତରେ ଥିବା ଚାରୋଟି ଧାମ ରୂପେ ବିବେଚିତ । ସେଗୁଡିକ ହେଲା– ପୂର୍ବରେ ପୁରୀ, ପଶ୍ଚିମରେ ଦ୍ୱାରକା, ଉତ୍ତରରେ ବଦ୍ରିନାଥ, ଦକ୍ଷିଣରେ ରାମେଶ୍ୱର ଅବସ୍ଥିତ । ବିଶ୍ୱରେ ପ୍ରସିଦ୍ଧି ଲାଭ କରିଥିବା ଶ୍ରୀଜନ୍ନାଥ ଧାମ କେବଳ ଭାରତବର୍ଷରେ କାହିଁକି ନେପାଳ, ସିଂହଳ, ବର୍ମା, ମାଳୟ, ମରିସସ୍ ଆଦି ଦେଶରେ ହିନ୍ଦୁ ଧର୍ମୀମାନେ ଶ୍ରୀକ୍ଷେତ୍ର ପୁରୀକୁ ଆସି ଜଗନ୍ନାଥଙ୍କୁ ଦର୍ଶନ କରି ପୂର୍ଣ୍ଣତା ପ୍ରାପ୍ତି କରିଥାନ୍ତି । ଏତଦ୍‌ଭିନ୍ନ ଆମେରିକା, ଇଂଲଣ୍ଡ, ଋଷିଆ ଆଦି ବିଭିନ୍ନ ଦେଶରୁ ଭିନ୍ନ ଧର୍ମାବଲମ୍ବୀମାନେ ରଥଯାତ୍ରା ସମୟରେ ପୁରୀକୁ ଆସି ଶ୍ରୀଜୀଉମାନଙ୍କୁ ଦର୍ଶନ କରିବାର ସୁଯୋଗ ଲାଭ କରିଥାନ୍ତି ।

ଶ୍ରୀଜଗନ୍ନାଥଙ୍କର ସେବା ଭାଗ୍ୟରେ ଥିଲେ ଉପଲବ୍ଧି ହୁଏ । ତାଙ୍କର ସେବା ଯେ ଯେଉଁ ରୂପରେ କରିବା ପାଇଁ ପ୍ରୟାସ କରେ । ତାହା ତାଙ୍କ ଆଶୀର୍ବାଦରୁ ଉପଲବ୍ଧି ହୁଏ । ତଥାପି ଭକ୍ତମାନଙ୍କ ମଧ୍ୟରେ ପ୍ରତିଯୋଗିତା ଲାଗି ରହେ । କିନ୍ତୁ ନିଃସ୍ୱାର୍ଥପର ସେବା ପ୍ରକୃତ ସେବା ଭାବେ ପରିଗଣିତ । ଜଣେ ଯଦି ମହାପ୍ରଭୁଙ୍କ ନାମରେ ସମର୍ପିତ ହୋଇଥିବା ବସ୍ତୁ ସ୍ଥାବର ବା ଅସ୍ଥାବର ପ୍ରତି ଲୋଭାନ୍ୱିତ ହୁଏ, ତାହା ନିଃସ୍ୱାର୍ଥପର ସେବା ବୋଲି କହିବା ହାସ୍ୟାସ୍ପଦ ଅଟେ । ସେ କୌଣସି ଧନ ଅବା ବସ୍ତୁ ବଦଳରେ ସେବା ମହାପ୍ରଭୁଙ୍କୁ ପ୍ରଦାନ କରିବା ପ୍ରକୃତ ସେବା ନୁହେଁ, ତାଙ୍କୁ ମନ ଧ୍ୟାନ ଦେଇ ପୂଜା ଅର୍ଚ୍ଚନା କଲେ, ଉକ୍ତ ସେବା ତାଙ୍କ ପ୍ରତି ଯଥାର୍ଥ ସମ୍ମାନ ପରି ବିବେଚନା କରାଯାଏ ।

ମହାପ୍ରଭୁଙ୍କୁ ସମ୍ପୂର୍ଣ୍ଣ ସମର୍ପଣ ଭକ୍ତି ମାର୍ଗର ଶ୍ରେଷ୍ଠ ସୋପାନ । ସମ୍ପୂର୍ଣ୍ଣ ସମର୍ପଣର ଅର୍ଥ ସର୍ବସ୍ୱ ପରିତ୍ୟାଗ, ଉପରୋକ୍ତ ପରିଚ୍ଛେଦରେ ବର୍ଣ୍ଣିତ ନିଃସ୍ୱାର୍ଥପର ସେବା ଅଟେ । ଯଦି ଆମେ ତାଙ୍କୁ ଜାତି, ଗୋତ୍ର, ଧର୍ମ ନିର୍ବିଶେଷରେ ଆରାଧନା କରିବା ବା ଧ୍ୟାନ କରିବା, ତାହାହେଲେ ସେ ନିଶ୍ଚୟ ବିଭିନ୍ନ ଅବତାରରେ ଆଗମନ କରନ୍ତି ଓ ମାନବ ଜାତି ପ୍ରତି ଆଶୀର୍ବାଦ ପ୍ରଦାନ କରନ୍ତି । କିଏ କହେ ସେ ବୁଦ୍ଧ ଅବତାରରେ ଆସନ୍ତି ପୁଣି କିଏ କହେ ସେ ସାଧୁସନ୍ଥ ମହାପୁରୁଷ ଅବତାରରେ ଆବିର୍ଭାବ ହୁଅନ୍ତି । ଶ୍ରୀଜଗନ୍ନାଥଙ୍କ ମହିମା ଯୁଗେ ଯୁଗେ ଅମର ହୋଇରହିବ । ହେ ମହାପ୍ରଭୁ ! ଏ ମାନବ ଜାତିକୁ ସୁଖ, ଶାନ୍ତି, ସମୃଦ୍ଧି ପ୍ରଦାନ କରନ୍ତୁ । ଏଇ ରଥଯାତ୍ରା ସମସ୍ତଙ୍କ ପାଇଁ ମଙ୍ଗଳମୟ ହେଉ, ଏହା ପ୍ରଭୁ ପାଦତଳେ ବିନମ୍ର ପ୍ରାର୍ଥନା ।

---

ସି.ବି.–୧୮, କ୍ୟାଣ୍ଟନମେଣ୍ଟ ରୋଡ୍, କଟକ



# ଚାରିଦ୍ୱାର ହନୁମାନ ଓ ଭକ୍ତ ସନ୍ଥ ଦାସ

ପୀତାମ୍ବର ପ୍ରଧାନୀ

ଉତ୍କଳରେ ଶ୍ରୀହନୁମାନଜୀଙ୍କର ଉପାସନା ବହୁଦିନ ଧରି ପ୍ରଚଳିତ । ପ୍ରସିଦ୍ଧ ପୁରୁଷୋତ୍ତମ କ୍ଷେତ୍ରରେ ହନୁମାନଜୀଙ୍କର ବହୁ ମୂର୍ତ୍ତି ସ୍ଥାପନା ଓ ସେବା ପୂଜାର ବିଧି ଥିଲା । ଭକ୍ତମାନଙ୍କର ଦର୍ଶନ ଓ ସମାବେଶ ଏହାର ପ୍ରମାଣ ଅଟେ । କଥିତ ଅଛି, ଭଗବାନ ହନୁମାନଜୀଙ୍କୁ ଏହି ବର ପ୍ରଦାନ କରିଥିଲେ, ତୁମେ ମୋର ଅନ୍ତରଙ୍ଗ ଭକ୍ତ ହୋଇ ନୀଳାଚଳରେ ବାସ କରିବ ଓ ଭକ୍ତମାନେ ତୁମର ଉପାସନା କରିବେ ଏବଂ ଆମ୍ଭର ଧ୍ୱଜାରେ କପି ଚିହ୍ନ ଶୋଭିତ ହେବ । ଏହି କାରଣରୁ ଜଗନ୍ନାଥ ମନ୍ଦିର ପୂର୍ବଦ୍ୱାରରେ ଫତେ ହନୁମାନ, ପଶ୍ଚିମ ଦ୍ୱାରରେ ବୀର ହନୁମାନ, ଉତ୍ତରଦ୍ୱାରରେ ତପସ୍ୱୀ ଓ ଦକ୍ଷିଣ ଦ୍ୱାରରେ ବାରଭାଇ ହନୁମାନ (ବରାଭୟା) ମୂର୍ତ୍ତି ପ୍ରତିଷ୍ଠିତ ହୋଇ ବହୁ ଭକ୍ତଜନଙ୍କ ଦ୍ୱାରା ପୂଜିତ ହେଉଛନ୍ତି ।

ସମୁଦ୍ରର ଭୀଷଣ ଗର୍ଜନ ଜଗନ୍ନାଥ ମନ୍ଦିରର ବେଢା ଭିତରେ ବହୁତ ବାଧା ସୃଷ୍ଟି କରୁଥିଲା । ଭଗବାନଙ୍କଠାରୁ ଆଦେଶ ପାଇ ହନୁମାନଜୀଙ୍କର ବିଶାଳ ଆକାର ଧାରଣ ପୂର୍ବକ ସମୁଦ୍ରର ଗର୍ଜନ ବେଢା ଭିତରକୁ ପ୍ରବେଶ କରାଇ ଦେଇନଥିଲେ । ଏହି ବିଶାଳକାୟ ହନୁମାନ ବିଗ୍ରହ ମନ୍ଦିରର ଦକ୍ଷିଣ ଦ୍ୱାରରେ ଅବସ୍ଥିତ । ଏହାକୁ କାନପାତା ବା ଶବ୍ଦଭେଦୀ ହନୁମାନ କୁହାଯାଏ ।

ଷୋଡଶ ଶତାବ୍ଦୀରେ ପୁରୀରେ, ଶ୍ରୀ ସନ୍ଥ ଦାସ ନାମରେ ଏକ ବିଶିଷ୍ଟ ଭକ୍ତ ବାସ କରୁଥିଲେ । ଏକଦା ଏକ ଭୟଙ୍କର ତୋଫାନ ଯୋଗୁଁ ଜଗନ୍ନାଥ ମନ୍ଦିରର ନୀଳଚକ୍ର ବଙ୍କା ହୋଇଗଲା । ବହୁ ଆୟାସ ସତ୍ତ୍ୱେ ଏହା ସିଧା ହୋଇପାରିଲା



ନାହିଁ । ସନ୍ଥ ଦାସ କହିଲେ ଯେ ଏହି କ୍ଷେତ୍ରର ରକ୍ଷକ ହନୁମାନଜୀଙ୍କ କୃପା ବିନା ଏହି ଅସାଧ୍ୟ କାର୍ଯ୍ୟ ସମାପନ ହେବ ନାହିଁ । ଏହା ପରେ ମନ୍ଦିରର ପୂଜାରୀଗଣ ଓ ଭକ୍ତଗଣ ହନୁମାନଙ୍କୁ ପ୍ରାର୍ଥନା କଲେ । ଅକସ୍ମାତ୍ ଏକ ବିଶାଳକାୟ ବାନର କେଉଁଠାରୁ ଆସି ମୁହୂର୍ତ୍ତକ ମଧ୍ୟରେ ନୀଳଚକ୍ରକୁ ସଳଖାଇ କୁଦାମାରି ଦକ୍ଷିଣ ଦିଗରେ ଅନ୍ତର୍ଦ୍ଧାନ ହୋଇଗଲା । ଯେଉଁଠାରେ ହନୁମାନଜୀ କୁଦାମାରୀ ଅନ୍ତର୍ଦ୍ଧାନ ହୋଇଥିଲେ ସେହିଠାରେ ରାଜା ପ୍ରତାପରୁଦ୍ର ଦେବ ଉଡ଼ନ୍ତା ହନୁମାନଜୀଙ୍କର ସ୍ଥାପନା କରିଥିଲେ ।

ଅବସରପ୍ରାପ୍ତ ଯୁଗ୍ମ ଶାସନ ସଚିବ, ଗୃହ ବିଭାଗ
ଭୁବନେଶ୍ୱର



# ଦାରୁବ୍ରହ୍ମ

**ଡକ୍ଟର କିଶୋର ମହାନ୍ତି**



ଏକ ନିଆରା ଧର୍ମ, ଜଗନ୍ନାଥ ଧର୍ମ, ଏ ଧର୍ମରେ ବାଛବିଚାର, ଉଚ୍ଚନୀଚ ପରିଲକ୍ଷିତ ହୁଏ ନାହିଁ । ଜଗନ୍ନାଥ ବିଶ୍ୱର ଦେବତା ହୋଇଥିବାରୁ ତାଙ୍କ ନିକଟରେ ଆଞ୍ଚଳିକତା ତଥା ପ୍ରାଦେଶିକତାର ମନୋଭାବ ନାହିଁ । ସେ ବିଶ୍ୱଦେବତା, ସେ ଅଖିଳ ବ୍ରହ୍ମାଣ୍ଡପତି ।

ହିନ୍ଦୁ ଦର୍ଶନାନୁସାରେ ଅବତାରୀ ଶ୍ରୀଜଗନ୍ନାଥଙ୍କୁ ବିଭିନ୍ନ ଅବତାରିବାଦର ସ୍ୱରୂପଭାବେ ଅବତାରଣା କରାଯାଇଛି । ନରସିଂହ ଅବତାର ପରେ ପ୍ରଭୁଙ୍କର ବାମନ ଅବତାର ହେଉଛି ସୃଷ୍ଟିରେ ମାନବ ଅବତାର । ଏକେତ ସେ

‘ଜଗନ୍ନାଥ’, ଏହି ବର୍ଣ୍ଣାଢ୍ୟ ଶବ୍ଦ ଭିତରେ ଥାଇ ଆତ୍ମପ୍ରକାଶ କରୁଛି ବ୍ରହ୍ମର ସ୍ୱରୂପ ଓ ସାତ୍ତ୍ୱିକ ଭାବମୟ ସତ୍ତା ଏବଂ ଜଗନ୍ନାଥ ଚେତନାର ବିଶ୍ୱବ୍ୟାପକତା ଓ ବିଶ୍ୱମୈତ୍ରୀର ପରିପ୍ରକାଶ । ଶ୍ରୀଜଗନ୍ନାଥ ଧର୍ମ ଦର୍ଶନର ସମସ୍ତ ଧର୍ମ ଧାରଣାର ମୌଳିକତା ତଥା ସବୁ ମତବାଦର ସମନ୍ୱୟ ସୃଷ୍ଟି କରିଛି ସାମ୍ୟ, ସମନ୍ୱୟ, ଶାନ୍ତି ଓ ସଂହତି । ଜଗନ୍ନାଥୀ ଭାବରେ ଜାତି, ବର୍ଣ୍ଣ, ଧର୍ମ ସଂପ୍ରଦାୟ ନିର୍ବିଶେଷରେ ସମସ୍ତଙ୍କୁ ସମାନ ମାନ୍ୟତା ଅର୍ପିତ ହୋଇଛି । ସାମ୍ୟ ଓ ମୈତ୍ରୀ ଦେବତା ଭାବରେ ଉଭା ନୀଳାଚଳବାସୀ ଶ୍ରୀଜଗନ୍ନାଥ ହେଉଛନ୍ତି ସମସ୍ତ ବିଶ୍ୱ ମାନବବାଦର ପ୍ରତିଭୂ ଓ ସେ ହେଉଛନ୍ତି କମ୍ବୁକଟକର ରାଜା, ଅର୍ଥାତ୍ ସମଗ୍ର ବିଶ୍ୱର ସମ୍ରାଟ । ସମସ୍ତ ଧର୍ମର ସମୀକରଣ

ଦାରୁବ୍ରହ୍ମ କିନ୍ତୁ ଜୀବନର ପ୍ରତିଟି ଧାରା ଉପଧାରାରେ ସେ ପାଳନ୍ତି ସବୁ ମଣିଷର ପ୍ରତିଦିନ ପାଳୁଥିବା ନିତ୍ୟକର୍ମ ଓ ଅବିକଳ ଜୀବନଶୈଳୀ । ତେଣୁ ସେ ଯେ ମଣିଷ ଦେହଧାରୀ ନୁହଁନ୍ତି, ତାହା କହିହୁଏ ନାହିଁ । ସେ ଯେ ରହସ୍ୟମୟ ଠାକୁର ଏହା ନିଃସନ୍ଦେହରେ କୁହାଯାଏ । ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ବାମନ ରୂପରେ ଶ୍ରୀଗୁଣ୍ଡିଚା ଯାତ୍ରାରେ ନନ୍ଦିଘୋଷ ଉପରେ ଥାଇ ପୂଜା ପାଇଥାନ୍ତି । ମଣିଷଙ୍କ ପରି ବେଶ ପରିପାଟୀ ହେବା ତାଙ୍କ ସ୍ୱଭାବ ତେଣୁ ସେ ବିଭିନ୍ନ ବେଶରେ ତଥା ରାଜସଭାରେ ଭକ୍ତଗଣଙ୍କୁ ଦର୍ଶନ ଦେଇଥାନ୍ତି । ଜଗନ୍ନାଥ ଅତୀବ ପୁଷ୍ପପ୍ରିୟ । ବିଭିନ୍ନ ପୁଷ୍ପରାଜିରେ ସଜ୍ଜିତ ପ୍ରଭୁ ଖୁବ୍ ମନୋହର ତଥା ଉଲ୍ଲାସିତ ହୋଇଉଠନ୍ତି ଭକ୍ତ ଗହଣରେ । ଦୟଣା, ତୁଳସୀମାଳ, ଅଗୁରୁ,



କର୍ପୂର, ଚୁଆ, ଚନ୍ଦନରେ ମହମହ ବାସି ଉଠନ୍ତି ପ୍ରଭୁ । ଏ ତ କେବଳ ମାନବ ଧର୍ମ ଓ ମଣିଷ, ଏସବୁ ନେଇ ବେଳେବେଳେ ରସିକ ପଣିଆ ପ୍ରଦର୍ଶନ କରିଥାନ୍ତି । ସେଇଥିପାଇଁ ପ୍ରଭୁ ରାଜେ ରାଜେଶ୍ୱର ହଟିଆ ଠାକୁର, ଗୋପୀଚିତ୍ତଚୋର ରସିକ ଶେଖର କଳା କାହ୍ନୁ ।

ମହାପ୍ରଭୁ ଶ୍ରୀଜଗନ୍ନାଥ ଗଣଦେବତା ହୋଇଥିବାରୁ ରଥଯାତ୍ରାକୁ ଗଣଯାତ୍ରା ଭାବରେ ନାମିତ କରାଯାଇଛି । ଜନଗଣମନକୁ ପ୍ରତିନିଧିତ୍ୱ କରୁଥିବା ବିଶ୍ୱ ବନ୍ଦନୀୟ ଇଚ୍ଛାମୟ ଜନାର୍ଦ୍ଦନ ପ୍ରଭୁ ଜଗବନ୍ଧୁ । ତେଣୁ ରଥରେ ଯାତ୍ରାକରି ଭକ୍ତମାନଙ୍କୁ ନିଜ ଆଡ଼କୁ ଟାଣି ନେବାର ଯେଉଁ ଦୁର୍ବାର ବାସନା ଉଭା ତାହା ଚରିତାର୍ଥ ହୋଇଥାଏ ଏଇ ଅନନ୍ତ ଲୀଳାମୟ ଯାତ୍ରାରେ । ଏ ଯାତ୍ରା ଏତେ ଉଲ୍ଲାସପ୍ରଦ କାହିଁକି ? ପରମ୍ପରା ଜଡ଼ିତ ରଥଯାତ୍ରା ହିନ୍ଦୁଧର୍ମ ଦର୍ଶନରେ ପ୍ରତିଭାତ ହୋଇଥିଲେ ହେଁ ସାରା ବିଶ୍ୱର ଏକ ଚମକପ୍ରଦ ଘଟଣା ।

ତିନିରଥ ତ୍ରିଶକ୍ତିର ଭାର ବହନ କରି ନିଜସ୍ୱ ଢଙ୍ଗରେ ଗତି କରି ଚାଲିଛି । ଏହି ରଥ ସତ ଚିତ୍ ଆନନ୍ଦର ପ୍ରତୀକ ସ୍ୱରୂପ ବିଶ୍ୱ ମାନବକୁ ଏକାତ୍ମ ହେବା ପାଇଁ ବାରବାର ଅଭିମନ୍ତ୍ରିତ କରୁଛି । କହିବାକୁ ଗଲେ ଶ୍ରୀମନ୍ଦିରର ଆରାଧିତ ତିନି ଦେବତା ସ୍ମାର୍ତ୍ତର ତ୍ରିନାଥ, ତନ୍ତ୍ରର ତ୍ରିଶକ୍ତି, ଜୈନର ତ୍ରିଆଚାର, ବୌଦ୍ଧର ତ୍ରିରତ୍ନ ଏବଂ ଖ୍ରୀଷ୍ଟିୟାନର ଟ୍ରିନିଟି ସହିତ ସମ୍ବନ୍ଧନ୍ୱିତ । ଏଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ ମହାପ୍ରଭୁ ଶ୍ରୀଜଗନ୍ନାଥ କୌଣସି ଗୋଟିଏ ସଂପ୍ରଦାୟ, ଜାତି, ଧର୍ମ ଏବଂ ଅଞ୍ଚଳ ଭିତରେ ବାନ୍ଧି ହୋଇ ରହନ୍ତି ନାହିଁ । ସେ ସମସ୍ତଙ୍କର ମଙ୍ଗଳ ପାଇଁ ତାଙ୍କର ଯାତ୍ରା ଅବ୍ୟାହତ ରଖନ୍ତି, ତେଣୁ ତ ଶହ ଶହ ଭକ୍ତ ସାତ ସମୁଦ୍ର ତେର ନଈ ପାରି ହୋଇ ଆସନ୍ତି ପ୍ରଭୁଙ୍କର ଉପାସନା ପାଇଁ, ଦର୍ଶନ ପାଇଁ, ସତରେ ପ୍ରଭୁଙ୍କର ଅପୂର୍ବ ମହିମାର ପଟାନ୍ତର ନାହିଁ ।

ଏଇ ବ୍ରହ୍ମର ରହସ୍ୟ ଭେଦ କରିବା ଦୂରୁହ ବ୍ୟାପାର ଏହି ଦାରୁ ପୂଜା ବା ଉପାସନା କିଛି ନୂଆ କଥା ନୁହେଁ– ବହୁ କାଳରୁ ଏହାର ପୂଜା ଆଦିମ ଅଧିବାସୀମାନେ କରିଆସୁଛନ୍ତି । ଦାରୁକୁ ହିଁ ସେମାନେ ମନେକରନ୍ତି ଦେବତା । ପୂର୍ବରୁ ପୁରାଣ ଶାସ୍ତ୍ରରେ ବର୍ଣ୍ଣିତ ହୋଇଛି ପ୍ରଭୁ ସ୍ୱୟଂ ଶବର ଦ୍ୱାରା ପୂଜିତ ହେଉଥିଲେ, ଏବେ ବି ଆମେ ଦାରୁକୁ ହିଁ ବା ବୃକ୍ଷକୁ ଦେବତା ବୋଲି ମାନିଥାଉ ଆଉ ପୂଜାର୍ଚ୍ଚନା କରିଥାଉ । ଶ୍ରୀକ୍ଷେତ୍ରରେ ଦାରୁ ଉପାସନା ଏକ ଦିବ୍ୟ ଭାବମୟ ଉପାସନା କହିଲେ ଅତ୍ୟୁକ୍ତି ହେବ ନାହିଁ ।

କଥିତ ଅଛି, ଶ୍ରୀକୃଷ୍ଣଙ୍କର ମୃତ ପିଣ୍ଡରେ ଅଗ୍ନି ସଂଯୋଗ କରାଯାଇ ଥିଲେ ହେଁ ତାଙ୍କ ନାଭି ମଣ୍ଡଳକୁ ଦହନ କରିବାକୁ ସ୍ୱୟଂ ଅଗ୍ନି ଦେବ ଅସମର୍ଥ ହୋଇଥିଲେ । ସେହି ଅପୋଡା ପିଣ୍ଡକୁ ସମୁଦ୍ରରେ ଭସାଇ ଦିଆଗଲା । ତାହା ନୀଳ ସୁନ୍ଦର ପର୍ବତରେ ଜଗନ୍ନାଥ ମୂର୍ତ୍ତି ରୂପେ ପୂଜା ପାଇବେ ବୋଲି ଜାରା ଶବରକୁ ଶୂନ୍ୟବାଣୀ ହୋଇଥିଲା । ଜାରା ସ୍ୱପ୍ନରେ ଶଂଖ, ଚକ୍ର, ଗଦା, ପଦ୍ମଧାରୀ ନୀଳମାଧବଙ୍କ କମନୀୟ ମୂର୍ତ୍ତି ସଂଦର୍ଶନ କରିବାର ସୌଭାଗ୍ୟ ଲାଭ କରିଥିଲା । ଶ୍ରୀଜଗନ୍ନାଥ ପ୍ରଥମେ ଶବରୀ ନାରାୟଣ ରୂପରେ ପୂଜା ପାଉଥିବାର ମୂଷଳୀ ପର୍ବରେ ବର୍ଣ୍ଣିତ ହୋଇଛି । ସେତେବେଳେ ସେ ଶବରମାନଙ୍କ ଦ୍ୱାରା ବୃକ୍ଷ ରୂପରେ ପୂଜା ପାଉଥିଲେ । ତାନ୍ତ୍ରିକ ପଦ୍ଧତିରେ ତାଙ୍କଠାରେ ଅନ୍ନଭୋଗ ହେଉଥିଲା । ଶବରୀ ନାରାୟଣଙ୍କ ଆଦି ପୂଜକ ଥିଲେ ବିଶ୍ୱାବସୁ । ତେଣୁ ସେ ବୃକ୍ଷ ରୂପରେ ପୂଜା ପାଇବା ଅଧିକ ସତ୍ୟ– ତେଣୁ ଦାରୁଚ୍ଛେଦନ ଉତ୍ସବ ସୂଚାଇ ଦିଏ ଯେ, ପ୍ରଭୁ ଶ୍ରୀଜଗନ୍ନାଥ ଦାରୁ ଦେବତା ଭାବରେ ସକଳ ମୁଖରେ ଚର୍ଚ୍ଚିତ । ପ୍ରଶ୍ନ ଉଠେ ପ୍ରଭୁ ଦାରୁରେ କାହିଁକି ରୂପ ନେବେ । ନିମ୍ବ ଦାରୁର ଶ୍ରେଷ୍ଠତ୍ୱ ପ୍ରତିପାଦନ କରାଯାଇ ଯୁକ୍ତି ଦର୍ଶାଯାଇଛି ଯେ, ନିମ୍ବ ପ୍ରଥମରୁ ପିତା, ତା'ର ପରିଣାମ ହେଉଛି ମିଠା । ତେଣୁ ନିମ୍ବରେ ମିଠା ଅଛି ''ମଧୁରର୍ବେ ବ୍ରହ୍ମ ।''

ଅନ୍ୟତ୍ର କୁହାଯାଏ ଏହା ତିକ୍ତ ଯୋଗୁଁ ଶୀଘ୍ର କୀଟମାନଙ୍କ ଦ୍ୱାରା ନଷ୍ଟ ହୁଏ ନାହିଁ । ନିମ୍ବ କାଠ ଛିଦ୍ର ବା ସ୍ତରହୀନ । ମସୃଣତା ପାଇଁ ବିଶେଷ ଭାବରେ ଗ୍ରହଣଯୋଗ୍ୟ ।ଆୟୁର୍ବେଦ ମତାନୁଯାୟୀ ନିମ୍ବ ବୃକ୍ଷ ବହୁଗୁଣସଂପନ୍ନ । ଏଇ ବୃକ୍ଷର ଚେରଠାରୁ ପତ୍ର ଓ ଫଳଯାଏଁ ଔଷଧୀୟ ଗୁଣରେ ଭରପୂର । ନିମ୍ବ ବୃକ୍ଷ ବହୁଦିନ ରହିଲା ପରେ ସେଥିରୁ ଚନ୍ଦନ ବାସ୍ନା ବାହାରି ଚତୁର୍ଦ୍ଦିଗ ସୁବାସିତ କରିଦିଏ । ଏହା ସାତ୍ତ୍ୱିକ ଶୁଦ୍ଧ ଓ ପବିତ୍ର ।



ତେଣୁ ପ୍ରଭୁଙ୍କର ଶରୀର ସେଇ ପବିତ୍ରତାକୁ ଗ୍ରହଣ କରେ । କୁହାଯାଇଛି–

ଶୁଖିଲା କାଠ ଦାରୁବ୍ରହ୍ମ, ତହିଁ ଅଛନ୍ତି ପରଂବ୍ରହ୍ମ ।

ରଥର ପରିକଳ୍ପନା ବୋଧହୁଏ ଏକ ଦାର୍ଶନିକ ତତ୍ତ୍ୱ ଉପରେ ବିଶେଷ ଗୁରୁତ୍ୱ ପ୍ରଦାନ କରିଥାଏ । ମଣିଷର ସମଗ୍ର ଶରୀର ବା ଦେହ ରଥ ହେଲେ ତାକୁ ପରିଚାଳିତ କରୁଥିବା ସାରଥି ହେଲେ ସ୍ୱୟଂ ଭଗବାନ । ତେଣୁ ଜଡ଼ ଓ ଚେତନକୁ ଏକାକାର କରି ଯିଏ ସମସ୍ତ ବୁଦ୍ଧି ପ୍ରୟୋଗ କରି, କୌଶଳରେ ଓ ସହଜରେ ରଥକୁ ଚଳାଇ ପାରୁଛି, ସେ ହିଁ ଯୋଗ୍ୟ ସାରଥି ଭାବରେ ପରିଚିତ । ସ୍ୱୟଂ ଶ୍ରୀଜଗନ୍ନାଥ ମାନବବାଦର ପ୍ରତୀକ ହୋଇଥିବାରୁ ରତ୍ନସିଂହାସନରେ ବସି ଏହି କ୍ଳାନ୍ତିକୁ ଦୂର କରିବା ପାଇଁ ଯେଉଁ ଯାତ୍ରା କରନ୍ତି, ତାହା ଘୋଷଯାତ୍ରା । ଏହା ବିଶ୍ୱରେ ବାସ୍ତବିକ ଏକ ଚମକପ୍ରଦ ଘଟଣା । ଅନ୍ୟତ୍ର ଦେଖିବାକୁ ଗଲେ ରଥ ହେଉଛି ପ୍ରଗତିର ପ୍ରତୀକ । ପ୍ରଗତି ସମସ୍ତଙ୍କର କାମ୍ୟ । ପ୍ରଗତି ନ ଆସିଲେ ସଭ୍ୟତା ଓ ସଂସ୍କୃତିର ଅବକ୍ଷୟ ହୋଇଯିବ । ତେଣୁ ସାମୂହିକ ପ୍ରଗତିକୁ ଆହ୍ୱାନ କରେ ରଥଯାତ୍ରା । ପ୍ରଗତି ପାଇଁ ଶୁଭ ସୂଚନା ପ୍ରଦାନ କରେ ରଥ । ରଥାରୂଢ଼ ପ୍ରଭୁ ଜଗନ୍ନାଥ, ବଳଭଦ୍ର ଓ ମା’ ସୁଭଦ୍ରା ଯଥାକ୍ରମେ ନନ୍ଦିଘୋଷ ତାଳଧ୍ୱଜ ଦେବଦଳନ ରଥରେ ଥାଇ ବିଶ୍ୱବାସୀଙ୍କର ଆନନ୍ଦ ଉଲ୍ଲାସ ସହ ଭାଗିଦାର ହୋଇ ଏକାକାର ହୋଇଯାନ୍ତି । ରଥଯାତ୍ରା ବା ଶ୍ରୀଗୁଣ୍ଡିଚା ଶୁଭ ଫଳ ପ୍ରଦାୟକ । ମଙ୍ଗଳ ଦ୍ୟୋତକ । ପ୍ରଭୁ ନିଜେ ତ ସର୍ବମଙ୍ଗଳ ଜଗନ୍ନାଥ । ଏହାର ତାତ୍ପର୍ଯ୍ୟ ଏହିକି ଯାହାଙ୍କୁ ସ୍ମରଣ କରିବା ମାତ୍ରେ ଜୀବ ସକଳ କଲ୍ୟାଣ ଲାଭର ଯୋଗ୍ୟ ହୁଏ ।

‘‘ସର୍ବମଙ୍ଗଳ ତୋର ନାମ, ରୂପ ଅରୂପ ସର୍ବ କର୍ମ.....’’

ଇ/୫୦, ସେକ୍ଟର–୭
ସିଡ଼ିଏ, କଟକ–୧୪

# ପ୍ରଭୁଙ୍କର ମହାଲୀଳା ରଥଯାତ୍ରା

ଅମ୍ବିକା ସ୍ୱାଇଁ

ଜଗତର ନାଥ ଜଗତ ଠାକୁର
କି ଭବ ଲୀଳା ରଚିଛ
ଭାଇ ଭଉଣୀଙ୍କୁ ସାଙ୍ଗରେ ଧରିଣ
ରଥ ଉପରେ ବସିଛ ।
ରତ୍ନସିଂହାସନୁ ଓହ୍ଲାଇ ଆସିଛ
ବଡ଼ଦାଣ୍ଡେ ବିଜେ କରି
ଭକତମାନଙ୍କୁ ଅନାଇ ରହିଛ
ଅପଲକ ନେତ୍ର ଭରି ।
ବଡ଼ଦାଣ୍ଡେ ନାହିଁ ଜାତି ଧର୍ମ ବର୍ଣ୍ଣ
ଛୁଆଁ ଅଛୁଆଁର ଭେଦ
ସେଥିପାଇଁ ପ୍ରଭୁ ନୀଳା ତୁମର
କା’ମନେ ନ ଦିଅ ଖେଦ ।



ଭକ୍ତ ସାଲବେଗ ଥିଲା ତୁମର
ସବୁଠାରୁ ବଡ଼ ଭକ୍ତ
ଦାସିଆ ବାଉରୀ ନଡ଼ିଆ ଯାଚିଲା
ଧରିନେଲ ତା’ର ହସ୍ତ ।
ଏହିପରି ଲୀଳା ରଚି ପ୍ରଭୁ ତୁମେ
ସୃଷ୍ଟି କଲ ରଥଯାତ୍ରା
ମାଉସୀ ମା’ହାତ ପୋଡ଼ ପିଠା ଖାଇ
ରଚିଲ ଏ ମହାଲୀଳା ।

ଭୁବନେଶ୍ୱର





# ଛେରାପହଁରାର ଗୁରୁତ୍ୱ

**ପ୍ରଭାତ କୁମାର ନନ୍ଦ**

ଜଗନ୍ନାଥ ସଂସ୍କୃତିରେ ସ୍ଥାନ ପାଇଥିବା ସମସ୍ତ ରୀତିନୀତିର ସର୍ବକାଳୀନ ଗୁରୁତ୍ୱ ରହିଛି। କୌଣସି ସାମାଜିକ, ସାଂସ୍କୃତିକ ବା ବୈଜ୍ଞାନିକ ବୈଶିଷ୍ଟ୍ୟ ବିନା ମନ୍ଦିରରେ ପର୍ବ ପାଳିତ ହୁଏ ନାହିଁ। ସେଥିନିମିତ୍ତ ସମଗ୍ର ବିଶ୍ୱର ବହୁ ସଚେତନ ନାଗରିକ ଜଗନ୍ନାଥ ସଂସ୍କୃତିର ଗୁରୁତ୍ୱ ଅନୁଭବ କରି ତାହାର ପ୍ରଚାର ପ୍ରସାର ନିମିତ୍ତ ବ୍ରତୀ ହୋଇଛନ୍ତି। ଛେରାପହଁରା ମହାପ୍ରଭୁଙ୍କର ସର୍ବଶ୍ରେଷ୍ଠ ଯାତ୍ରା ରଥଯାତ୍ରାର ଏକ ମୁଖ୍ୟ ଅଂଶ। ପତିତମାନଙ୍କର ଉଦ୍ଧାର ନିମନ୍ତେ ଶ୍ରୀଜଗନ୍ନାଥ ମହାପ୍ରଭୁ ପ୍ରତ୍ୟେକ ବର୍ଷ ଆଷାଢ଼ ଶୁକ୍ଳ ଦ୍ୱିତୀୟା ଦିବସରେ ରତ୍ନସିଂହାସନ ତ୍ୟାଗକରି ପହଣ୍ଡି ବିଜେରେ ଆସି ବଡ଼ଦାଣ୍ଡରେ ଉଭା ହୁଅନ୍ତି। ସେବକମାନଙ୍କ ଗହଣରେ ରଥାରୂଢ଼ ହେବା ପରେ, ଅନୁଷ୍ଠିତ ହେଉଥିବା ଅନେକ ନୀତି ମଧ୍ୟରେ ଛେରାପହଁରା ଅନ୍ୟତମ। ଏହି ଛେରାପହଁରା ସେବା ଶ୍ରୀଜଗନ୍ନାଥଙ୍କର ଆଦ୍ୟସେବକ ଗଜପତି ମହାରାଜାଙ୍କ ଦ୍ୱାରା ନିର୍ବାହ ହୁଏ। ଜଗତରେ କର୍ମବାଦର ମହନୀୟତାକୁ ଛେରାପହଁରା ମାଧ୍ୟମରେ ପ୍ରତିଷ୍ଠିତ କରାଯାଇଛି।

ପ୍ରଭୁଙ୍କର ସେବା ନରପତିମାନେ ବହୁବିଧ ଉପାୟରେ କରିଥାନ୍ତି। ଗଜପତିଙ୍କର ନିର୍ଦ୍ଦେଶରେ ସମସ୍ତ ସେବା ଶ୍ରୀମନ୍ଦିରରେ ହୋଇଥାଏ। ସେ ହେଉଛନ୍ତି ଶ୍ରୀଜଗନ୍ନାଥ ମନ୍ଦିର ପରିଚାଳନା ସମିତିର ଅଧ୍ୟକ୍ଷ। ଛତିଶା ନିଯୋଗ ଗଜପତିଙ୍କର ଆଜ୍ଞାବଳରେ ଶ୍ରୀଜଗନ୍ନାଥଙ୍କର ସମସ୍ତ ପୂଜା ଓ ନୀତି ନିର୍ବାହ କରିଥାଆନ୍ତି। ଆଦ୍ୟ ସେବକ ରୂପେ କେତେକ ସେବା ସେ ନିଜେ ନିର୍ବାହ କରିଥାଆନ୍ତି। ସେଗୁଡ଼ିକ ମଧ୍ୟରୁ ଛେରାପହଁରା ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ। ଗଜପତି ମହାରାଜ ନିଜ ହସ୍ତରେ ସ୍ୱର୍ଣ୍ଣବେଷ୍ଟ ଖଚିତ ଖଡ଼ିକାରେ ରଥର ଚତୁଃପାର୍ଶ୍ୱ ଓଳାନ୍ତି ଓ ରଥକୁ ଚନ୍ଦନସିକ୍ତ କରି ମହାପ୍ରଭୁଙ୍କର ଯାତ୍ରାକୁ ଅଧିକ ସୁଶୋଭିତ ଓ ସୁଗନ୍ଧିତ କରନ୍ତି।



ଛେରାପହଁରା ଶବ୍ଦ ସଂସ୍କୃତ ଭାଷାର ସମାର୍ଜନରୁ ଅପଭ୍ରଂଶରେ ସୃଷ୍ଟ ବୋଲି ପଣ୍ଡିତମାନେ ମତବ୍ୟକ୍ତ କରନ୍ତି। ଏହାର ପୌରାଣିକ ପ୍ରସିଦ୍ଧି ରହିଛି। ସଂସ୍କୃତ ଭାଗବତରେ ବର୍ଣ୍ଣିତ ହୋଇଛି ଯେ ସତ୍ୟ ଯୁଗରେ ସୂର୍ଯ୍ୟବଂଶୀ ରାଜା ଅମ୍ବରୀଷ ସ୍ୱହସ୍ତରେ ହରିଙ୍କ ମନ୍ଦିରର ମାର୍ଜନାରେ ବ୍ରତୀ ଥିଲେ। ଭାଗବତ ବାଣୀ ଅନୁସାରେ,



ତବୈ ମନଃ କୃଷ୍ଣ ପଦାର ବିନ୍ଦୟୌ
ବାଚାଂସି ବୈକୁଣ୍ଠ ଗୁଣାନୁବର୍ତ୍ତନେ
କରୌ ହରେଃ ମନ୍ଦିର ମାର୍ଜନାଦିଷୁ
ଶ୍ରୁତିଂ ଚକରାଚ୍ୟୁତ ତଥୋଦୟେ ।

ଅର୍ଥାତ୍, ମୋର ମନ କୃଷ୍ଣଙ୍କର ପଦାରବିନ୍ଦରେ ରହୁ। ମୋର ବାଣୀ ବୈକୁଣ୍ଠର ଗୁଣଗାନ କରୁ, ହସ୍ତ ଯୁଗଳ ହରିଙ୍କ ମନ୍ଦିର ମାର୍ଜନାରେ ରତ ହେଉ ଓ ମୋର ଚିନ୍ତନ ଅଚ୍ୟୁତଙ୍କର ଉଦୟରେ ବ୍ରତୀ ହେଉ। ସୂର୍ଯ୍ୟବଂଶୀ ରାଜା ଅମ୍ବରୀଷଙ୍କର ପଦାଙ୍କ ଅନୁସରଣ ପୂର୍ବକ ଉତ୍କଳ ସୂର୍ଯ୍ୟବଂଶୀ ଗଜପତିମାନେ ନିଜ ହସ୍ତରେ ରଥ ରୂପକ ମନ୍ଦିର ତ୍ରୟରେ ପୁଷ୍ପ, ଚନ୍ଦନ ପ୍ରଦାନ ପୂର୍ବକ ମାର୍ଜନା କରୁଛନ୍ତି।

ଇନ୍ଦ୍ରଦ୍ୟୁମ୍ନ ଶ୍ରୀମନ୍ଦିର ନିର୍ମାଣ କରି ବ୍ରହ୍ମାଙ୍କ ଦ୍ୱାରା ମନ୍ଦିର ପ୍ରତିଷ୍ଠା ସହ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ପ୍ରତିଷ୍ଠା କରିଥିବାର ପୌରାଣିକ ଗାଥା ରହିଛି। ମାତ୍ର ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ଖଡ଼ିକା ଝାଡୁ ଧରି ରଥର ଚତୁଃପାର୍ଶ୍ୱ ଓଳାଇବାର ରଚନା ମିଳିନାହିଁ। ତେଣୁ ଉତ୍କଳ ଇତିହାସରେ ରଥଯାତ୍ରା ଆରମ୍ଭ ହେବା ଦିନରୁ ଛେରାପହଁରା ସେବା ହୋଇନାହିଁ। ବର୍ତ୍ତମାନର ଜଗନ୍ନାଥ ମନ୍ଦିର ନିର୍ମାଣ ହେବା ପରେ ରଥଯାତ୍ରା ପରବର୍ତ୍ତୀ ଗଜପତିଙ୍କ ଦ୍ୱାରା ଆରମ୍ଭ ହୋଇଥିଲେ ମଧ୍ୟ ପ୍ରଥମ ରଥଯାତ୍ରାରୁ ଛେରାପହଁରା ସେବା ହୋଇନଥିଲା। ରାଜା ପୁରୁଷୋତ୍ତମ ଦେବଙ୍କ ଶାସନକାଳରେ ଏହି ସେବା ଆରମ୍ଭ ହୋଇଥିଲା। ଉତ୍କଳର ଇତିହାସକୁ ଅନୁଧ୍ୟାନ କଲେ ଜଣାଯାଏ ଯେ, ରାଜା କପିଳେନ୍ଦ୍ର ଦେବଙ୍କ ମୃତ୍ୟୁ ପରେ ତାଙ୍କର ପୁତ୍ର ହମୀର ରାଜା ହେବା କଥା। ମାତ୍ର ଶ୍ରୀଜଗନ୍ନାଥଙ୍କ ପ୍ରଭାବଶାଳୀ ସେବକମାନେ ରାଜା କପିଳେନ୍ଦ୍ର ଦେବଙ୍କର 'ଫୁଲ ବିବାହୀ' ବା ଭୋଗିନୀ (ପୋଇଲି) ପୁତ୍ର ପୁରିଆ (ପୁରୁଷୋତ୍ତମ)ଙ୍କ କପିଳେନ୍ଦ୍ର ଦେବଙ୍କର ଉତ୍ତରାଧିକାରୀ ଭାବରେ ରାଜ ସିଂହାସନରେ ଅଭିଷିକ୍ତ କରିଥିଲେ। ଶ୍ରୀଜଗନ୍ନାଥଙ୍କ ସେବକମାନଙ୍କର ପରାମର୍ଶ ଅନୁସାରେ ମହାପ୍ରଭୁଙ୍କ ସମ୍ମୁଖରେ 'ଛେରାପହଁରା' ନାମକ ସ୍ୱତନ୍ତ୍ର ନୂତନ ସେବାର ପ୍ରାରମ୍ଭ ହୋଇଥିଲା।

ଏହି ବିଷୟରେ ସ୍ୱତନ୍ତ୍ର ଭାବେ ଶ୍ରୀମନ୍ଦିରର ମାଦଳାପାଞ୍ଜିରେ ଉଲ୍ଲେଖ ରହିଛି। ମାଦଳାପାଞ୍ଜିକାରଙ୍କ ଭାଷାରେ, ତୁ ଜଗନ୍ନାଥଙ୍କର ବଡ଼ ସେବକ। ତୁ ବଡ଼ ସେବା କିଛି କର ନହେଲେ ତୋ ବଡ଼ ସେବକପଣ କିଛି ରହି ନପାରେ। ବଡ଼ ସେବା କ'ଣ? ସମାର୍ଜନା ଚାଳନା ହିଁ ବଡ଼ ସେବା। ରଥଯାତ୍ରା ବେଳେ ରଥ ଉପରେ ସମାର୍ଜନୀ ଚାଳନାରେ ହିଁ ତୋର ବଡ଼ପଣ ରହିବ।

ସେବକମାନଙ୍କର ପରାମର୍ଶକୁ ଗୁରୁତ୍ୱର ସହ ଗ୍ରହଣ କରି ଗଜପତି ପୁରୁଷୋତ୍ତମ ଦେବ ନିଜ ହସ୍ତରେ ଝାଡୁଧରି ସମସ୍ତ ରଥ ଗର୍ଭର ଚତୁଃପାର୍ଶ୍ୱସ୍ଥ ରଥଭୂମି ବା ରଥପୀଠକୁ ଓଳାଇ ତାହାକୁ ପରିଷ୍କାର ଓ ପବିତ୍ର କରନ୍ତି। ସମସ୍ତ ସେବକ ଓ ଭକ୍ତମାନଙ୍କ ପାଇଁ ରଥ ଉପରେ ଗଜପତି ମହାରାଜଙ୍କର ଏହି ଛେରାପହଁରା ଅତୀବ ଆକର୍ଷଣର କେନ୍ଦ୍ର ହୋଇଥାଏ। ଛେରାପହଁରାକୁ ଆଧାର କରି ଅତି ମନୋରମ ବିଷୟବସ୍ତୁ ଓଡ଼ିଆ ସାହିତ୍ୟରେ ଆଦୃତ ହୋଇଛି। ବହୁ କବି, ଗାଳ୍ପିକ, ନାଟ୍ୟକାର ଓ ପ୍ରାବନ୍ଧିକ ନିଜ ରଚନାରେ ଛେରାପହଁରାକୁ ଆଧାର କରି ସାହିତ୍ୟକୃତୀ ସୃଷ୍ଟି କରିଛନ୍ତି। ଇତିହାସ ଅନୁସାରେ ଗଜପତି ପୁରୁଷୋତ୍ତମ ଦେବ କାଞ୍ଚିର ରାଜା ଶାଳ୍ୱ ନରସିଂହ ଦେବଙ୍କ ସୁନ୍ଦରୀ ଓ ଗୁଣବତୀ କନ୍ୟା ରୂପାମ୍ବିକାକୁ ବିବାହ କରିବାକୁ ଚାହୁଁଥିଲେ। ମାତ୍ର କାଞ୍ଚିରାଜ ରଥଯାତ୍ରା ସମୟରେ ଗଜପତି ରଥ ଉପରେ ଝାଡୁ ଧରି ଚଣ୍ଡାଳର କାର୍ଯ୍ୟ କରୁଥିବାରୁ, ତାଙ୍କ ସହ ନିଜ କନ୍ୟାର ବିବାହ କରିବାକୁ ରାଜି ହେଲେ ନାହିଁ। ଏଭଳି ଅସମ୍ମତିକୁ ଗଜପତି ପୁରୁଷୋତ୍ତମ ଦେବ ଅପମାନ ଭାବି, କାଞ୍ଚି ଉପରେ ଆକ୍ରମଣ କରିଥିଲେ। ପ୍ରଥମ ଯୁଦ୍ଧ ସମୟରେ ଶ୍ରୀଗୁଣ୍ଡିଚା ଯାତ୍ରା ପଡ଼ିବାରୁ, ଗଜପତିଙ୍କୁ ଯୁଦ୍ଧକ୍ଷେତ୍ର ଛାଡ଼ି ପୁରୀ ଫେରିବାକୁ ହେଲା। ଫଳରେ ଯୁଦ୍ଧରେ ଉପଯୁକ୍ତ ଅଧିନାୟକତ୍ୱ ଅଭାବରୁ ଉତ୍କଳ ସେନା ପରାସ୍ତ ହେଲେ। ପରେ ଗଜପତି ଶ୍ରୀଜଗନ୍ନାଥ ଓ ବଳଭଦ୍ରଙ୍କ ସମ୍ମୁଖରେ ନିଉଛାଳି ହୋଇ, ଯୁଦ୍ଧରେ ନିଜର ସମ୍ମାନ ରକ୍ଷା ନିମିତ୍ତ ପ୍ରାର୍ଥନା କଲେ। କିମ୍ବଦନ୍ତୀ ଅନୁସାରେ ସ୍ୱୟଂ ଜଗନ୍ନାଥ ଓ ବଳଭଦ୍ର ପାଇକ ବେଶରେ ଧଳା କଳା ଘୋଡ଼ା ଚଢ଼ି ଯୁଦ୍ଧଭୂମିରେ ଉପନୀତ ହୋଇ ଅଂଶ ଗ୍ରହଣ କରିଥିଲେ। ଯୁଦ୍ଧରେ ଗଜପତି ପୁରୁଷୋତ୍ତମ ଦେବଙ୍କର ଜୟ ହେଲା ଓ ବିଜୟ ସ୍ମାରକୀ ରୂପେ



ସେ ରାଜଜେମା ରୂପାମ୍ବିକା ଓ କାଞ୍ଚି ରାଜ୍ୟର ଦେବତା ଭଣ୍ଡଗଣେଶ ମୂର୍ତ୍ତିକୁ ନେଇ ପ୍ରତ୍ୟାବର୍ତ୍ତନ କରିଥିଲେ । କାଞ୍ଚିରାଜା ଉତ୍କଳର ଗଜପତିଙ୍କୁ ଚଣ୍ଡାଳ କହି ନ୍ୟୂନ କରିଥିବାରୁ, ଗଜପତି ମନ୍ତ୍ରୀଙ୍କୁ ରୂପାମ୍ବିକାର ବିବାହ ଏକ ଚଣ୍ଡାଳ ସହ କରିବାକୁ ଆଦେଶ ଦେଇଥିଲେ । କଥିତ ଅଛି, ଶ୍ରୀଗୁଣ୍ଡିଚା କାଳରେ ରଥରୁ ଛେରାପହଁରା ସାରି ଗଜପତି ଓହ୍ଲାଇବା ବେଳେ, ମନ୍ତ୍ରୀ ରାଜଜେମା ରୂପାମ୍ବିକାଙ୍କୁ ଗ୍ରହଣ କରିବାକୁ ନିବେଦନ କଲେ । ତାଙ୍କର ଯୁକ୍ତି ଥିଲା ଗଜପତି ଚଣ୍ଡାଳ କାର୍ଯ୍ୟ କରି ଫେରିଥିବାରୁ ତାଙ୍କଠାରୁ ଅଧିକ ଉତ୍ତମ ଚଣ୍ଡାଳ ପାଇବା ସମ୍ଭବ ନୁହେଁ । ଗଜପତି ପୁରୁଷୋତ୍ତମ ଦେବ ମନ୍ତ୍ରୀଙ୍କର ବୁଦ୍ଧିରେ ସନ୍ତୋଷ ଲାଭ କରି ରୂପାମ୍ବିକାଙ୍କୁ ରାଣୀ ରୂପେ ଗ୍ରହଣ କରି ତାଙ୍କର ନାମ ପଦ୍ମାବତୀ ରଖିଥିଲେ । ଉପରୋକ୍ତ କାଞ୍ଚି ଅଭିଯାନ ତଥ୍ୟ ପ୍ରତ୍ୟେକ ଓଡ଼ିଆ ହୃଦୟରେ ଗଜପତିଙ୍କ ଗୌରବ ଗାଥା ରୂପେ ରହିଆସିଛି । କାଞ୍ଚିକୁ ଘୋଡ଼ା ଦ୍ୱାରା ଯାଉଥିବା ସମୟରେ ଶୋଷ ହେବାରୁ ରାସ୍ତାରେ ମାଣିକ ଗଉଡୁଣୀଠାରୁ ଦହି ପିଇ ଶ୍ରୀଜଗନ୍ନାଥ ଓ ଶ୍ରୀବଳଭଦ୍ର ନିଜ ପାଖରେ ପଇସା ନ ଥିବାରୁ, ନିଜ ହାତ ଅଙ୍ଗୁଳିରୁ ରତ୍ନ ମୁଦି ଦେଇ କହିଥିଲେ ଯେ, ପଛରେ ଆସୁଥିବା ଗଜପତିଙ୍କୁ ରତ୍ନ ମୁଦି ଦେଖାଇ ପଇସା ନେଇଯିବ । ପରେ ଗଜପତି ମାଣିକ ଗଉଡୁଣୀ ହାତରେ ରତ୍ନମୁଦ୍ରିକା ଦେଖି, ସ୍ୱୟଂ ଶ୍ରୀଜଗନ୍ନାଥ ଓ ଶ୍ରୀବଳଭଦ୍ର ଯୁଦ୍ଧ କରିବାକୁ ଯାଇଛନ୍ତି ବୋଲି ଜାଣି ଅଧୀର ହୋଇଯାଇଥିଲେ ଓ ଖୁସିରେ ମାଣିକ ଗଉଡୁଣୀ ନାମରେ ମାଣିକ ପାଟଣା ବୋଲି ବଡ଼ ଗ୍ରାମ ବସାଇଥିଲେ । ଛେରାପହଁରା ରୀତି ସହ ଏହି ତଥ୍ୟ ପ୍ରତ୍ୟେକ ଉତ୍କଳୀୟଙ୍କ ଅତି ପ୍ରିୟ । କାଞ୍ଚିରୁ ଆଣିଥିବା 'ଭଣ୍ଡ ଗଣେଶ' ମୂର୍ତ୍ତି ଶ୍ରୀମନ୍ଦିରରେ ଅଦ୍ୟାବଧି ରହିଛନ୍ତି ।

ଛେରାପହଁରା ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଉପାସନା ପରମ୍ପରାରେ 'ରାଜନୀତି' ବିଧିର ଏକ ଅଂଶ । ଏହି ରାଜନୀତି ହିଁ ଗଜପତି ମହାରାଜଙ୍କ ମହାପ୍ରଭୁଙ୍କ ଉଦ୍ଦେଶ୍ୟରେ ବ୍ୟକ୍ତିଗତ ସେବା । ଏହି ସେବା ନିର୍ବାହରେ ଗଜପତିଙ୍କୁ ଅନ୍ୟାନ୍ୟ ସେବକମାନେ ସହାୟତା କରିଥାଆନ୍ତି । ପ୍ରତ୍ୟେକଦିନ ମହାପ୍ରଭୁଙ୍କର ସକାଳ ବେଶ ବଢ଼ିବା ପରେ ଖୁଣ୍ଟିଆ ସେବକ ବେତ ଧରି 'ମଣିମା', 'ମଣିମା' ଡାକ ଦିଅନ୍ତି ଓ ଅଖଣ୍ଡମେକାପ ବଇଠା ଧରି ଠିଆ ହୋଇଥାଆନ୍ତି । ଖୁଣ୍ଟିଆ ସେବକ ଶ୍ରୀଜୀଉଙ୍କ ଚାରିବାଡ଼ରେ ଧବଳ ପୁଷ୍ପ ଅର୍ପଣ କରନ୍ତି । ସେତିକିବେଳେ ଗଜପତି ମହାରାଜା ମହାପ୍ରଭୁଙ୍କ ଉଦ୍ଦେଶ୍ୟରେ କର୍ପୂର ଆଳତି ଓ ଆଲଟଚାମର ସେବା କରନ୍ତି । ଏହାପରେ ଗଜପତି ରତ୍ନସିଂହାସନ ଚତୁଃପାର୍ଶ୍ୱରେ ସମାର୍ଜନ କରନ୍ତି । ରାଜାଙ୍କ ଦ୍ୱାରା ସମାହିତ ଏହି ନୀତିକୁ 'ରାଜାନୀତି' ବୋଲି କୁହାଯାଉଥିବା ବେଳେ ପରେ ତାହା ଲୋକ ମୁଖରେ 'ରାଜନୀତି' ହୋଇଛି ।

ଗଜପତିଙ୍କ ଦ୍ୱାରା ପ୍ରତ୍ୟହ ସେବା ଆଜିକାଲି କରାଯାଉନାହିଁ । ତାଙ୍କ ଦ୍ୱାରା ନିୟୋଜିତ ସେବକମାନେ ସେହି କାର୍ଯ୍ୟ ସମାହିତ କରୁଛନ୍ତି । ମାତ୍ର ରଥଯାତ୍ରାରେ ସେହି ନୀତି ପ୍ରତ୍ୟେକବର୍ଷ ଗଜପତିଙ୍କ ଦ୍ୱାରା ସମାହିତ ହେଉଛି । ରାଜନୀତିର ଦୁଇଟି ବିଭାଗ ରହିଛି, ଯଥା– ବନ୍ଦାପନା ଓ ଛେରାପହଁରା । ବନ୍ଦାପନା ନୀତିରେ ଗଜପତି ମହାରଜା ଆଦ୍ୟସେବକ ଭାବେ ଜୀଉମାନଙ୍କୁ ବସ୍ତ୍ର (ଶୁକ୍ଳ ଉତ୍ତରୀୟ) ଲାଗିକରି ଶୁକ୍ଳପୁଷ୍ପରେ ମଣ୍ଡନ କରନ୍ତି । ଶୁକ୍ଳ ହିଁ ଶାନ୍ତିର ପ୍ରତୀକ, ପବିତ୍ରତାର ବାହକ । ବଡ଼ବାଡ଼ ବଳଭଦ୍ରଙ୍କ ବର୍ଣ୍ଣ ହିଁ ଶ୍ୱେତ । ବସ୍ତ୍ର ଓ ପୁଷ୍ପ ପ୍ରଦାନ ପରେ ଗଜପତି ସୁବର୍ଣ୍ଣ ବେଣ୍ଟ ଦାନିରେ କର୍ପୂର ଆଳତି ଓ ସୁବର୍ଣ୍ଣ ବେଣ୍ଟ ଚାମର, ଆଲଟରେ ସେବା କରିସାରିବା ପରେ ରାଜନୀତିର ଶ୍ରେଷ୍ଠ କ୍ରିୟା ରୂପେ ରଥ ଗର୍ଭରେ ସାଷ୍ଟାଙ୍ଗ ପ୍ରଣାମ କରିବାର ବିଧି ରହିଛି ।

ରାଜନୀତିର ଦ୍ୱିତୀୟ ପର୍ଯ୍ୟାୟରେ ଛେରାପହଁରା ରଥଭୂମିରେ ସମାହିତ ହୁଏ । ଛେରା ଅର୍ଥ ଗୋଳାଯାଇଥିବା ଚନ୍ଦନ । ସେହି ଚନ୍ଦନକୁ ରଥଭୂମିରେ ସିଞ୍ଚନ କରି ସୁବର୍ଣ୍ଣ ବେଣ୍ଟଯୁକ୍ତ ଝାଡୁରେ ଓଳାଯାଇ ପରିଷ୍କାର ଓ ପବିତ୍ର କରାଯାଏ । ମୁଖ୍ୟତଃ ଛଅ ପ୍ରକାର ସେବକ ଛେରାପହଁରା କାର୍ଯ୍ୟରେ ଗଜପତିଙ୍କୁ ସାହାଯ୍ୟ କରିଥାଆନ୍ତି । ପ୍ରଥମତଃ କାହାଳିଆ ଛେରାପହଁରା ସେବାର ପ୍ରତ୍ୟେକ ପର୍ଯ୍ୟାୟର ଆରମ୍ଭ ଓ ଶେଷରେ କାହାଳୀ ବଜାନ୍ତି । ଦ୍ୱିତୀୟତଃ ରାଜଗୁରୁ ଛେରାପହଁରା ସେବାରେ ବ୍ୟବହୃତ ପ୍ରତ୍ୟେକ ଉପଚାର ଓ ଉପକରଣକୁ ମନ୍ତ୍ରପାଠ ଦ୍ୱାରା ସଂସ୍କାର କରି ଗଜପତିଙ୍କ ହସ୍ତକୁ ଦେଇଥାଆନ୍ତି ।



ତୃତୀୟତଃ ଗରାବଡୁ ସେବକ ଗଜପତି ପ୍ରତ୍ୟେକ ଦ୍ରବ୍ୟ ଧରିବା ଆଗରୁ ଓ ପରେ ପ୍ରତିଥର ହସ୍ତ ପ୍ରକ୍ଷାଳନ କରିଥାଆନ୍ତି। ଚତୁର୍ଥତଃ ଭଣ୍ଡାର ମେକାପ ସେବକ ଛେରାପହଁରାରେ ଲାଗୁଥିବା ସକଳ ପାତ୍ର ତଥା ସୁନାଝରି, ସୁନାର କର୍ପୂରଦାନୀ, ରୂପା ପିଙ୍ଗଣ, ତମ୍ବାପତ୍ର, ସୁନା ବେଣ୍ଟ ଥିବା ସମାର୍ଜନୀ (ଝାଡୁ), ସୁନା ଦଣ୍ଡଥିବା ଆଲଟ, ଚାମରକୁ ରତ୍ନଭଣ୍ଡାରରୁ ସଂଗ୍ରହ କରି ନୀତି ସମୟରେ ଯୋଗାଇ ଥାଆନ୍ତି ଓ ପୁଣି ରତ୍ନଭଣ୍ଡାରରେ ନେଇ ଯତ୍ନରେ ରଖନ୍ତି। ପଞ୍ଚମ ସେବକ ଭାବେ ଦୟଣା ମାଳି ନୀତିରେ ବ୍ୟବହାର ହେଉଥିବା ଫୁଲମାଳ ଓ ଧଳାଫୁଲ ଯୋଗାଇ ଥାଆନ୍ତି। ଷଷ୍ଠତଃ ଘଟୁଆରୀ ସେବକ ଗୋଳା ଚନ୍ଦନ ଓ ଘୋରା ଚନ୍ଦନ ଯୋଗାଇ ଥାଆନ୍ତି।

ଇତିହାସରୁ ଜଣାଯାଏ ଯେ, ପୂର୍ବେ ଗଜପତିମାନେ ସମଗ୍ର ବଡ଼ଦାଣ୍ଡକୁ ଓଳାଉ ଥିଲେ ଓ ପରେ ତାହା ରାଜନଅରରୁ ସିଂହଦ୍ୱାର ପର୍ଯ୍ୟନ୍ତ ସୀମିତ ଥିଲା। ଏବେ କେବଳ ରଥଉପରେ ରଥ ଗର୍ଭ ଓ ରଥଭୂମିରେ ସମାର୍ଜନ କାର୍ଯ୍ୟ ଗଜପତିଙ୍କ ଦ୍ୱାରା ସମାହିତ ହେଉଅଛି। ବର୍ତ୍ତମାନ ଯୁଗରେ ବୈଦ୍ୟୁତିକ ଗଣମାଧ୍ୟମ ଦ୍ୱାରା ଘରେ ବସି ସାରା ପୃଥିବୀର ଲୋକ ପହଣ୍ଡି ବିଜେ ଓ ଛେରାପହଁରାକୁ ଦେଖିବାର ସୁଯୋଗ ପାଉଥିବାରୁ, ସେବାକୁ ଅଧିକ ଆକର୍ଷଣୀୟ କରାଯାଉଛି। ବିଶେଷତଃ ଗଜପତି ମହାରାଜାଙ୍କ ତାମ୍ରଯାନ୍ ବା ପାଲିଙ୍କିରେ ରାଜନଅରରୁ ରଥ ପର୍ଯ୍ୟନ୍ତ ଶୋଭାଯାତ୍ରାରେ ଆଗମନ, ତାଙ୍କର ସ୍ୱତନ୍ତ୍ର ବେଶ, ରାଜମୁକୁଟ (ପରଚୂଳ), ଧଳା ଚପକନ, ଚୁଡ଼ିଦାର, ଲୋହିତ ବର୍ଣ୍ଣର ଉତ୍ତରୀୟ, ନୀଳ କମର ପଟି, ଲୋହିତ ପଇତା ପଟି ଓ ଅଣ୍ଟାରେ ଖଣ୍ଡା ଝୁଲାଇବାର ପରିପାଟୀ ସମସ୍ତଙ୍କ ଦୃଷ୍ଟିକୁ ଆକର୍ଷଣ କରେ। ସେହି ବର୍ଣ୍ଣାଢ଼୍ୟ ପରିବେଶରେ ବଡ଼ଠାକୁରଙ୍କ ଐଶ୍ୱର୍ଯ୍ୟ ଓ ମାଧୁର୍ଯ୍ୟ ଲୀଳା ସହିତ ଗଜପତି ମହାରାଜାଙ୍କ ରାଜକୀୟ ସମ୍ଭାର ଓ ସମର୍ପଣଭାବ ବିଶେଷ ଭାବରେ ପ୍ରତିଭାତ ହୋଇଥାଏ। ଛେରାପହଁରା କର୍ମବାଦର ସର୍ବୋତ୍ତମ ପ୍ରତୀକ। ଶ୍ରୀଶ୍ରୀ ବୀରଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟୋତ୍କଳ ବୀରାଧିବୀରବର ଭୂତ ଗୌରବ ସାଧୁ ଶାସନୋତ୍ତୀର୍ଣ୍ଣ, ରାଉତରାଜ ଅତୁଳବଳ ପରାକ୍ରମ ସଂଗ୍ରାମ ସହସ୍ରବାହୁ, କ୍ଷତ୍ରିୟକୁଳ ଧୂମକେତୁ, ମହାରାଜାଧିରାଜ ନାମରେ ସମ୍ବୋଧିତ ଗଜପତି ମହାରାଜା ସ୍ୱହସ୍ତରେ ଝାଡୁଧରି ରଥ ଚାରିପଟରେ ଓଳାଇବା, ପ୍ରମାଣ କରେ ଯେ ଉତ୍କଳର ଗଜପତି ଶ୍ରୀଜଗନ୍ନାଥଙ୍କ କୃପା ନିମିତ୍ତ ରାଜଦଣ୍ଡ ଛାଡ଼ି ଝାଡୁ ଧରିପାରନ୍ତି। ସେ ରାଜା ଯୋଗୁଁ କେବଳ ଆଦ୍ୟସେବକ ନୁହଁନ୍ତି, ତାଙ୍କର ଅପୂର୍ବ ସମର୍ପଣ ଭାବ ଯୋଗୁଁ ସେ ଶ୍ରେଷ୍ଠ ସେବକ ପଦ ଲାଭ କରିଛନ୍ତି। କର୍ମବାଦର ମନସ୍ତତ୍ତ୍ୱ ଦୃଷ୍ଟିରୁ, ଜଗତର କଲ୍ୟାଣ ନିମିତ୍ତ ସମାହିତ କୌଣସି କାର୍ଯ୍ୟ ନୀଚ ନୁହେଁ। ସମାଜରେ ରାସ୍ତା ଓଳାଇବା କର୍ମୀମାନେ ନିମ୍ନ ଧରଣର କର୍ମଚାରୀ ବା ଚଣ୍ଡାଳ (ଅସ୍ପୃଶ୍ୟ) ରୂପେ ପରିଗଣିତ ହୋଇଥାଆନ୍ତି। ମାତ୍ର ଶ୍ରୀକ୍ଷେତ୍ରରେ ମହାପ୍ରଭୁଙ୍କ ଶ୍ରେଷ୍ଠ ଘୋଷଯାତ୍ରାରେ ଗଜପତି ମହାରାଜା ସେହି କାର୍ଯ୍ୟ ସମ୍ପାଦନ କରି ତାହାର ଗୁରୁତ୍ୱ ପ୍ରତିଷ୍ଠା କରିଛନ୍ତି। ତେଣୁ ଛେରାପହଁରା ଜଗତର ଅନ୍ୟାନ୍ୟ କାର୍ଯ୍ୟ ଭଳି ସମାଜର ମଙ୍ଗଳ ନିମିତ୍ତ ଅଭିପ୍ରେତ। ଏହି କାର୍ଯ୍ୟରେ ଜଗନ୍ନାଥ ସଂସ୍କୃତିର ଶୌର୍ଯ୍ୟ ଓ ସମର୍ପଣ ଭାବର ସମନ୍ୱୟ ପ୍ରତିଷ୍ଠିତ ହୋଇଛି।

ଗଣତନ୍ତ୍ରରେ ବିଭିନ୍ନ ଦାୟିତ୍ୱର ସୁବଣ୍ଟନ ଭାବ ଛେରାପହଁରା ବିଧିରୁ ପ୍ରମାଣିତ ହୋଇଥାଏ। ଗଜପତି ଛେରାପହଁରାକୁ କୌଣସି କାରଣରୁ ଆସି ନପାରିଲେ, ସେହି କାର୍ଯ୍ୟ ବନ୍ଦ ହୁଏ ନାହିଁ। ଗଜପତିଙ୍କ ଅନୁପସ୍ଥିତିରେ ମୁଦିରଥ (ମୁଦିରସ୍ତ/ମୁଦ୍ରାହସ୍ତ) ସେହି କାର୍ଯ୍ୟ ସମ୍ପାଦନ କରିଥାଆନ୍ତି। ଅର୍ଥାତ ଯେକୌଣସି କର୍ମର ଗୁରୁତ୍ୱ ରହିଛି ଏବଂ ତାହା ସମାଜର ମଙ୍ଗଳ ନିମିତ୍ତ ସମାହିତ ହେବା ଉଚିତ। ଏ କ୍ଷେତ୍ରରେ ବ୍ୟକ୍ତି ନୁହେଁ ବରଂ କର୍ମ ହିଁ ବଡ଼। ଅନାସକ୍ତ ଭାବରେ କର୍ମକୁ ସେବା ଭାବି ନିର୍ବାହ କରିବା ନିମିତ୍ତ ଛେରାପହଁରା ସମଗ୍ର ବିଶ୍ୱକୁ ସନ୍ଦେଶ ପ୍ରଦାନ କରୁଛି। କେବଳ ଛେରାପହଁରା କାହିଁକି, ଜଗନ୍ନାଥଙ୍କ ସମସ୍ତ ରୀତିନୀତିରେ ଜଗତର କଲ୍ୟାଣ ଓ ସୁପରିଚାଳନା ନିମିତ୍ତ ବାର୍ତ୍ତା ପରିପୂର୍ଣ୍ଣ ହୋଇ ରହିଛି।

ଆତିଥ୍ୟ, ଏମ୍.ଆଇ.ଜି–୧–୨୨୭
ସତ୍ୟସାଇ ଏନ୍‌କ୍ଲେଭ୍, ଲେନ୍–୨୨
କୋଳଥିଆ, ଖଣ୍ଡଗିରି, ଭୁବନେଶ୍ୱର–୭୫୧୦୩୦





# ଓଡ଼ିଆ ଚଉତିଶା ସାହିତ୍ୟରେ ଶ୍ରୀଜଗନ୍ନାଥଙ୍କ ଗୁଣ୍ଡିଚା ଯାତ୍ରା

ଡକ୍ଟର ହରିଶ୍ଚନ୍ଦ୍ର ବେହେରା

'ଚଉତିଶା' ପ୍ରାଚୀନ ଓଡ଼ିଆ ଗୀତିକବିତାର ଏକ ଲୋକପ୍ରିୟ ବିଭବ । କଳନାଦିନୀ ପ୍ରାଚୀନ ପଦାବଳୀ ସାହିତ୍ୟର ବିରାଟ ସ୍ରୋତସ୍ୱିନୀ ଭିତରୁ ସ୍ୱତନ୍ତ୍ର ଧାରା ନେଇ ଦର୍ଶକର ମନ ଓ ପ୍ରାଣକୁ ବିମୁଗ୍ଧ କରି ବହିଆସିଛି ବିଶାଳ ଚଉତିଶା ସାହିତ୍ୟ । ଓଡ଼ିଆ ଭାଷାର ୩୪ ଗୋଟି ବ୍ୟଂଜନ ବର୍ଣ୍ଣ ('କ' ଠାରୁ 'କ୍ଷ' ପର୍ଯ୍ୟନ୍ତ) ଆନୁକ୍ରମିକ ଆଦ୍ୟ ପଦନ୍ୟାସ ମାଧ୍ୟମରେ ରଚିତ ଚଉତିଶା ସାହିତ୍ୟର ଚିନ୍ତା ଓ ଚେତନାର ପରିସର ଏତେ ବିସ୍ତୃତ ଯେ ଭାବିଲେ ଆଶ୍ଚର୍ଯ୍ୟ ଲାଗେ, ତା' ଅପେକ୍ଷା ଅଧିକ ଆଶ୍ଚର୍ଯ୍ୟ ଲାଗେ ତା'ର ବୈଚିତ୍ର୍ୟ ବିମଣ୍ଡିତ ଆଙ୍ଗିକ ସୌନ୍ଦର୍ଯ୍ୟ । ଅବାରିତ ଭାବୋଚ୍ଛ୍ୱାସକୁ ଅକ୍ଷୁଣ୍ଣ ରଖି ଆମ ପ୍ରାଚୀନ ଓ ମଧ୍ୟଯୁଗୀୟ କବିଗଣ ପଦ ଭିତରେ ୩୪ଟି ବର୍ଣ୍ଣର ଯେପରି ପରୀକ୍ଷାନିରୀକ୍ଷା କରିଛନ୍ତି, ତା' ବାସ୍ତବରେ ପ୍ରଣିଧାନଯୋଗ୍ୟ । ଏ ପ୍ରବନ୍ଧରେ ବିଭିନ୍ନ ଚଉତିଶାରେ ଶ୍ରୀଜଗନ୍ନାଥଙ୍କର ଶ୍ରୀଗୁଣ୍ଡିଚା ଯାତ୍ରାର ବର୍ଣ୍ଣନା କିପରି ହୋଇଛି, ତାହା ଆଲୋଚିତ ହୋଇଛି ।

ରଥଯାତ୍ରା ସମୟର ଦୃଶ୍ୟକୁ ନେଇ ଆମର ପ୍ରାଚୀନ ଓ ମଧ୍ୟଯୁଗୀୟ କବିମାନେ ଅସଂଖ୍ୟ ଭଜନ, ଜଣାଣ, ଚଉପଦୀ, ଚଉତିଶା ରଚନା କରିଛନ୍ତି । କିଏ ପ୍ରତ୍ୟକ୍ଷ ଦୃଶ୍ୟକୁ ନେଇ ତ କିଏ ପରୋକ୍ଷରେ କଳ୍ପଚକ୍ଷୁରେ ଗୁଣ୍ଡିଚାଯାତ୍ରାର ମନୋରମ ଦୃଶ୍ୟକୁ ନେଇ ଚଉତିଶା ରଚନା କରିଛନ୍ତି । ସପ୍ତଦଶ ଶତାବ୍ଦୀର କବି 'ରସ କଲ୍ଲୋଳ' କାବ୍ୟର ସ୍ରଷ୍ଟା ଦୀନକୃଷ୍ଣ ଦାସ 'ଗୁଣ୍ଡିଚା ଭାବନା ଚଉତିଶା'ରେ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା କଳ୍ପନାଚକ୍ଷୁରେ ଦେଖି ବିଭୋର ହୋଇଛନ୍ତି –

କହ କହ ଆହେ ସଂଗାତ ସତେ ହେଁ
ଜୀବନରେ ଆମ୍ଭେ ଥିବା
କୋଟି ବ୍ରହ୍ମାଣ୍ଡନାଥର ଶ୍ରୀଗୁଣ୍ଡିଚା ଯାତ୍ରା
ଉତ୍ସବ ଦେଖିବା ସେ କୃପା କରିବେ ସତେ
କାମପାଳ ସୁଭଦ୍ରା ସହିତେ ସେ
କରିଛଇଁ ଭାଗ୍ୟ ଆମ୍ଭେ ଏତେ ସେ ।

କବିଙ୍କର କଳ୍ପନାଚକ୍ଷୁରେ ସେସମୟର ଗୋଟି ଗୋଟି ଦୃଶ୍ୟ ଭାସିଉଠିଛି । ଖେଳିଲା ସିଂହ ପ୍ରାୟେ ଶ୍ରୀଜଗନ୍ନାଥ ନୀଳଗିରି ଶିଖରରୁ ଧୀରେ ଧୀରେ ଆସୁଥିବେ, ନାନା ଲୀଳା ଲଗେଇ ଲକ୍ଷଲକ୍ଷ ଭକ୍ତଙ୍କର ମନୋରଂଜନ କରୁଥିବେ । ନନ୍ଦିଘୋଷ, ତାଳଧ୍ୱଜ, ଦେବଦଳନ ରଥ ଗଙ୍ଗାଯମୁନା ସରସ୍ୱତୀ ନଦୀ ପ୍ରାୟ ଶୋଭା ପାଉଥିବ । ଶ୍ରୀଜଗନ୍ନାଥ ପାପୀତପୀ ଭକ୍ତମାନଙ୍କୁ କରୁଣା କଟାକ୍ଷରେ ଅନେଇ ଦୁରିତ କ୍ଷୟ କରୁଥିବେ–

ଠାକୁରପଣ ମହିମା କେ କଳିବ ଚନ୍ଦନୁ ଶୀତଳ ହିଆ,
ଠା ଠିକ କରି ସବୁରି ମନ ଜାଣି
କେତେ ହେଁ କରନ୍ତି ଦୟା ସେ
ଠେଲାଠେଲିରେ ପଶି ଠାବେ ଠାବେ
ପାରୁଶରେ ମିଶି ସେ ।

ଅଶ୍ୱଗଜ ଯୋଚିତ ରଥକୁ ଦେଖିଲେ ମନେହେବ, କ୍ଷୀର ସମୁଦ୍ରରୁ ସଦ୍ୟସମ୍ଭୂତ ରତ୍ନରାଜି ଓ ଲକ୍ଷ୍ମୀପ୍ରଭାକୁ ଜିଣି ଏସବୁ ଅଧିକ ଦୀପ୍ତିମୟ ହୋଇ ଉଠିଛନ୍ତି । ପରଶମଣି ସ୍ପର୍ଶରେ ଯେପରି ଲୁହା ସୁନାରେ ପରିଣତ ହୋଇଯାଏ, ଅନୁରୂପ ଶ୍ରୀଜଗନ୍ନାଥଙ୍କ ଦର୍ଶନରେ ଭକ୍ତମାନଙ୍କର ସମସ୍ତ କଳୁଷ ନାଶ ଯାଇ ଦିବ୍ୟଚେତନା ସ୍ତରକୁ ଉତ୍ତୀର୍ଣ୍ଣ କରାଏ –

ନିଶ୍ଚେ ପରଶମଣି ଗୁଣ ପ୍ରମାଣ ଲୁହାକୁ କରଇ ସୁନା
ନୀଳାଦ୍ରି ମଣ୍ଡନ ଦର୍ଶନ ପରଶ ତହିଁକି ଅଧିକ ସିନା ସେ

ନାନା ଜୀବଙ୍କ ହିତେ
ନିରାକାର ସାକାରର ମତେ ସେ
ନିତ୍ୟ ବିହରେ ନୀଳପର୍ବତେ ସେ
ନାନାଯାତ୍ରା ହିଁ ସେହି ନିମନ୍ତେ ସେ ।

ଶ୍ରୀଜଗନ୍ନାଥ ରଙ୍ଗ ଅଧରରେ ମନ୍ଦମନ୍ଦ ହସି ଆଲଟ ପଙ୍ଖା ଧରି ଚାଲୁଥିବା ସେବକଙ୍କ ଗହଣରେ ଆଗେଇ ଚାଲିଥିବେ । ଲଲାଟପଟରେ ସ୍ୱର୍ଣ୍ଣଚିତା, କର୍ପୂର ଗୋରଚନା ବୋଳିତ ଭ୍ରୂଲତା, କଣ୍ଠରେ କଉସ୍ତୁଭ ମଣି, କର୍ଣ୍ଣରେ କୁଣ୍ଡଳ କେତେ ମନଲୋଭା ଦିଶୁଥିବ । ସାରଥି ଅଶ୍ୱକୁ ଘଉଡ଼ାଇ ଉଚ୍ଚରେ ଡାକ ଛାଡ଼ିବାର ଦୃଶ୍ୟର ବର୍ଣ୍ଣନା କେତେ ପ୍ରାଣସ୍ପର୍ଶୀ ଲକ୍ଷ୍ୟ କରିବା କଥା –

ହା ହା ହି ହି କରି ଅଶ୍ୱକୁ ଆବୋରି ସାରଥି ଉଚ୍ଚେ ଡାକିବା
ହସ୍ତକୁ ହଲାଇ ବିକଟାଳ ହୋଇ ବକ୍ରଗୀତ ଉକୁଟିବା ସେ
ହରିଧ୍ୱନି ଛାଡ଼ିବା
ହାତେ ହାତେ ଦଉଡ଼ି ଭିଡ଼ିବା ସେ
ହରଷରେ କର ଯୋଡ଼ିବା ସେ
ହସ ଶ୍ରୀମୁଖେ ନେତ୍ର ପଡ଼ିବା ସେ ।

ଦୀନକୃଷ୍ଣଙ୍କ ଅନ୍ୟ ଏକ ଚଉତିଶା 'ଗୁଣ୍ଡିଚାଯାତ୍ରା ଓଲଟ ଚଉତିଶା' (ଉତ୍କଳ ବିଶ୍ୱବିଦ୍ୟାଳୟ ତାଳପତ୍ର ପୋଥି ବିଭାଗରୁ ସଂଗୃହୀତ) 'କ୍ଷ'ଠାରୁ ଆରମ୍ଭ କରି 'କ' ପର୍ଯ୍ୟନ୍ତ ୩୪ଟି ବ୍ୟଞ୍ଜନ ବର୍ଣ୍ଣରେ ରଥାରୂଢ଼ ତିନିଠାକୁରଙ୍କ ମନୋଜ୍ଞ ବେଶ ବର୍ଣ୍ଣନା କରିଛନ୍ତି । ନୀଳକନ୍ଦରରୁ ଠାକୁରମାନେ ସୁନ୍ଦର ଚନ୍ଦ୍ରାତପ ଓ ଚାରୁ ଚାମର ମଣ୍ଡିତ ହୋଇ ପହଣ୍ଡି କରି ଆସୁଥିବାର ଦୃଶ୍ୟ କବିଙ୍କୁ ମୁଗ୍ଧ ବିଭୋର କରିଛି –

ସୁନ୍ଦର ଚନ୍ଦ୍ରାତପ ଚାରୁଚାମର ସୁନ୍ଦର ନେତ ପତନି
ସୁନ୍ଦର ସୁନ୍ଦରୀ ସୁନ୍ଦର ଦିଶଇ ଚାନ୍ଦି ଦର୍ପଣକୁ ଘେନି ସେ
ସର୍ବ ବିଚିତ୍ର ମୟେ
ସତେ ଦେବତାଙ୍କୁ କରି ଜୟ ସେ
ସ୍ୱର୍ଗୁ ମର୍ତ୍ତ୍ୟକୁ ଅଇଲା ପ୍ରାୟେ ସେ ।

ରଥର ଘଣ୍ଟି ଘାଘୁଡ଼ି ଶବ୍ଦରେ ଚତୁର୍ଦ୍ଦିଗ ଉଛୁଳି ପଡୁଛି । କେହି କେହି ରଥ ଆଗରେ ଗୀତ ଗାଉଛନ୍ତି ଓ କେହି ବାଦ୍ୟର ତାଳେ ତାଳେ ନୃତ୍ୟ କରୁଛନ୍ତି ।

ରଙ୍ଗା ଅଧର ରଥେ ବିଜେ କରନ୍ତେ
କାହୁଁ କେତେ ରଙ୍ଗ ହୋୟେ
ରଂଗେ କେ ଗାବନ୍ତି ରଂଗେକେ ନାଚନ୍ତି
ରଙ୍ଗେ କେ କରନ୍ତି ଲୟେ ସେ
ରଂଗେ ବୈଷ୍ଣବ ଗୋଷ୍ଠୀ
ରଂଗ ଅଧରେ ସବୁରି ଦୃଷ୍ଟି ସେ ।

କଳାପିଠିଆମାନେ କୋଳାହଳ କରୁଛନ୍ତି । ସମସ୍ତ ଭକ୍ତମଣ୍ଡଳୀ କୈବଲ୍ୟ ଜୁର କରିବାରେ ଲାଗିଛନ୍ତି । ଶ୍ରୀଜଗନ୍ନାଥଙ୍କର ମୋହନ ମାଧୁରୀ ରୂପ ସନ୍ଦର୍ଶନରେ ଭକ୍ତଙ୍କ ଭିତରେ ସ୍ତମ୍ଭନ, ମୋହନ, ବେଶ, ଉଚ୍ଚାଟନ ପ୍ରଭୃତି ଅଷ୍ଟ ସାତ୍ତ୍ୱିକ ବିକାରମାନ ଦେଖାଦେଇଛି । ଭାଇଭଉଣୀ ସେବକ ଖଟଣି ତଥା ଭକ୍ତଙ୍କ ଗହଣରେ ଶ୍ରୀଜଗନ୍ନାଥ ଗୁଣ୍ଡିଚା ମନ୍ଦିରରେ ପହଂଚିଛନ୍ତି । ଏଣେ ପ୍ରାଣପତିଙ୍କ ବିରହରେ ବିରହିଣୀ କମଳାଙ୍କ ପ୍ରାଣରେ ଗଭୀର ଦୁଃଖ ଭରିଯାଇଛି । ଅନ୍ତରଙ୍ଗ ସଖୀ ବିମଳାଙ୍କୁ ଡାକି ନିଜର ମନର ବେଦନା ଜଣେଇଛନ୍ତି –

ଖଗପତି ନାଥ ବିରହରେ ତେଣେ
କମଳା ହୋୟେ ବିରସ
ଖେଦଭରେ ସେ ବିମଳାଙ୍କୁ ଡାକି
କହିଲେ ସବୁ ସନ୍ଦେଶ ସେ
କ୍ଷଣେ ନରହି ଯିବେ
ଖଗପତିଙ୍କ ଆଗେ କହିବେ ସେ
ଖରେ ଛାମୁରେ ମେଲାଣି ହେବେ ସେ ।

ଓଲଟ ବର୍ଣ୍ଣ ରୀତିରେ ନାନା ଉପମା ଓ ସୁଲଳିତ ଭାଷା ବିନ୍ୟାସରେ ଚଉତିଶାଟି ଖୁବ୍ ହୃଦୟସ୍ପର୍ଶୀ ହୋଇଛି ।

ଅଷ୍ଟାଦଶ ଶତାବ୍ଦୀର କେତେଜଣ କବି ମଧ୍ୟ ଶ୍ରୀଜଗନ୍ନାଥଙ୍କର ଗୁଣ୍ଡିଚା ଯାତ୍ରାକୁ କେନ୍ଦ୍ର କରି କିଛି ଚଉତିଶା ରଚନା କରିଛନ୍ତି । ସ୍ୱଚକ୍ଷୁରେ ପ୍ରଭୁଙ୍କର ଗୁଣ୍ଡିଚା ଯାତ୍ରା ଦର୍ଶନରୁ





ବଂଚିତ ହୋଇ କବି ଲୋକନାଥ ବିଦ୍ୟାଧର ନିଜ କଳ୍ପଚକ୍ଷୁରେ ପ୍ରଭୁଙ୍କର ଯାତ୍ରା ଦର୍ଶନ କରି ମୁଗ୍ଧ ବିଭୋର ହୋଇଛନ୍ତି –

କହେ ଲୋକନାଥ ବିଦ୍ୟାଧର ଧୀର
କୁଳକୁ ଆକୁଳ ହୋଇ ହେ
କମଳା ବଲ୍ଲଭ ଦୁର୍ଲଭ ଗୁଣ୍ଡିଚା
ଅବଲୋକନ ନ କଲା ହିଁ ସେ
ସଂଘାତ
କାହାକୁ କହିବା ଏହା ହେ
କରୁଣାକର କରୁଣା ଊଣା ହେଲେ
ଆଉ କେ ହୋଇବ ସାହା ହେ।

ଖେଳିଲା କେଶରୀ ପ୍ରାୟ ଶ୍ରୀଜଗନ୍ନାଥ ରଥକୁ ବିଜେ କରୁଥିବେ। ତିନିରଥ ଧୀରେ ଧୀରେ ଆଗେଇ ଯାଉଥିବେ। ଚତୁର୍ଦ୍ଦିଗରୁ କଳାପିଠିଆମାନେ କୋଳାହଳ କରି ନାନାବିଧ ଗୀତ ଗାଇ ରଥକୁ ଆଗେଇ ନେବାର ଦୃଶ୍ୟ ତାଙ୍କ କଳ୍ପ–ଚକ୍ଷୁରେ ଭାସି ଉଠିଛି।

ଚାରିଦିଗୁଁ କଳାପିଠିଆ କଳାପ କୋଳାହଳକୁଳ କରି ହେ
ଚଟୁଳ ଘଣ୍ଟି ଘାଗୁଡ଼ିମାଳ ବଡ଼ ନିବିଡ଼ ଲଗୁଡ଼ ଧରି ହେ
ସଂଘାତ
ଚାହିଁ ଯେ ଯାହା ଚାରୁ ସ୍ୟନ୍ଦନ ହେ।
ଚାଟେ ଦଉଡ଼ି ଟେକି ଧରି
କରିବେ ହାଳିକେ ନଟନ ଗାନ ହେ।

ନିଜେ ଠାକୁର ରାଜା ଆସି ରଥରେ ଚଢ଼ି ଛେରାପହଁରା କରିବେ। ଛତ୍ର, ତରାଶ ମେଘାଡ଼ମ୍ବରରେ ରଥଗୁଡ଼ିକ ସଜ୍ଜିତ ହୋଇ ସୁନ୍ଦର ଦିଶୁଥିବେ। ଝଟଝଟ ହୋଇ ଝଟକି ଶ୍ରୀମୁଖ କେତେ ସୁନ୍ଦର ଦେଖାଯାଉଥିବ। ଏଭଳି ଶୋଭାକୁ ନଦେଖି କବି ନିଜକୁ ହତଭାଗ୍ୟ ବୋଲି ମନେ କରିଛନ୍ତି –

ଡୋଳେ ଦେଖିଲାଇଁ ନାହିଁ
ବଡ଼ଦାଣ୍ଡେ ରଥ ଚଳିବାଡ଼ମ୍ବର ହେ
ଡରହର ନନ୍ଦିଘୋଷ ଘୋରଘୋଷ
ନଶୁଣି ଯାଉ ଶରୀର ହେ
ଡେଳାଇ ଡେଡ଼େ ସମୟ ହେ
ଡିଙ୍ଗର ଚଣ୍ଡଦଣ୍ଡଧର ଦଣ୍ଡକୁ
ଏବେ ହେଲା ବଡ଼ ଭୟେ ହେ।

ଢଗଢ଼ମାଳି ଆଗମ ନିଗମ ଗୀତମାନ ଗାଇ କବି କୋବିଦମାନେ ରଥ ପାର୍ଶ୍ୱରେ ବେଢ଼ି ଚାଲିଥିବେ। ସୂର୍ଯ୍ୟାସ୍ତ ସମୟରେ ଭାବଗ୍ରାହୀ ପ୍ରଭୁ ଶ୍ରୀଜଗନ୍ନାଥଙ୍କର ରଥ ଧୀରେ ଧୀରେ ଗୁଣ୍ଡିଚା ଦ୍ୱାରରେ ପ୍ରବେଶ କରୁଥିବ। ପ୍ରଭୁଙ୍କର ବିଚ୍ଛେଦରେ ପ୍ରାଣପ୍ରିୟା କମଳା ବିରହ ଦୁଃଖରେ ସଂପୂର୍ଣ୍ଣ ଭାଙ୍ଗି ପଡ଼ୁଥିବେ –

ବସନ ଆସନ ପ୍ରସନ ନାଶନ ବହନ ହୋଇ କେବଳ ହେ
ବିରହ ସକାଶୁଂ ବ୍ୟାକୁଳ ପ୍ରବଳ
ହୋଇବ ବେଳକୁ ବେଳ ହେ
ସଂଘାତ
ବିଷମ ବାଣ ବିବସ ହେ
ବିମଳାଙ୍କ ଆଗେ ବିରହ ବେଦନା
ନିବେଦନା କରିବେ ସେ ହେ।

ନବଦିନ ଯାତ୍ରା ସମ୍ପାଦନ କରି ପ୍ରଭୁ ଶ୍ରୀମନ୍ଦିରକୁ ବାହୁଡ଼ି ଆସିବେ। ଦୀର୍ଘଦିନ ବିଚ୍ଛେଦରେ ଅଭିମାନିନୀ ପ୍ରାଣପ୍ରିୟା କମଳା ଅଭିମାନରେ ଫାଟିପଡ଼ିବେ। ଶ୍ରୀଜଗନ୍ନାଥ ଲକ୍ଷ୍ମୀ ଦେବୀଙ୍କର ମାନଭଂଜନ କରିବା ଲାଗି ତାଙ୍କୁ ନାନା ଅଳଙ୍କାର ଉପହାର ଦେବେ –

କ୍ଷେମାସିନ୍ଧୁ ପାଶେ ଦାସୀଙ୍କ ପ୍ରସାଦେ
ପ୍ରବେଶ ଚତୁରମୂର୍ତ୍ତି ହେ
କ୍ଷୋଭହର ଲକ୍ଷ୍ମୀ ନାରାୟଣ ଭେଟ
ସର୍ବ କାମଦ ଆଳତି ହେ
କ୍ଷେମେ ବିଜେ ସିଂହାସନେ ହେ
ଛଛନ୍ଦେ ଗୁଣ୍ଡିଚା ଚଉତିଶା
ଲୋକନାଥ ବିଦ୍ୟାଧର ଭଣେହେ।

'ଜାନୁଭଗ୍ନ ଚଉତିଶା', 'ନେତ୍ର ଉତ୍ସବ ବର୍ଣ୍ଣନା'ର କବି ଶିଶୁ ଦାସ (୧୮ମ ଶତାବ୍ଦୀ) 'ନେତ୍ରଉତ୍ସବ ଚଉତିଶା' (ପୋଥି



ନଂ– ଓଏଲ୍/୫୨୦– ରାଜ୍ୟ ସଂଗ୍ରହାଳୟ, ପୋଥି ବିଭାଗ)ରେ ଶ୍ରୀଜଗନ୍ନାଥଙ୍କ ଗୁଣ୍ଡିଚା ଯାତ୍ରାର ଖୁବ୍ ମନୋଜ୍ଞ ବର୍ଣ୍ଣନା କରିଛନ୍ତି। ଗଜଦନ୍ତ ଆସନରେ ଶ୍ରୀଜଗନ୍ନାଥ ବିଜେ ହୋଇଛନ୍ତି। ଘଣ୍ଟାଭେରୀ ତୂରୀ ଘନଘନ ନାଦରେ ଚତର୍ଦ୍ଦିଗ ଉଚ୍ଛୁଳି ପଡୁଛି–

ରାମେ, କରନ୍ତି ନେତ୍ର ଉତ୍ସବ କମଳା ସାଇଁ
କରନ୍ତି ଦର୍ଶନ ସର୍ବଦେବତା ଯାଇ
କମଳ ଶ୍ରୀଭୁଜେ ଶଙ୍ଖଚକ୍ର ବିରାଜେ
କୋଟିଏ କଳପ କଳା ଶ୍ରୀମୁଖ ସାଜେ।
ରାମେ, ଖଟନ୍ତି କିନ୍ନରୀ ବୃନ୍ଦ
ଖେମଟା କୁଣ୍ଡଳୀ ନାଚେ ମହୀ ଆନନ୍ଦ।

ରଥ ପାର୍ଶ୍ୱରେ ଘଣ୍ଟି ଘାଗୁଡ଼ି ବାଜୁଛି। ଚାନ୍ଦୁଆ ଉପରେ ସୁନ୍ଦର ଚାମର ଲମ୍ବିଛି। ନନ୍ଦିଘୋଷ ରଥରେ ନୀଳେନ୍ଦିନୟନ ପ୍ରଭୁ ଶ୍ରୀଜଗନ୍ନାଥ ଶୋଭା ପାଉଛନ୍ତି। ଚାରୁକପୋଳେ ଚନ୍ଦନ ବୋଳାଯାଇଛି। ଢଳଢଳ ଚାଲିଲାବେଳେ ଶ୍ରୀମୁଖ ଝିଲିମିଲି ଶୋଭାପାଉଛି।

ରାମେ, ଝୀନଗନ୍ତା ପିନ୍ଧି କଟୀ ମେଖଳା ସାଜେ
ଝଟକେ ସୁନାବେଣ୍ଟଲା ଦର୍ପଣ ମାଝେ।
ଝୋଲି ଶାଢ଼ୀ ପାଟପଟନି ଫେରା
ଝଟକନ୍ତି ନାନାରତ୍ନ ମୁକୁତା ହୀରା।
ରାମେ, ନିରନ୍ତର ଗହଳ ଚହଳ ପହଣ୍ଡ
ନ ଟଳି ଚଳିଲା ରଥ କମ୍ପେ ବ୍ରହ୍ମାଣ୍ଡ
ନିର୍ବାଣ ତା' ରୂପ କିଏ ବ୍ରହ୍ମରୂପକ
ନୀଳମେଘେ ବିଜୁଯେହ୍ନେ ଝଟଝଟକ।

ରଥଦଉଡ଼ିକୁ ଛୁଇଁଲେ ସବୁ ପାପତାପ ଦୂରେଇଯାଏ। ଗଡ଼ାପଡ଼ା ହୋଇ ଲୋକେ ରଥଦଉଡ଼ି ଟାଣୁଛନ୍ତି। ଟମକ, ଢୋଲ, ବୀର କାହାଳୀ ବାଜୁଛି। କାଳି କୁଣ୍ଡଳୀମାନେ ତାଳିମାରି ନୃତ୍ୟ ପ୍ରଦର୍ଶନ କରୁଛନ୍ତି। ସହି ସଂଗାତମାନେ ଚାମର ବ୍ୟଜନ କରୁଛନ୍ତି। ଢୋଲ, ମହୁରି, ବୀର କାହାଳୀ ବାଜୁଛି। ଟେରାପାଟପଟନି, ପାଟଝୁମ୍ପାରେ ରଥ ସଜ୍ଜିତ ହୋଇଛି। ତିନିପୁରରେ ଜୟଜୟ ଧ୍ୱନି ଉଚ୍ଛୁଳି ପଡୁଛି। ନବଦିନ ଯାତ୍ରା ସାରି ପ୍ରଭୁ ଶ୍ରୀମନ୍ଦିରକୁ ବାହୁଡ଼ି ଆସିଛନ୍ତି। ମାନିନୀ କମଳାଙ୍କର ମାନଭଂଜନ ପରେ ପ୍ରଭୁ ରତ୍ନ ସିଂହାସନରେ ବିଜେ ହୋଇଛନ୍ତି।

ଅଷ୍ଟାଦଶ ଶତାବ୍ଦୀର ରାମଚନ୍ଦ୍ର ଦେବଙ୍କର ଅତି ପ୍ରସିଦ୍ଧ 'ସପ୍ତରାଗ ଚଉତିଶା'ରେ ଶ୍ରୀଜଗନ୍ନାଥ ଗୁଣ୍ଡିଚା ଯାତ୍ରା ପାଇଁ ଆସିବା ପରେ ଅଭିମାନିନୀ କମଳାଙ୍କର ବିରହାବସ୍ଥାର ଚମତ୍କାର ବର୍ଣ୍ଣନା ହୋଇଛି। ନିଜର ବିରହ ଦଶା ଲକ୍ଷ୍ମୀ ପ୍ରିୟ ସଖୀ ବିମଳାଙ୍କ ନିକଟରେ ପ୍ରକାଶ କରିଛନ୍ତି –

କହନ୍ତି କମଳା ବିମଳା ମୁଖ ଚାହିଁ
ଆଗୋ କେମନ୍ତେ ମଣିଲି ମୁ ସହି
କଲେ ଯେ ଗୁଣ୍ଡିଚା ଯାତରା କାନ୍ତ ମୋତେ ନ କହି। ଘୋଷା।
ସହେ ସହେ ଗୋ / କି କାର୍ଯ୍ୟେ ରହିଲି ମୁଁ ଏଥେ
ଆଗୋ କିମ୍ପା ନଗଲି କାନ୍ତ ତୁଲେ ବସିଣ ରଥେ।

ଏ ପ୍ରକାର ବିରହଯଶା ସହ୍ୟ କରି ନପାରି କମଳା ବିଷ ପାନ କରିବେ ବୋଲି ବିମଳାଙ୍କୁ କହିଛନ୍ତି। ପ୍ରିୟସଖୀର ଏ ଅବସ୍ଥା ଦେଖି ବିମଳା ଅବିଳମ୍ବେ ଗୁଣ୍ଡିଚା ମନ୍ଦିରକୁ ଯାଇ ଶ୍ରୀଜଗନ୍ନାଥଙ୍କଠାରେ ସବୁକଥା କହିଛନ୍ତି। ଶ୍ରୀଜଗନ୍ନାଥ ସବୁ ଶୁଣି ବିମଳାଙ୍କୁ ବୁଝେଇ କହିଛନ୍ତି –

ଟାହି ନୋହେ ଯେତେ କଥା କହିଲୁ ସଜନୀ ଗୋ
ଆମ୍ଭ ଦୁଃଖ କହିବୁ କାହାକୁ
ଟାଣେ ସତ୍ୟ କରିଅଛୁ ଇନ୍ଦ୍ରଦ୍ୟୁମ୍ନଙ୍କୁ ଗୋ
ବରଷକେ ଆସିବୁ ଏଥକୁ।
ସଜନୀ ଗୋ, ଟିକିଏ ନଛାଡୁ ତାଙ୍କୁ ପାଶ
ଟେକିଥିବେ ଶ୍ରବଣ ସେ ମୋର ସନ୍ଦେଶକୁ ଗୋ
ଟେକି କହିଲୁ ତୁ ବିଶ୍ୱାସ।

କମଳାଙ୍କ ନିକଟକୁ ଶୀଘ୍ର ଫେରି ଆସିବେ ବୋଲି ସେ ବିମଳାଙ୍କ ନିକଟରେ ଶପଥ କରିଛନ୍ତି। ନବଦିନ ଯାତ୍ରା ସାରି ପ୍ରଭୁ ଶ୍ରୀମନ୍ଦିରକୁ ବାହୁଡ଼ିଛନ୍ତି। ବଡ଼ଦାଣ୍ଡରେ ଶ୍ରୀଜଗନ୍ନାଥଙ୍କ ଫେରିବା ଦେଖି କମଳା ଆନନ୍ଦରେ ବିଭୋର ହୋଇ ପଡ଼ିଛନ୍ତି ।

ଭେରୀ ତୂରୀ ମୃଦଙ୍ଗ ବୀର କାହାଳୀମାନ ବାଜିଲା। ଚନ୍ଦ୍ରଉଦିଆ ଦିହୁଡ଼ିରେ ଚାରିଆଡ଼ ଉଜ୍ଜ୍ୱଳ ଦିଶିଲା। ଦଇତାଙ୍କ କାନ୍ଧରେ ଭୁଜ ଭରା ଦେଇ ପ୍ରଭୁ ରଥରୁ ଓହ୍ଲେଇଲେ।



ମେଘାଡ଼ମ୍ବର ତଳେ କମଳାବର ବିଜୟ ହେଲେ ଏବଂ ଲକ୍ଷ୍ମୀଙ୍କ ନିକଟକୁ ଯାଇ ତାଙ୍କର ମାନଭଂଜନ କଲେ –

ସିନ୍ଧୁସୁତା ପାଶେ ବସି ହସି କହେ ହୃଷୀକେଶୀ
କି କେ ସଖୀ ମଳିନ ବଦନ
ସତ୍ୟଯୁଗେ ନରପତି ସତ୍ୟ କରାଇଛି ଗୋ
ନାମ ତାଙ୍କ ଇନ୍ଦ୍ର ଯେ ଦୁମନ
ସଖୀ ଗୋ ! ସମ୍ୱସରେ ଗୁଣ୍ଡିଚା ବିଧାନ
ସାତଦିନ ବଂଚଇ ଆଡ଼ପ ମଣ୍ଡପେ ଗୋ
ତୋହ ବିନୁ ଦଇବ କଷଣ ।

ଶ୍ରୀଜଗନ୍ନାଥଙ୍କଠାରୁ ନାନା ଉପହାର ପାଇ ତଥା ତାଙ୍କ ଚାଟୁବଚନରେ ଶ୍ରୀଲକ୍ଷ୍ମୀଙ୍କର ମାନଭଂଜନ ହୋଇଛି । ସ୍ୱର୍ଗରୁ ପୁଷ୍ପ ବୃଷ୍ଟି ହେବା ସଂଗେ ସଂଗେ ଲକ୍ଷ୍ମୀନାରାୟଣଙ୍କର ମଧୁମିଳନ ହୋଇଛି ।

ଆନୁମାନିକ ଅଷ୍ଟାଦଶ ଶତାବ୍ଦୀର କବି 'ବିପ୍ରକାଶୀ ପାମର'ଙ୍କ 'କରୁଣା ସାଗର ଚଉତିଶା' (ପୋଥି ନଂ ସି.ଓ୍ୱାଇ./ ୩୯ – ରାଜ୍ୟ ସଂଗ୍ରହାଳୟ)ରେ ଶ୍ରୀଜଗନ୍ନାଥଙ୍କ ଗୁଣ୍ଡିଚା ଯାତ୍ରାର ମନୋଜ୍ଞ ଦୃଶ୍ୟର ବର୍ଣ୍ଣନା କରିଛନ୍ତି । ନୀଳକନ୍ଦରରେ ତାଙ୍କ ଘର । ଲକ୍ଷ୍ମୀଙ୍କ ସଙ୍ଗରେ କୁଆଡ଼େ ଝଗଡ଼ା କରି ସେ ଭାଇ ଭଉଣୀଙ୍କୁ ଧରି ମାଉସୀ ଘରକୁ ପଳେଇ ଆସିଛନ୍ତି –

ଝାଡ଼ ବିନୋଦିଆ ଏହୁ ଝଗଡ଼ ଗୁରୁ
ଝଗଡ଼ା ନଗେଇ ଗଲେ ନୀଳକନ୍ଦରୁ
ଝମଣ୍ଟେ ରହିଣ ଦେଖ, କଳାପଙ୍କଜ ମୁଖ
ଝୁଲି କରିଛନ୍ତି ଯା'କୁ ତ୍ରୈଲୋକ୍ୟ ନାଥ ।

ପିନ୍ଧିଛନ୍ତି ପାଟପୀତାମ୍ବରୀ । ଲଲାଟରେ ଚିତା, କର୍ଣ୍ଣରେ କୁଣ୍ଡଳ, ହାତରେ ସୁବର୍ଣ୍ଣ ବଳୟ, ଦେହ ସାରା ଚନ୍ଦନ କର୍ପୂର ତୁଳସୀ ଗୋରଚନା ମହମହ । ତାଙ୍କର ଅପରୂପ ଲାବଣ୍ୟମଣ୍ଡିତ ଯୌବନକୁ ଦେଖି ଭକ୍ତମାନଙ୍କର ଅଷ୍ଟସାତ୍ତ୍ୱିକ ବିକାର ଦେଖାଦେଇଛି । ଯିଏ ଥରେ ତାଙ୍କୁ ରଥାରୂଢ଼ ସମୟରେ ଦେଖିବ, ସେ ସବୁଦିନ ନିସ୍ତରି ଯିବ ବୋଲି କବି କହିଛନ୍ତି –

କ୍ଷିତି ମଧ୍ୟେ ଏତେ ଯାତ୍ରା ନୋହି ନୋହିବ
କ୍ଷଣମାତ୍ରେ ରଥେ ଦେଖି ନିସ୍ତରି ଯିବ ।
କ୍ଷୁଦ୍ର ବୁଦ୍ଧି ମୋହର ବିପ୍ରକାଶୀ ପାମର
କ୍ଷେମା ନିଧି ପଦ୍ମପାଦେ ଶରଣ ମୋର ।

ଅଷ୍ଟାଦଶ ଶତାବ୍ଦୀର ଅନ୍ୟ ଜଣେ କବି 'ଶ୍ରୀଧର' ଶ୍ରୀଜଗନ୍ନାଥଙ୍କର ଗୁଣ୍ଡିଚା ବିଜୟକୁ ନେଇ 'ଗୁଣ୍ଡିଚା ବିଜେ ଚଉତିଶା' (ଉତ୍କଳ ବିଶ୍ୱବିଦ୍ୟାଳୟ ପୋଥି ବିଭାଗରୁ ସଂଗୃହୀତ) ରଚନା କରିଛନ୍ତି । ଶ୍ରୀକ୍ଷେତ୍ରକୁ ଯିବାର ସୁଯୋଗ ନପାଇ କବି କଳ୍ପଚକ୍ଷୁରେ କେବଳ ସେ ଦୃଶ୍ୟ ଦେଖିଛନ୍ତି –

କଲି ମନୋରଥ ପ୍ରଭୁ ଜଗନ୍ନାଥ
ଗୁଣ୍ଡିଚା ଯାତ୍ରା ଦେଖିବାରେ
କାମପାଳ ଭ୍ରାତ ସୁଭଦ୍ରା ସହିତେ
ଦେଖି ଦୁଃଖ ଉପେକ୍ଷିବାରେ
ସଂଘାତ,
କି କହିବା ବିହି ଯୋଗରେ
କେବଳ ବିଷୟ ବିଷମ ବିଷରସେ
ସେ ସୁଖ ହୋଇଲା ଉଭାରେ ।

ଚର୍ମ ନୟନରେ ଥରେ ରଥାରୂଢ଼ ଜଗନ୍ନାଥଙ୍କୁ ଦେଖିଦେଲେ ଅନେକ ଜନ୍ମର ଦୁରିତ ନଷ୍ଟ ହୋଇଯାଏ ବୋଲି କବିଙ୍କର ବିଶ୍ୱାସ –

ଚାହିଁ ଚକ୍ଷୁବୁଜି ଚିତ୍ତରେ ଚିତୋଇ
କ୍ଷୀଣତର ଚିତ୍ରମାନରେ
ଚକ୍ରଧର ସେନା ପାଟଲାଗି ହୋଇ
ମଲ୍ଲୀବେଶ ବିଧାନରେ
ସଂଘାତ,
ଚାହିଁବାରେ ଯେଉଁ ସୁଖରେ
ଚର୍ମଲୋଚନରେ ଚାହିଁଲେ ନଥାଇ
ଅଶେଷ ଜନ୍ମ ଦୁରିତରେ ।

ଭକ୍ତର ମନୋବାଞ୍ଛା ପୂର୍ଣ୍ଣ କରିବା ପାଇଁ ପ୍ରାଣପ୍ରିୟ ଲକ୍ଷ୍ମୀଙ୍କୁ ଛାଡ଼ି ଓହ୍ଲେଇ ଆସିଛନ୍ତି ବଡ଼ଦାଣ୍ଡକୁ ।

ଭାରିଯାକୁ ଦେଇ ବିରହ ବିପଦ ପତିତ ଜନଙ୍କ ପାଇଁ
ଭାବଗ୍ରାହୀ ପଣେ ବାହାର ହୋଇ ସେ



ଏତେ ପ୍ରଭୋ କାହିଁ ନାହିଁରେ
ସଂଘାତ,
ଭାବେ ଶଙ୍ଖଚକ୍ର କରରେ
ଭୁବି ମଣ୍ଡନ ଏ ମହୋତ୍ସବ ଭାବ କିସ କରିବି ଶ୍ରୀଧରେ ।

ନବଦିନ ଯାତ୍ରା ସାରି ଶ୍ରୀଜଗନ୍ନାଥ ବଡ଼ଦେଉଳକୁ ଫେରି ଆସିଛନ୍ତି । ମନ୍ଦିର ନିକଟରେ ଚନ୍ଦ୍ରଉଦିଆ ଦିହୁଡ଼ିମାନ ଜଳି ଉଠିଛି । ଶ୍ରୀଜଗନ୍ନାଥଙ୍କୁ ଦେଖି ଆସିବା ଲାଗି ଲକ୍ଷ୍ମୀ ସଖୀ ବିମଳାଙ୍କୁ ପଠେଇଛନ୍ତି । ବିମଳାଙ୍କ କଥାରେ ଭରସା ନରଖି ନିଜେ କମଳା ହାଦୋଳାରେ ଚଢ଼ି ବିଜେ ହୋଇଛନ୍ତି । ଶ୍ରୀଜଗନ୍ନାଥ ସିଂହଦ୍ୱାର ନିକଟରେ ପହଂଚିବା କ୍ଷଣି ସିଂହଦ୍ୱାର କବାଟ ପଡ଼ିଯାଇଛି । ନାନା ଲାଞ୍ଚ ଦେଇ ଚାଟୁବଚନ କହି ପ୍ରଭୁ ମାନିନୀ ଲକ୍ଷ୍ମୀଙ୍କର ମାନଭଂଜନ କରିଛନ୍ତି ।

ଊନବିଂଶ ଶତାବ୍ଦୀର କବି ପ୍ରହରାଜ 'କମଳାପତି ଚଉତିଶା' (ଉତ୍କଳ ବିଶ୍ୱବିଦ୍ୟାଳୟ, ପୋଥି ବିଭାଗରୁ ସଂଗୃହୀତ)ରେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବାର ସୌଭାଗ୍ୟରୁ ବଂଚିତ ହୋଇ ନିଜ କଳ୍ପଚକ୍ଷୁରେ ଦର୍ଶନ କରିଥିବା ଦୃଶ୍ୟକୁ ଚଉତିଶାରେ ବର୍ଣ୍ଣନା କରିଛନ୍ତି –

କମଳା ପତିଙ୍କି ମୁଁ କଲି ବିନତି
କରିବି ଦରଶନ ହେବ ମୁକତି ଯେ
କରି କରୁଣା ରଥଯାତ ଦର୍ଶନ
କୃତାର୍ଥ କରିବି ମୁଁ ବେନି ନୟନ ଯେ ।
ଖଦୀ ଚାମର ଘେନି ଖଟଣୀ ଜନ
ଖଟି ଯେ ପାଶେ ଥିବେ ମଧୁସୂଦନ ଯେ ।
ଖର୍ବଖର୍ବ ମାନବେ ହୋଇଣ ମେଳି
ଖେମଟା ରାଗେ ମାରୁଥିବେ ଯେ ତାଳି ।

ଘଣ୍ଟି ଘାଗୁଡ଼ି ନାଦରେ ଚତୁର୍ଦ୍ଦିଗ ଉଛୁଳି ପଡୁଥିବ । କଳାବେଠିଆମାନେ ଦଉଡ଼ି ଧରି ଟାଣୁଥିବେ । ଡାହୁକମାନେ ଯୁବତୀ ଜନଙ୍କୁ ଟାହିଟାପରା କରି ଧୀରେ ଧୀରେ ରଥକୁ ଗୁଣ୍ଡିଚା ମନ୍ଦିର ଆଡ଼କୁ ଚଳେଇ ନେଉଥିବେ –

ଡାକୁ ଯେ ଥିବେ ଆର୍ତ୍ତେ ଆର୍ତ୍ତିକଜନ
ଡେରି ଯେ ଅଛ ପ୍ରଭୁ ସେ ଘେନି କର୍ଣ୍ଣ ଯେ ।
ଡୋଳାରେ ଚାହିଁ ଥରେ ବଡ଼ଦାଣ୍ଡକୁ
ଡର ନଥିବ ମୋର ଯମଦଣ୍ଡକୁ ଯେ ।
ଢଳଢଳ ଦିଶୁଛି କଳାଶ୍ରୀମୁଖ
ଢଳି ପଡୁଛି ଅଙ୍ଗୁ ପାତକ ଯାକ ଯେ ।
ଢାଙ୍କିଲେ ଚକ୍ଷୁ ଆଉ ପାଇବୁ ନାହିଁ
ଢଳି ପଡୁଛି କହୁଁ କହୁଁ ଏ ଦେହୀ ଯେ ।

ଅରବିନ୍ଦ ନେତ୍ର ଦର୍ଶନରେ ଅଶେଷ ଜନ୍ମର ଦୁରିତ କ୍ଷୟ ହେବ ବୋଲି କବି ଆଶା କରନ୍ତି । ଦାରୁବ୍ରହ୍ମଙ୍କୁ ଦଣ୍ଡେ ମାତ୍ର ଦର୍ଶନ କଲେ ବୈକୁଣ୍ଠପୁରୀରେ ସ୍ଥାନ ମିଳେ । ଆଖିପୂରେଇ ମନଭରି ନିଜ ପ୍ରିୟ ଆରାଧ୍ୟଙ୍କୁ ଦେଖିବା ଲାଗି ଭକ୍ତ ଆଉ ସେବକମାନେ ନାନା ଭାବରେ ସଜେଇ ଦିଅନ୍ତି । ନାନାଜାତି ଫୁଲରେ ସେବକ ଚୂଳ ବାନ୍ଧିଦିଏ, କପାଳରେ ଚନ୍ଦନ ଓ ଗୋରଚନାର ଟିପା ଆଙ୍କିଦିଏ –

ଫୁଲଚୂଳରେ କେହି କରିବେ ବେଶ
ଫୁଙ୍କୁଥିବ କାହାଳୀ କେବଣ ଦାସ
ଫଳା ମୁଁ କରିଅଛି ପଦରାଜୀବ
ଫୁଲ ଫୁଟିଲା ପ୍ରାୟେ ପରାଣ ଯିବ ଯେ ।
ବଳଗଣ୍ଡିରେ ବଳଦେବ ବସାଇ
ବେଠିଆ ଆଣୁଥିବେ ରଥ ଲଗାଇ ଯେ ।
ବ୍ରହ୍ମା ଯେ ଯାଇ ତହିଁ କର ଯୋଡ଼ିବେ
ବାସବ ଆଦି ଦେବେ ପାଦେ ପଡ଼ିବେ ଯେ ।

ନବଦିନ ଯାତ୍ରା ସାରି ଶ୍ରୀଜଗନ୍ନାଥ ମନ୍ଦିରକୁ ଫେରିଆସିବେ । ଲକ୍ଷ୍ମୀ ନାରାୟଣଙ୍କ ମିଳନ ହେବ । ସରସୁଆଳି, ସରପୁଳି, ମଣ୍ଡା ଆଦି ଭୋଗ ଦେଇ ଷୋଡ଼ଶ ଉପଚାରରେ ପଣ୍ଡା ପୂଜା କରିବେ । ଭକ୍ତ ଆନନ୍ଦରେ ହରିବୋଲ, ହୁଳହୁଳି ଦେଇ ଜଗତ କମ୍ପାଇ ଦେବେ ।

ଷୋଡ଼ଶ ଶତାବ୍ଦୀରୁ ଊନବିଂଶ ଶତାବ୍ଦୀ ମଧ୍ୟରେ ଆମର ଭକ୍ତକବିଗଣ ଚଉତିଶା ମାଧ୍ୟମରେ ଶ୍ରୀଜଗନ୍ନାଥଙ୍କର ବିଶ୍ୱପ୍ରସିଦ୍ଧ ଶ୍ରୀଗୁଣ୍ଡିଚା ଯାତ୍ରାର ଯେଉଁସବୁ ବର୍ଣ୍ଣନା କରିଛନ୍ତି ତାହା ବେଶ୍ ମନୋଜ୍ଞ ଓ ହୃଦୟସ୍ପର୍ଶୀ ।

କଲ୍ୟାଣନଗର, ବାଲେଶ୍ୱର–୧



# ଓଡ଼ିଆ ସାହିତ୍ୟରେ ଜଗନ୍ନାଥଙ୍କ ବୌଦ୍ଧ ମୁଦ୍ରାଙ୍କ

ଡକ୍ଟର ସର୍ବେଶ୍ୱର ସେଣ

ଦେବ ଦେବ ଜଗନ୍ନାଥ । ତାଙ୍କରି ଭୂମି ଓଡ଼ିଶା । ସମଗ୍ର ଭାରତବର୍ଷରେ ପୁଣ୍ୟଭୂମି ଭାବେ ଅଭିହିତ । ଓଡ଼ିଆମାନଙ୍କର ଜାତୀୟ ଜୀବନ, ସାମାଜିକ ଜୀବନ, ଧର୍ମ, ସଂସ୍କୃତି, ସାହିତ୍ୟ ସବୁ କିଛି ଜଗନ୍ନାଥ ଚେତନାର ପ୍ରାଣପ୍ରକାଶ । ଓଡ଼ିଶାର ଧର୍ମ ହିଁ ଜଗନ୍ନାଥ ଉପାସନା । ଭାରତରେ ନାଥ ବିଶେଷରେ ଅନେକ ନାଥ । ଉତ୍ତର ଭାରତର 'ବିଶ୍ୱନାଥ', ଦକ୍ଷିଣ ଭାରତର 'ରାମନାଥ', ପଶ୍ଚିମ ଭାରତର 'ସୋମନାଥ', ତାଙ୍କୁ ନେଇ ସେଇ ସେଇ ଅଞ୍ଚଳର ସଂସ୍କୃତି ବିକଶିତ ନୁହେଁ । ମାତ୍ର ଓଡ଼ିଶାର ସଂସ୍କୃତି 'ଜଗନ୍ନାଥ ସଂସ୍କୃତି', ଓଡ଼ିଶାର ଧର୍ମ 'ଜଗନ୍ନାଥ ଧର୍ମ' । ରାମ, କୃଷ୍ଣ ଆଦି ଦେବତା, ତତ୍–ସଂପୃକ୍ତ ଧାର୍ମିକମାନଙ୍କ ହୃଦୟରେ ଅବତାରୀର ଆସନ ପାଇଛନ୍ତି । ଅନୁରୂପ ଭାବେ ଶ୍ରୀଜଗନ୍ନାଥ, ଓଡ଼ିଆ ଜାତିର ହୃଦୟରେ ବିଶ୍ୱାସର କେନ୍ଦ୍ର ପାଲଟିଛନ୍ତି । ସେ ସାକ୍ଷାତ୍ ପରଂବ୍ରହ୍ମ, ଆଦି ଅନାଦି, ସାକାର ନିରାକାର, କଚ୍ଛପ ମତ୍ସ୍ୟାଦି ସବୁ ଅବତାରର ଜନକ । ଆଦ୍ୟରେ ସେ ଶବର ଉପାସିତ ଠାକୁର । ସମୟକ୍ରମେ ଜୈନ, ବୌଦ୍ଧ, ତାନ୍ତ୍ରିକ, ଶୈବ, ବୈଷ୍ଣବ, ଶାକ୍ତ, ଗାଣପତ୍ୟ ଆଦି ସକଳ ଆର୍ଯ୍ୟଧର୍ମ ଶାଖା ଦ୍ୱାରା ଗୃହୀତ । ଜଗନ୍ନାଥ ଧର୍ମ ଏକ ବହୁମତ–ସମନ୍ୱିତ ଧର୍ମ । ସେ ଆର୍ଯ୍ୟ, ଅନାର୍ଯ୍ୟର ଦେବତା, ସର୍ବଧର୍ମ ସମନ୍ୱୟର ପ୍ରତୀକ । ସେ ପୁରୁଷୋତ୍ତମ ପ୍ରଣବ, ଓଁକାର, ଶବ୍ଦବ୍ରହ୍ମ । ଶ୍ରୀମଦ୍ ଭଗବଦ୍ ଗୀତାରେ ଶ୍ରୀକୃଷ୍ଣ କହିଛନ୍ତି, ଅକ୍ଷରଣାଂ ଓଁ କାରୋସ୍ମି – ସକଳ ସୃଷ୍ଟିର ମୂଳ ଓଁକାର । ଜଗତ ମନର ବିଳାସ । ଭାବଜଗତ ବିନା ଭୌତିକ ଜଗତର ପରିକଳ୍ପନା ଅପରିକଳ୍ପନୀୟ । ଭାବ ଜଗତରେ ଅଛି ଅକ୍ଷର, ସ୍ୱରସମଷ୍ଟି ମଧ୍ୟ । ଏହି ଅକ୍ଷର, ସ୍ୱର ସମଷ୍ଟିର ମୂଳାଧାର ଓଁକାର । ଶ୍ରୀଜଗନ୍ନାଥ ସେଇ ଓଁକାର, ପ୍ରଣବ, ଦାରୁବ୍ରହ୍ମ, ଅଖିଳ ବ୍ରହ୍ମାଣ୍ଡପତି । ତାଙ୍କୁ ନେଇ ରାଶି ରାଶି ସାହିତ୍ୟ ସୃଷ୍ଟ । ପୁରାଣ, ସାହିତ୍ୟ, ଇତିହାସ ଗବେଷଣା – ପ୍ରତିଟିରେ ତାଙ୍କର ଯଶକୀର୍ତ୍ତି ଗାନ କରାଯାଇଛି, ସ୍ୱରୂପ ଆକଳନର ପ୍ରଚେଷ୍ଟା ଅବ୍ୟାହତ ରହିଛି କିନ୍ତୁ ରୂପରେଖ ନାହିଁ– ସେ ଶୂନ୍ୟ ଦେହୀ । ମୁନିଋଷିମାନେ କଳ୍ପକଳ୍ପ ଧରି ଯୋଗସାଧନା କରିଛନ୍ତି । ପାଇନାହାନ୍ତି ତାଙ୍କର ଭେଟ । ସେ ଭାବଗ୍ରାହୀ । ଯେଉଁ ଧର୍ମାବଲମ୍ବୀ ହୁଅନ୍ତୁ, ତାଙ୍କୁ ଭକ୍ତିରେ ବାନ୍ଧି ଦେଇପାରେ ଯୁକ୍ତିରେ, ତର୍କରେ ନୁହେଁ । ସମ୍ପୂର୍ଣ୍ଣ ସମର୍ପିତ ଭାବରେ ଜୀବ ପରମ ହୋଇଯାଆନ୍ତି ଏକ ଏକାକାର । ମିଳିଯାଏ କୈବଲ୍ୟ, ମୋକ୍ଷ । ସେଇଟି ମାନବର ଚିରକାମ୍ୟ । କୈବଲ୍ୟଦାତା ହିଁ ଏକମାତ୍ର ଶ୍ରୀଜଗନ୍ନାଥ ।

ଚିର ରହସ୍ୟମୟ କାଳିଆ ଠାକୁର । ତାଙ୍କର ଅସ୍ତିତ୍ୱକୁ ନେଇ ଅନେକ ଅସମାହିତ ପ୍ରଶ୍ନବାଚୀ । ସମଗ୍ର ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟ ତଥା ଆଧ୍ୟାତ୍ମିକ ଭାବନା, ଜଗନ୍ନାଥ ଚେତନା ଦ୍ୱାରା ସମାଚ୍ଛନ୍ନ । ଶ୍ରୀଚୈତନ୍ୟ ପରେ ସେ କୃଷ୍ଣାଭିମୁଖୀ, କ୍ରମେ ପରିଣତ ହୋଇଛନ୍ତି 'ମହାବୈଷ୍ଣବ'ରେ । ଏହା ପୂର୍ବରୁ ସେ ଥିଲେ ମହାବୌଦ୍ଧ । ତାଙ୍କ ଆରାଧନା ପଦ୍ଧତି ଥିଲା ଜ୍ଞାନମିଶ୍ରା– ଭକ୍ତିମାର୍ଗ ଅଥବା ଯୋଗଭିତ୍ତିକ ସାଧନା । ଜଗନ୍ନାଥ କୌଣସି ଏକ ବଳିଷ୍ଠ ଗୋଷ୍ଠୀର ନୁହନ୍ତି, ସେ ସାର୍ବଜନୀନ । ସେ ଏକେଶ୍ୱର ନା ପରମେଶ୍ୱର, ଅଥବା ଏକ ଅବତାର ରୂପେ ପୂଜିତ ହେଉଥିଲେ – ତାହା ଏବେବି ଅସ୍ପଷ୍ଟ । ଜଗନ୍ନାଥ ଏକ ନିର୍ଦ୍ଦିଷ୍ଟ ତତ୍ତ୍ୱ । ଏ କଥାଟି ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀ ଯାଏଁ ପ୍ରକାଶ ପାଇନଥିଲା । ଏପରି ହେବା ମଧ୍ୟ ସ୍ୱାଭାବିକ । ସମାଜରେ ବଜ୍ରଯାନ, ସହଜଯାନ, ନାଥ, ତନ୍ତ୍ର, ଶାକ୍ତ ପ୍ରଭୃତି ନାନାଦି



ଆଧ୍ୟାତ୍ମିକ ଭାବନା, ତତ୍‌ସହିତ ନାନା ଦେବାଦେବୀ ବାହୁଲ୍ୟ, ଜନତାଙ୍କ ବିଶ୍ୱାସ – ଏସବୁ ମଧ୍ୟରେ ଅଦ୍ୱୟ–ପରମେଶ୍ୱର ଭାବନା ବିକଶିତ ନ ହେବା ସ୍ୱାଭାବିକ। ସୂର୍ଯ୍ୟବଂଶୀ ରାଜା କପିଳେନ୍ଦ୍ରଦେବ ଶ୍ରୀଜଗନ୍ନାଥଙ୍କୁ ଉତ୍କଳ ସାମ୍ରାଜ୍ୟର ରାଷ୍ଟ୍ରଦେବତା ଭାବେ ଘୋଷଣା କଲେ। ଜଗନ୍ନାଥ ହେଲେ ସମଗ୍ର ଉତ୍କଳର ଇଷ୍ଟଦେବ। ସୂର୍ଯ୍ୟବଂଶୀ ରାଜାମାନେ ନିଜକୁ ଜଗନ୍ନାଥଙ୍କ ସେବକ ଭାବେ ନିୟୋଜିତ କଲେ। ଜଗନ୍ନାଥ ହିନ୍ଦୁ ଭାରତର ଇଷ୍ଟଦେବ ରୂପେ ପ୍ରତିଷ୍ଠିତ ହେଲେ। ମାତ୍ର ସେପର୍ଯ୍ୟନ୍ତ 'ମହାବୌଦ୍ଧ' ରୂପେ ବିବେଚିତ ହୋଇଆସୁଥିଲେ।

ଶ୍ରୀବିଷ୍ଣୁ (ଜଗନ୍ନାଥ)ଙ୍କର ବୁଦ୍ଧ ଏକ ଅବତାର। ଏ ପ୍ରସଙ୍ଗଟି କାଶ୍ମୀରର ନୀଳତମ ପୁରାଣ (୬ଷ୍ଠ–୭ମ ଶତାବ୍ଦୀ)ରେ ବର୍ଣ୍ଣିତ। ବରାହ ପୁରାଣ ୭ମ–୮ମ ଶତାବ୍ଦୀରେ ରଚିତ। ଏଥିରେ ବିଷ୍ଣୁଙ୍କ ଦଶାବତାର (ମତ୍ସ୍ୟ, କୂର୍ମ, ବରାହ, ନୃସିଂହ, ବାମନ, ପରଶୁରାମ, ଦାଶରଥି–ରାମ, ବାସୁଦେବ–କୃଷ୍ଣ, ବୁଦ୍ଧ, କଲ୍‌କୀ) କଥା ବର୍ଣ୍ଣିତ। ଭୌମ ରାଜବଂଶ (୭ମ–୮ମ ଶତାବ୍ଦୀ) ଦ୍ୱାରା ଓଡ଼ିଶାରେ ବିଷ୍ଣୁଙ୍କ ବୁଦ୍ଧଙ୍କ ଅବତାର ଭାବେ ଗ୍ରହଣ କରାଯାଇଥିଲା। କେହି କେହି ଶ୍ରୀବିଷ୍ଣୁଙ୍କ ବୁଦ୍ଧାବତାର କାଳକୁ ୪ର୍ଥ ଶତାବ୍ଦୀ ବୋଲି ମତ ଦେଇଥାଆନ୍ତି। ପରିଶେଷରେ ବିଷ୍ଣୁଙ୍କର ବୁଦ୍ଧାବତାର ଜଗନ୍ନାଥ ଭାବେ ପ୍ରତିଷ୍ଠା ଲାଭ କଲେ– ଏ କଥାଟି କହିଛନ୍ତି। ଏଇଟି ଦ୍ୱାଦଶ ଶତାବ୍ଦୀର କଥା। ଓଡ଼ିଶାର ଧର୍ମ ପ୍ରବର୍ତ୍ତନ ଇତିହାସକୁ ବହୁ ଗବେଷକ ତନତନ ଆଲୋଚନା କରିଛନ୍ତି। ଏପରିକି ଶବରମାନେ ବୁଦ୍ଧଧର୍ମ ଗ୍ରହଣ କରିଥିବା ଉଲ୍ଲେଖ କରିଛନ୍ତି। ସେମାନଙ୍କ ମଧ୍ୟରେ ଐତିହାସିକ ଡକ୍ଟର ମହତାବ ଅନ୍ୟତମ। ସମ୍ରାଟ୍ ଅଶୋକ କଳିଙ୍ଗ ଯୁଦ୍ଧ ପରେ ବୌଦ୍ଧଧର୍ମରେ ଦୀକ୍ଷିତ ହେଲେ। ପୁରୀରେ ବୌଦ୍ଧସ୍ତୂପ ନିର୍ମିତ ହେଲା। ଏଥିରେ ବୌଦ୍ଧ ତ୍ରିରତ୍ନ ଚିହ୍ନ ଅଙ୍କିତ କରାଯାଇଥିଲା। ଏ ସ୍ତମ୍ଭଟି ଶବରମାନଙ୍କର ଥିଲା ବିଶିଷ୍ଟ ପୂଜାପୀଠ। ଖ୍ରୀଷ୍ଟିୟ ପ୍ରଥମ ଶତାବ୍ଦୀ। ଓଡ଼ିଶାରେ ମହାଯାନପନ୍ଥା ପ୍ରଚଳନ ହେଲା। ବୁଦ୍ଧ, ବୋଧିସତ୍ତ୍ୱଙ୍କ ଉପାସନା ଆରମ୍ଭ ହେଲା। ସରଳପ୍ରାଣ ଶବର। ଏମାନେ ତ୍ରିରତ୍ନଙ୍କୁ ତିନିଦେବତା ଭାବେ ପୂଜା କଲେ। ସମୟକ୍ରମେ ମୂର୍ତ୍ତିକା ପୂଜା ଆରମ୍ଭ ହେଲା। ତାହା କାଷ୍ଠମୂର୍ତ୍ତିରେ ଖୋଦିତ ହେଲା। ଏହାର ବହୁ ପୂର୍ବରୁ ଶବରମାନେ କାଷ୍ଠମୂର୍ତ୍ତି ପୂଜା କରି ଆସୁଥିଲେ। ଏମିତି ଜଗନ୍ନାଥଙ୍କୁ ନେଇ ବହୁ ଧର୍ମୀୟ ମତବାଦ ରହିଛି। ଏହାର ମୂଳଉତ୍ସ ହିଁ ଶାବରୀ ସଂସ୍କୃତି ତଥା ଶବରମାନଙ୍କର ଜଗନ୍ନାଥ ଉପାସନା।

ଅଷ୍ଟମ ଶତାବ୍ଦୀରେ ତାନ୍ତ୍ରିକ ବା ବଜ୍ରଯାନୀ ବୌଦ୍ଧଧର୍ମ ବିଶେଷ ପ୍ରସାର ଲାଭ କରିଥିଲା। ଏହି ଧର୍ମର ଇଷ୍ଟଦେବତା ଶ୍ରୀଜଗନ୍ନାଥ। ଏଇ କଥାଟି ସାହିତ୍ୟ ପ୍ରମାଣ ଉପରେ ପର୍ଯ୍ୟବସିତ। ଖ୍ରୀ:ଅ: ନବମ ଶତାବ୍ଦୀରେ ରଚିତ 'ଜ୍ଞାନସିଦ୍ଧି' ଗ୍ରନ୍ଥ। ଉଡ୍‌ଡ଼ୀୟାନର ରାଜା 'ଇନ୍ଦ୍ରଭୂତି'। ସେ ବୌଦ୍ଧ ବ୍ରଜଯାନ ମାର୍ଗୀ। ତାଙ୍କ ଜ୍ଞାନସିଦ୍ଧି ଗ୍ରନ୍ଥର ମଙ୍ଗଳାଚରଣରେ ଜଗନ୍ନାଥ ବୁଦ୍ଧ ରୂପେ ପରିକଳ୍ପିତ। ଯଥା– ପ୍ରଣିପତ୍ୟ ଜଗନ୍ନାଥଂ ସର୍ବଜୀନ ବରାର୍ଚ୍ଚିତଂ/ବୁଦ୍ଧମୟଂ ସିଦ୍ଧିଂ ବ୍ୟାପିନଂ ଗଗନୋପମମ୍। ତିବ୍ବତୀୟ ତେଙ୍ଗୁରମାନଙ୍କର ଇନ୍ଦ୍ରଭୂତି ବହୁ ବିଦିତ। ତାଙ୍କ ପୁତ୍ର ଗୁରୁ ପଦ୍ମସମ୍ଭବ। 'ଜ୍ଞାନସିଦ୍ଧି'ରେ ବର୍ଣ୍ଣିତ ଜଗନ୍ନାଥ ଓଡ଼ିଶାରେ ହୋଇ ନପାରି ଥାଆନ୍ତି ମାତ୍ର ବୁଦ୍ଧ ସେତେବେଳକୁ ଜଗନ୍ନାଥରେ ପରିଣତ ହୋଇସାରିଥିଲେ। ମହାଯାନରେ ଆଦିବୁଦ୍ଧ ଅବଲୋକିତେଶ୍ୱର ଭାବେ ପରିଚିତ। ଅନୁରୂପ ଭାବେ ତନ୍ତ୍ର ତଥା ବଜ୍ରଯାନରେ ବୁଦ୍ଧ 'ଜଗନ୍ନାଥ'ରେ ପରିଣତ ହୋଇଥିଲେ।

ଓଡ଼ିଶାର କବିଗଣ ଜଗନ୍ନାଥଙ୍କୁ 'ବୁଦ୍ଧ'ରୂପେ ବର୍ଣ୍ଣନା କରିଛନ୍ତି। ପଞ୍ଚଦଶ ଶତାବ୍ଦୀର ଆଦିକବି ସାରଳାଦାସ। ତାଙ୍କର ଅମରକୃତି 'ମହାଭାରତ'। ଏହାର ବିଭିନ୍ନ ପର୍ବରେ ଜଗନ୍ନାଥ 'ବୁଦ୍ଧ'ରୂପେ ବର୍ଣ୍ଣିତ। ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା – ଏ ତ୍ରିମୂର୍ତ୍ତି ମହାବୌଦ୍ଧ ରୂପେ ପରିକଳ୍ପିତ – ନାସା କର୍ଣ୍ଣ ଶ୍ରବଣ ଯେ ନୟନ ନ ଦିଶି / ଦେଖିଲେ ଇନ୍ଦ୍ରଦ୍ୟୁମ୍ନ ମହା ବିସ୍ମୟରେ ବସି / ମହାବୌଦ୍ଧ ବିକାଶ ହୋଇଲା ତିନିରେଖା / କରଚରଣ ପଲ୍ଲବ ନ ଦିଶଇ ଶିଖା (ବନପର୍ବ)। ସଭାପର୍ବରେ ମଧ୍ୟ ସାରଳା ଲେଖିଛନ୍ତି – ସଂସାର ଜନଙ୍କୁ ସେହୁ ତାରିବା ନିମନ୍ତେ / ବଉଦ୍ଧ ରୂପରେ ବିଜେ ଅଛି ଜଗନ୍ନାଥେ। ଦ୍ୱାପର ଯୁଗର ଶେଷ ହେବ, ଜଗନ୍ନାଥ ବଉଧ ରୂପ ଧାରଣ କରିବେ– ଏ କଥାଟି ବି ସଭାପର୍ବରେ ଉଲ୍ଲେଖ କରିଛନ୍ତି, ଯଥା– ଦ୍ୱାପର ଯୁଗ ଶେଷରେ



ହେବ ଜଗନ୍ନାଥ/ବଉଧ ରୂପରେ ବିଜେ କରିବେ ଏକଥାଟି ସତ୍ୟ । ପଞ୍ଚଦଶ ଶତାବ୍ଦୀବେଳକୁ ଜଗନ୍ନାଥ ବୌଦ୍ଧ ରୂପେ ପ୍ରସିଦ୍ଧିଲାଭ କରିଥିଲେ । ଏହା ସାରଳା ମହାଭାରତରେ ସୁସ୍ପଷ୍ଟ । ପଞ୍ଚସଖା ସାଧକମାନେ ପିଣ୍ଡ ବ୍ରହ୍ମାଣ୍ଡବାଦୀ । ସେମାନଙ୍କର ଜ୍ଞାନମିଶ୍ରା ଉପାସନା ପଦ୍ଧତି । ବଳରାମ, ଜଗନ୍ନାଥ, ଅଚ୍ୟୁତ, ଅନନ୍ତ, ଯଶୋବନ୍ତ – ଏମାନଙ୍କର ଶ୍ରୀଜଗନ୍ନାଥ ଇଷ୍ଟଦେବତା । ଏହା ସତ୍ତ୍ୱେ ସେମାନେ ଊଣା ଅଧିକେ ବୌଦ୍ଧଦର୍ଶନ ଦ୍ୱାରା ପ୍ରଭାବିତ । ଜଗନ୍ନାଥ ଦାସଙ୍କ ପୁଣ୍ୟ ଗ୍ରନ୍ଥ 'ଭାଗବତ' । ଏହାର ପଞ୍ଚମ ସ୍କନ୍ଧରେ ବୁଦ୍ଧଙ୍କ କଥା ବର୍ଣ୍ଣିତ – ପ୍ରବୁଦ୍ଧ ବୁଦ୍ଧ ପୁଣି ଏମନ୍ତ ସମୟରେ/ ସିଦ୍ଧାନ୍ତ ହେବ ଘରେ ଘରେ / ସକଳ ବର୍ଣ୍ଣ ଏକ ଠାରେ / ବସି ଭୁଞ୍ଜିବ ସୁଗତରେ । 'ଦାରୁବ୍ରହ୍ମ ଗୀତା'ରେ କବି ମଧ ଜଗନ୍ନାଥଙ୍କୁ ବୁଦ୍ଧ କହିଛନ୍ତି – ଷଷ୍ଠ ଦିବସ ଅନ୍ତରେଣ/ ପାଦ ଯେ ପାଣି ହେଲା କ୍ଷୀଣ / ବଉଦ ରୂପ ହେବା ପାଇଁ / ପାଦ ପାଣି ମିଳିଲେ ନାହିଁ । ପଞ୍ଚସଖା ସାଧକମାନେ ମହାଶୂନ୍ୟକୁ ଆଦିମାତା ରୂପେ ଗ୍ରହଣ କରିଛନ୍ତି । ଏ କଥାଟି ଅଚ୍ୟୁତାନନ୍ଦ ଦାସଙ୍କ ଶୂନ୍ୟସଂହିତାରେ ଉଲ୍ଲେଖ ରହିଛି– ବୃଦ୍ଧାମାତା ଆଦିଶକ୍ତି ସଖୀଛନ୍ତି ରହି/ ନିରାକାର ଭଜନେ ନିର୍ମଳ ଭକ୍ତି ପାଇ । ବୌଦ୍ଧଧର୍ମର ମଧ ମହାଶୂନ୍ୟ ଆଦିମାତା । ସେ ବୁଦ୍ଧମାତା, ପ୍ରଜ୍ଞାପାରମିତା ରୂପେ ପ୍ରକୀର୍ତ୍ତିତା । ଶ୍ରୀକୃଷ୍ଣ ସ୍ୱୟଂ ସଖା ସୁଦାମାଙ୍କ ନିକଟରେ ନିଜ ଇଚ୍ଛାପ୍ରକଟ କରିଛନ୍ତି । ବୌଦ୍ଧ ରୂପେ ପ୍ରତିଷ୍ଠିତ ହେବାକୁ ପ୍ରତିଶ୍ରୁତି ଦେଇଛନ୍ତି । ଗୋକୁଳର ଶ୍ରୀକୃଷ୍ଣ 'ବ୍ରଜସୁନ୍ଦର–ନନ୍ଦନନ୍ଦନ' ନୁହନ୍ତି । ଏ କଥାଟି ବି ଶୂନ୍ୟସଂହିତାରେ ପ୍ରକାଶିତ । ଷୋଡ଼ଶ ଶତାବ୍ଦୀର କବି ଦ୍ୱାରିକା ଦାସଙ୍କ ଭାଗବତ, ଦେବାନନ୍ଦ ଦାସଙ୍କ 'ବୈଚନ୍ଦ୍ର ଗୀତା', ପ୍ରତାପ ରାୟଙ୍କ 'ଶଶିସେଣା', ବିପ୍ର ନୀଳାମ୍ବର ଦାସଙ୍କ 'ଦେଉଳ ତୋଳା'– ଏ ସମସ୍ତ ସୃଷ୍ଟିରେ ଜଗନ୍ନାଥ ବୌଦ୍ଧ ରୂପେ ଚିତ୍ରିତ ।

ଲୀଳାମୟ ଶ୍ରୀଜଗନ୍ନାଥ । ତାଙ୍କ ପାଣିପାଦ ବ୍ରହ୍ମା ବିରଞ୍ଚିଙ୍କୁ ଅଜଣା । ବଡ଼ ହୁନ୍ଦରିଆ ସେ ନୀଳକନ୍ଦରିଆ । ସେ ଚିର ରହସ୍ୟାଚ୍ଛନ୍ନ, ରହିଥିବେ ରହସ୍ୟାବୃତ ଅନନ୍ତକାଳ ପର୍ଯ୍ୟନ୍ତ । ଜଗନ୍ନାଥଙ୍କ ଚଳଣିର ମୁଖ୍ୟ ବିଭାବ ସହ ବୌଦ୍ଧ, ଜୈନ ଧର୍ମଦର୍ଶନ ସହ ସାମଞ୍ଜସ୍ୟ ରହିଛି । ବୌଦ୍ଧଧର୍ମର ତାନ୍ତ୍ରିକ ଉପାସନା ପଦ୍ଧତି ଜଗନ୍ନାଥ ଧର୍ମରେ ଏବେ ବି ଅନୁସୃତ । ଖ୍ରୀ:ଅ: ଅଷ୍ଟମ ଶତାବ୍ଦୀରେ ଉଡ୍ଡୀୟାନ (ଓଡ଼ିଶା) ଏକ ପ୍ରସିଦ୍ଧ ତନ୍ତ୍ରପୀଠ ଭାବେ ବହୁଜନ ଖ୍ୟାତିଲାଭ କଲା । ଏହାର ପ୍ରସିଦ୍ଧି ବିଭିନ୍ନ ଗ୍ରନ୍ଥରେ ପ୍ରକଟିତ । ଜ୍ଞାନାର୍ଣ୍ଣବ, ବୃହନ୍ନଳା, ରୁଦ୍ରଯାମଳ, କୁବ୍‌ଜିକାତନ୍ତ୍ର, ପୀଠ ନିର୍ଣ୍ଣୟ, କାଳିକା ପୁରାଣ– ଏଗୁଡ଼ିକ ବୌଦ୍ଧତନ୍ତ୍ର । ବୌଦ୍ଧଶାସ୍ତ୍ର ମଧ । ଏଥିରେ ତନ୍ତ୍ର ଉପାସନା ପଦ୍ଧତି ନିର୍ଣ୍ଣୟ କରାଯାଇଛି । ଜଗନ୍ନାଥ ଧର୍ମରେ ଏବେ ବି ତାନ୍ତ୍ରିକ ପଦ୍ଧତିର ପ୍ରଚଳନ ରହିଛି । ଜଗନ୍ନାଥଙ୍କ ଭୋଗ ବିମଳାଙ୍କୁ ଅର୍ପିତ ହୁଏ, ହୋଇଯାଏ ମହାପ୍ରସାଦ । ଏସବୁ ଉପାସନା ବୌଦ୍ଧ ଶାସ୍ତ୍ରାନୁସାରୀ । ତନ୍ତ୍ରଶାସ୍ତ୍ରରେ ଶ୍ରୀଜଗନ୍ନାଥ, ନୀଳାଦ୍ରୌ ଶ୍ରୀଜଗନ୍ନାଥଃ ସାକ୍ଷାତ୍ ଦକ୍ଷିଣ କାଳିକାଃ । ବୌଦ୍ଧ ତ୍ରିରତ୍ନକୁ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଭାବେ ଗ୍ରହଣ କରାଯାଏ । ସେହିପରି ଚକ୍ରରାଜ ସୁଦର୍ଶନ ବଜ୍ରଯାନର ଇଙ୍ଗିତ ପ୍ରଦାନ କରେ । ବୌଦ୍ଧଧର୍ମରେ ଅନୁରୂପ ପ୍ରଥାଟି ରହିଛି । ଏ ସବୁକୁ ବିଚାର କଲେ ବୌଦ୍ଧଧର୍ମର ଛାପ ଯେ ଜଗନ୍ନାଥ ଧର୍ମରେ ରହିଛି । ଏ କଥାଟି ଅସ୍ୱୀକାର କରାଯାଇ ନ ପାରେ ।

ଜଗନ୍ନାଥ ଅବତାରୀ । ବୁଦ୍ଧ, କୃଷ୍ଣ, ରାମ – ସଭିଏଁ ତାଙ୍କର ଅଂଶର ସ୍ୱରୂପ । ଏମାନେ ପରଂବ୍ରହ୍ମ, ପରିପୂର୍ଣ୍ଣ ନୁହନ୍ତି । ଏ କଥାଟିକୁ କବି ଦୀନକୃଷ୍ଣ ଦାସ ଲେଖିଲେ ରସକଲ୍ଲୋଳ କାବ୍ୟରେ – କମଳ ନେତ୍ରୀ କମଳା ପ୍ରାଣର ନାୟକ / କଳା ପର୍ବତରେ ଲୀଳା କରି ଅନେକ / କଲେ ଇଚ୍ଛା ହେବା ମନେ କଂସ ଅନ୍ତକ / ଉଶ୍ୱାସ କରିବା ମହୀଭାରା ଯେତେକ / କପଟେ ବୋଲାଇବା ଗୋପେ ନନ୍ଦ ବାଳକ / କଉତୁକେ ବୋଲାଇବା ପଶୁ ପାଳକ / କଚ୍ଛପ ମତ୍ସ୍ୟାଦି ଅବତାର ଯେତେକ / କରିବାକୁ ଜାତ ଜଗନ୍ନାଥ ଜନକ । ତାଙ୍କ ଧର୍ମ ଏକ ସାର୍ବଜନୀନ ମାନବୀୟ ଗଣଧର୍ମ । ତେଣୁ ସେ ଜଗବନ୍ଧୁ, ଜଗମୋହନ, ଜଗଜ୍ଜୀବନ । ଅଦ୍ୱୈତ, ଦ୍ୱୈତ, ଦ୍ୱୈତାଦ୍ୱୈତ, ଶୁଦ୍ଧାଦ୍ୱୈତ, ଅଚିନ୍ତ୍ୟ ଭେଦାଭେଦର ସମନ୍ୱୟ ହିଁ ଜଗନ୍ନାଥ ଦର୍ଶନ । ଏସବୁ ମତବାଦ ଜଗନ୍ନାଥ ଦର୍ଶନରେ ଅସ୍ତିତ୍ୱ ହରାଇଛନ୍ତି । ତେବେ ଜଗନ୍ନାଥଙ୍କ ଅବତାରୀ ତତ୍ତ୍ୱରେ 'ବୁଦ୍ଧ' ଏକ ଅବତାର ମାତ୍ର । ଜଗନ୍ନାଥ 'ବୁଦ୍ଧ' ରୂପେ ବିବେଚିତ ହୋଇଛନ୍ତି । କିନ୍ତୁ ବୁଦ୍ଧ ନୁହନ୍ତି– ଏ କଥାଟି ଅନେକ ସ୍ୱୀକାର କରିଛନ୍ତି ।



'ବୁଦ୍ଧ' ଜଗନ୍ନାଥଙ୍କ ନବମ ଅବତାର। ଜଗନ୍ନାଥ ମନ୍ଦିର ସିଂହଦ୍ୱାର ଉପରି ଭାଗ, ଏଥିରେ ଦଶାବତାର ଚିତ୍ର ଖୋଦିତ ହୋଇଛି। ତନ୍ମଧ୍ୟରେ 'ବୁଦ୍ଧ' ନବମ ଅବତାର ରୂପେ ସ୍ଥାନିତ। ସେ ଏକେଶ୍ୱର ବୁଦ୍ଧ– ଜଗନ୍ନାଥ ହେଉଛନ୍ତି ଦଧିବାମନ! ଦ୍ୱାଦଶ ଶତାବ୍ଦୀର ଓଡ଼ିଆ କବି ଜୟଦେବ, ତାଙ୍କରି ଅମର ଲେଖନୀ ନିସୃତ ମହାକାବ୍ୟ 'ଗୀତଗୋବିନ୍ଦ'। ବିଭୁମକରନ୍ଦ ପାନରେ ବିଭୋର ଜୟଦେବ ଲେଖିଲେ 'ପ୍ରଳୟ ପ୍ରୟୋଧି' ଜଳେ। ଏଥିରେ ସେ କେଶବଙ୍କର ଦଶାବତାର କଥା ପ୍ରକାଶ କରିଛନ୍ତି। ତନ୍ମଧ୍ୟରୁ 'ବୌଦ୍ଧବତାର' ଅନ୍ୟତମ। କବି ବିହ୍ୱଳ ହୋଇ ଗାଇଛନ୍ତି, ନିନ୍ଦସି ଯଜ୍ଞ ବିଧେରହହଶ୍ରୁତିଜାତମ୍ / ସଦୟ ହୃଦୟ ଦର୍ଶିତପଶୁଘାତମ୍ / କେଶବଧୃତ ବୁଦ୍ଧ ଶରୀର ଜୟ ଜଗଦୀଶ ହରେ। ଅନୁରୂପ ଭାବେ ଜଗନ୍ନାଥଙ୍କୁ 'ବୁଦ୍ଧ' ରୂପେ ପରିକଳ୍ପନା କରିଛନ୍ତି ଓଡ଼ିଆ କବିମାନେ। ରଚିତ ହୋଇଛି ଅନେକ ପୁରାଣ ସାହିତ୍ୟ। ମାତ୍ର ଯେ ଜଗନ୍ନାଥ, ସେ 'ବୁଦ୍ଧ' ଏହାର ଠୋସ୍ ପ୍ରମାଣ ଏଯାବତ୍ ନାହିଁ। କିନ୍ତୁ ଜଗନ୍ନାଥ ଚେତନାରେ ବୁଦ୍ଧ ଧର୍ମଦର୍ଶନର କେତେକ ସାଦୃଶ୍ୟ ରହିଛି – ଏହା ଅନସ୍ୱୀକାର୍ଯ୍ୟ।

ସଂଘ, ଧର୍ମ, ବୁଦ୍ଧ – ବୌଦ୍ଧଧର୍ମ ଦର୍ଶନରେ ଯଥାକ୍ରମେ ମୈତ୍ରୀ, କରୁଣା, ପତିତପାବନ ତତ୍ତ୍ୱର ପରିପ୍ରକାଶ। ଏଗୁଡ଼ିକ ଜଗନ୍ନାଥ ଚେତନାରେ ଏକ ଏକ ବିଭବ ମାତ୍ର। ଉତ୍କଳୀୟ ଚେତନାରେ ଜଗନ୍ନାଥ ମୈତ୍ରୀଦେବ, କରୁଣାର ଅବତାର, ପତିତପାବନ। ବୁଦ୍ଧଙ୍କୁ ମଧ୍ୟ ପତିତପାବନ ଭାବେ ଗ୍ରହଣ କରାଯାଏ। ଜଗନ୍ନାଥ ମଧ୍ୟ ପତିତପାବନ। ପୁରୀ ଶ୍ରୀମନ୍ଦିର ସିଂହଦ୍ୱାରଠାରେ ଜଗନ୍ନାଥଙ୍କ ପତିତପାବନ ମୂର୍ତ୍ତି ମଧ୍ୟ ଖୋଦିତ। ଉତ୍କଳ ବୌଦ୍ଧ ସନ୍ଥଗଣ, ବହୁ ସ୍ଥାନରେ ଜଗନ୍ନାଥଙ୍କୁ ନିର୍ଗୁଣ ନିରାକାର, ଅଲେଖ, ଶୂନ୍ୟପୁରୁଷ ରୂପେ ମଧ୍ୟ ସମ୍ବୋଧନ କରିଛନ୍ତି।

ଜଗନ୍ନାଥଙ୍କ ମୂଳ ସ୍ୱରୂପ ଏବେବି ରହସ୍ୟାବୃତ୍ତ। ଏହି ରହସ୍ୟରେ ତାଙ୍କରି ମହତ୍ତ୍ୱ ନିହିତ। ସକଳ ଅନ୍ୱୟର ଅନନ୍ୟ ସମନ୍ୱିତ ରୂପ ହିଁ ଜଗନ୍ନାଥ। ବହୁ ବୌଦ୍ଧ ଗବେଷକ ଜଗନ୍ନାଥଙ୍କ ମଧ୍ୟରେ ବୁଦ୍ଧତ୍ୱ ଆରୋପ କରିଛନ୍ତି। ଏପରିକି ତାଙ୍କ ନାଭିକମଳରେ ସ୍ଥାପିତ ବ୍ରହ୍ମ ବୁଦ୍ଧଦନ୍ତ ବୋଲି କହିଛନ୍ତି। କିନ୍ତୁ ଏକଥାକୁ ବୈଷ୍ଣବ ଧର୍ମାବଲମ୍ବୀମାନେ ଅସ୍ୱୀକାର କରିଛନ୍ତି। ବହୁ ବିଦ୍ୱାନ ପଣ୍ଡିତ ମଧ୍ୟ ସେମାନଙ୍କ ସହ ଏକମତ। ସମ୍ଭବତଃ ଶଙ୍କରାଚାର୍ଯ୍ୟଙ୍କ ଆଗମନ ପର୍ଯ୍ୟନ୍ତ ଜଗନ୍ନାଥ ଥିଲେ ବୌଦ୍ଧାୟିତ। ଶଙ୍କରାଚାର୍ଯ୍ୟଙ୍କ ସ୍ମାର୍ତ୍ତ ପଦ୍ଧତିରେ ହେଲେ ଯୁଗପତ୍ ଶୈବାୟିତ, ବୈଷ୍ଣବାୟିତ। ସର୍ବଧର୍ମର ସମନ୍ୱୟ କ୍ଷେତ୍ର ଶ୍ରୀକ୍ଷେତ୍ର। ଜଗନ୍ନାଥ ଧର୍ମର ସାର୍ବଜନୀନ ଉଦାର ମହିମା ଏଥିରେ ସବୁ ଧର୍ମ, ମତ, ଦର୍ଶନ ଏକ ସୂତ୍ରରେ ଗ୍ରଥିତ। ଜଗନ୍ନାଥ ଚେତନାରେ ବୌଦ୍ଧ, ଜୈନ, ଶୈବ, ଶାକ୍ତ, ବୈଷ୍ଣବ ଧର୍ମର ସ୍ୱରୂପ ପ୍ରତିଫଳିତ। ଜଗନ୍ନାଥଙ୍କର ଏ ଅନନ୍ୟ ସମନ୍ୱୟରେ ବୌଦ୍ଧଧର୍ମର ଅନ୍ୱୟ ଆଦୌ ନଗଣ୍ୟ ନୁହେଁ।

ଆଷାଢ଼ ଶୁକ୍ଳ ଦ୍ୱିତୀୟା, ଶ୍ରୀଜଗନ୍ନାଥଙ୍କ ବିଶ୍ୱପ୍ରସିଦ୍ଧ ରଥଯାତ୍ରା। ଏହା ଉପରେ ବୌଦ୍ଧ ରଥଯାତ୍ରା ପ୍ରଭାବ ପରିଲକ୍ଷିତ। ଶବରମାନେ ବୌଦ୍ଧ ରଥଯାତ୍ରାକୁ ମଧ୍ୟ ଅନୁକରଣ କରିଛନ୍ତି। ବୌଦ୍ଧ ତ୍ରିରନ୍‌କୁ ଅନୁକରଣ କରି ସେମାନେ କାଷ୍ଠରେ ନିର୍ମିତ ତ୍ରିମୂର୍ତ୍ତି ତିଆରି କଲେ। ସେଗୁଡ଼ିକୁ ରଥରେ ବସାଇ ରଥଯାତ୍ରା ଆରମ୍ଭ କରିଥାଇ ପାରନ୍ତି। ମହାପ୍ରଭୁଙ୍କ ସ୍ନାନଯାତ୍ରା ମଧ୍ୟ ବୌଦ୍ଧ ପରମ୍ପରାରୁ ମୁକ୍ତ ନୁହେଁ। ବର୍ଷାରମ୍ଭରେ କିଛି କାଳପରେ ବୌଦ୍ଧ ସନ୍ୟାସୀମାନେ ବୁଦ୍ଧମୂର୍ତ୍ତିକୁ ବାହାରକରି ସ୍ନାନ କରାନ୍ତି। ତା'ପରେ ରଥରେ ବସାଇ ପରିକ୍ରମା କରନ୍ତି। ଏଇଟି ବୌଦ୍ଧଧର୍ମର ଏକ ସ୍ୱତନ୍ତ୍ରବିଧି। ପରିବ୍ରାଜକ ଫାହିୟାନ (୫ମ ଖ୍ରୀ:ଅ:) ବୌଦ୍ଧ ରଥଯାତ୍ରାର ଏକ ବିଶଦ୍ ବିବରଣୀ ଦେଇଛି। ତାହା ଖୋଟାନ୍‌ଠାରେ ହୋଇଥିବା ସେ ଉଲ୍ଲେଖ କରିଛନ୍ତି। ତହିଁରେ ରଥ ଆଗରେ ରାଜା ଛେରା ପହଁରା କରିବା ପ୍ରସଙ୍ଗ ମଧ୍ୟ ସନ୍ନିବିଷ୍ଟ। ଏସବୁ ବୌଦ୍ଧ ଉପାସନା ତତ୍ତ୍ୱର ଏକ ଏକ ବିଭବ, ଯାହାର ପ୍ରଭାବ ଆପାତତଃ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ଉପରେ ରହିଛି।

ଜଗନ୍ନାଥଙ୍କ ମହାପ୍ରସାଦ ସେବନରେ ମିଳେ କୈବଲ୍ୟ। ଏଥିରେ ନାହିଁ ଜାତି, ଧର୍ମ, ବର୍ଣ୍ଣ, ଲିଙ୍ଗ ଭେଦଭାବ। ଚାଣ୍ଡାଳ ହାତୁଁ ବ୍ରାହ୍ମଣ ଛଡ଼ାଇ ଖାଆନ୍ତି। ବୌଦ୍ଧ ଧର୍ମରେ ମହାପ୍ରସାଦ ସେବନରେ ଏଇ ଭାବଟି ପରିଲକ୍ଷିତ। ଏହି ଧର୍ମରେ ନିର୍ବାଣର ପୂର୍ବ ସୋପାନ 'ଏକୀଭାବ'। ଏହା ଜୈନ ଏକୀଭାବର

ଅନୁରୂପ। ଜଗନ୍ନାଥଙ୍କ ମହାପ୍ରସାଦକୁ କୁହାଯାଏ 'କୈବଲ୍ୟ'। ଜୈନଧର୍ମରେ 'କେବଳୀଭାବ' ବା କୈବଲ୍ୟ ପୁରୁଷୋତ୍ତମ ମହାପ୍ରସାଦ ଭାବେ ପରିଗଣିତ। 'କୈବଲ୍ୟ' ଭାବ ଶ୍ରୀକ୍ଷେତ୍ର ଛଡ଼ା ଅନ୍ୟତ୍ର ଦୁର୍ଲ୍ଲଭ। 'ଜୀବ', 'ଅଜୀବ' – ଏ ଦୁଇର ମିଶ୍ରଣରେ 'ଏକୀଭାବ', ତା'ପରେ ନିର୍ବାଣ। ବୈଷ୍ଣବୀୟ 'ମୁକ୍ତି' ଏହି କୈବଲ୍ୟ ସହ ସମ୍ବନ୍ଧିତ। 'କୈବଲ୍ୟ' (ମହାପ୍ରସାଦ ବା ଅନ୍ନ) ମଧ୍ୟରେ ମୁକ୍ତି ରହସ୍ୟାଚ୍ଛନ୍ନ ଭାବେ ନିହିତ। ଏ କଥାଟିକୁ ଓଡ଼ିଆ କବି ଗାଇଛନ୍ତି – ମୁକ୍ତିଦେବା ଗୁପ୍ତ ହୋଇଅଛି ଯୁକ୍ତାକ୍ଷରେ / ବୈଷ୍ଣବ ବିହୁନେ କେହୁ ଜାଣିବ ସଂସାରେ। ମହାପ୍ରସାଦ ସେବନ ପରେ ହସ୍ତ ପ୍ରକ୍ଷାଳନ ମନା। ଏହା ବୌଦ୍ଧ 'ମହାନିର୍ବାଣ' ତନ୍ତ୍ରରେ ବି ଉଲ୍ଲେଖ ରହିଛି। ଏହି ବିଶ୍ୱାସଟି ଜଗନ୍ନାଥ ଧର୍ମରେ ଏବେ ସୁଦ୍ଧା ଅତୁଟ ରହିଛି। ଶ୍ରୀଜଗନ୍ନାଥ ଏକମାତ୍ର କୈବଲ୍ୟଦାତା। ତାଙ୍କରି ନାମ ସ୍ମରଣରେ 'ମୁକ୍ତି' ମିଳିଥାଏ। ଆନ ତୀର୍ଥଦର୍ଶନର ଆଉ ଲୋଡ଼ା ନାହିଁ। ସେ ତୀର୍ଥ ନାମରେ ନାନା ଦୂରିତ ନାଶହୁଏ। ବଇକୁଣ୍ଠେ ବସି ବୈକୁଣ୍ଠ ସନ୍ତୋଷେ– ପ୍ରାଣୀଏ ତରି ଯାନ୍ତି ଭବବନ୍ଧନରୁ।

ଓଡ଼ିଆ ସିଦ୍ଧାଚାର୍ଯ୍ୟ ଲୁଇପାଦ ଲେଖିଛନ୍ତି 'ଲୋହିଗୀତା'। ବିହ୍ୱଳ ହୋଇ ଗାଇଛନ୍ତି, ବଉଦ ରୂପେ ନୀଳଗିରି ରହିଂ / ବଟ ଯହୁଁ ନୀଳଗିରି ଧରଇ / କଳିଯୁଗରେ ବିଜେ ନୀଳଗିରିରେ। ବଉଧ ରୂପେ ଶଙ୍ଖଚକ୍ରଧାରୀ। ଏମିତି ଓଡ଼ିଆ କବିକୁଳ ଜଗନ୍ନାଥଙ୍କୁ ମହାବୌଦ୍ଧ ରୂପେ ଚିତ୍ରଣ କରିଛନ୍ତି। ତଲ୍ଲୀନ ହୋଇଯାଇଛି ଭାବଭକ୍ତିରେ। ଜଗନ୍ନାଥ ମହାପ୍ରଭୁଙ୍କୁ ଯେ ଯେମିତି ଡାକନ୍ତି, ସେ ସେହିପରି ଦେଖାଦିଅନ୍ତି। ଭକ୍ତିରେ ବଶ ଭାବ ବିନୋଦିଆ। ତାଙ୍କ ସମ୍ପର୍କରେ ଶ୍ରୁତି କହେ – ସର୍ବରହସ୍ୟ ପୁରୁଷୋତ୍ତମସ୍ୟ / ଦେବାଃ ନ ଜାନାନ୍ତି କୃତ ମନୁଷ୍ୟଃ ? ଦେବତା ତାଙ୍କର ରହସ୍ୟ ଗ୍ରନ୍ଥି ଉନ୍ମୋଚନ କରିବାକୁ ସକ୍ଷମ ନୁହନ୍ତି। ମନୁଷ୍ୟ ତ ନିମିତ୍ତ ମାତ୍ର। ସ୍ୱୀୟ ଜ୍ଞାନ, ଚିନ୍ତା, ତର୍କର ପ୍ରୟୋଗରେ ସେ ରହସ୍ୟ ବା କିଭଳି ଅତିକ୍ରମ କରିପାରିବେ ? କବି, ଗବେଷକ ଅବା ଦାର୍ଶନିକ !

ସା/ପୋ – ପୁରୁଷୋତ୍ତମପୁର
କେନ୍ଦ୍ରାପଡ଼ା

# ତୋ ପାଦେ ଗଲି ମୁଁ ଶରଣ

ଛନ୍ଦା ମିଶ୍ର

କାଳିଆ .......... ତୋ ପାଦେ ଗଲି ମୁଁ ଶରଣ
କୋଳେଇ ନେବୁରେ
ଆଖିଲୁହ ପୋଛି
ଯେଉଁଦିନ ହେବ ମରଣ........ ।
ସଂସାର ହାଟରେ ନାଟ କରି କରି
ପାଦ ମୋ ପଡ଼ିଛି ଥକି
ଜୀବନ ଜଞ୍ଜାଳ ଯାତନା ଯେତେକ
କରିଅଛି ବଡ଼ଦୁଃଖୀ
ଦୁଃଖହାରୀ ବୋଲି ଜଗତ ଜାଣିଛି
ଦୁଃଖ କର ମୋ ହରଣ.....
ତୋ ପାଦେ ଗଲି ମୁଁ ଶରଣ....... ।



ଏ ଭବ ସାଗରେ ଭାବ ବିନୋଦିଆ
ଭାବରେ ଦେଉତୁ ଧରା
ମାଗିନାହିଁ କେବେ ଧନ କି ରତନ
ମାଗିନି ସରଗ ତରା
ଭାବର ଠାକୁର ଭାବି ପାରିକର
କାଳେ ମୋର ପରାଣ.......
ତୋ ପାଦେ ଗଲି ମୁଁ ଶରଣ........... ।

୩ ଆର୍/୬, ବିଜେବିନଗର
ଭୁବନେଶ୍ୱର



# ଦେହି ପଦ ପଲ୍ଲବ ମୁଦାରମ୍

ପୂର୍ଣ୍ଣଚନ୍ଦ୍ର ଦାସ

ଆଗରେ ପ୍ରାଚୀ ନଦୀର ନୀଳ ଜଳରାଶି । ନଦୀକୂଳରେ ଏକ ପଥରଖଣ୍ଡ ଉପରେ ଉଦାସୀନ ଭାବରେ ଗାଲରେ ହାତଦେଇ ବସିଛନ୍ତି ଜୟଦେବ । ଚତୁର୍ଦ୍ଦିଗକୁ ଲକ୍ଷ୍ୟ ନାହିଁ । ନୈରାଶ୍ୟ ଖେଳିଯାଇଛି ମନରେ । ସଂସାରର ସବୁବସ୍ତୁ, ଆଜି ଯେମିତି ଅଲୋଡ଼ା ଅଖୋଜା ତାଙ୍କ ପାଇଁ । ଆଖି ଦୁଇଟି ଲାଖି ରହିଛି ଆକାଶର ଅନନ୍ତ ନୀଳିମାରେ । କାହାକୁ ଖୋଜୁଛନ୍ତି ଯେମିତି କାଳକାଳ ଧରି । ଆଖିପତା ମୁଦିହୋଇ ଯାଉଛି । ଲୁହର ଧାର ଲମ୍ବିଛି ଚିବୁକ ମଣ୍ଡଳରୁ ଗଣ୍ଡଦେଶ ପର୍ଯ୍ୟନ୍ତ । ଜଳବେଶୀର ସ୍ନିଗ୍ଧ ପବନ, ଲତାକୁଞ୍ଜ, ପୁଷ୍ପ କିଶଳିତ ବୃକ୍ଷଲତା, ଅପରୂପା ଶୋଭାବତୀ ପ୍ରକୃତର ସବୁଜିମା ଭରା କାନ୍ତକୋମଳ ପରିବେଶର ବିଚ୍ଛୁରିତ ବିଳାସ କୌଣସି ଭାବାନ୍ତର ଆଣୁନାହିଁ ତାଙ୍କ ମନରେ । ପ୍ରକୃତିର ରୂପକଳ୍ପ ଯେପରି ନିର୍ଜୀବ ତାଙ୍କ ଦୃଷ୍ଟି ପଟଳରେ ।

ତାଙ୍କ ମାନସ ଚକ୍ଷୁ ଉନ୍ମୀଳିତ ହେଲା, ସେ ଦେଖିପାରିଲେ ଅନନ୍ତ ଆକାଶରେ ଝଟକୁଥିବା ଦୁଇଟି ଶ୍ୱେତପଦ୍ମ ତୋଳାକୁ, ହାତଯୋଡ଼ି ପ୍ରଣିପାତ କଲେ । ତାଙ୍କ କର୍ଣ୍ଣରେ ଶୁଭିଲା ମନ୍ଦମନ୍ଦ ହସ । ଚମକି ପଡ଼ିଲେ ସେ ! ପୁନଶ୍ଚ ହାତଯୋଡ଼ି ପଚାରିଲେ ପ୍ରଭୁ ଏ ଦୀର୍ଘଦିନର ଅନ୍ୱେଷଣର କ'ଣ ଶେଷନାହିଁ, ଏ ଜୟଦେବ ମନର ଭଗ୍ନମନୋରଥ କ'ଣ ପୂର୍ଣ୍ଣତା ପାଇବ ନାହିଁ । ହେ ଜଗଦୀଶ୍ୱର ଜଗନ୍ନାଥ !

ଦଲକାଏ ଥଣ୍ଡାପବନରେ ପ୍ରକୃତିସ୍ଥ ହେଲେ ଜୟଦେବ । ଆରେ ବେଳଗଡ଼ି ଯେ ସଞ୍ଜ ହେଲାଣି, ଘରକୁ ଫେରିବାକୁ ହେବ । ତେଣେ ପଦ୍ମାବତୀ ଅପେକ୍ଷା କରିଥିବେ ମୋ ଫେରିବା ବାଟକୁ । ଦ୍ରୁତ ପଦ ଚାଳନା କରି ଚାଲୁଥିବା ବେଳେ ଆକାଶରେ କାକକୃଷ୍ଣ ମେଘମାଳାରୁ ଚପଳାର ଚମକ ଝଟକି ଉଠୁଥିଲା । ସତେ ଯେପରି ରସନାଗର କୃଷ୍ଣଙ୍କର ବାହୁବନ୍ଧନରେ ବନ୍ଦିନୀ ସୁବର୍ଣ୍ଣବର୍ଣ୍ଣା ଶ୍ରୀ ରାଧାରାଣୀଙ୍କ ମୁଖପଦ୍ମ ଦେଖାଦେଇ ପୁନଶ୍ଚ ଲୁଚିଯାଉଛି ଶ୍ୟାମଘନଙ୍କ ଶ୍ୟାମଳ ତନୁରେ । ବନଭୂମିର ଶାନ୍ତ ବାଣବରଣକୁ ବିଦୀର୍ଣ୍ଣ କରି ବରଷୁଛି ବର୍ଷା । ପ୍ରତିଟି ପତ୍ର ମର୍ମରରେ ଗୁଞ୍ଜରିତ ହେଉଛି ସୃଷ୍ଟିର ଜୀବନ ସଙ୍ଗୀତ । ସତରେ, ପ୍ରକୃତି ଓ ପୁରୁଷର ମିଳନ କେତେ ସୁନ୍ଦର ମନୋମୁଗ୍ଧକାରୀ ତାକୁ ଯାହା ଚେତନାପୁରୁଷ ଜାଣିପାରିବ ସିନା... । ସମାହିତ ହୋଇଗଲା ତାଙ୍କ ମନରେ ଥିବା ଦୀର୍ଘଦିନଧରି ଅସମାହିତ ପ୍ରଶ୍ନଟି । ଆନନ୍ଦରେ ହାତଟେକି ନାଚି ଉଠିଲେ ସେ ବର୍ଷା ସହିତ ତାଳମିଳାଇ ।

ବର୍ଷାରେ ଭିଜିଭିଜି ଘରକୁ ଫେରିଲେ ସେ, ମେଘମୁକ୍ତ ଆକାଶର ସଫା ମନନେଇ । ଦାଣ୍ଡଦୁଆରେ ଅପେକ୍ଷାମାଣା ପନ୍ନୀ ପଦ୍ମାବତୀଙ୍କର ଚିବୁକରେ ଟିକେ ହାତମାରିଦେଇ ସ୍ମିତହାସ୍ୟ ତୋଳି ଘର ଭିତରକୁ ପଶିଗଲେ ସେ । ଓଦାବସନକୁ ବଦଳାଇ ଦେଇ ପଶିଗଲେ ଠାକୁର ଘର ଭିତରକୁ । ପ୍ରଭୁ ମାଧବଙ୍କୁ ଭକ୍ତି ଅର୍ଘ୍ୟ ସମର୍ପଣ କରି ରାଧାକୃଷ୍ଣଙ୍କୁ ହୃଦୟ କନ୍ଦରରେ ସ୍ଥାପନା କରି ଆରମ୍ଭ କଲେ କାବ୍ୟ ରଚନା । ନାମ ଦେଲେ 'ଗୀତ ଗୋବିନ୍ଦ' ।କାବ୍ୟର ରୂପରେଖ ନିରୂପଣ କଲେ । ପ୍ରାଚୀ ଉପତ୍ୟକାରେ ପୂଜିତ ଦ୍ୱାଦଶ ମାଧବଙ୍କ ସଙ୍କେତ ସ୍ୱରୂପ ବାରଟି ସର୍ଗରେ ବିଭକ୍ତ କଲେ ଗୀତଗୋବିନ୍ଦକୁ । ଲେଖାହେଲା ଆଦ୍ୟ ସ୍ତବକ–



ଯଦ୍ ଗୋପୀବଦନେନ୍ଦୁମଣ୍ଡନ ମଭୂତ୍କସ୍ତୁରିକାପତ୍ରକଂ
ଯଲ୍ଲକ୍ଷ୍ମୀକୁଚଶାତକୁମ୍ଭ କଳଶେ ବ୍ୟାଗୋଚମିନ୍ଦୀବରମ୍ ।
ଯନ୍ନିର୍ବାଣବିଧାନସାଧନବିଧୌ ସିଦ୍ଧାଞ୍ଜନଂ ଯୋଗିନାଂ
ତନ୍ନଶ୍ୟାମଳମାଭିରସ୍ତୁ ହୃଦୟେ କୃଷ୍ଣାଭିଧାନଂ ମହଃ ॥୧॥

ଅଷ୍ଟପଦୀର କାନ୍ତକୋମଳ ସରଳ ପଦ୍ୟାବଳୀରେ ପଦ ପରେ ପଦ ଲେଖା ଚାଲିଲା । ଦିନ ବିତୁଥିଲା ଏକ ଦିବ୍ୟ ସମ୍ମୋହନରେ । ମନେହେଉଥିଲା କେଉଁ ଏକ ଦିବ୍ୟାସତ୍ତା ଅବତାରଣା କରିଅଛି ତାଙ୍କ ସୂକ୍ଷ୍ମମନ ରାଜ୍ୟରେ । ଅପ୍ରାକୃତ ଚେତନା ପୁଲକିତ କରୁଅଛି ତାଙ୍କ ହୃଦୟ ତନ୍ତ୍ରୀକୁ । ପୁଲକରୁ ଜାତ ହେଉଛି ପ୍ରେମ । ପ୍ରେମରୁ ଭାବ । ଭାବର ପୂର୍ଣ୍ଣତାରୁ ପ୍ରକାଶିତ ହେଉଅଛି ମହାଭାବ । ମହାଭାବର ସ୍ୱରୂପ ହେଉଛନ୍ତି ଶ୍ରୀରାଧା । ମହାଭାବରେ ସେ ପୁରୁଷଶ୍ରେଷ୍ଠ ଶ୍ରୀକୃଷ୍ଣଙ୍କ ସହ ଅନୁବନ୍ଧିତ ସୃଷ୍ଟିର ଉନ୍ମେଷ କାଳରୁ । ଜୀବ ପରମର ଏକୀଭୂତ ଜଗୋତାପ୍ରାଦିକ କ୍ରିୟା ଚାଲୁ ରହିଛି ନିରନ୍ତର ଭାବରେ । ଜୀବ–ପରମର ମିଳନର ପୂର୍ଣ୍ଣାନନ୍ଦ ତାଙ୍କୁ ସ୍ୱପ୍ନାବିଷ୍ଟ କରିପକାଉଛି । ସେ ଲେଖିଚାଲୁଛନ୍ତି ସର୍ଗଃ ପରେ ସର୍ଗଃ । ପ୍ରଥମ ସର୍ଗଃ ସାମୋଦ ଦାମୋଦରଃରେ କୃଷ୍ଣଙ୍କର ବସନ୍ତ କାଳୀନ କେଳି ବର୍ଣ୍ଣନା, ଦ୍ୱିତୀୟ ସର୍ଗଃ ଅକ୍ଳେଶ କେଶବଃରେ କୃଷ୍ଣଙ୍କ ପ୍ରତି ରାଧାଙ୍କର ଅଭିମାନ ବର୍ଣ୍ଣନା, ତୃତୀୟ ସର୍ଗଃ, ମୁଗ୍ଧ ମଧୁସୂଦନଃରେ କୃଷ୍ଣଙ୍କର ଉତ୍କଣ୍ଠା ଓ ବିରହ ବର୍ଣ୍ଣନା, ଚତୁର୍ଥ ସର୍ଗଃ ସ୍ନିଗ୍ଧ ମଧୁସୂଦନରେ କୃଷ୍ଣଙ୍କ ପାଖରେ ସଖୀମାନଙ୍କ ଦ୍ୱାରା ରାଧାଙ୍କର ବିରହ ବର୍ଣ୍ଣନା, ପଞ୍ଚମ ସର୍ଗଃ ସାକାଂକ୍ଷ ପୁଣ୍ଡରୀକାକ୍ଷଃରେ ରାଧାଙ୍କ ପାଇଁ କୃଷ୍ଣଙ୍କ ବ୍ୟାକୁଳତା, ଷଷ୍ଠ ସର୍ଗ କୁଣ୍ଠବୈକୁଣ୍ଠଃରେ ରାଧାଙ୍କର ବାସକ ସଜ୍ଜା, ସପ୍ତମ ସର୍ଗଃ ନାଗର ନାରାୟଣଃରେ କୃଷ୍ଣଙ୍କ ଦର୍ଶନ ପାଇଁ ରାଧାଙ୍କର ବିଳାପ ଅଷ୍ଟମ ସର୍ଗଃ ବିଲକ୍ଷ୍ୟ ଲକ୍ଷ୍ମୀପତିଃରେ କୃଷ୍ଣଙ୍କ ଆଗମନକୁ ରାଧାଙ୍କ କୋପ, ନବମ ସର୍ଗଃ ମନ୍ଦ ମୁକୁନ୍ଦରେ ରାଧାଙ୍କ କୋପ ଶାନ୍ତି ପାଇଁ ସଖୀଙ୍କ ସାନ୍ତ୍ୱନା ପ୍ରଭୃତି ବର୍ଣ୍ଣନାକୁ ସେ ଲେଖିସାରିଛନ୍ତି ଗୀତଗୋବିନ୍ଦରେ । ବର୍ତ୍ତମାନ ଦଶମ ସର୍ଗଃ ଚତୁର ଚତୁର୍ଭୁଜରେ ରାଧାଙ୍କ ମାନଭଞ୍ଜନ ପାଇଁ କୃଷ୍ଣଙ୍କ ଚାଟୁକ୍ତି ବାଣୀକୁ ସେ ରୂପ ଦେଉଛନ୍ତି ଲେଖନୀ ମୁନରେ ।

ସ୍ମର ଗରଳଖଣ୍ଡନଂ ମମ ଶିରସି ମଣ୍ଡନଂ.... ଏଇଠି ଅଟକିଗଲା କବିଙ୍କର ଲେଖନୀ । ସପ୍ତମ ପଦର ପ୍ରଥମପାଦ ଲେଖିସାରି ମିତ୍ରାକ୍ଷର ପଦର ଶେଷପାଦ ଲେଖୁ ଲେଖୁ । ତାଙ୍କ ମନରେ ସ୍ୱତଃସ୍ଫୂର୍ତ୍ତ ଭାବରେ ଉଦ୍‌ଭାଷିତ ହେଉଥିବା ଶେଷ ଚରଣ ପଦକୁ ଲେଖିଲେ ନାହିଁ ସେ, ଏହା କ'ଣ କେବେ ସମ୍ଭବ ହୋଇପାରେ ଗୋପଚନ୍ଦନ କୃଷ୍ଣଚନ୍ଦ୍ର ଚାଟୁବଚନ କହି ରାଧାରାଣୀଙ୍କ ମାନଭଞ୍ଜନ କରିବା ପାଇଁ ଚେଷ୍ଟିତ । ରାଧାରାଣୀ କିନ୍ତୁ ନିଶ୍ଚଳ ସ୍ତମ୍ଭ ପରି ଠିଆହୋଇ ଶୁଣୁଥାନ୍ତି ମାଧବଙ୍କ କଥାସବୁ । ଚାଟୁବଚନରେ ବିଫଳ ହେବାରୁ କୃଷ୍ଣ ରାଧାରାଣୀଙ୍କୁ ଅତି ବିନୟ ହୋଇ ପ୍ରେମ ଜର୍ଜରିତ ଅବସ୍ଥାରେ ପ୍ରେମ ନିବେଦନ କରୁଛନ୍ତି ବୋଲି ରାଧାରାଣୀଙ୍କ ଚରଣ କମଳକୁ କୃଷ୍ଣ ସ୍ୱମସ୍ତକରେ ଧାରଣ କରିବେ । ଇଏକି ଉଦ୍‌ଭଟ କଳ୍ପନା ତାଙ୍କ ମନକୁ ଆସୁଛି । ସେ ବହୁତ ବାଟ ଆଗକୁ ଆଗେଇ ଗଲେଣି ଆଉ ନୁହେଁ । ଏ କାବ୍ୟ ରଚନା ଦ୍ୱାରା ଯଦି ତାଙ୍କ ଆରାଧ୍ୟ ଦେବ ମାଧବଙ୍କ ମାନ ଖଣ୍ଡିତ ହେବ ତେବେ କାହିଁ ଲେଖିବେ ସେ ଗୀତଗୋବିନ୍ଦ ବରଂ ନଲେଖିବା ଭଲ । ତଥାପି ତାଙ୍କ ଭାବନା ରାଜ୍ୟରେ ଏ ପର୍ଯ୍ୟନ୍ତ ସେହି ଶେଷପଦଟି ଗୁଞ୍ଜରିତ ହେଉଥିଲା । ପୋଥିଖେଦାକୁ ବନ୍ଦ କରି ଯଥା ସ୍ଥାନରେ ଥୋଇ ବ୍ୟର୍ଥତାର ମନନେଇ ଚାଲିଗଲେ ନଦୀକୁ ସ୍ନାନ କରିବାପାଇଁ ।

କ'ଣ ଜୋରରେ ଭୋକ ଲାଗୁଥିଲା କି ପଦ୍ମା ? ଆଗ ଖାଇ ବସିଛ ଯେ, ମୁହଁରେ ସ୍ମିତହାସ୍ୟ ତୋଳି ଚାଟୁଳତା ପୂର୍ବକ ପଚାରୁଥିଲେ ଜୟଦେବ । ଅଗଣାରେ ନିମ୍ନଦେଶକୁ ଲମ୍ବିଆସିଥିବା ଏକ ବୃକ୍ଷର ଶାଖାରେ ନିଜ ସ୍ନାନବେଳର ପିନ୍ଧା ଓଦାଲୁଗା ଶୁଖାଉ ଶୁଖାଉ । ଲୁଗା ଶୁଖାଇ ସାରି ବୁଲିପଡ଼ି ଦାଣ୍ଡପିଣ୍ଡାକୁ ଯାଇ ଦେଖନ୍ତି ପଦ୍ମାବତୀ ଏକ ଲୟରେ ବିସ୍ମୟ ବିମୂଢ଼ ହୋଇ ଚାହିଁ ରହିଛନ୍ତି ତାଙ୍କରି ମୁହଁକୁ । ହାତରେ ଧରିଛନ୍ତି ଅଧାଖିଆ ଭାତଗୁଣ୍ଡା । ଭାତଗୁଣ୍ଡାଟି କେତେବେଳୁ ଥାଳିରେ ଗଡ଼ିପଡ଼ିଲାଣି ଶୂନ୍ୟରେ ଝୁଲି ରହିଛି ବିଚରା ହାତଟି । ପାଖକୁ ଯାଇ ସ୍ତ୍ରୀ ପଦ୍ମାବତୀଙ୍କୁ ଥରୁଟିଏ ହଲେଇଦେଲେ ସେ, ପ୍ରକୃତିସ୍ଥ ହେଲେ ପଦ୍ମାବତୀ । ଆଉଥରେ ବଲବଲ ହୋଇ ଅନାଇ ରହିଲେ ସ୍ୱାମୀ ଜୟଦେବଙ୍କ ମୁହଁକୁ । ଏ କ'ଣ ସ୍ୱାମୀ ? ଆପଣତ ଏଇ ଟିକେ ଆଗରୁ ଫେରିଆସିଥିଲେ ସ୍ନାନ ନକରି ! ବାଟରେ ଆପଣଙ୍କର ଅଧାପଦର ଶେଷପାଦ ମନେପଡ଼ିବାରୁ ।



ତୁମକୁ ଖାଇବାକୁ ଦେବାକୁକହି ପଶିଗଲ ପୋଥିଘର ଭିତରକୁ ହାତରେ ଲେଖନୀ ଧରି । ଅଧାପଦ ପୂରଣ କରି ତତ୍‌କ୍ଷଣାତ୍ ଫେରିଆସିଲେ । ମୁଁ ବାଢ଼ିଥିବା ଥାଳିରେ ବସି ଭୋଜନ କଲ । ମୁଁ ପାଖରେ ବସି ବିଞ୍ଚଣା କଲି । ସେ ମୁହୂର୍ତ୍ତରେ ମୁଁ କେତେକଥା ପଚାରିଲି ଆପଣଙ୍କୁ, କିଛି ନଶୁଣିଲାପରି ଓଠଧାରେ କେବଳ ଏକ ରହସ୍ୟମୟ ହସଫୁଟାଇ ହାତଧୋଇ ଚାଲିଗଲ ପ୍ରାଚୀନଦୀ ଆଡ଼କୁ ପଡ଼ିଥିବା ବାଟରେ । ଫେରିଯିବା ବାଟରେ ଥରୁଟିଏ ବୁଲି ଚାହିଁଲ ମୋତେ ଆଉ ଲୁଚିଗଲ ମୋ ଦୃଷ୍ଟିପଥରୁ ।

ପଦ୍ମାବତୀଙ୍କ କଥାଶୁଣି ହସିଉଠିଲେ ଜୟଦେବ । ଆଉ ପଚାରିଲେ ପଦ୍ମା, ତୁମେ କେବେଠାରୁ ରସିକତା କଲଣି । ତୁମର ଓ ନୂଆରୂପ ଦେଖି ମୁଁ ଭାରି ଖୁସିପ୍ରିୟେ । ନାଁ, ସ୍ୱାମୀ ଓ ମୋର ରସିକତା କଥା ନୁହେଁ । ଏହା କ'ଣ କେବେ ସମ୍ଭବ ଏକ ପତିବ୍ରତା ସ୍ତ୍ରୀ ପକ୍ଷରେ ସ୍ୱାମୀ ଭୋଜନ କରିବା ପୂର୍ବରୁ ସେ ଭୋଜନ କରିବସିବ । ଆପଣ ଭୋଜନ କରି ଫେରିଯିବା ପରେ ବଳିଥିବା ଖାଦ୍ୟକୁ ସେଇ ଥାଳିରେ ଖାଇ ବସିଥିଲି । ଆପଣ ଯେ ଆସିଲେ... । ପଦ୍ମାବତୀଙ୍କ କଥା ସରିନଥିଲା । ତାଙ୍କ କଥାକୁ ଶୁଣି ନଶୁଣିଲା ପରି ତିଳେମାତ୍ର କର୍ଣ୍ଣପାତ ନକରି ଦ୍ରୁତ ପଦପାତରେ ଧାଇଁଗଲେ ପୋଥିଘର ଭିତରକୁ । ଯେଉଁଠି ତାଙ୍କୁ ଅପେକ୍ଷା କରିଥିଲା ତାଙ୍କ କବି ଜୀବନର ସବୁଠାରୁ ବଡ଼ ବିସ୍ମୟ । ଯଥା ସ୍ଥାନରେ ରଖିଥିବା ଗୀତଗୋବିନ୍ଦର ପୋଥିଖେଦାକୁ ହାତକୁ ଉଠାଇଆଣି ଯାହା ଦେଖିଲେ ସେ ନିଜକୁ ବିଶ୍ୱାସ କରିପାରିଲେ ନାହିଁ । ସ୍ୱରଚିତ ଗୀତଗୋବିନ୍ଦ କାବ୍ୟର ଦଶମ ସ୍ୱର୍ଗଃ ଚତୁର ଚତୁର୍ଭୁଜଃର ସପ୍ତମ ପଦ ସ୍ମର ଗରଳ ଖଣ୍ଡନଂର.... ଶେଷ ଚରଣ ପଦ ଯେଉଁ ପଦଟିକି ବିଗତ କିଛି ଦିନ ହେବ ତାଙ୍କ ମନରେ ସ୍ୱତଃସ୍ଫୂର୍ତ୍ତ ଭାବରେ ଉଦ୍‌ଭାଷିତ ହେଉଥିଲା ଯାହାକୁ ସେ ଲେଖିବେ କି ନଲେଖିବେ ବୋଲି ମନସ୍ଥ କରିପାରୁନଥିଲେ । ମନରେ ଶଙ୍କାଥିଲା ତାଙ୍କ ଆରାଧଦେବଙ୍କ ମର୍ଯ୍ୟାଦା ହାନି ହେବ ବୋଲି ଅନୁରୂପ ଭାବେ ତାଙ୍କ ହୃଦୟ ମଧ୍ୟରୁ ବାରମ୍ବାର ଉଦ୍‌ଭାଷିତ ହେଉଥିବା ଅବିକଳ ସେହି ପଦ 'ଦେହି ପଦ ପଲ୍ଲବ ମୁଦାରମ୍' ତାଙ୍କ ମନର କଥାକୁ କିଏ ଆସି ଲେଖିଦେଇ ଗଲା ତାଙ୍କର ରୂପରେ ଆସି । ଏ ମାୟା ନା ମୋ ମନର ଭ୍ରମ, ଏହାଭାବି ନିଜ ଆଖିକୁ ବିଶ୍ୱାସ କରିପାରୁନଥିଲେ ଜୟଦେବ । ବିସ୍ମୟ ବିମୂଢ଼ ବ୍ୟର୍ଥତାରେ ଅଭିଷିକ୍ତ ହୋଇଥିବା ହୃଦୟକୁ ନେଇ ପୋଥିଘରୁ ବାହାରିଆସି ଦାଣ୍ଡପିଣ୍ଡାରେ ବସିପଡ଼ିଲେ ସେ । ଆଖିଦୁଇଟି ଦୂର ଆକାଶରେ ନିମଗ୍ନ । ଅଦୂରରେ ଠିଆ ହୋଇଥିବା ସ୍ତ୍ରୀ ପଦ୍ମାବତୀଙ୍କୁ ଅଣଦେଖାକରି । ଆଖିକୋଣେ ଅଶ୍ରୁର ପଟୁଆର । ହୃଦୟରେ ଉଙ୍କି ମାରୁଥିଲା ସେହି ଅସମାହିତ ପ୍ରଶ୍ନ । କିଏ ସେହି କବି ଯିଏ ତାଙ୍କ ଅବର୍ତ୍ତମାନରେ ଲେଖିଦେଇ ଚାଲିଗଲେ ତାଙ୍କ ମନର କଥାକୁ ?

ମନ୍ଦମନ୍ଦ ବହୁଥିଲା ଧୀର ସୁଗନ୍ଧିତ ମଳୟ । ବୃକ୍ଷଡାଳେ କୋଇଲି ଗାଉଥିଲା ଗୀତ । ମଧୁପ ଉଡ଼ି ବୁଲୁଥିଲେ ଫୁଲରୁ ଫୁଲକୁ । ଫୁଲଙ୍କର ଲାଗିଥିଲା ମେଳା ଜୟଦେବଙ୍କ ଗୃହାଙ୍ଗନରେ । ଏକ ଦିବ୍ୟ ସୁଗନ୍ଧିତ ସୁଗନ୍ଧ ଖେଳି ବୁଲୁଥିଲା ତାଙ୍କ ଦାଣ୍ଡ ଅଗଣାରେ । ପ୍ରକୃତିସ୍ଥ ହେଲେ ସେ । ତାଙ୍କ ନାକରେ ବାଜୁଥିଲା ଚନ୍ଦନ, ତୁଳସୀ ଓ କର୍ପୂରର ମହମହ ବାସନା ଶୁଭୁଥିଲା ବଂଶୀ ରହି ରହି ତାଙ୍କ କାନପାଖେ । ଆମୋଦିତ ହେଉଥିଲେ ସେ । ଏ କ'ଣ ? ଆଘ୍ରାଣ କରୁଛନ୍ତି ସେ, ଏ ଯେ ବଡ଼ ଦେଉଳର ବାସନା ଖେଳିବୁଲୁଛି ତାଙ୍କ ଦାଣ୍ଡ ଅଗଣାରେ । ତାଙ୍କୁ ଜାଣିବାକୁ ଆଉ ବାକିରହିଲା ନାହିଁ ଯେ ସବୁ ରହସ୍ୟର କେନ୍ଦ୍ରବିନ୍ଦୁ କିଏ ବୋଲି । ଆନନ୍ଦରେ ଦୁଇହାତ ଟେକି ନାଚିଉଠିଲେ ସେ, ଗଡ଼ିଗଲେ ଦାଣ୍ଡ ଅଗଣାରେ । ଆଖିରୁ ଝରୁଥିଲା ଅମାନିଆ ଲୁହସବୁ । ଅସଂଯତ କେଶବାସ । ପାଗଳପରି ପ୍ରଳାପ କରିଚାଲିଲେ । କୁହ, ପଦ୍ମା ମୋ ପ୍ରଭୁ ଏଇଠି ଛିଡ଼ା ହୋଇଥିଲେ ନା, ଏଇ ବାଟରେ ସେ ଚାଲିଗଲେ ନା ଏକ ନୂତନ ଲୀଳା ସଂରଚନା କରିଦେଇ । କହୁଥାଆନ୍ତି ଜୟଦେବ ବାଟଅଗଣାର ଧୂଳିସବୁ ସର୍ବାଙ୍ଗେ ବୋଳି ହେଉ ହେଉ ।

ତୁମେ ଆସିଲ ଆନନ୍ଦକନ୍ଦ, ଏ ଦୀନହୀନ ଦାସ ସେବକର ମନର ଶଙ୍କାକୁ ଦୂରୀଭୂତ କରିବା ପାଇଁ ରତ୍ନ ସିଂହାସନରୁ ଓହ୍ଲାଇ ଆସିଲ । ହେ ଜଗଦୀଶ୍ୱର ଜଗନ୍ନାଥ ! ମୋ ଘରକୁ ଆସିବା ବାଟରେ ଆପଣଙ୍କୁ କେତେକଷ୍ଟ ସହିବାକୁ





ପଡ଼ିନଥିବ । କଙ୍କରିଳ ପଥରେ ଆପଣ କେତେଥର ଝୁଣ୍ଟି ପଡ଼ିଥିବେ । ପାଦରୁ କଣ୍ଟା ଖସିପଡ଼ିଥିବ । ନଦୀଶଯ୍ୟାର ବାଲୁକା ଗର୍ଭରେ କଣ୍ଟା ଗଳିପଡୁଥିବ ଉତ୍ତପ୍ତ ମଧ୍ୟାହ୍ନରେ । ଆପଣ ଦୌଡ଼ିଦୌଡ଼ି ଆସୁଥିବେ କମଳପାଦ ନାଲି ପଡ଼ିଯାଇଥିବ । ତରୁ ଛାୟା ତଳେ ବସିପଡୁଥିବେ କ୍ଲାନ୍ତ ପଥିକଟେ ପରି । ଚନ୍ଦନ ବୋହିପଡୁଥିବ ଶ୍ରମ ଝାଳହୋଇ । ଝାଳସବୁ ପୋଛିଦେଉଥିବ ସ୍ୱହସ୍ତରେ ପାଟ ପୀତାମ୍ବରୀରେ । ଶ୍ରୀମଥାରୁ ଝଡୁଥିବ ତୁଳସୀର ଚୂଳ, ଶ୍ରୀକଣ୍ଠରେ ଶୁଖିପାଇଥିବ ଦୟଣାର ମାଳ । ଏ ସବୁକୁ ତିଳେମାତ୍ର ଖାତିର ନକରି ବ୍ୟତିବ୍ୟସ୍ତ କେଶବାସ ନେଇ ପଦାର୍ପଣ କରିଥିବ ଓ ଅଧମ ଜୟଦେବ ଦୁଆରେ । ଆଉ ଏକ ଜୟଦେବର ରୂପନେଇ । ନିମିଷ ମାତ୍ରକେ ଅଟକି ଗଲନି ପ୍ରଭୁ ମୋ ଫେରିବା ପ୍ରର୍ଯ୍ୟନ୍ତ । ଥରୁଟିଏ ଖାଲି ତୁମ ରୂପ ମାଧୁରୀକୁ ଅବଲୋକନ କରିଥାଆନ୍ତି । ଧନ୍ୟହୋଇଥାନ୍ତା ଏ ପାପନେତ୍ର ମୋର । କୃତ୍ୟ କୃତ୍ୟ ହୋଇ ଧନ୍ୟ ମଣିଥାନ୍ତି ନିଜକୁ । ଏହି ଦେବଦୁର୍ଲଭ ବିରଳ ସୁଯୋଗରୁ ମୋତେ ବଞ୍ଚିତ କରି ଏକ ଦିବ୍ୟଲୀଳା ସଂରଚନା କରି ନେପଥ୍ୟରେ ହଜିଗଲ ହେ ଛଳିଆ.... ।

ସ୍ୱାମୀଙ୍କର ଏପରି ଭାବବିହ୍ୱଳିତ ଅବସ୍ଥା ଦେଖି ପାଖକୁ ଧାଇଁଆସିଲେ ପଦ୍ମାବତୀ । ଆଖିକୋଣରେ ସପ୍ତସାଗରର ଜଳଭାର ଧରି । ପାଖକୁ ଆସି ନିରୀହ କପୋତୀଟି ପରି ବସିପଡ଼ିଲେ ସେ, କରପତ୍ର ଯୋଡ଼ି । ସ୍ୱାମୀ ! ପଦ୍ମାବତୀଙ୍କ ଡ଼ାକରେ ସମ୍ବିତ ଫେରିପାଇଲେ ଜୟଦେବ । ଅନାଇ ରହିଲେ ତାଙ୍କ ମୁଖକୁ ।

ତେବେ ଏ ଦାସୀର କିଛି ଅପରାଧ ଆପଣଙ୍କର ବିଷାଦ ମନର କାରଣ ସ୍ୱାମୀ । ମୋତେ ଦଣ୍ଡିତ କରନ୍ତୁ, ଜୟଦେବଙ୍କ ଚରଣ ତଳେ ଲୋଟି ପଡ଼ିଲେ ସେ । ଆଖିରେ ଲୋତକର ବନ୍ୟା ବୁହାଇ ଦେଇ ।

ଧନ୍ୟା ତୁମେ ପଦ୍ମା ! ସ୍ୱାମୀଙ୍କ ମୁଖରୁ ଏତାଦୃଶ କଥାଶୁଣି ମୁହଁଟେକି ଅନାଇଲେ ସେ, ଆଉ ସେ ଅନ୍ଧକାର ପ୍ରତୀୟମାନ ହେଉନାହିଁ ସ୍ୱାମୀଙ୍କ ମୁଖରେ । ଏକ ତେଜୋମୟ ଦୀପ୍ତି ଉଦ୍‌ଭାଷିତ ହେଉଛି ତାଙ୍କ ମୁଖମଣ୍ଡଳରୁ ।

ଆଖରେ ଆଖି ମଶିଯିବା ମାତ୍ରେ ଜୟଦେବ ଭିଡ଼ି ଆଣିଲେ ପଦ୍ମାବତୀଙ୍କ ଅଧୁଆ ହାତକୁ । ହାତରେ ଲାଗିଥିବା କେତୋଟି ଅନ୍ନ କଣିବାକୁ ପାଟିରେ ଦଉ ଦଉ ।

ପଦ୍ମାବତୀଙ୍କ ଲଜ୍ଜାନତ ମୁଖମଣ୍ଡଳକୁ ଟୋଳିଧରି କହୁଥିଲେ ଜୟଦେବ, ତୁମକୁ ସ୍ତ୍ରୀ ରୂପରେ ପାଇ ଧନ୍ୟ ମୁଁ ପଦ୍ମା । ଯାହାକୁ ବ୍ରହ୍ମା, ଶିବ, ଇନ୍ଦ୍ର, ଯୋଗୀ, ମୁନୀ, ଋଷି ଦର୍ଶନ କରିପାରନ୍ତି ନାହିଁ ତୁମେ ଆଜି ତାଙ୍କର ଦର୍ଶନ ପ୍ରାପ୍ତକରି ନିଜ ହାତରେ ଭୋଜନ ଅର୍ପଣକରି ତାଙ୍କ ଛଡ଼ା ମହାପ୍ରସାଦକୁ ସେବନ କରିଛ । ଧନ୍ୟ ହୋଇଛ ତୁମେ, ସାର୍ଥକ ହୋଇଛି ତୁମ ଭାବଭକ୍ତି, ନୃତ୍ୟସଙ୍ଗୀତର ସମର୍ପଣ ଭାବ । ତାଙ୍କ ପାଦତଳେ ନିଜକୁ ଦାସୀ କରିଥିଲ ନା ତାଙ୍କ ପାଦ ତଳେ । ସେ ନିଜେ ଆସି ସକଳ ଐଶ୍ୱର୍ଯ୍ୟ ଅଜାଡ଼ିଦେଇ ଚାଲିଗଲେ ତୁମ ପାଦତଳେ । ତୁମେ ଯାହା ତାଙ୍କୁ ଚିହ୍ନି ପାରିଲ ନାହିଁ । ଚିହ୍ନିଥାଆନ୍ତ ବା କେମିତି ସେ ତ ଲୀଳାମୟ ! ତାଙ୍କ ଲୀଳା କ'ଣ କେହି ବୁଝିପାରେ । ଏ ସୁଖ ଯାହା ଫଟା କପାଳିଆ ଜୟଦେବ ଭାଗ୍ୟରେ ନାହିଁ ।

ମୁଁ କିଛି ବୁଝିପାରୁନି ସ୍ୱାମୀ !!! ଆଉ କିଛି ବୁଝିବାକୁ ବାକିନାହିଁ ପଦ୍ମା । ସବୁକିଛି ବୁଝାଇଦେଇ ଚାଲିଯାଇଛନ୍ତି ସେ, କରୁଣାମୟ କାଳିଆ ସାଆନ୍ତ । ତୁମ ଉପରେ କରୁଣାରେ ବର୍ଷା କରିଦେଇ । ତୁମେ କ'ଣ ସତରେ କିଛି ଜାଣିପାରୁନ ପଦ୍ମା !!! ଏଇ ଦେଖ ଆମ ଅଗଣାରୁ କେମିତି ଗନ୍ଧ ଚନ୍ଦନ କର୍ପୂର, କସ୍ତୁରୀର ବାସନା ଛୁଟୁଛି । ଦୟଣା ଝରିପଡ଼ିଛି ଦାଣ୍ଡ ଅଗଣାରେ । ପୋଥିଘରୁ ଚହଟି ଉଠୁଛି ବଡ଼ ଦେଉଳର ବାସନା । ପୋଥି ଘରକୁ ନେଇଗଲେ ପଦ୍ମାବତୀଙ୍କୁ । ଦେଖାଇଦେଲେ ଗୀତଗୋବିନ୍ଦର ସେ ଲେଖିଥିବା ଅଧାପଦର ପୂର୍ଣ୍ଣରୂପକୁ । ସ୍ତ୍ରୀଙ୍କୁ ଘଟଣାର ସମସ୍ତ ବୃତ୍ତାନ୍ତ କହିସାରି ଧରିବସିଲେ ଲେଖନୀ ଅଧାଥିବା ଦଶମ ସର୍ଗଃ ଚତୁର ଚତୁର୍ଭୁଜରେ ସପ୍ତମ ପଦ ପୂରଣ କରିବାକୁ ଲେଖିବସିଲେ ।

ପଦପୂରଣ କରିସାରି ପୋଥିକୁ ଯଥାସ୍ଥାନର ଥୋଇ ରାଧାମାଧବଙ୍କ ପାଦ ପଦ୍ମରେ ପ୍ରଣତିଢ଼ାଳି ପୋଥିଘରୁ ବାହାରି



ଆସିଲେ । ବାହାରେ ନିଶା ଗର୍ଜୁଛି । ଆରେ ରାତି ଯେ ଏତେହେଲାଣି । ପଶିଗଲେ ଶୋଇବାଘର ଭିତରକୁ ସେଠାରେ ଖାଇବା ଥାଳି ପାଖେ ତାଙ୍କୁ ଅପେକ୍ଷା କରିଥିଲେ ପଦ୍ମାବତୀ । ଦୁହେଁ ଏକାଠି ଖାଇବସିଲେ । ପଦ୍ମାବତୀଙ୍କ ଆଖିରୁ ଝରୁଥିଲା ଅମାନିଆ ଲୁହସବୁ । ଥରେ ହାତବୁଲାଇ ଆଣି ଆଖିର ଲୁହ ପୋଛିଦେଲେ ଜୟଦେବ ପଦ୍ମାବତୀଙ୍କୁ ପ୍ରବୋଧନା ଦେଉଦେଉ । ଆଉ କାନ୍ଦନା ପାଗଳି, କାଳିଆ କୃପାକଲେ ଏମିତି ହୁଏ । ଏଇ ଶେଷ ପଦକ କଥାଶୁଣି ପଦ୍ମାବତୀ ଓଠଧାରେ ସ୍ମିତହାସ୍ୟ ଟୋକି ଜଡ଼ାଇଧରିଲେ ଜୟଦେବଙ୍କୁ । ରାତି କ୍ରମଶଃ ଗଭୀର ହେଉଥିଲା । ସ୍ୱପ୍ନ ଦେଖୁଥିଲେ ଜୟଦେବ । ଦୁଇଟି ବିଶାଳଭୁଜ ଲମ୍ବିଆସୁଛି ଆକାଶରୁ ତାଙ୍କ ଆଡ଼କୁ । ଗାଢ଼ ଅଶ୍ଳେଷରେ ଆଲିଙ୍ଗନ କରୁଛି ତାଙ୍କୁ । ପରେ ତାଙ୍କ ହାତଧରି ନେଇଯାଉଛି ଶ୍ୟାମଙ୍କ ପ୍ରେମରେ ଶ୍ୟାମାୟିତ ହୋଇଥିବା ବୃନ୍ଦାବନକୁ । ସେ ଅନୁଭବ କରୁଛନ୍ତି ରାଧାକୃଷ୍ଣଙ୍କର ପ୍ରେମୋପାସନାର ଶାଶ୍ୱତ ନିର୍ଝର ପ୍ରବାହିତ ହେଉଛି ତାଙ୍କ ମନ ବୃନ୍ଦାବନରେ । ସେ ପୂର୍ଣ୍ଣାନନ୍ଦରେ ଆନନ୍ଦାମୃତ ପାନ କରୁ ଅଛନ୍ତି । ସେ ସ୍ୱଚକ୍ଷୁରେ ଦେଖୁଛନ୍ତି ମହାରାସ । ଛନ୍ଦାୟିତ ମୁଦ୍ରାରେ କୃଷ୍ଣଙ୍କ ବାହୁବନ୍ଧନର ଅନୁବନ୍ଧିତ ହୋଇଛନ୍ତି ଶ୍ରୀରାଧା । ସେହି ପ୍ରେମ ତରଙ୍ଗରେ ପୂର୍ଣ୍ଣ ହୋଇଛି ଯମୁନାର ପୁଳିନ । ଫୁଟିଉଠୁଛି ରାସେଶ୍ୱର– ରାସେଶ୍ୱରୀଙ୍କ ମଧ୍ୟରେ ଆପ୍ରାକୃତ ପ୍ରେମ କୁସୁମ । ମଳୟ ଛୁଇଁ ଛୁଇଁ ଯାଉଛି ସୁନ୍ଦରୀ ଲବଙ୍ଗଲତାକୁ । ସେ ବିମୁଗ୍ଧ ହୋଇ ଉଠୁଛନ୍ତି ଏହି ଦିବ୍ୟାନୁଭୂତିକୁ ଅବଲୋକନ କରି । କୋକିଳର କୁହୁ ତାନରେ ଗୁଞ୍ଜରି ଉଠୁଛି ବୃନ୍ଦାବନ । ଏହିପରି ଚିତ୍ତ ଉଲ୍ଲାସକ ପ୍ରକୃତିର ବିଜନକାନ୍ତ କୋଳରେ ଗୋପିକା ପରିବେଷ୍ଟିତ ଗୋପିକା ଲଲାଟ ତିଳକ ଶ୍ରୀରାଧାଙ୍କ ସହିତ ନୃତ୍ୟ କରୁଅଛନ୍ତି ଗୋପାଳ ଚୂଡ଼ାମଣି ଶ୍ରୀ କୃଷ୍ଣଚନ୍ଦ୍ର.... ।

ପ୍ରକୃତିସ୍ଥ ହୁଅ ଜୟଦେବ, କାହାର ଏ ବୀଣାଜିଣା କଣ୍ଠସ୍ୱର ଶୁଭୁଥିଲା ତାଙ୍କ କାନପାଖେ । ତୁମେ ଏ ପର୍ଯ୍ୟନ୍ତ ମୋର ଅତିପ୍ରିୟ ଗୀତଗୋବିନ୍ଦଙ୍କୁ ସମ୍ପୂର୍ଣ୍ଣ କରିନାହଁ। ତା'ର ଏକାଦଶ ସର୍ଗଃ ସାନନ୍ଦ ଦାମୋଦରଃ ଆଉ ଦ୍ୱାଦଶ ସର୍ଗଃ ସୁପ୍ରୀତ ପୀତାମ୍ବରଃକୁ ଲେଖି କାବ୍ୟକୁ ପୂର୍ଣ୍ଣତା ପ୍ରଦାନକର । ତୁମରତ ମୁଁ ଶଙ୍କାମୋଚନ କରିଛି ନିଜ ସ୍ୱହସ୍ତରେ । ତେବେ ଆଉ ଡ଼ର କାହିଁକି ? ତୁମେ ତ ମାନସ ଚକ୍ଷୁରେ ବୃନ୍ଦାବନରେ ମହାରାସକୁ ଦେଖିଲ, ଅନୁଭବ କଲବି ତାକୁ ରୂପ ଦିଅ ତୁମ ଲେଖନୀ ମୁନରେ । ମନ୍ଦମନ୍ଦ ହସ ଫୁଟିଉଠିଲା ରଙ୍ଗା–ଅଧରରୁ । ତୁମେ ମୋ ଉପରେ ଅଭିମାନ କରିଥିଲ ନା ତୁମକୁ ଦେଖା ନଦେଇ ଚାଲିଯାଇଥିବାରୁ । ହେଇ ଦେଖ ତୁମର ଲୁହସବୁ କିପରି ମୋ ପାଦ ଯୁଗଳକୁ ସିକ୍ତ କରିଦେଇଛି । ସେଥିପାଇଁ ତୁମକୁ ଦେଖା କରିବାକୁ ଆସିଲି । ଆଉ ବ୍ୟତିବ୍ୟସ୍ତ ହୁଅନାହିଁ, ବିଚଳିତ ମନନେଇ କେବେ କାବ୍ୟର ସରଂଚନା ହୋଇ ନପାରେ । ତୁମେ ଆତ୍ମବିସ୍ମୃତ ହୁଅ ମୋତେ ଅନୁଭବ କରିପାରିବ ଅତ୍ର, ତତ୍ର ସର୍ବତ୍ରରେ । ତୁମ ମଧ୍ୟରେ ମଧ୍ୟ ମୁଁ ଥାଇ ମୋର ଲୀଳାକୁ ଲେଖୁଅଛି ଲେଖନୀ ମୁନରେ ତୁମ ମାଧ୍ୟମରେ ।

ମୋତେ ଫେରିଯିବାକୁ ହେବ ବଡ଼ ଦେଉଳକୁ । ଫେରିଯିବା ପୂର୍ବରୁ ତୁମକୁ ଶେଷକଥା କହିଦେଇଯାଉଛି । ଜୟ, ତୁମ ରଚିତ ଗୀତଗୋବିନ୍ଦ ମୋର ଅତ୍ୟନ୍ତ ପ୍ରିୟ ହୋଇ ରହିବ କାଳ କାଳ ଧରି । ମୋ ମନ ବନ୍ଧା ହୋଇଥିବ ଗୀତଗୋବିନ୍ଦର ସୁମଧୁର ପଦ୍ୟାବଳୀରେ । ଯିଏ ଯେଉଁଠି ଏହାକୁ ଗାନକରିବ ମୁଁ ପହଞ୍ଚି ଯାଉଥିବି ନିମିଷକ ମଧ୍ୟରେ । ମୋ ବଡ଼ଠାକୁର ପଣିଆକୁ ବଡ଼ଦେଉଳରେ ରଖିଦେଇ । ଜୟଦେବ ମସ୍ତକରେ ସ୍ନେହସିକ୍ତ ଶ୍ରୀହସ୍ତ ଚାଳନା କରୁକରୁ କହୁଥିଲେ ଜଗନ୍ନାଥ । ମୁଁ ଯାଉଛି ଜୟ... ରାତି ଯେ ପାହିପାହି ଆସିଲାଣି । ନିଦରୁ ଉଠିପଡ଼ିଲେ ଜୟଦେବ ଦେଖିଲେ ଏକ ଛାୟାମୂର୍ତ୍ତି ଫେରିଯାଉଛି ତାଙ୍କ ଶୋଇବା ଘରଭିତରୁ । ତାଙ୍କ ନାକରେ ବାଜୁଛି ପୁନଶ୍ଚ ତୁଳସୀ, ଚନ୍ଦନ, କର୍ପୂରର ଏକ ସମ୍ମିଶିତ ବହଳିଆ ମଧୁମୟ ଗନ୍ଧ । ହାତଯୋଡ଼ି ହସିହସି କହୁଛନ୍ତି ଜୟଦେବ, ହାତପାଆନ୍ତାକୁ ଆସି ମୋତେ ଧରା ନଦେଇ ଆଉଥରେ ମୋତେ ଟକାନୟନରେ ଠକିଦେଲ ନା ଛଳିଆ.... ।

ଗ୍ରାମ– ତାମ୍ପଦା
ପୋଷ୍ଟ–ମାଧବ, ଭାୟା– ନିଆଳୀ
ଜିଲ୍ଲା– କଟକ, ପିନ୍– ୭୫୪୦୦୪

# ବିଶ୍ୱବୋଧର ଦେବତା ଶ୍ରୀଜଗନ୍ନାଥ

ପ୍ରଫେସର ଡକ୍ଟର ଶରତଚନ୍ଦ୍ର ରଥ

ଶ୍ରୀଜଗନ୍ନାଥ ବିଶ୍ୱାସର ଦେବତା, ବିଶ୍ୱର ଦେବତା ଓ ବିଶ୍ୱବୋଧର ଦେବତା । ସେ କୌଣସି ସଂପ୍ରଦାୟର ଦେବତା ନୁହଁନ୍ତି, ସବୁ ସଂପ୍ରଦାୟର ଦେବତା । ତେଣୁ ତାଙ୍କର ଏକ ନିର୍ଦ୍ଦିଷ୍ଟ ସଂପ୍ରଦାୟଗତ ରୂପ ନାହିଁ । ସେ ପ୍ରତିମା ନୁହଁନ୍ତି, ପ୍ରତୀକ । ସେ ଆଧ୍ୟାତ୍ମିକତାର ପ୍ରତୀକ, ଯାହା ସମଗ୍ର ବିଶ୍ୱପାଇଁ ଅଭିପ୍ରେତ । କେବଳ ରୂପରେ ପ୍ରତୀକ ନୁହଁନ୍ତି, ସ୍ୱଭାବରେ ପ୍ରତୀକ ମଧ୍ୟ ।



ଜଗତର ନାଥ ସେ ଜଗନ୍ନାଥ । ଜଗତ କହିଲେ ଯାହା ଗତିଶୀଳ । ସେ ସମସ୍ତ ଗତିଶୀଳତାର ପ୍ରତୀକ । ପାଦ ନଥାଇ ମଧ୍ୟ ତାଙ୍କର ପାଦ ଅଛି ଯହିଁରେ ସେ ଚତୁର୍ଦ୍ଦିଗକୁ ଗମନ କରି ପାରନ୍ତି, ଦଶ ଦିଗରେ ଭ୍ରମଣ କରି ପାରନ୍ତି । ଦୁଇ ବିପରୀତ ଦିଗକୁ ଏକ ସମୟରେ ଗତି କରିପାରନ୍ତି, ଯାହା ମଣିଷ ପକ୍ଷରେ ଅସମ୍ଭବ । ଦଶଦିଗରେ ଏକ ସମୟରେ ଭ୍ରମଣ କରିପାରନ୍ତି, ଏକଥା ମଣିଷ ପକ୍ଷରେ ବୁଝିବା ସହଜ ନୁହେଁ ।

ରତ୍ନସିଂହାସନାସୀନ ଚତୁର୍ଦ୍ଧାମୂରତି ଏଇ ପୃଥିବୀରେ ବାସ କରୁଥିବା ଚାରିଗୋଟି ବର୍ଣ୍ଣର ବ୍ୟକ୍ତିମାନଙ୍କର ବର୍ଣ୍ଣର ପ୍ରତୀକ । ଅର୍ଥାତ୍– ଶ୍ୱେତବର୍ଣ୍ଣ ଶ୍ରୀବଳଭଦ୍ର, ହରିଦ୍ରାବର୍ଣ୍ଣ ଦେବୀ ସୁଭଦ୍ରା, କୃଷ୍ଣବର୍ଣ୍ଣ ଶ୍ରୀଜଗନ୍ନାଥ ଏବଂ ଲୋହିତବର୍ଣ୍ଣ ଶ୍ରୀସୁଦର୍ଶନ । ପୁନଶ୍ଚ ବ୍ରାହ୍ମଣ ଓ ଅବ୍ରାହ୍ମଣ ସମସ୍ତେ ତାଙ୍କର ସେବକ । ଏହା ଚରମ ଉଦାରତାର ପରମ ନିଦର୍ଶନ । ପୂଜାପଣ୍ଡାଙ୍କଠାରୁ ଆରମ୍ଭ କରି ରଥଭୋଇ ପର୍ଯ୍ୟନ୍ତ ସମସ୍ତେ ତାଙ୍କର ସେବକ । ସ୍ୱୟଂ ଗଜପତି ମହାରାଜା ଯିଏ କି ଲକ୍ଷେ ରାଜାର ମଉଡ଼ମଣି ସିଏ ତାଙ୍କର ଆଦ୍ୟ ସେବକ । କବି ଅଭିମନ୍ୟୁଙ୍କର ଭାଷାରେ– ‘‘ଈଶଶେଷାଦି ସେବକ ସେବ୍ୟ ଏକା ତୁହି ।’’ ଏହା କବି ଶ୍ରୀକୃଷ୍ଣଙ୍କ ମହିମାଗାନ ନିମନ୍ତେ ଉଲ୍ଲେଖ କରିଥିଲେ ହେଁ, ଏହା ଶ୍ରୀଜଗନ୍ନାଥଙ୍କ ନିମନ୍ତେ ମଧ୍ୟ ଯଥାଯୋଗ୍ୟ । ସମସ୍ତଙ୍କୁ ଆପଣାର ମଣିବା, ସାନ ବଡ଼ର ଭେଦଭାବ ନରଖିବା ହେଉଛି ବିଶ୍ୱବୋଧ ଭାବନାର ଏକ ମହନୀୟ ଉପାଦାନ, ଯାହା ଶ୍ରୀଜଗନ୍ନାଥ ସଂସ୍କୃତିରେ ସୁଲଭ ।

ମହାପ୍ରସାଦର ସ୍ୱତନ୍ତ୍ର ମହତ୍ତ୍ୱ ଏହି ଯେ ଏହାକୁ ଆବ୍ରାହ୍ମଣ ଚଣ୍ଡାଳ ଏକତ୍ର ଗ୍ରହଣ କରିପାରନ୍ତି । ଏହା ଏକ ସାମାନ୍ୟ କଥାନୁହେଁ, ଏହା ଏକ ଦିବ୍ୟଚେତନାର କଥା, ଏହା ଦିଏ ବିଶ୍ୱବୋଧର ବାର୍ତ୍ତା । ଏ କଥାର ଆରମ୍ଭ ଯିଏ କରିଥାଆନ୍ତୁ ପଛକେ, ଏହି କଥାର ପ୍ରଚ୍ଛଦପଟରେ ଏକ ବିଶ୍ୱମୟ ଭାବନାର ଲଳିତ ଆଲେଖ୍ୟ ରହିଛି, ଏଥିରେ ସନ୍ଦେହର ଅବକାଶ ନାହିଁ ।

ଶ୍ରୀଜଗନ୍ନାଥ ଶୈବମାନଙ୍କ ପାଇଁ ପରମ ଶିବ, ଶାକ୍ତମାନଙ୍କ ପାଇଁ ଦକ୍ଷିଣ କାଳିକା । ଗାଣପତ୍ୟମାନଙ୍କ ପାଇଁ ଗଣପତି ଆଉ ସୌରମାନଙ୍କ ପାଇଁ ସୂର୍ଯ୍ୟ ଦେବତା ।





ବୈଷ୍ଣବମାନଙ୍କର ସେ ପରମ ବିଷ୍ଣୁ ଏବଂ ଶ୍ରୀରାମ ଉପାସକମାନଙ୍କ ପାଇଁ ସ୍ୱୟଂ ଶ୍ରୀରାମଚନ୍ଦ୍ର। ଶ୍ରୀଜଗନ୍ନାଥଙ୍କର ରଥଯାତ୍ରା କେବଳ ମାତ୍ର ଯାତ୍ରା ନୁହେଁ, ଏହା ଏକ ସାଙ୍କେତିକ ଯାତ୍ରା, ସମଗ୍ର ମାନବ ଜାତିର ଚେତନାର ଅଗ୍ରଗାମୀ ଜୟଯାତ୍ରା। ବିଶ୍ୱର କୋଣ ଅନୁକୋଣରୁ ଆସି ଭକ୍ତମାନେ ଏଇ ଯାତ୍ରାରେ ଯୋଗଦେବାର ନଜିର ଅଛି। ଏହି ଯାତ୍ରାରେ ରଥ ଓ ରଥୀଙ୍କର ସଂଯୋଗ ଘଟେ। ତେଣୁ ଏହା ପୂର୍ଣ୍ଣତାର ଯାତ୍ରା। ଶରୀର ରଥହେଲେ ତହିଁରେ ଆତ୍ମାରୂପୀ ଶ୍ରୀଜଗନ୍ନାଥ ପ୍ରକଟିତ ହୁଅନ୍ତି ରଥୀ ରୂପରେ। ଜୀବନର ପୂର୍ଣ୍ଣତା ଏଥିରୁ ବାରି ହୋଇପଡ଼େ। ବ୍ୟକ୍ତିର ଶରୀରରେ ଆତ୍ମିକ ଚେତନା ପ୍ରକଟିତ ହେଲେ ଜୀବନ ପୂର୍ଣ୍ଣହୁଏ, ଧନ୍ୟ ହୁଏ, ଏହା ହିଁ ରଥଯାତ୍ରାର ନିର୍ମଳ ଦିଗ୍‌ଦର୍ଶନ ଓ ବିମଳ ଦର୍ଶନ। ଭାଇଚାରାର ଏ ଯାତ୍ରା, ବିଶ୍ୱଜୀବନର ପ୍ରଗତିର ପ୍ରତୀକଧର୍ମୀ ଜୟଯାତ୍ରା। ଏ ପ୍ରତୀକ ଦିନେ ବାସ୍ତବତାରେ ପରିଣତ ହେବ। ସମଗ୍ର ବିଶ୍ୱହେବ ବିସ୍ତୃତିର ବଡ଼ଦାଣ୍ଡ, ରଥଯାତ୍ରା ହେବ ପୂର୍ଣ୍ଣତାର ଜୟଯାତ୍ରା। ସେଦିନ ଶ୍ରୀଅରବିନ୍ଦଙ୍କ ବାଣୀ ବାସ୍ତବତାରେ ରୂପାୟିତ ହେବ। ତାଙ୍କ ବିରଚିତ ପ୍ରବନ୍ଧ 'ଜଗନ୍ନାଥେର ରଥ'ର ଶେଷ ଅଂଶର ଅନୁବାଦ ଏହିପରି – ''ଯେଉଁଦିନ ଜ୍ଞାନ, କର୍ମ ଏବଂ ଭାବର ସାମଞ୍ଜସ୍ୟ ଏବଂ ଏକୀକରଣ ଦ୍ୱାରା ଆତ୍ମଗତ ଐକ୍ୟ ଦେଖାଦେବ, ସେହିଦିନ ଶ୍ରୀଜଗନ୍ନାଥଙ୍କ ରଥ ରାସ୍ତାରେ ବାହାରି ଦଶଦିଗ ଆଲୋକିତ କରିବ। ପୃଥିବୀ ବକ୍ଷରେ ସତ୍ୟ ଯୁଗର ଅବତରଣ ହେବ, ମର୍ତ୍ତ୍ୟମାନବର ପୃଥିବୀ ହେବ ଦେବତାର ଆନନ୍ଦପୁରୀ, କ୍ରୀଡ଼ାଶିବିର''।

ସେଦିନ ଉତ୍କଳମଣିଙ୍କ ଦିବ୍ୟଦୃଷ୍ଟି ପରିଣତ ହେବ ବାସ୍ତବ ଘଟଣାରେ। ତାଙ୍କକଥା ଏକାନ୍ତ ଅନ୍ଧ, ଅନିଚ୍ଛୁକ ବ୍ୟକ୍ତି ମଧ୍ୟ ବିଶ୍ୱାସ କରିବାକୁ ବାଧ୍ୟ ହେବେ–

''ଭାରତ ସରସେ ଉତ୍କଳ କମଳ
ତା' ମଧ୍ୟେ କେଶର ପୁଣ୍ୟ ନୀଳାଚଳ''।

ଏହା ଭାକ୍ତିକତା ନୁହେଁ, ଏହା ଏକ ଜୀବନ୍ତ ବାସ୍ତବତା। ଏହା ଜଣେ ମହାତ୍ମାଙ୍କର ସୂକ୍ଷ୍ମ ଦିବ୍ୟଦର୍ଶନ। ଉତ୍କଳମଣି କେବଳ ସତ୍ୟାଗ୍ରହୀ, ଶିକ୍ଷାବିତ୍, କବି, ପ୍ରାବନ୍ଧିକ, ସମାଜସେବୀ, ସଂପାଦକ, ସଂଗଠକ, ନଥିଲେ, ଏଥି ସହିତ ସେ ଥିଲେ ଜଣେ ଦିବ୍ୟଦ୍ରଷ୍ଟା, ଆଧ୍ୟାତ୍ମସାଧକ ତଥା ବିଶ୍ୱ ପ୍ରେମର ପ୍ରମୂର୍ତ୍ତ ପ୍ରତୀକ। ସେ ଥିଲେ ଶ୍ରୀଜଗନ୍ନାଥ ଚେତନାର ଏକ ବିଶିଷ୍ଟ ବିଗ୍ରହ। ସେ ଅନୁଭବ କରିଥିଲେ ସବୁତୀର୍ଥ ଶ୍ରୀଜଗନ୍ନାଥଙ୍କର ଏବଂ ଶ୍ରୀଜଗନ୍ନାଥ ସବୁ ତୀର୍ଥର। ନୀଳଚକ୍ର ତଳେ ଯିଏ ବାସ କରିବ, ସେ ନିଜର ନହୋଇ ହୋଇଯିବ ସମଗ୍ର ବିଶ୍ୱର। ସେ କହିବ ବିଶ୍ୱର କଥା, ସେ ଗାଇବ ବିଶ୍ୱର ଗାଥା, କାରଣ ଶ୍ରୀଜଗନ୍ନାଥ ତା'ର ଜୀବନର ଜୀବନ, ପ୍ରାଣର ପ୍ରାଣ ଓ ମନର ମନ।

ବାସ୍ତବରେ ଶ୍ରୀଜଗନ୍ନାଥଙ୍କ ମହାଚେତନାର ପୁଣ୍ୟରଶ୍ମିମାଳାରେ ଉଦ୍‌ଭାସିତ ହେବ ଦିନେ ଉତ୍କଳଭୂଖଣ୍ଡ, ଉତ୍କଳରୁ ତାହା ସଞ୍ଚରି ଯିବ ସମଗ୍ର ଭାରତବର୍ଷକୁ ଏବଂ କ୍ରମଶଃ ସାରା ବିଶ୍ୱକୁ। ବିଶ୍ୱଭ୍ରାତୃତ୍ୱର ଚନ୍ଦନସୁବାସ ଯାହା ଏହାର ସାରନିର୍ଯ୍ୟାସ, ତାହା ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ଦିନେ ସାରା ବିଶ୍ୱକୁ ସୁବାସିତ କରିବ। ଏହାର ଆରମ୍ଭ ହେବ ପୁଣ୍ୟ ନୀଳାଚଳରୁ। ସେଦିନ ବୁଝିହେବ ଉତ୍କଳର ମହତ୍ତ୍ୱ। ପୂର୍ଣ୍ଣ ସତ୍ୟରେ ରୂପାନ୍ତରିତ ହେବ କପିଳ ସଂହିତାର ଉକ୍ତି–

''ବର୍ଷାଣାଂ ଭାରତଃ ଶ୍ରେଷ୍ଠଃ, ଦେଶାନାଂ ଉତ୍କଳଃ ଶ୍ରୁତଃ
ଉତ୍କଳସ୍ୟ ସମୋଦେଶୋ ଦେଶୋନାସ୍ତି ମହୀତଳେ।''

ଶ୍ରୀଜଗନ୍ନାଥ ହେଉଛନ୍ତି ଉତ୍କଳୀୟ ଚେତନାର ଆକାଶରେ ପୂର୍ଣ୍ଣିମାର ଜହ୍ନ। ତାଙ୍କୁ ବାଦ୍‌ଦେଲେ ଉତ୍କଳୀୟତା ଅନ୍ତଃସାରଶୂନ୍ୟ। ବେଦରେ ଓଁ କାର ସିଏ, ବିଶ୍ୱପ୍ରେମର ଝଙ୍କାର ସିଏ, ସେ ପରଂବ୍ରହ୍ମ, ପୁରୁଷୋତ୍ତମ। ସେ ଅଛନ୍ତି ବୋଲି ଆମ ମନରେ ଦମ୍ଭ ଅଛି, କେତେ ଆଶା ଅଛି, କେତେ ଆନନ୍ଦ ଅଛି। ଧାଇଁ ଯାଇ ତାଙ୍କୁ ଦୁଃଖ କହିଦେଇ ଆସିଲେ ମନ ହାଲୁକା ହୋଇ ଯାଉଛି। ଆମେ ତାଙ୍କ ପାଖରେ କି ସେ ଆମ ପାଖରେ– ଏ ବଡ଼ ଅସମାହିତ ପ୍ରଶ୍ନ। ସହଜରେ ଏକଥା ବୁଝି ହେଉନାହିଁ କି ବୁଝିହେବ ନାହିଁ। ତଥାପି ଆମେ ତାଙ୍କର ଓ ସେ ଆମର। ସେ ଆମର ପରମ ମୁରବି, ପ୍ରଥମ ବନ୍ଧୁ। ଶୁଭ କାର୍ଯ୍ୟରେ ଆମେ ତାଙ୍କୁ ପ୍ରଥମେ ନିମନ୍ତ୍ରଣ, ଆମନ୍ତ୍ରଣ କରୁ ଆସିବା ପାଇଁ। ସେ ଆସିଲେ ସବୁ ଶୁଭଙ୍କର କଥା ଆସେ, କାରଣ ସେ ମଙ୍ଗଳମୟ। ସେ ଆମ ପାଇଁ ଅମାରାତିର ସାଥୀ, ଜହ୍ନରାତିର



ସୁରମ୍ୟ ସମ୍ପତ୍ତି। ଆମ ପଖାଳକୁ ସେ ଭଲ ପାଆନ୍ତି, ଆମ ରାଜ୍ୟର ଦାନ୍ତକାଠି ତାଙ୍କର ବଡ଼ପ୍ରିୟ। ସେ ଆମକୁ ଭଲ ପାଆନ୍ତି କାରଣ ଆମେ ପରା ତାଙ୍କର, ସେ ପରା ଆମର।

ସେ କେବଳ ଆମର ନୁହଁନ୍ତି, ସେ ସମଗ୍ର ଜଗତର। ଏହା ହିଁ ଜଗତୀକରଣର ମୂଳମନ୍ତ୍ର, ମୌଳିକ ଆଧାର। ଆଜି ନହେଲେ ବି କାଲି ତାଙ୍କଠାରୁ ଆରମ୍ଭ ହେବ ଅସଲି ଜଗତୀକରଣ, ଅନ୍ତର ଜଗତୀକରଣ। ବାହାର ଜଗତୀକରଣ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା, ଯୋଗାଯୋଗର ସୁବିଧା, ସହସା ସମ୍ବାଦ ସରବରାହର ବ୍ୟବସ୍ଥା, ଅର୍ଥନୈତିକ ସମୃଦ୍ଧି ଦ୍ୱାରା ହୋଇପାରେ ମାତ୍ର ଭିତର ଜଗତୀକରଣ ଯାହା କି ଯଥାର୍ଥ ଜଗତୀକରଣ, ତାହାର ଆରମ୍ଭ ହେବ ଶ୍ରୀଜଗନ୍ନାଥ ସଂସ୍କୃତିରୁ। ବିଶ୍ୱଭ୍ରାତୃତ୍ୱର ଭାବନା ହିଁ ଅନ୍ତର ଜଗତୀକରଣର ମୂଳକଥା ଓ ମୌଳିକତା। ଆଜି ନହେଲେ ବି ଆସନ୍ତାକାଲି ଏହା ସମ୍ଭବ ହେବ ଶ୍ରୀଜଗନ୍ନାଥଙ୍କ ସଂସ୍କୃତିରେ ଥିବା ବିଶ୍ୱବୋଧଦ୍ୱାରା। ଉତ୍କଳୀୟତାର ଜୟ ହେଉ, ଶ୍ରୀଜଗନ୍ନାଥ ଚେତନାର ଜୟ ହେଉ। ଜୟ ଜଗନ୍ନାଥ।

କେଦାରଗୌରୀ ଆପାର୍ଟମେଣ୍ଟ
ଭୁବନେଶ୍ୱର

# ଆଞ୍ଜୁଳାଏ ପୂଜାଫୁଲ

ଦେବାଶିଷ ଚକ୍ରବର୍ତ୍ତୀ

**ଶ୍ରୀଜଗନ୍ନାଥ**

ପତିତ ପାବନ ଯାହାର ନେତ
ପତିତ ପାବନ ଅଟେ ତା ଯାତ
ପତିତ ପାବନ ଯାହାର ଧାମ
ପତିତ ପାବନ ତାହାର ନାମ
ଟେକି ବଳିଆର ବାହା
ଆପଦେ ବିପଦେ ଜଗତବାସୀଙ୍କୁ
ହେଉଅଛି ସଦା ସାହା ।

**ଶ୍ରୀମନ୍ଦିର**

ଦେବଦେବୀଙ୍କର ମନ୍ଦିର ରହିଛି
ଜଗତରେ ଅସୁମାରି
କିନ୍ତୁ ଶ୍ରୀମନ୍ଦିର ନାମ ବହିଛନ୍ତି
ଆଉ କିଏ ତୋହପରି
ଭାଇ ଭଉଣୀଙ୍କୁ ନେଇ
ଭକତ ହୃଦୟୁ କଳୁଷ ନାଶନ୍ତି
ଯେଉଁଠି ଜଗତ ସାଇଁ ।

**ବଡଦାଣ୍ଡ**

ତିନି ରଥ ଚଢ଼ି ଚାରିଦିଆଁ ଯେବେ
ଯାଆନ୍ତି ମାଉସୀଘର
ଯିବା ଆସିବାର ଘର୍ଘର ନାଦରେ
କମ୍ପିଉଠେ ତିନିପୁର
କର୍ଣ୍ଣରେ ପଡିଲେ ତାହା
ଭବ ଜଞ୍ଜାଳରୁ ତରିବା ପାଇଁକି
ମିଳଇ ମୁକତି ରାହା ।

**ନନ୍ଦିଘୋଷ**

ଜଗତ ନାଥ ଯେ ଷୋହଳ କଳା
ଷୋଳ ଚକେ ତେଣୁ ତୋ ତନୁ ଗଢା
ଦର୍ଶନ ଯାହାଙ୍କ ପାଇବା ପାଇଁ
ହରିହର ବ୍ରହ୍ମା ହୁଅନ୍ତି ବାଇ
ଆହାକି ଭାଗ୍ୟ ତୋହର
ସ୍ୱୟଂ ମହାପ୍ରଭୁ ବିଜେ କରିଛନ୍ତି
ହୃଦକମଳରେ ତୋର ।

**ଆନନ୍ଦବଜାର**

ନିଜେ ମହାଲକ୍ଷ୍ମୀ ଆପଣା ହାତରେ
ପାକ କରୁଛନ୍ତି ଯାହା
ଭକତଙ୍କ ପାଇଁ ପରଷା ହେଉଛି
ଯେଉଁଠାରେ ପୁଣି ତାହା
ନାମ 'ଆନନ୍ଦ ବଜାର'
ଭେଦ ଭାବ ନାହିଁ ଧନୀ କି ନିର୍ଦ୍ଧନ
ବ୍ରାହ୍ମଣ ଅବା ଚଣ୍ଡାଳ ।

ମଣ୍ଡୁଆ, କେନ୍ଦୁଝରଗଡ–୧୪



# ଶ୍ରୀରାମକୃଷ୍ଣ ଓ ମହାପ୍ରଭୁ ଶ୍ରୀଜଗନ୍ନାଥ

**ଡକ୍ଟର ସୌରୀବଂଧୁ କର**

ଶ୍ରୀରାମକୃଷ୍ଣ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବାକୁ ପୁରୀ ଆସିନଥିଲେ । କିନ୍ତୁ ତାଙ୍କର ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ପ୍ରତି ଥିଲା ଅଚଳାଚଳ ଭକ୍ତି । ସେ ତାଙ୍କର ଅନେକ ଶିଷ୍ୟମାନଙ୍କୁ ପୁରୀ ଆସି ପ୍ରଭୁଙ୍କୁ ଆଲିଙ୍ଗନ କରିବାକୁ କହିଥିଲେ । କାହିଁକି ସେ ପୁରୀ ଆସିନଥିଲେ ଏ ସମ୍ପର୍କରେ କେତେକଙ୍କ ମନରେ ପ୍ରଶ୍ନ ଉଙ୍କି ମାରିବା ସ୍ୱାଭାବିକ । ଶ୍ରୀରାମକୃଷ୍ଣ ମଥୁରବାବୁଙ୍କ ସହିତ ବାରାଣସୀ ତୀର୍ଥକୁ ଯାତ୍ରା କରିଥିଲେ । ସେଠାରୁ ଗୟା ଯିବା କଥା । କିନ୍ତୁ ଶ୍ରୀରାମକୃଷ୍ଣ ମଥୁରନାଥଙ୍କୁ ଗୟା ଯିବାକୁ ମନା କରିଦେଲେ । ଶ୍ରୀରାମକୃଷ୍ଣଙ୍କ କହିବା ଅନୁଯାୟୀ ତାଙ୍କର ପିତା ଗୟା ଆସିଥିବା ସମୟରେ ପ୍ରଭୁଙ୍କୁ ସ୍ୱପ୍ନରେ ଦେଖିଥିଲେ ଏବଂ ସେ ତାଙ୍କର ପୁତ୍ର ରୂପେ ଜନ୍ମଲାଭ କରିବେ ବୋଲି କହିଥିଲେ । ତେଣୁ ଗୟା ମନ୍ଦିରର ଅଧିଷ୍ଠାତା ପ୍ରଭୁ ବିଷ୍ଣୁଙ୍କ ନାମ ଅନୁସାରେ ତାଙ୍କ ନାମ ଗଦାଧର ହୋଇଥିଲା । ତେଣୁ ସେ ବିଶ୍ୱାସ କରୁଥିଲେ ଯେ ଗଦାଧରଙ୍କ ପାଦପଦ୍ମ ଦର୍ଶନ କଲେ ସେ ଭକ୍ତିରେ ସମ୍ପୂର୍ଣ୍ଣ ମଜ୍ଜିଯିବେ ଏବଂ ଗଦାଧରଙ୍କଠାରୁ ତାଙ୍କର ସ୍ୱତନ୍ତ୍ର ସତ୍ତା ରହିଛି ବୋଲି ସେ ଭୁଲିଯିବେ ଏବଂ ତାଙ୍କ ସହିତ ଏକୀଭୂତ ହୋଇଯିବେ । ଗୋଟିଏ ସମୟରେ ପୁରୀ ଯିବା ପ୍ରସ୍ତାବକୁ ମଧ୍ୟ ସେ ମନା କରିଦେଇଥିଲେ କାରଣ ମହାପ୍ରଭୁ ଶ୍ରୀ ଗୌରାଙ୍ଗଙ୍କର ଯେପରି ଦିବ୍ୟଲୀଳା ସେଠାରେ ସମାପ୍ତ ହୋଇଗଲା, ତାହା ମଧ୍ୟ ତାଙ୍କ ପ୍ରତି ପ୍ରଯୁଜ୍ୟ ହେବ ।

ଶ୍ରୀରାମକୃଷ୍ଣ ବୁଦ୍ଧଙ୍କୁ ଅବତାର ଭାବରେ ଗ୍ରହଣ କରୁଥିଲେ । ସେ ବିଶ୍ୱାସ କରୁଥିଲେ ଯେ ବୁଦ୍ଧଙ୍କର ପରିପ୍ରକାଶ ପୁରୀର ତ୍ରିମୂର୍ତ୍ତି ମଧ୍ୟରେ ଯଥା– ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଘଟିଛି । ସେ ଶ୍ରୀଜଗନ୍ନାଥ ମନ୍ଦିରର ମହାତ୍ମ୍ୟ ସମ୍ପର୍କରେ ଶୁଣିଥିଲେ । ଶ୍ରୀଜଗନ୍ନାଥଙ୍କର ପ୍ରସାଦ ସମସ୍ତ ପ୍ରକାର ଜାତିଭେଦକୁ ଦୂର କରେ । ସେ ଗଙ୍ଗାଜଳକୁ ବ୍ରହ୍ମବାରୀ ଭାବରେ ଗ୍ରହଣ କରୁଥିବା ବେଳେ ଶ୍ରୀଜଗନ୍ନାଥଙ୍କର ଅବଢା ସେବନ କଲେ ସଂସାରୀ ଲୋକମାନଙ୍କର ଅପବିତ୍ର ମନ ତତ୍କ୍ଷଣାତ୍ ପବିତ୍ର ହୋଇଯାଏ ଏବଂ ଆଧ୍ୟାତ୍ମିକ ଭାବନା ଜାଗ୍ରତ ହୁଏ ବୋଲି ବିଚାର କରୁଥିଲେ । ଶ୍ରୀରାମକୃଷ୍ଣଙ୍କର ଶ୍ରୀଜଗନ୍ନାଥଙ୍କ ପ୍ରତି ରହିଥିବା ଅଚଳାଚଳ ଭକ୍ତି ବର୍ଣ୍ଣନା ଶ୍ରୀରାମକୃଷ୍ଣ କଥାମୃତରେ ଦେଖିବାକୁ ମିଳେ ।

ଥରେ ଦକ୍ଷିଣେଶ୍ୱରଠାରେ ସ୍ୱାମୀ ବ୍ରହ୍ମାନନ୍ଦ (ରାଖାଲ) ମହାରାଜ ଅବସ୍ଥାନ କରୁଥିବା ସମୟରେ ସେ ଅସୁସ୍ଥ ହୋଇ ପଡ଼ିଲେ । ଶ୍ରୀରାମକୃଷ୍ଣ ତାଙ୍କୁ କହିଲେ, ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ଏହି ପ୍ରସାଦ ନିଅ, ତୁମେ ଠିକ୍ ହୋଇଯିବ । ଜଗନ୍ନାଥଙ୍କ ପ୍ରସାଦର ଏପରି ମହିମା, ତୁମେମାନେ ଏହାକୁ ବିଶ୍ୱାସ କରନାହିଁ । ସେ ପ୍ରାୟତଃ କହୁଥିଲେ, ତୁମେ ତୁମର ଖାଦ୍ୟ ନେବା ପୂର୍ବରୁ, ଜଗନ୍ନାଥଙ୍କ ପ୍ରସାଦର ଗୋଟିଏ ଦୁଇଟି ଅବଢା ନିର୍ମାଲ୍ୟ ଗ୍ରହଣ କର ।

ଦିନେ ଶ୍ରୀରାମକୃଷ୍ଣ ରାଖାଲ ମହାରାଜଙ୍କ ସହିତ ବଳରାମ ବସୁଙ୍କ ଘରକୁ ଯାଇଥିଲେ । ବଳରାମ ଶ୍ରୀରାମକୃଷ୍ଣଙ୍କୁ ଗୃହ ଭିତରକୁ ଜଳଯୋଗ ପାଇଁ ନେଇଗଲେ । ଯେତେବେଳେ ସେ ଫେରିଆସିଲେ, ସେ ଦେଖିଲେ ରାଖାଲ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ଖଜା ପ୍ରସାଦ ଖାଉଛନ୍ତି । ଗୋଟେ ଛୋଟ ପିଲା ପରି ସେ ରାଖାଲଙ୍କଠାରୁ ଖଜା ଛଡ଼ାଇ ନେଇ ଖାଇବାକୁ ଲାଗିଲେ । ରାଖାଲ ଏହାର ବିରୋଧ କଲେ କାରଣ ସେ ତାକୁ କାମୁଡ଼ି ଅଇଁଠା କରିଦେଇଛନ୍ତି । ଶ୍ରୀରାମକୃଷ୍ଣ ଆଉ ଟିକିଏ ଖଜାରୁ ଖାଇ ଅବଶିଷ୍ଟ ରାଖାଲଙ୍କୁ ଫେରାଇ ଦେଲେ ଏବଂ କହିଲେ, ମହାପ୍ରଭୁ ଶ୍ରୀଜଗନ୍ନାଥ ମହାପ୍ରସାଦକୁ ପରସ୍ପର



ମଧ୍ୟରେ ବାଣ୍ଟିକରି ଖିଆଯାଏ, ଏପରିକି କେହି ଖାଇକରି ଛାଡ଼ି ଦେଇଥିଲେ ମଧ୍ୟ।

୧୪ ଜୁଲାଇ ୧୮୮୫ ମସିହା ଥିଲା ରଥଯାତ୍ରା। ଶ୍ରୀରାମକୃଷ୍ଣ ବଳରାମ ବସୁଙ୍କ ଘରେ ପହଞ୍ଚିଲେ। ବହୁ ଭକ୍ତଙ୍କର ସମାବେଶ ସେଠାରେ ହୋଇଥିଲା। କୀର୍ତ୍ତନର ବ୍ୟବସ୍ଥା ଥିଲା। ଶ୍ରୀରାମକୃଷ୍ଣ କୀର୍ତ୍ତନର ପଦେ ଦି'ପଦ ଶୁଣି ଭାବସମାଧି ହୋଇଗଲେ। ଅପରାହ୍ନରେ ଜଗନ୍ନାଥଙ୍କର ଗୋଟିଏ ଛୋଟିଆ ରଥ ଫୁଲ, ପତାକାରେ ସଜ୍ଜିତ ହୋଇ ଘର ଭିତର ବାରଣ୍ଡାକୁ ଅଣାଗଲା। ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କର ଚନ୍ଦନଚର୍ଚ୍ଚିତ ମୂର୍ତ୍ତି ତା' ମଧ୍ୟରେ ଶୋଭା ପାଉଥିଲା। ବେକରେ ଫୁଲର ସୁନ୍ଦର ମାଳ, ବସ୍ତ୍ରରେ ଆଚ୍ଛାଦିତ ଏବଂ ଅଳଙ୍କାରରେ ବିଭୂଷିତ ହୋଇ ପ୍ରଭୁ ଅତ୍ୟନ୍ତ ସୁନ୍ଦର ଦେଖାଯାଉଥିଲେ। ଶ୍ରୀରାମକୃଷ୍ଣ ଭକ୍ତମାନଙ୍କ ଗହଣରେ ବାରଣ୍ଡାକୁ ଆସିଲେ। ସେ ରଥ ସମ୍ମୁଖରେ ଛିଡ଼ା ହେଲେ ଏବଂ ରଥ ଦଉଡ଼ିକୁ ଟାଣିଲେ। ସେ ରଥ ସମ୍ମୁଖରେ ଭକ୍ତମାନଙ୍କ ସହିତ ଆନନ୍ଦରେ ଗୀତଗାଇ ନୃତ୍ୟ କଲେ। ନୃତ୍ୟ ଗୀତର ମଧୁର ମୂର୍ଚ୍ଛନା ମଧ୍ୟରେ ରଥ ବାରଣ୍ଡାର ଏ ପ୍ରାନ୍ତରରୁ ସେ ପ୍ରାନ୍ତ ପର୍ଯ୍ୟନ୍ତ ଚାଲିଲା। ଶ୍ରୀରାମକୃଷ୍ଣ ଦିବ୍ୟପ୍ରେମରେ ସମ୍ପୂର୍ଣ୍ଣ ମତୁଆଲା ହୋଇଯାଇଥିଲେ। ଭକ୍ତମାନେ ତାଙ୍କ ସହିତ ତାଳ ଦେଇ ନାଚୁଥିଲେ। କିଛି ସମୟ ପରେ ଶ୍ରୀରାମକୃଷ୍ଣ ବିରାଟ ହଲ୍ ଘରେ ଉପବେଶନ କରି ପଣ୍ଡିତ ଶଶଧରଙ୍କୁ କହିଲେ, ଏହାକୁ କୁହାଯାଏ ଭଜନାନନ୍ଦ, ଈଶ୍ୱରଙ୍କ ପୂଜାରେ ଯେଉଁ ଆନନ୍ଦ ଉତ୍ପନ୍ନ ହୁଏ। ସଂସାରୀ ଲୋକମାନେ କାମ ଓ ଅର୍ଥରେ ଆନନ୍ଦ ପାଇବା ବେଳେ ଭକ୍ତମାନେ ଈଶ୍ୱରଙ୍କୁ ଆରାଧନା କରି ବ୍ରହ୍ମନ୍‌ର ଆନନ୍ଦ ଲାଭ କରନ୍ତି।

ଦିନେ ଶ୍ରୀରାମକୃଷ୍ଣ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ମହାପ୍ରସାଦ ସ୍ୱାମୀ ବିବେକାନନ୍ଦଙ୍କୁ ଦେଇ ଆଶୀର୍ବାଦ କରି କହିଲେ, ଏହି ପ୍ରସାଦ ତୁମକୁ ପରାଭକ୍ତି ପ୍ରଦାନ କରୁ। ୧୫ ଜୁଲାଇ ୧୮୮୫ ମସିହାରେ ଶ୍ରୀରାମକୃଷ୍ଣ (ମାଷ୍ଟର ମହାଶୟ, ମହେନ୍ଦ୍ର ନାଥ ଗୁପ୍ତ, ଶ୍ରୀ ଶ୍ରୀ କଥାମୃତର ଲେଖକ)ଙ୍କୁ କହିଲେ, ମୁଁ ତୁମକୁ ଅତି ଗୁପ୍ତରେ ଗୋଟିଏ କଥା କହିବି। ମୁଁ ଥରେ ଅତ୍ୟଧିକ ଆଧ୍ୟାତ୍ମିକ ଭାବାବସ୍ଥାରେ ଶ୍ରୀଜଗନ୍ନାଥଙ୍କ ପ୍ରତି ଗଭୀର ଭଲ ପାଇଲି ଯେପରି ଜଣେ ପ୍ରେମିକା ତା'ର ପ୍ରେମିକକୁ ଭଲପାଏ। ସେହି ଭାବରେ ମୁଁ ତାଙ୍କୁ କୋଳାଗ୍ରତ କରିବାକୁ ଚେଷ୍ଟା କରି ମୋର ହାତ ଭାଙ୍ଗିଲି। ସେତେବେଳେ ମୋତେ ଜଣାଗଲା ଯେ, ତୁମେ ସେହି ମନୁଷ୍ୟ ଶରୀର ରୂପ ଧାରଣ କରିଛ। ତେଣୁ ତୁମେ ମନୁଷ୍ୟମାନଙ୍କ ସହିତ ବନ୍ଧୁ, ପିତା, ମାତା ଓ ପୁତ୍ରର ସମ୍ପର୍କ ସ୍ଥାପନ କର। ମାଷ୍ଟର ମହାଶୟ କେତେଥର ଭକ୍ତମାନଙ୍କୁ ଶ୍ରୀରାମକୃଷ୍ଣଙ୍କ କହିଥିବା କଥା କହିଥିବେ। ମୁଁ ହେଉଛି ପୁରୀର ସେହି ମହାପ୍ରଭୁ ଜଗନ୍ନାଥ।

ଥରେ ସେ ମାଷ୍ଟର ମହାଶୟଙ୍କୁ ପୁରୀ ପଠାଇଲେ ଏବଂ ସେଠାରେ କ'ଣ କରିବାକୁ ହେବ ନିର୍ଦ୍ଦେଶ ଦେଲେ। ସେ ମୋତେ କହିଲେ ଯେ ମୁଁ ଜଗନ୍ନାଥଙ୍କୁ ଆଲିଙ୍ଗନ କରିବି। ମୁଁ ବ୍ୟସ୍ତ ହୋଇ ପଡ଼ିଲି କାରଣ ଏହା କରିବା ଅସମ୍ଭବ ଥିଲା। ପରିଶେଷରେ ଶ୍ରୀରାମକୃଷ୍ଣ ମୋ ମନରେ ଗୋଟିଏ ବିଚାର ରଖିଲେ। ମୁଁ ମୋ ପକେଟରେ କେତେଗୁଡ଼ିଏ ଟଙ୍କା ଓ ଖୁଚୁରା ପଇସା ରଖି ମନ୍ଦିରର ରତ୍ନବେଦୀ ନିକଟକୁ ପ୍ରବେଶ କଲି। ସ୍ଥାନଟି ଅଳ୍ପ ଅନ୍ଧକାର ଥିଲା। ମୁଁ ଜାଣିଶୁଣି ଖୁଚୁରା ପଇସା ଓ ଟଙ୍କାଗୁଡ଼ିକ ଚଟାଣରେ ପକାଇ ଦେଲି। ଏହି ସମୟ ମଧ୍ୟରେ ମୁଁ ରତ୍ନବେଦୀ ଉପରକୁ ଚଢ଼ି ମହାପ୍ରଭୁ ଜଗନ୍ନାଥଙ୍କୁ କୋଳାଗ୍ରତ କଲି। କେହି ଜଣେ ମୋତେ ଦେଖି ପକାଇଲା ଏବଂ ଚିତ୍କାର କଲା। ମୁଁ ତତ୍‌କ୍ଷଣାତ୍ ଓହ୍ଲାଇପଡ଼ି ମୂର୍ତ୍ତିଗୁଡ଼ିକ ଚତୁଃପାର୍ଶ୍ୱରେ ବୁଲିଲି। ଅନ୍ଧାର ଥିବାରୁ ମୋତେ କେହି ଚିହ୍ନିପାରିଲେ ନାହିଁ। ଏହା ଶ୍ରୀରାମକୃଷ୍ଣଙ୍କ ନିର୍ଦ୍ଦେଶରେ ହୋଇଥିଲା। ସେ ପଣ୍ଡାମାନଙ୍କର ଦୃଷ୍ଟିକୁ ଏଡ଼େଇ ଦେଲେ ସେମାନଙ୍କ ମନରେ ଲୋଭ ଜାତ କରି। ବର୍ତ୍ତମାନ ମୁଁ ଆଶ୍ଚର୍ଯ୍ୟ ହୁଏ ସେପରି ବୀରତ୍ୱପୂର୍ଣ୍ଣ କାର୍ଯ୍ୟ ମୁଁ କିପରି କରିପାରିଲି।

ମୁଁ ପୁରୀରୁ ଫେରିବା ପରେ ଶ୍ରୀରାମକୃଷ୍ଣ ମୋତେ କୋଳାଗ୍ରତ କଲେ ଏବଂ କହିଲେ, 'ବର୍ତ୍ତମାନ ମୁଁ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ କୋଳାଗ୍ରତ କଲି।

ଶ୍ରୀରାମକୃଷ୍ଣଙ୍କର ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ପ୍ରତି ଅଚଳାଚଳ ଭକ୍ତି ଓ ପୁରୀକୁ ସେ କାହିଁକି ଶ୍ରୀଜଗନ୍ନାଥଙ୍କ ଦର୍ଶନ କରିବାକୁ ଆସିନଥିଲେ, ତାହା ଜଣାପଡ଼େ।

ଗଜପତି ନଗର
ଭୁବନେଶ୍ୱର–୭୫୧୦୦୫



# ଶ୍ରୀଜଗନ୍ନାଥ : ଚିନ୍ତା ଓ ଚେତନାର ପ୍ରତୀକ

**ତାପସ କୁମାର ସାହା**

ଚକା ଆଖି । ଚନ୍ଦ୍ର ଆଉ ସୂର୍ଯ୍ୟ ଭଳି ଗୋଲ ଗୋଲ ଆଖି ଦିଓଟି । ଆଖିରେ ପଲକ ନାହିଁ । ସର୍ବକ୍ଷଣ ଅନାଇ ରହିଛି ସାରା ଜଗତକୁ । ଜଗତର ନାଥ । ଏହି ସେହି କଳାବଦନ । ଶ୍ରୀମୁଖ ଚକା ଚକା ଆଖିକୁ ଦର୍ଶନ କରିବାର ଅଭିଳାଷ ଓ ବ୍ୟାକୁଳତା ଭକ୍ତଙ୍କୁ ବାରମ୍ବାର ଟାଣିଆଣେ ଶ୍ରୀକ୍ଷେତ୍ରକୁ । କଳାବଦନର ଦର୍ଶନ ମାତ୍ରକେ ମନରେ ଭରିଯାଏ ଅପାର ଆନନ୍ଦ । କେବଳ ଦର୍ଶନରେ ଆନନ୍ଦ । ସକଳ ତୀର୍ଥର ସୁଫଳ ମିଳେ ଏହି ଚକା ଆଖିର ଦର୍ଶନରେ । ଦାରୁଦେବତାର ଦର୍ଶନରେ ମୁକ୍ତିମିଳେ ଜନ୍ମମୃତ୍ୟୁର ଚକ୍ରରୁ । ଶ୍ରୀଜଗନ୍ନାଥ କେବଳ ଦାରୁବ୍ରହ୍ମ ନୁହଁନ୍ତି, ସେ ସମଗ୍ର ଓଡ଼ିଆ ଜାତିର ଇଷ୍ଟ ଦେବତା ।

ଶ୍ରୀଜଗନ୍ନାଥଙ୍କୁ ନେଇ ଭାରତବର୍ଷରେ ଭକ୍ତଙ୍କ ମଧ୍ୟରେ ଯେତେ ରହସ୍ୟଘେରା ଉତ୍କଣ୍ଠା, ତାହା କ୍ୱଚିତ ଅନ୍ୟ କୌଣସି ଦେବଦେବୀଙ୍କ ନିକଟରେ ଦେଖାଯାଏ ନାହିଁ । ଶ୍ରୀଜଗନ୍ନାଥ ଭାରତୀୟ ଇତିହାସ, ଆଧ୍ୟାତ୍ମିକ ଓ ଧାର୍ମିକ ଚିନ୍ତାଚେତନାରେ ଏକ ରହସ୍ୟ ହୋଇ ରହିଛନ୍ତି । ଏହି ଅନୁଦ୍‌ଘାଟିତ ରହସ୍ୟର ଉନ୍ମୋଚନ ନିମନ୍ତେ ଭାରତବର୍ଷର କୋଣ–ଅନୁକୋଣରୁ ସାଧୁ, ସନ୍ନ୍ୟାସୀ, ପରିବ୍ରାଜକ, ଧର୍ମପ୍ରଚାରକ ଶ୍ରୀକ୍ଷେତ୍ର ପୁରୀକୁ ଧାଇଁ ଆସିଛନ୍ତି । ସମସ୍ତେ ଜଗନ୍ନାଥଙ୍କ ନିକଟରେ ମୁଣ୍ଡ ନୁଆଁଇଛନ୍ତି । ଜଗନ୍ନାଥ ସଂସ୍କୃତିର ଧାରାରେ ସାମିଲ ହୋଇଛନ୍ତି । ଜଗନ୍ନାଥ ସଂସ୍କୃତି ସମସ୍ତ ସଂସ୍କୃତିକୁ ଆପଣାଇ ନେଇ ସାର୍ବଜନୀନ ବିଶ୍ୱଭ୍ରାତୃଭାବ ଜାଗ୍ରତ କରିବାରେ ସକ୍ଷମ ହୋଇଛି । ତେବେ ଏଥିପାଇଁ ବହୁ ଘାତପ୍ରତିଘାତ ସହିବାକୁ ପଡ଼ିଛି । ବିଦେଶୀ ଶତ୍ରୁର ଆକ୍ରମଣକୁ ବାରମ୍ବାର ସମ୍ମୁଖୀନ ହେବାକୁ ପଡ଼ିଛି । ଭାଇଭଉଣୀଙ୍କ ସହ ବହୁବାର ପାତାଳି ହୋଇ ଆତ୍ମଗୋପନ କରିବାକୁ ପଡ଼ିଛି । ବାହ୍ୟ ଶତ୍ରୁର ଆକ୍ରମଣ ଯୋଗୁଁ ଆତ୍ମଗୋପନ କରିବା ସମୟରେ ପ୍ରଭୁ ଗୋପନ ଲୀଳା କରିଛନ୍ତି । ସେ ସର୍ବଦା ଭକ୍ତଙ୍କ ହୃଦୟରେ ବିରାଜିତ । ଭକ୍ତଙ୍କ ଦୃଷ୍ଟି ଅଗୋଚରରେ ରହି ମଧ୍ୟ ସେ ଭକ୍ତଙ୍କୁ ତାଙ୍କର ଶୁଭଦୃଷ୍ଟି ସର୍ବଦା ଦେଇ ଆସିଛନ୍ତି । ଭକ୍ତଙ୍କ ଆତ୍ମାରେ ବିରାଜମାନ ଯୋଗୁଁ, ଏତେ ଘାତପ୍ରତିଘାତ ଓ ବିରୋଧାଭାଷ ସତ୍ତ୍ୱେ ଶ୍ରୀଜଗନ୍ନାଥ ଆଜି ବି ବିଶ୍ୱବନ୍ଦିତ । ଜଗନ୍ନାଥ ସଂସ୍କୃତି, ଚେତନା ଓ ଦର୍ଶନ ଧୀରେ ଧୀରେ ବ୍ୟାପକ ହେବାରେ ଲାଗିଛି । ଆମେରିକା ଓ ୟୁରୋପ ସମେତ ପୃଥିବୀର ବିଭିନ୍ନ ସହରରେ ସଦୃଶ୍ୟ ଶ୍ରୀଜଗନ୍ନାଥ ମନ୍ଦିର ସ୍ଥାପନ ହେବା ସହିତ ପ୍ରତିବର୍ଷ ହର୍ଷ–ଉଲ୍ଲାସର ସହିତ ପବିତ୍ର ରଥଯାତ୍ରା ପାଳିତ ହେଉଛି ।

ଶ୍ରୀଜଗନ୍ନାଥ ସଂସ୍କୃତି ଏକ ମହାନ ସମନ୍ୱୟ ବା ମହାମିଳନର ସଂସ୍କୃତି । ଜଗନ୍ନାଥ ସମସ୍ତଙ୍କୁ ସାଦରେ ଆଲିଙ୍ଗନ କରିଛନ୍ତି । କିନ୍ତୁ କେବେହେଲେ କୌଣସି ସଂପ୍ରଦାୟ ଓ ଧର୍ମ ଦ୍ୱାରା ନିଜର ମୌଳିକତାକୁ ହରାଇ ନାହାନ୍ତି । ଅପର ପକ୍ଷରେ ଅନ୍ୟମାନେ ଜଗନ୍ନାଥଙ୍କ ବିଶାଳତାରେ ଲୀନ ହୋଇଯିବାକୁ ଶ୍ରେୟସ୍କର ମଣିଛନ୍ତି । ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ର କରି କଳିଙ୍ଗଠାରୁ ଆରମ୍ଭ କରି ଉତ୍କଳ ଓ ଆଧୁନିକ ଓଡ଼ିଶାର ସମାଜ, ଦର୍ଶନ ଓ ସଂସ୍କୃତି ଗଢ଼ି ଉଠିଛି, ତାହା ନିଶ୍ଚିତ ରୂପରେ ଏକ ନିଆରା ସଂସ୍କୃତି । ପତିତମାନଙ୍କର ଉଦ୍ଧାର ନିମନ୍ତେ ସେ ଧରାପୃଷ୍ଠରେ ଅବତରଣ କରିଛନ୍ତି । ସେ ପତିତର ଦେବତା । ଏହାକୁ ଉଦ୍‌ଘୋଷଣା କରିବା ପାଇଁ ଶ୍ରୀମନ୍ଦିର ବା ବଡ଼ଦେଉଳରେ ପତିତପାବନ ବାନା ସର୍ବଦା ଫରଫର ହୋଇ ଉଡୁଛି । କେବଳ ଦୂରରୁ ଏହି ପତିତପାବନ ଦର୍ଶନ କରି ଭକ୍ତ ମନରେ ଅଶେଷ ସନ୍ତୋଷ ଲାଭ କରେ ।

ଶ୍ରୀଜଗନ୍ନାଥ ଦାରୁଦେବତା ହୋଇଥିଲେ ହେଁ ତାଙ୍କୁ ରକ୍ତମାଂସ ଦେହଧାରୀର କଳ୍ପନା କରାଯାଇ ତାଙ୍କର ସମସ୍ତ ପୂଜାନୀତି ଅନୁଷ୍ଠିତ ହୋଇଥାଏ, ଯାହା କ୍ୱଚିତ ଅନ୍ୟ କୌଣସି ମନ୍ଦିରରେ ଅନୁସରଣ କରାଯାଏ । ସାଧାରଣ ମଣିଷର ଦିନଚର୍ଯ୍ୟା ପରି ଶ୍ରୀମନ୍ଦିରରେ ଶ୍ରୀଜୀଉଙ୍କର ଦିନଚର୍ଯ୍ୟା ପ୍ରାତଃକାଳରୁ ଆରମ୍ଭ ହୋଇ ରାତ୍ରିରେ ପହୁଡ଼ ପର୍ଯ୍ୟନ୍ତ ବିଭିନ୍ନ ନୀତିକାନ୍ତି ଅନୁଷ୍ଠିତ ହୋଇଥାଏ । ଋତୁ ଅନୁଯାୟୀ ମଣିଷର ବେଶପୋଷାକ, ଖାଦ୍ୟପେୟରେ ପରିବର୍ତ୍ତନ ଭଳି ଶ୍ରୀଜୀଉଙ୍କର ଚାଲିଚଳଣରେ ପରିବର୍ତ୍ତନ ହୋଇଥାଏ । ଶୀତ ଦିନରେ ଘୋଡ଼ଲାଗି ବେଶ ହେବା ସହିତ ପ୍ରଚଣ୍ଡ ଗ୍ରୀଷ୍ମର ଉତ୍ତାପରୁ ରକ୍ଷା ପାଇବା ନିମନ୍ତେ ଓ ଶରୀରକୁ ଶୀତଳ କରିବା ନିମନ୍ତେ ସାରା ଶରୀରରେ ଚନ୍ଦନର ପ୍ରଲେପ ଓ ନରେନ୍ଦ୍ର ପୁଷ୍କରିଣୀରେ ଚାପ ଖେଳିବା ନିଶ୍ଚିତ ରୂପରେ ଏକ ନିଆରା ନୀତିକାନ୍ତି । ସେହିପରି ପବିତ୍ର ସ୍ନାନପୂର୍ଣ୍ଣମୀରେ ୧୦୮ କଳସୀ ଜଳରେ ସ୍ନାନ କରନ୍ତି ଏବଂ ମାତ୍ରାଧିକ ସ୍ନାନ ଦ୍ୱାରା ସାଧାରଣ ମଣିଷ ପରି ଜ୍ୱରରେ ପୀଡ଼ିତ ହୁଅନ୍ତି । ପୁଣି ବଇଦ ଦ୍ୱାରା ଚିକିତ୍ସିତ ହୋଇ ନାନାପ୍ରକାର ଚେରମୂଳିରେ ପ୍ରସ୍ତୁତ ପାଚନ ସେବନ କରି ସୁସ୍ଥ ହୁଅନ୍ତି । ଏପରି ମାନବୀୟ ଲୀଳା ପ୍ରଦର୍ଶନ କରି ଦେବତା ଓ ମାନବ ମଧ୍ୟରେ ଦୂରତ୍ୱକୁ ହ୍ରାସ କରିବାର ଯେଉଁ ପ୍ରୟାସ, ତାହା ଅନ୍ୟ ଧର୍ମ ଓ ସଂପ୍ରଦାୟରେ ପ୍ରାୟତଃ ଦେଖିବାକୁ ମିଳିନଥାଏ । ଏଠି ଦେବତା ମନୁଷ୍ୟ ପାଲଟିଛନ୍ତି ଓ ମଣିଷ ଦେବତା ପାଲଟିଛନ୍ତି । ସେଥିପାଇଁ ଶ୍ରୀଜଗନ୍ନାଥଙ୍କୁ ନେଇ ଏତେ ରହସ୍ୟ, ଏତେ ଉତ୍କଣ୍ଠା, ଏତେ ଆବେଗ । ଶ୍ରୀକ୍ଷେତ୍ରରେ ଶ୍ରୀଜୀଉଙ୍କର ଏହି ଲୌକିକ ଲୀଳାଖେଳା ଦେଖିବାକୁ ଭକ୍ତ ସର୍ବଦା ବ୍ୟାକୁଳ । କର୍ମବ୍ୟସ୍ତତା ମଧ୍ୟରୁ ସମୟ ବାହାର କରି ଛୁଟି ଆସନ୍ତି ଶ୍ରୀକ୍ଷେତ୍ରକୁ । ଜଗନ୍ନାଥ ଯେତିକି ରହସ୍ୟମୟ, ସେତିକି ବିସ୍ମୟପୂର୍ଣ୍ଣ ।

ଆଷାଢ଼ ମାସରେ ଶ୍ରୀଜୀଉଙ୍କର ଘୋଷଯାତ୍ରା । ଶ୍ରୀକ୍ଷେତ୍ରର ସବୁ ଯାନିଯାତ୍ରାଠାରୁ ବଡ଼ଯାତ୍ରା । ଶ୍ରୀଗୁଣ୍ଡିଚା ଯାତ୍ରା ମହାନ ସାମ୍ୟବାଦର ପ୍ରତୀକ । ଶ୍ରୀଜଗନ୍ନାଥଙ୍କ ଦୃଷ୍ଟିରେ ଆଚାଣ୍ଡାଳ ବ୍ରାହ୍ମଣ ସମସ୍ତେ ସମାନ । ସମସ୍ତ ଅସମାନତାର ଶୃଙ୍ଖଳକୁ ଭାଙ୍ଗି ଦେଇ ସ୍ୱୟଂ ମହାପ୍ରଭୁ ଓହ୍ଲାଇ ଆସନ୍ତି ରତ୍ନ ସିଂହାସନରୁ ବଡ଼ଦାଣ୍ଡକୁ । ଶ୍ରୀଜଗନ୍ନାଥ, ବଡ଼ଭାଇ ଶ୍ରୀବଳଭଦ୍ର ଓ ଭଗିନୀ ଦେବୀ ସୁଭଦ୍ରାଙ୍କ ସହିତ ରଥାରୂଢ଼ ହୋଇ ଶ୍ରୀଗୁଣ୍ଡିଚା ଯାତ୍ରା ଆରମ୍ଭ କରନ୍ତି । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କୁ ଦର୍ଶନ ଦିଅନ୍ତି । ଏଠାରେ ଧନୀ, ନିର୍ଧନ ମଧ୍ୟରେ କୌଣସି ପାର୍ଥକ୍ୟ ନଥାଏ । କୌଣସି ବାରଣ ନଥାଏ । ନଥାଏ କିଛି କଟକଣା । ବଡ଼ଦାଣ୍ଡରେ ଦଣ୍ଡାୟମାନ ହୋଇ ଯେ କେହି ଶ୍ରୀଜୀଉଙ୍କର ଦର୍ଶନ ଲାଭର ସୁଯୋଗ ପାଇଥାଆନ୍ତି । ଭକ୍ତ ଓ ଭଗବାନର ମିଳନ ହୁଏ । ଆଖି ପୂରାଇ ସେହି ଚକା ଆଖିକୁ ଦେଖିବାର ସୌଭାଗ୍ୟ ସମସ୍ତେ ଲାଭ କରିଥାଆନ୍ତି । ବଡ଼ଦାଣ୍ଡର ଜନସମୁଦ୍ରରେ ସମସ୍ତେ ଏକାକାର ହୋଇଯାଆନ୍ତି । ଭକ୍ତଙ୍କ ଗହଣରେ ଭଗବାନ । ଭକ୍ତର ଅଧୀନ ଭଗବାନ ଉକ୍ତିଟି ଯଥାର୍ଥ ରୂପ ନିଏ । ତେବେ ସେତିକିରେ କାଳିଆ ଠାକୁର ତୃପ୍ତ ହୋଇ ନଥାନ୍ତି । ତାଙ୍କ ରଥର ଦଉଡ଼ି ଧରି ଟାଣି ଟାଣି ତାଙ୍କୁ ନେଇଯିବାକୁ ସେ ଭକ୍ତଙ୍କୁ ଆହ୍ୱାନ କରନ୍ତି । ଭକ୍ତ ଆହ୍ଲାଦିତ ହୁଏ । ଏ ତ ତା'ର ପରମ ସୌଭାଗ୍ୟ । ସ୍ୱହସ୍ତରେ ଭଗବାନଙ୍କୁ ଟାଣି ଟାଣି ନେଇଯିବାର ସୌଭାଗ୍ୟ କେତେଜଣଙ୍କ ଭାଗ୍ୟରେ ବା ଜୁଟିଥାଏ । ଭକ୍ତ ରଥର ଦଉଡ଼ି ଟାଣି ନିଜକୁ ଧନ୍ୟ ମନେ କରେ । ଜୀବନର ଯାତ୍ରା ପଥରେ ପ୍ରଭୁଙ୍କ ସହିତ ଦୁଇପାଦ ଆଗେଇ ଯିବା, ଏ ନିଆରା ସଂସ୍କୃତି ଯୁଗେ ଯୁଗେ ଉତ୍କଳୀୟ ସଂସ୍କୃତିକୁ ମହାନ କରି ଗଢ଼ିତୋଳିଛି । ବିଭିନ୍ନ କାରଣ ଓ ବାରଣ ଯୋଗୁଁ ଅଣହିନ୍ଦୁମାନଙ୍କର ଶ୍ରୀମନ୍ଦିରରେ ପ୍ରବେଶ କଟକଣାର ରଜ୍ଜୁ ଘୋଷଯାତ୍ରା ଦିନ ଛିନ୍ନ ହୋଇଯାଏ ଏବଂ ସମସ୍ତ ଧର୍ମ, ବର୍ଣ୍ଣ, ସଂପ୍ରଦାୟର ଭକ୍ତମାନଙ୍କ ନିମନ୍ତେ ରଥର ରଜ୍ଜୁ ଉନ୍ମୁକ୍ତ ହୋଇଥାଏ ।

'ରଥେତୁ ବାମନଂ ଦୃଷ୍ଟ୍ୱା, ପୁନର୍ଜନ୍ମ ନ ବିଦ୍ୟତେ' ଉକ୍ତିର ସାର୍ଥକତା ରଥଯାତ୍ରାରେ ପରିଦୃଷ୍ଟ ହୋଇଥାଏ । ଲକ୍ଷ ଲକ୍ଷ ଭକ୍ତଙ୍କ ସମାଗମରେ ବଡ଼ଦାଣ୍ଡ ଉଚ୍ଛୁଳି ପଡ଼େ । ରଥଯାତ୍ରା ପାଲଟି ଯାଏ ଏକ ସାର୍ବଜନୀନ ଗଣମହୋତ୍ସବରେ । ରଥଯାତ୍ରାରେ ଦେଖିବାକୁ ମିଳେ ସର୍ବଧର୍ମର ଏକ ଅପୂର୍ବ ସମନ୍ୱୟ । କୌଣସି ନିର୍ଦ୍ଦିଷ୍ଟ ଧର୍ମ ଓ ସଂସ୍କୃତିର ଗଣ୍ଡି ମଧ୍ୟରେ ଶ୍ରୀଜଗନ୍ନାଥଙ୍କୁ ଆବଦ୍ଧ



କରାଯାଇ ପାରିବ ନାହିଁ । ମୂଳତଃ ଓଡ଼ିଶାର ପ୍ରାଚୀନ ଶବର ସଂସ୍କୃତିରୁ ଜଗନ୍ନାଥ ସଂସ୍କୃତି ଜନ୍ମଲାଭ କରିଥିବା ଅନେକ ବିଶ୍ୱାସ କରୁଥିଲେ ହେଁ ପରବର୍ତ୍ତୀ କାଳରେ ବୈଦିକ, ବୈଷ୍ଣବ, ଶାକ୍ତ, ଶୈବ, ତନ୍ତ୍ର, ଜୈନ ଓ ବୌଦ୍ଧ ସଂସ୍କୃତିର ପ୍ରଭାବରେ ଶ୍ରୀଜଗନ୍ନାଥ ଗଣଦେବତା ଓ ରଥଯାତ୍ରା ଗଣମହୋତ୍ସବରେ ରୂପାନ୍ତରିତ ହୋଇଛି ।

ଓଡ଼ିଶାର ସଂସ୍କୃତି ହେଉଛି ଜଗନ୍ନାଥ ସଂସ୍କୃତି । ଜଗନ୍ନାଥ ସଂସ୍କୃତି ବ୍ୟତିରେକ ଓଡ଼ିଶାର ସଂସ୍କୃତିର କଳ୍ପନା କରାଯାଇପାରିବ ନାହିଁ । ଓଡ଼ିଶାର ସମସ୍ତ ଐତିହ୍ୟ, ପରମ୍ପରା ଓ ଇତିହାସ ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ର କରି ଗଢ଼ିଉଠିଛି । ଜଗନ୍ନାଥ ସମଗ୍ର ଓଡ଼ିଶାର ଓ ଓଡ଼ିଆ ଜାତି ହୃଦୟର ସ୍ପନ୍ଦନ । ଓଡ଼ିଆ ଜାତିର ଗର୍ବ, ଗୌରବ ଓ ସ୍ୱାଭିମାନର ପ୍ରତୀକ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଅପାର ମହିମା ଯୁଗେ ଯୁଗେ ପୃଥିବୀର କୋଣ–ଅନୁକୋଣର ଭକ୍ତମାନଙ୍କୁ ଶ୍ରୀକ୍ଷେତ୍ର ପୁରୀକୁ ଆକର୍ଷିତ କରିଥାଏ । ଶ୍ରୀଜଗନ୍ନାଥଙ୍କ ଟିକିଏ ଦର୍ଶନ ପାଇଁ ଛୁଟି ଆସନ୍ତି ଭକ୍ତମାନେ । ଭକ୍ତ ଓ ଭଗବାନଙ୍କ ମିଳନ ଘଟିଥାଏ । ନଦୀ ଯେପରି ପାହାଡ଼ ଓ ପର୍ବତ ଡେଇଁ ବହୁ ବାଧାବିଘ୍ନ ଅତିକ୍ରମ କରି ଧାଇଁଥାଏ ସମୁଦ୍ରରେ ମିଶିବା ପାଇଁ, ଭକ୍ତ ସେହିପରି ସବୁ ଜାଗତିକ ସୁଖ, ଦୁଃଖ, ମୋହ, ମାୟାକୁ ପଛରେ ପକାଇ ପରମାତ୍ମାଙ୍କ ସହିତ ମିଳିତ ହେବାକୁ ଧାଇଁଯାଏ । ଶ୍ରୀଜଗନ୍ନାଥଙ୍କ ଦର୍ଶନ ମାତ୍ରକେ ଭକ୍ତ ଓ ଭଗବାନଙ୍କ ମିଳନ ଘଟିଥାଏ ।

ଶ୍ରୀଜଗନ୍ନାଥ ଏକ ଚିନ୍ତା ଓ ଚେତନାର ପ୍ରତୀକ । ସେ ବିଶ୍ୱବ୍ରହ୍ମାଣ୍ଡର ନିୟନ୍ତା । ଅପାଣିପାଦ ଜଗନ୍ନାଥ ସର୍ବବ୍ୟାପୀ ଓ ସାର୍ବଭୌମ । ତାଙ୍କୁ ଯିଏ ଯେମିତି ଦେଖିଛି, ସେମିତି ପାଇଛି ବୋଲି ବିଶ୍ୱାସ କରାଯାଏ । ଶୈବ୍ୟ ଦେଖିଛି ଶିବ ରୂପରେ, ଗାଣପତ୍ୟ ଦେଖିଛି ଗଣେଶ ରୂପରେ, ବୈଷ୍ଣବ ଦେଖିଛି ବିଷ୍ଣୁ ରୂପରେ, ବୌଦ୍ଧ ଦେଖିଛି ବୁଦ୍ଧ ରୂପରେ, ଶାକ୍ତ ଦେଖିଛି ଶକ୍ତି ରୂପରେ । ମାତ୍ର ଜଗତର ନାଥ ଶ୍ରୀଜଗନ୍ନାଥ କୌଣସି ନିର୍ଦ୍ଦିଷ୍ଟ ରୂପ, ସୀମା ବା ସତ୍ତା ମଧ୍ୟରେ ଆବଦ୍ଧ ହୋଇ ନାହାନ୍ତି । ସେ ତ ଅସୀମ । ସେ ନିରାକାର । ପରଂବ୍ରହ୍ମ । ସେ ପୁରୁଷୋତ୍ତମ । ଦାରୁ ଓ ବ୍ରହ୍ମଙ୍କର ସମାହାରରେ ସେ ଦାରୁବ୍ରହ୍ମ । ବ୍ରହ୍ମଙ୍କ ସଂପର୍କରେ ବେଦ ଓ ପୁରାଣରେ ଅନେକ ଆଲୋଚନା କରାଯାଇଥିଲେ ହେଁ ଆଲୋଚନା ଆଜି ମଧ୍ୟ ଅସମାପ୍ତ ବୋଲି ମନେହୁଏ । ତାହା ଆଜି ମଧ୍ୟ ରହସ୍ୟମୟ । ତତ୍ତ୍ୱତଃ ସେ ଅଜ୍ଞେୟ ପୁରୁଷ । ଯିଏ ବିନା ପାଦରେ ଚାଲିପାରନ୍ତି, ବିନା କର୍ଣ୍ଣରେ ଶ୍ରବଣ କରନ୍ତି ଏବଂ ବିଶ୍ୱବ୍ରହ୍ମାଣ୍ଡର ସମସ୍ତ କର୍ମ ଯେ ବିନା ହସ୍ତରେ ସଂପାଦନ କରିପାରନ୍ତି ସେ ହିଁ ବ୍ରହ୍ମ ବୋଲି ଶାସ୍ତ୍ର ମତ ଦେଇଥାଏ । ସେହି ଦାରୁବ୍ରହ୍ମ କୋଟି ଓଡ଼ିଆଙ୍କ ପ୍ରାଣର ଆରାଧ୍ୟ ଦେବତା, ଯାହାର ଦର୍ଶନ ନିମନ୍ତେ ଭକ୍ତ ସର୍ବଦା ବ୍ୟାକୁଳ । ଓଡ଼ିଶାର ନିତିଦିନର ଜୀବନଚର୍ଯ୍ୟାରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ମହନୀୟ ଭାବଧାରା ଫୁଟି ଉଠିଥାଏ । ଜଗନ୍ନାଥ ସଂସ୍କୃତି ଓଡ଼ିଶାର ଜନଜୀବନକୁ ଗଭୀର ଭାବରେ ପ୍ରଭାବିତ କରିଛି । ବିଭିନ୍ନ ସମୟରେ ବହୁ ଉତ୍ଥାନ ପତନ ଓ ସଂକଟ ଦେଇ ଜଗନ୍ନାଥ ସଂସ୍କୃତିକୁ ଗତି କରିବାକୁ ପଡ଼ିଥିଲେ ହେଁ ଶ୍ରୀଜଗନ୍ନାଥ ସଂସ୍କୃତି ସବୁ ଘାତପ୍ରତିଘାତକୁ ନିଜ ମଧ୍ୟରେ ଆବୋରି ନେଇ ତା'ର ଅସ୍ତିତ୍ୱକୁ ବଜାୟ ରଖିବାକୁ ସମର୍ଥ ହେବା ସହିତ ସମଗ୍ର ମାନବ ସମାଜକୁ ଦିବ୍ୟଦର୍ଶନ ଦେଇ ଆସୁଛି । ଶ୍ରୀଜଗନ୍ନାଥ ସଂସ୍କୃତିର ଉତ୍ତରାଧିକାରୀ ଭାବରେ ଏହି ମହାନ ସଂସ୍କୃତିର ଟେକ ରଖିବା ପାଇଁ ପ୍ରତ୍ୟେକ ସ୍ତରରେ ନିଷ୍ଠାପର ଓ ନିଃସ୍ୱାର୍ଥପର ଉଦ୍ୟମ ହେବା ଆବଶ୍ୟକ । ଏହା ହିଁ ପବିତ୍ର ଘୋଷଯାତ୍ରାର ପବିତ୍ର ସଂକଳ୍ପ ହେବା ନିମନ୍ତେ ଶ୍ରୀଜଗନ୍ନାଥଙ୍କ ନିକଟରେ କାମନା ।

ସୂଚନା ଅଧିକାରୀ
ସୂଚନା ଓ ଲୋକସଂପର୍କ ବିଭାଗ
ଭୁବନେଶ୍ୱର





# ଦିବ୍ୟ ସଂଦର୍ଶନ

ଡକ୍ଟର ସରୋଜିନି ଷଡ଼ଙ୍ଗୀ

ମନ୍ତ୍ର,ତନ୍ତ୍ର ଜାଣେ ନାହିଁ
ପୂଜାପାଠ ଜାଣେ ନାହିଁ
ଜାଣେନାହିଁ ଜପ, ତପ
କରିବାର ଅପୂର୍ବ କୌଶଳ
ଶଙ୍ଖ ଫୁଙ୍କି ଜାଣେ ନାହିଁ
ମହୁରୀ ବଜାଏ ନାହିଁ
ଘଣ୍ଟଘଣ୍ଟା କାହାଳୀ ଓ
ମର୍ଦ୍ଦଳ ବଜାଇବାର
ଅଭିନବ ସୂକ୍ଷ୍ମକଳା
କରିନି ହାସଲ।
ହାତରେ ଧରିନି କେବେ
ଖୋଳ ଆଉ କରତାଳ
ଆୟତ୍ତ କରିନି କେବେ
କୀର୍ତ୍ତନର ଅଭିଜ୍ଞାନ
ଜାଣେ ନାହିଁ, ଠାକୁରଙ୍କୁ
ମଉନେ ମନାଇବାର
ଲଳିତ ଉପାୟ !
ଚଉପାଶେ ନିଆଁ ଜାଳି
ମୁନି ଋଷି ଭଳି
ଯୁଗ ଯୁଗ ତୁମ ପାଇଁ
କରିନି ତପସ୍ୟା ମୁଁ ଯେ
ଦୁଇହାତ ଉର୍ଦ୍ଧ୍ୱ ଟେକି
ନିଝୁମ ବର୍ଷାରେ ଭିଜି
ଧ୍ୟାନ ମଗ୍ନ ହୋଇ କେବେ
କରିନି ସାଧନା ।
ବେଦଗାନ ଶିଖି ନାହିଁ
ପ୍ରାର୍ଥନା ବି ଜାଣେ ନାହିଁ
ନିର୍ଜଳା ଉପବାସରେ
ଏକପାଦେ ଠିଆ ହୋଇ
ଗାଇନି ଭଜନ
ଆଉ କରିନି ବନ୍ଦନା ।
ଦିବ୍ୟ ଚକ୍ଷୁ ମୋର କାହିଁ
ସମ୍ଭାଳିବି ତୁମ ବିଶ୍ୱରୂପ !
ଏମିତି ସୁକୃତ କାହିଁ
ଦେଖିବି ମୁଁ ତୁମର ସ୍ୱରୂପ ?
ହାତରେ ମୋ' ସମାଜର
ବିବିଧ ଶୃଙ୍ଖଳ ଆଉ
ପାଦରେ ବି ସଂସାରର
ଅନେକ ବନ୍ଧନ
କେମିତି ଯିବି ମନ୍ଦିର ?
କେମିତି ମୁଁ ନୀଳଚକ୍ର
ନୀଳାଦ୍ରିଭୂଷଣ ଆଉ
ନୀଳାଂଜନ ତୁମ ରୂପ
କରିବି ଦର୍ଶନ ?
ଆଖି ବୁଜି ଅନ୍ଧାରରେ
ତୁମ ଛବି ଭାବୁ ଭାବୁ
କେମିତି ବୁଝିପାରିଲ
ମୋର ସୂକ୍ଷ୍ମ ଅଭିମାନ ?
କେମିତି ଜାଣିଲ ପୁଣି
ରାଗ ଅନୁରାଗ ମିଶା
ମୋ ତୀବ୍ର ଗୁମାନ ?
ଜ୍ୟୋତିର୍ମୟ କରିଦେଇ
ମୋ ପର୍ଣ୍ଣ କୁଟୀର
ଏକାଥରେ ସଶରୀରେ
ମୋ ଆଗରେ ଉଭା ହୋଇଗଲ !!

ଲିଙ୍କ୍ ରୋଡ଼, କଟକ-୧୨





# ମୁଁ କ୍ଷେତ୍ର ଯିବି

**ରକ୍ଷକ ନାୟକ**



ଆବିଳ ଅଂଧାରରେ
ପରମାଣୁ ପ୍ରାୟ ଆଲୁଅ
ପ୍ରକଟିଛି ଆମ ଆକାଶରେ
ସହସ୍ର ସହସ୍ର ସୂର୍ଯ୍ୟଙ୍କର ବୀଜ ବିନ୍ଦୁ
ଅଦୃଷ୍ଟକୁ ଦୃଶ୍ୟ କେବଳ
ମହକିଚି ଆମ ମାଟି, ଆମ କ୍ଷେତ୍ର
ଅପାର୍ଥିବ ଏ ବିଚିତ୍ର ଭୂଗୋଳ ।
ମୁଁ କ୍ଷେତ୍ର ଯିବି ।

ସମୟକୁ ସୃଜିଥିବା ସ୍ରୋତଟିଏ
ବହୁଛି ନିଃସମୟତାର ଶୂନ୍ୟ ସମତଳରେ
ରଚୁଛି ଦୃଶ୍ୟ, ଦର୍ଶନ, ଯାତ୍ରା, ମାୟାର ମାତ୍ରା
ଫେଣ ପରି ମିଳେଇଯାଇଛି ମହାସାଗରରେ
କୂଳରେ କାଳକୁ ଖେଳାଉଛି ଜଣେ
ତ୍ରିଗୁଣ ରଜ୍ଜୁରେ ।
ମୁଁ କ୍ଷେତ୍ର ଯିବି ।

ଅକଥାକୁ କଥା କରି ଦେଇଛି
ଦାଣ୍ଡସାରା ମେଲାଇ ଦେଇଛି ପ୍ରୀତିର ପସରା
ଯେତେ ଶୋଷ ମାରିଲେ ବି ସରୁନାହିଁ ଗରା
ଆଦି ଓ ଅନ୍ତକୁ ଯେ ଦୁଇ କାନ୍ଧରେ
ଭୁଜ ଭଳି ସଜେଇ ରଖିଛି
ମେଲାଇ ଦେଇଛି ମଗନର ମହାତାରା
ସେଇ ଭୂମି ହିଁ ଭୂତ ଓ ଭବିଷ୍ୟର
ଆଶ୍ରୟ ବଖରା ।
ମୁଁ କ୍ଷେତ୍ର ଯିବି ।

ଇସାରାରେ ଇସାରାରେ ଇତି ହୋଇଯିବ
ଅସଲ ମୂଳକୁ ଛୁଇଁ ହେବନି
ଏମିତି କେତେ ଯୁଗ ଗଲାଣି
କେତେ ରଥୀ ସାରଥୀ, ତନ୍ତ୍ରୀ, ଅପରା କୀର୍ତ୍ତି
ମାଟିରେ ମିଶିଗଲେଣି
ସେଠି କଅଁଳିଛି ଅପବର୍ଗର ଅକ୍ଷର
ଜାଣି ଜାଣି କାଳ ଉଜାଣି ।
ମୁଁ କ୍ଷେତ୍ର ଯିବି ।

ବାର ବାର ଯାଇଛି, ପଙ୍ଗତକୁ
ପରମ ଭାବିଚି, ଯାନି ଯାତ୍ରାରେ
କୋଳାହଳରେ ଡୁବିଛି
ଆପଣା ଅଗଣାରେ ନାଚିଛି
ଏବେ ଲାଗୁଛି ସେସବୁ ମିଛ
ଏଇ ନାହିଁ, ଏଇ ଅଛି
ଗୋଟେ ହାବୁକାରେ ସବୁ ଉଭେଇ ଯାଇଛି ।
ଯାହା ପାଇଛି, ସବୁ ଚିତ୍ର ।
ଆଉ ନୁହେଁ ।
ମୁଁ କ୍ଷେତ୍ର ଯିବି ।

ରାଜ୍ୟପାଳଙ୍କ ଲୋକସମ୍ପର୍କ ଅଧିକାରୀ
ରାଜଭବନ, ଭୁବନେଶ୍ୱର–୮



# ଦହି ନବ ଦହି ! ମାଣିକ ପାଟଣା ଦହି !!

**ଇଂଜିନିୟର ରଘୁନାଥ ପାତ୍ର**

ମହାପ୍ରଭୁ ହେ ଜାଣି ନ ପାରିଲି ମୁହିଁ !
ଜ୍ଞାନ ବୁଦ୍ଧି ମୋର ନଥିବାରୁ ହରି
ଚିହ୍ନି ନ ପାରିଲି ସାଇଁ ।
ଅଚିହ୍ନା ଭାବି ମୁଁ ମାଗିଲି ପଇସା
ଦହି ତୋଡ଼ୁପିଏ ଦେଇ
ଗଜପତି ରାଜା କହିବାରୁ ସିନା
ଜାଣିଲି ଜଗତ ସାଇଁ ।।
ସହଜେ ମୁଁ ବୁଦ୍ଧି ହୀନା
ବ୍ରହ୍ମାଣ୍ଡ ନାଥଙ୍କୁ ପଇସା ମାଗି ମୁଁ
ଅରଜିଲି ପାପ ସିନା ।
ଏବେ ଆସ ନାଥ ! ଦେବି ଦହି ସର !!
ମାଗିବିନି କିଛି ପ୍ରଭୁ
ପାପ ନେତ୍ର ମୋର ପଖାଳିବି ବାରେ
ଯାହା ଅଛି ଦେଇ ସବୁ
ଖାଇବାକୁ ଦେବି ପାନ
ପଣତରେ ନାଥ ! ପୋଛି ଦେବି ଝାଳ
ନୀଳାଦ୍ରି ଆନନ୍ଦ ଘନ ।
ସେବି ଶ୍ରୀପୟର କ୍ଲାନ୍ତ କଳେବରୁ
ଶ୍ରମ ପୀଡ଼ା ଦେବି ପୋଛି
ଆନନ୍ଦେ ବିଶ୍ରାମ କରିବ ଶ୍ରୀଧାମ
ବିନତି ଘେନ ଶ୍ରୀବତ୍ସି !
ଜୀବନ ହେବ ସାର୍ଥକ
ଝାଉଁବନ ବିଥି ଘୁରି ବୁଲିବିନି
ଖୋଜି ଖୋଜି ପଂକଜାକ୍ଷ ।







ଚିଲିକା ପୁଳିନ ଅଙ୍କା ବଂକା ପଥେ
ବୁଲୁଛି ମୁଁ ଏବେ ପ୍ରଭୁ
ମଥା ପରେ ମୋର ଦଧିଭାଣ୍ଡ ଥାପି
ପୂର୍ବ କଥା ଭାବି ସବୁ
ଘୋଡ଼ା ଟାପୁ ଶବ୍ଦ ଶୁଣି
ଚମକି ପଡ଼ୁଛି ଆସିଲେ କି ମୋର
ଦହିଖିଆ ଚିନ୍ତାମଣି !
ଚନ୍ଦନ ଅଗୁରୁ ତୁଳସୀ ସୁଗନ୍ଧେ
ସୁବାସିତ ଚଉଦିଶ
ପାଗଳିନୀ ପ୍ରାୟ ବୁଲି ବୁଲି ଚାହେଁ
ଆସିଲେକି ଜଗଦୀଶ !
ଭାଗ୍ୟେ ମୋର ନାହିଁ ଲେଖା
ପଦ୍ମାଳୟା କାନ୍ତ ହତ ଭାଗିନୀକୁ
ସତେ ଆହା ଦେବେ ଦେଖା !
କବି ରଘୁ ଭାଷେ ବାତ୍ସଲ୍ୟ ସୁରସେ
ଯୁଗେ ଯୁଗେ ଜଗନ୍ନାଥ
କରୁଣା ଆଳୟ ଗୋପାଳୁଣୀ ପ୍ରିୟ
ନିଗୂଢ଼ ଏ ପ୍ରେମ ତତ୍ତ୍ୱ
ଯେପରି ଯାହାର ଭାବ
ସେପରି ଅଭୀଷ୍ଟ କରନ୍ତି ପୂରଣ
ପୂର୍ଣ୍ଣକାମ ରମାଧବ ।

ବୃନ୍ଦାବନ ଧାମ, ଲୋକନାଥ ରୋଡ
ପାଟଣାହାଟ ସାହି ଛକ, ପୁରୀ–୭୫୨୦୦୧



# ଲୀଳାମୟ ପ୍ରଭୁ ଦୟାଳୁ ଠାକୁର

ମିନତି ମହାପାତ୍ର

ଦେଖିଛ ତ ତମେ ହାତ ଗୋଡ଼ଥିବା କେତେ ଠାକୁର
ଇଏ ତ ହେଉଛି, ହାତଗୋଡ଼ ନଥିବା ଠାକୁର ।
ଯେତେ ଭୋଗରାଗ ଧୂପ ଦୀପ ଦିଅ
ଦେଖା ଦିଅନ୍ତି ନାହିଁ କେଉଁ ଠାକୁର
ଦି'ଠୋପା ଲୁହରେ ଆଗେ ଉଭାହୁଅନ୍ତି ଏଇ ଠାକୁର ।
ସବୁ ଠାକୁରଙ୍କୁ ଭୋଗଲାଗି ହୁଏ, କେତେ କେତେ ଗୋଟି
ଏ ଠାକୁର ପାଇଁ ଭୋଗଲାଗି ହୁଏ, ଷାଠିଏ ପଉଟି ।
ରାତି ହୋଇଗଲେ, ପହଡ଼ ହୁଅନ୍ତି ସବୁ ଠାକୁର
ଏ ଠାକୁର ତ ଗୀତନାଚ ନଶୁଣିଲେ
ପହଡ଼ ହୁଏ ନାହିଁ ତାଙ୍କର ।
କେତେ ଠାକୁର ବୁଲିଯା'ନ୍ତି
ବରଷକେ ଥରେ ଦୁଆର–ଦୁଆର
ଏ ଠାକୁର ଯା'ନ୍ତି ବରଷକେ ଥରେ
ଭାଇଭଉଣୀଙ୍କୁ ଧରି ନଅଦିନ ପାଇଁ ମାଉସୀ ଘର ।
ଘରଣୀ ତାଙ୍କର ବିଗିଡ଼ି ଯା'ନ୍ତି
ନଯାଇଥିବାରୁ ମାଉସୀ ଘର
ପାଞ୍ଚଦିନ ପରେ, ସଙ୍ଗେ ଆଣିବାକୁ
ଲୁଚି ସେ ଯା'ନ୍ତି ମାଉସୀ ଘର ।
ବଡ଼ ସିଆଣିଆ ଆମ ଏଇ ଠାକୁର
ଭାଇଙ୍କ ପଛେ ଲୁଚିଯା'ନ୍ତି ହୋଇ ତରତର
ଘରଣୀ ତାଙ୍କର ଲେଉଟି ଆସନ୍ତି ପଛକୁ ନ ଚାହିଁ ରାଗେ
ହୋଇ ଗରଗର ।
ଏକ ମୁହାଁ ହୋଇ ଫେରି ସେ ଯା'ନ୍ତି
କାଠ ଖଣ୍ଡେ ଭାଙ୍ଗି ନନ୍ଦିଘୋଷର
ନଅଦିନ କାଳ ମଉଜ କରି, ଭାଇ–ଭଉଣୀଙ୍କୁ ଧରି
ଦେଉଳକୁ ଫେରନ୍ତି ଏଇ ଠାକୁର ।
ଭାଇ–ଭଉଣୀ ଆଗେ ଦେଉଳେ ପଶନ୍ତି
ପଶି ନ ପାରନ୍ତି ଏଇ ଠାକୁର
ରସଗୋଲା ହାଣ୍ଡି ଧରି ସେ ଡାକନ୍ତି
ଠାକୁରାଣୀ ଗୋ ଖୋଲ ଦୁଆର ।
ଅତି ପ୍ରିୟ ତମ ରସଗୋଲାକୁ ମୁଁ
ଆଣିଛି ହେ ଦେଖ ଖୋଲି ଦୁଆର
ରସଗୋଲା, ନାଁ ଶୁଣି ଠାକୁରାଣୀ
କବାଟ ଖୋଲନ୍ତି ଯାଇ ସତ୍ୱର ।
ଠାକୁରଙ୍କ ହାତୁଁ ରସଗୋଲା ଖାଇ
ଭୁଲିଯା'ନ୍ତି ରାଗ ଠାକୁରାଣୀ ଆମର
ହସ–ହସ ମୁଖେ ଠାକୁରଙ୍କୁ ଧରି
ବିଜେ କରନ୍ତି ଦେଉଳକୁ ଏଥର ।
ଭକତଙ୍କ ପାଇଁ ଏଡ଼ିକି ସୁନ୍ଦର, ଏଡ଼ିକି ମଧୁର
ଲୀଳା ଯେ କରନ୍ତି
ଜାଣିଛ କି ସିଏ କେଉଁ ଠାକୁର !
ସିଏ ପରା ଆମ ଏଇ ବଡ଼ ଦେଉଳର
''ଲୀଳାମୟ'' ପ୍ରଭୁ ! କାଳିଆ ଠାକୁର ।

ଏନ୍–୧/୨୦, ଆଇ.ଆର.ସି. ଭିଲେଜ, ଭୁବନେଶ୍ୱର



# ମନରେ ଯିବା ପୁରୁଷୋତ୍ତମ

**ସୁବାସ ଚନ୍ଦ୍ର ବିଶି**

ମନରେ....ଯିବା ପୁରୁଷୋତ୍ତମ
କାଳିଆ ବଳିଆ ଭଗିନୀ ସୁଭଦ୍ରା
ମନଭରି ନିରେଖିବା ଉତ୍ତମ ।
ରତ୍ନସିଂହାସନେ ସେହି ତିନି ଜଣ
ପାରୁଶରେ ବିଜେ ଚକ୍ର ସୁଦର୍ଶନ
ଚତୁର୍ଦ୍ଧାମୂରତି ଅପରୂପ କାନ୍ତି
ଆଖି ଲାଖିଯିବ ମନକୁ ମନ ।
ଗରୁଡ଼ଙ୍କ ପଛେ ଭକତଙ୍କ ଭିଡ଼
ହରି ହରି ବୋଲ ଘଣ୍ଟ ଘଣ୍ଟା ମାଡ଼
ଭକତି କୁସୁମ ଅରପି ତାହାଙ୍କୁ
ଆଶିଷ ମାଗିବା ଗାଇ ଜଣାଣ ।
ବେଢ଼ା ବୁଲି ବୁଲି ମୁଖେ ନାମ ଗାଇ
ଦର୍ଶନ କରିବା ଲକ୍ଷ୍ମୀ ମହାମାୟୀ
କଳ୍ପବଟ ଛାଇ ସ୍ୱର୍ଗ ସୁଖଦାୟୀ
ନୀଳଚକ୍ରେ ଚାହିଁ ନେବା ଶରଣ ।



ବାରମାସେ ତେର ଦେଖୁଥିବା ଯାତ
ବେନି ପାପ ନେତ୍ର କରିବା ପବିତ୍ର
ଭାବରେ ହଜିବା ଭାବରେ ମଜିବା
ଖୋଲିଯିବ ଦିନେ ମାୟାବନ୍ଧନ ।
ତା'ଛଡ଼ା ତୁଳସୀ ଅଇଁଠା କୈବଲ୍ୟ
ପାଇଣ କରିବା ଜୀବନ ସଫଳ
ପାପର ଗଣ୍ଠିଲି ସେଠାବରେ ଥୋଇ
ପୁଣ୍ୟ ଅରଜିବା କର ଯୋଡ଼ିଣ ।

ଗ୍ରାମ :– ନୂଆଁଗୁଡ଼ା, ପୋ.ଅ:–ଚିଚୈଗୁଡ଼ା
ଭାୟା:– ଜୁନାଗଡ଼, ଜି.– କଳାହାଣ୍ଡି
ପିନ୍–୭୬୬୦୧୪

# ଆହେ ଜଗତ ଗୋସାଇଁ

**ସଂଗ୍ରାମ କେଶରୀ ମହାନ୍ତି**

ଆର ଜନମକୁ ଯୋଗୀ କର ମୋତେ
ଆହେ ଜଗତ ଗୋସାଇଁ
କେନ୍ଦରା ବଜାଇ ତୁମ୍ଭ ନାମ ଗାଇ
ବୁଲିବି ସାହିକି ସାହି ।
କପାଳେ ଥିବ ମୋ ରାମାନନ୍ଦୀ ଚିତା
ଗଳାରେ ତୁଳସୀ ମାଳି
ବେଢ଼ି ହୋଇଥିବି ତୁମ୍ଭ ନାମାବଳି
କାନ୍ଧେ ଝୁଲାଇ କୋଥଳି

ଆନନ୍ଦବଜାରେ ଅବଢ଼ା ମାଗିବି ଆନନ୍ଦେ ହାତ ପତାଇ ।
ଗେରୁଆ ବସନ ହେବ ମୋ ଭୂଷଣ
ମଥାରେ ଭିଡ଼ି ପଗଡ଼ି
ଥାଇ ତୁମ୍ଭ କତି ବିତାଇବି ରାତି
ବାଇଶି ପାହାଚେ ପଡ଼ି
ତୁମରି ଆଗରେ ସରଗ ଦୁଆରେ ଜଳିଯାଉ ମୋର ଜୁଇ ।

ଜେଲ୍ ମାର୍ଗ, ବାରିପଦା, ମୟୂରଭଞ୍ଜ–୭୫୭୦୦୨



# ଚକାନୟନ

ବାଳକାନନ୍ଦ ଦାସ

ଶ୍ରୀଜଗନ୍ନାଥଙ୍କ ମନ୍ତର ଜପରେ ମୂଢ଼ ମନ
ଚାଲିଯିବ ଭବ ଯାତନା
ଦୁଃଖ ବିପଦମାନ ।
ଯାହା କିଛି ଭବେ ଦେଖୁଛୁ ସବୁ ଅନିତ୍ୟ ଜାଣ
ଅନିତ୍ୟରେ ମାତି ସତତ ସାରୁଅଛୁଟି ଦିନ ।
ଧନ ଯଉବନ ସମ୍ପଦ ଆଉ ନିଜ ଜୀବନ
କେତେ କାଳ ତାହା ସ୍ଥାୟୀରେ ନ ଭାବୁଅଛୁ ମନ ।
ସବୁ ପାଣି ଫୋଟକା ପରି ଦିନେ ହୋଇବ ଲୀନ
ଏ ମର ଶରୀର ମାଟିରେ ମିଶିଯିବଟି ଜାଣ ।
ଧରମ ମରମ ନବୁଝି କରୁଅଛୁ କୁକର୍ମ
କୁପଥରେ ଗଲେ ପ୍ରାଣୀଟି ଭୋଗେ ଦୁଃଖ ଅସୀମ ।

ଧର୍ମେ ଆତଯାତ ଏ ମହୀ ଧର୍ମେ ବିଶ୍ୱ ଚଳନ
ଧର୍ମବଳେ ଧରା ଧରଇ ବିଶ୍ୱର ବସ୍ତୁମାନ ।
ଧାରଣ ମାରଣ ତାରଣ ସବୁ ତାଙ୍କ କରମ
ତେଣୁ ତିନିରୂପ ଧରିଣ ଛନ୍ତି ସିଂହାସନେଣ ।
ଶ୍ରୀପଦରେ ଅଳି କରୁଛି ଆଜି ବାଳକହୀନ
ଜନ୍ମେ ଜନ୍ମେ ଦାସ କରହେ ପ୍ରଭୁ ଚକାନୟନ ।

ପ୍ଲଟ୍ ନଂ.୪–୫
ବୈକୁଣ୍ଠ ସରଣୀ, ଭୋଇନଗର
ୟୁନିଟ୍–୯, ଭୁବନେଶ୍ୱର

# କାଳିଆ ପାଖରେ ଅଳି

ବୁଦ୍ଧଦେବ ଦାସ

କାଳିଆ ଠାକୁର କଳାବୋଲି ହୋଇ
ବସିଅଛୁ ତୋ' ଦେଉଳେ ।
ତୋ' କଳାରୁ ଟିକେ ଦେବୁରେ କାଳିଆ
ମୋର ମନ ଆଜି ବଳେ ।
ତୋ' କଳା ଯେ କଳା ସଂସାରର କଳା
ତୋ' କଳା ବୋଲି ମୁଁ ହେବି ।
ତୋ'କଳା ବୋଲିଲେ ସଂସାର ଜିତିବି
ନୋହିଲେ ଯିବି ମୁଁ ଭାସି ।



କାଳିଆ ନାମରେ ବଡ଼ଦେଉଳରେ
ବସି ଦେଖୁ ସବୁ ଖେଳ ।
ଆଉ ଖେଳିବୁନି କିରେ କାଳିଆ
ବଢ଼ିଲାଣିରେ ଅକାଳ ।

ଘର ନଂ–ଏଫ୍.ଆର୍–୨୧/୧
ଫେଜ୍–୨, ଚନ୍ଦ୍ରଶେଖରପୁର
ପିନ୍ –୭୫୧୦୨୧

# ତୁମେ ଏକା ବନ୍ଧୁରେ ବନ୍ଧୁ

ଶକୁନ୍ତଳା ଆଚାର୍ଯ୍ୟ

ଗୀତାରେ କହିଛ
ପ୍ରିୟ ସଖା ଅର୍ଜୁନଙ୍କୁ
ପ୍ରାଣ ପରଶିଲେ ସଂସାର ବାସନା
ଫିଙ୍ଗିବ ନିଶ୍ଚେ ଦୂରକୁ ।
ପିତାମାତାଙ୍କର ସ୍ୱର୍ଗବାସ ଦିନୁ
ତୁମେ ମୋର ପିତାମାତା
ତୁମେ ମୋର ସାଥୀ ପୀରତି ପସରା
ଏକା ମୋ ଭଉଣୀ ଭ୍ରାତା ।
ପୁତ୍ର  ପରି ତୁମେ ପାଖରେ ରହିଛ
ପୁତ୍ରର ପରଶ ପାଇ
ସ୍ୱାମୀ ଭଳି ସଦା ରହିଛ ହେ ନାଥ
ସେ ଯୋଗେ ପାରୁଛି ଧାଇଁ ।
ବଧୂ ଭଳି ତୁମେ ଶରୀରେ ଭରିଛ
ଅପାର ଶକତି ବଳ
ମାଗିଲେ ତୃଷାରେ ଦେଇଛ ଚାତକୀ
ମୁଖରେ ଶୀତଳ ଜଳ ।



କାହିଁ ପାଇଁ ବୃଥା ହୃଦ ଦବାନଳ
ଉଚ୍ଛୁଳି ଉଠିବ କୁହ
ଅଦୃଶ୍ୟେ ପଠାଅ ପ୍ରାଣସମା କନ୍ୟା
ପୋଛି ଚାଲିଯାଏ ଲୁହ ।
ବିଶ୍ୱବନ୍ଧୁ ତୁମେ ବୋଲାଅ ଜଗତେ
କରୁଣାରେ ମହାସିନ୍ଧୁ
ଘନ ଅନ୍ଧକାର ଉଆଁସ ରାତିରେ
ନୟନ ଆଲୋକ ଇନ୍ଦୁ ।
ପ୍ରଭାତ ଅରୁଣ ବରୁଣ ବକ୍ଷରେ
ଅସୀମ ଆନନ୍ଦ ଭରି
ଦର୍ଶନେ ଉଲ୍ଲସେ ଅଥଳ ଜଳରେ
ବାହିନିଏ ମନ ତରୀ ।
ବନ୍ଧୁ ଭଳି ବନ୍ଧୁ ସିନ୍ଧୁ କୃପା ବିନ୍ଦୁ
ନ ଜାଣନ୍ତି ମୃତ ଛାର
ବୋହି ନିଅ ପାପ ସୁଖ ଦେଇ ଜନେ
ଶ୍ରୀପୟରେ ନମସ୍କାର ।

ସତ୍ୟବାଦୀ, ସାକ୍ଷୀଗୋପାଳ, ଶ୍ରୀରାମଚନ୍ଦ୍ରପୁର, ଦ୍ୱିତୀୟ ଖଣ୍ଡି

# ପଦେ : ଚକାଆଖିକୁ

ମନୋରଞ୍ଜନ ମିଶ୍ର

ତୁ’ ସବୁ ଦେଖୁଚୁ, ସବୁ ଜାଣୁଚୁରେ ଚକାଆଖି
ଯେତେ ହେଉଚି ଅନ୍ୟାୟ ଅତ୍ୟାଚାର ପାପ
ତୁ’ ସବୁର ସାକ୍ଷୀ
ବଡ ଦେଉଳରେ ରତ୍ନବେଦିରେ ବସି ତୁ’ ସବୁ ଦେଖୁଚୁ
ପାଖରେ ବଡଭାଇ ଭଉଣୀକୁ ଧରି ତୁ’ ବସି ରହିଚୁ ।
ହେଲେ କରମକୁ ଦେଖି ତୁ’ ଦେଉଛୁ ଫଳ
ନ୍ୟାୟ ପାଉଛି ଶେଷରେ ନିର୍ବଳ ଦୁର୍ବଳ ।
ହେ ଚକାଆଖି ! ଚୁପଚାପ୍ ବସି ତୁ ସବୁ ଦେଖୁଥା’ ।
ମିଛୁଆ ଲାଞ୍ଚୁଆ ପେଞ୍ଚୁଆଙ୍କ
କରମ ଦେଖି, ତୁ ଫଳ ଦେଉଥା ।

ଗାନ୍ଧୀ ଛକ, ବଉଦରାଜ, ବୌଦ୍ଧ–୭୬୨୦୧୪



# ହେ ବିଶ୍ୱ ସମ୍ରାଟ

**ଉର୍ମିଳା ଷଡ଼ଙ୍ଗୀ**

ହେ ବିଶ୍ୱ ସମ୍ରାଟ
ତୁମ୍ଭ ଦରବାରେ ଆଜି ନାହିଁ ଆକଟ
ଭାଇ ଭଉଣୀଙ୍କୁ ନେଇ କର ଲୀଳା ପ୍ରକଟ ।
ଆନନ୍ଦ ବଜାରେ ମହାପ୍ରସାଦତ ହୋଇଥାଏ ବିକାକିଣା
ହେ ଆନନ୍ଦମୟ, ମହା ଆନନ୍ଦରେ, ଆନନ୍ଦ ବାଣ୍ଟ ମାଗଣା
ଷୋଳଟି ଚକରେ ଷୋଳ ସହସ୍ର ଗୋପୀ
ଯାହାଛନ୍ତି ତୁମ ନାମକୁ ଜପି
ତା'ଙ୍କଠାରୁ ଆଉ ବଡ଼ ଭକତ
ମହୀରେ ନାହାନ୍ତି ହେ କଳାସାଆନ୍ତ ।
ଖୋଜିଲା ଖୋଜିଲା ତୁମ ମୁହଁ ଦିଶୁଛି
ଚକାଆଖି ତୁମ ଖୋଜି ବୁଲୁଛି ।
ଘଡ଼ିଏ ଯାଉଛ ପୁଣି ଘଡ଼ିଏ ରହୁଛ
ବନ୍ଧୁ ଆସି ପହଞ୍ଚିନି ବୋଲି ଭାବୁ ଅଛ ?
ଭକ୍ତଙ୍କ ପ୍ରେମରେ ପାଗଳ ହେଇ
ପତ୍ନୀଙ୍କୁ ଭୁଲିଲ ଜଗତ ସାଇଁ ?
ତ୍ରେତୟାରେ ପ୍ରଭୁ ପ୍ରଜାଙ୍କ ପାଇଁ
ମହାସତୀଙ୍କୁ ଯେ ଦେଲ ଦୂରେଇ
ସେଇ କଥା କି'ବା ଆସିଲା ମନକୁ ?
ଆଣିଲ ନାହିଁ ସଙ୍ଗେ ମାତା କମଳାଙ୍କୁ ।
ଭୁଲିଯାଅ ନାହିଁ ଛାମୁ ତୁମର ଏ ସୃଷ୍ଟି
ଅନ୍ନବସ୍ତ୍ର ଦେଇ ମାତା ପାଳୁଛନ୍ତି ନିତି
ତା'ଙ୍କ ଦାନ ବିନୁ ବିଶ୍ୱ ହେବ ହାହାକାର
ଏ'କି ବିଚାର କଲ ଆହେ କାଳିଆ ଠାକୁର ?
ପ୍ରଜାଙ୍କର ସୁଖ ଦୁଃଖ ଜାଣିବା ନିମିତ୍ତ
ଦିବାଲୋକେ ଆସିଅଛ ଭକ୍ତଙ୍କ ନିକଟ
ହେ ବିଶ୍ୱ ସମ୍ରାଟ ।

ନନ୍ଦ ଏନ୍‌କ୍ଲେଭ୍
କପିଳ ପ୍ରସାଦ, ଭୁବନେଶ୍ୱର

# କାଳିଆ ପାଖକୁ ଚିଠିଟିଏ

**ବିଜୟଲକ୍ଷ୍ମୀ ରାୟ**

କାଳିଆ ପାଖକୁ ଲେଖୁଛି ଚିଠି ପଦ୍ମପାଦେ ଚିତ୍ତଦେଇ
ଚିଠିଟି ମୋହର ଗ୍ରହଣ କରିବ ଆହେ ନୀଳାଦ୍ରି ଗୋସାଇଁ
ଏତେ ନିକଟରୁ ଡାକୁଛି ପ୍ରଭୁ, ଡାକ ମୋର ଶୁଭୁନାହିଁ
ଡାକି ଡାକି ମୋର ଦିନ ସରିଗଲା ଡାକ ତ ଶୁଣିଲ ନାହିଁ
ଅନ୍ତରର କଥା ଲେଖୁଛି ମୁହିଁ ମାଗୁନାହିଁ ତୋତେ କିଛି
ନୟନରୁ ଅଶ୍ରୁ ବହି ଯାଉଅଛି ତାହାକୁ ନପାରେ ପୋଛି
ନୟନର ନୀରେ ତବ ପଦ କଞ୍ଜେ ନିଶି ଦିବସ ଜଣାଏ
ଏଡ଼ିକି ପାଷାଣ ଅନ୍ତର ତବ ତିଳେ ବି ଦୟା ନ ହୁଏ
ହେ ଭକତ ବନ୍ଧୁ ଫେଡ଼ ମୋ କଷଣ ବିତରି କରୁଣା ବାରି
ଅସୀମ ଧଇର୍ଯ୍ୟ ବିଷମ ଏ ଭବ ପରୀକ୍ଷାରୁ କରପାରି
ଚିଠିଟି ଲେଖୁଛି ମୋ–ରାଣ କାଳିଆ ନିରାଶ କରିବୁ ନାହିଁ
ତୋ ଚକା ଆଖିରେ ନିମିଷେ ଲାଗିବ ଚିଠିଟି ପଢ଼ିବା ପାଇଁ
ଆଜି ତୋ ଗୁଣ୍ଡିଚା ଯାତରେ କାଳିଆ କମ୍ପି ଉଠେ ନୀଳାଚଳ
ବଡ଼ଦାଣ୍ଡ ତୋର ଦିଶି ଯାଉଅଛି ମହୋଦଧି ଢେଉ ଜଳ
ନନ୍ଦିଘୋଷ ରଥେ କାଳିଆ ବାମନ ଦେଖି ମୁଁ ହୋଇଲି ତୋଷ
ମଣିଷ ଜନମ ଦେବୁ ନାହିଁ ମୋତେ ଆହେ କମଳା ବିଳାସ
ଆଡ଼ପ ମଣ୍ଡପେ ନବ ଦିନ ଯାତ୍ରା ଭାଇ, ଭଗ୍ନୀ ସଙ୍ଗେ ଧରି
ତୋ ବଡ଼ଦାଣ୍ଡରେ କୋଟିଏ ପ୍ରଣତି ଘେନ ମୋର ଗିରିଧାରୀ

ପ୍ଲଟ୍ ନଂ–୬କେ, ଚିନ୍ତାମଣିଶ୍ୱର, ଭୁବନେଶ୍ୱର





# କଳାଚାନ୍ଦ

ଚନ୍ଦ୍ରଶେଖର ପଣ୍ଡା

ଆହାରେ ମୋ କଳାଗୋବିନ୍ଦ
ସବୁଦିନ ପାଇଁ ନହେଲା ତ ନାହିଁ
କିଛିଦିନ ପାଇଁ କରିଦେ ନନ୍ଦ
ତୋତେ ସତେ କରିବି କୋଳ
ଥିବ ଯେବେ ମୋ କର୍ମଫଳ
ଚନ୍ଧେଇ ଦାଣ୍ଡରେ ଚାନ୍ଦ ଦେଖାଇଲେ
ଧନ୍ୟ ହେବ ଧନ ମୋହର କାନ୍ଧ ।
କଟୀଦେଶେ ପାଟ ପତନୀ
ନାନାଜାତି କୁସୁମ ଆଣି
ଗୁଞ୍ଜାମାଳ ଶିରେ ମୟୂର ଚନ୍ଦ୍ରିକା
ଉତ୍ତରୀରେ ସଜାଇବି ତୋ କାନ୍ଧ ।
ଅଗୁର ଚନ୍ଦନ କସ୍ତୁରୀ
ତା ସଙ୍ଗରେ କର୍ପୂର ଚୂରି
ଗୋଳି ଯେବେ ବୋଳି ଦେବି ଅଙ୍ଗେ ତୋର
ମହକିବ ସେତ ଅପୂର୍ବ ଗନ୍ଧ ।
ଶୁଣିବି ତୋ ବଇଁଶୀ ସ୍ୱନ
ଆହାରେ ମୋ ରଙ୍କରତନ
ଦୁଃଖଶୋକ ସବୁ ଭୁଲିବି ଧନରେ
ବିଷୟା ବିଷକୁ ହେବ ସେ ଗଦ ।



ଖୁଆଇବି ଲବଣୀସର
ଛେନାଦହି ଥରକୁ ଥର
ଗୋଟିକା ଅଧାମ ଭୁଞ୍ଜାଇ ଦେବି ମୁଁ
ଖଞ୍ଜାଇବି କ୍ଷୀର ମିଶାଇ କନ୍ଦ ।
ପାରିଦେଇ ନରମ ଶେଯ
ଶୁଆଇବି ରସିକ ରାଜ
ନିଦ ନଆସିଲେ ଆଖିକୁ ତୋହର
ଗାଇ ଶୁଣାଇବି ଗୀତଗୋବିନ୍ଦ ।
ଗଲାବେଳେ ମୋ ପ୍ରାଣ ପକ୍ଷୀ
ଛାଇପରି ଥିବୁ ତୁ ଲାଖି
ଚାରିଜଣୁ ଜଣେ ହୋଇ କୋକେଇରେ
ଲଗାଇ ଦେବୁ ତୋ କଅଁଳ କାନ୍ଧ ।
ତେବେ ଧନ୍ୟହେବ ଜୀବନ
ଆଉ ନପାଇବି ଜନମ
ସବୁଦିନ ପାଇଁ ମୁକତି ଲଭିବି
ମୁକତି ପସରା ମୋ କଳାଚାନ୍ଦ ।

ପ୍ଲଟ୍ ନଂ–୧୮୫୩/୩୭୨୦, କପିଳପ୍ରସାଦ
ମହତାବ ରୋଡ଼, ପୁରୁଣା ଭୁବନେଶ୍ୱର

# ଭାବ ଦର୍ଶନ

ଅଲେଖ ଚରଣ ରାଉତ

ଯା'ର ଦରଶନେ କୋଟି ପୁଣ୍ୟ ମିଳେ
ଛାଏଁ ଯୋଡି ହୁଏ ହାତ ।
ସେଇତ ମୋହର ଅତି ଆପଣାର
ନାଁ ତା'ର ଜଗନ୍ନାଥ ।
ଭାବର ଠାକୁର ଭାବରେ ସେ ବନ୍ଧା
ଭାବେ ଭାବେ ଦରଶନ ।
ଆଖି ବୁଜି ଦେଲେ ଦିଶି ଯାଆନ୍ତି ସେ
ପ୍ରସନ୍ନ ହୁଅଇ ମନ ।

ମୋର ଏତେ ପୁଣ୍ୟ କାହିଁ ଅଛି ଭଲା
ଛୁଇଁବାକୁ କଳେବର ।
ଭାବ ଭକତିରେ ଡାକି ଦେଲେ ଥରେ
ପୁଲକି ଉଠେ ଶରୀର ।
ତା ଚକାନୟନେ ଏ ପାପ ନୟନ
ମିଶି ଯାଏ ଯେତେବେଳେ ।
ସକଳ କଲୁଷ ନାଶ ହୋଇଯାଏ
ପାଦ ଦେଲେ ନୀଳାଚଳେ ।

ବୈଦ୍ୟନାଥ ସାହି, ପୁରୁଣା ଭୁବନେଶ୍ୱର



# ଫୁଲଟିଏ ମୋତେ କର ମହାବାହୁ

ଶରତ କୁମାରୀ ମିଶ୍ର

ଫୁଲଟିଏ ମୋତେ କର ମହାବାହୁ
ଫୁଲଟିଏ ମୋତେ କର
ତୁମରି ସେବାରେ ଲାଗିଥିବି ମୁହିଁ
ସୁଖେ ଦିନ ଯିବ ମୋର ।
କେତେବେଳେ ତୁମ ମଥାରେ ଶୋଭିବି
ପୁଣି କର ପଲ୍ଲବରେ
ଶୋଭାପାଇ ମୁଁ ଯେ ଆନନ୍ଦ ଲଭିବି
ତାହା ମୁହିଁ ଜାଣିପାରେ ।
କେବେ ତୁମ ପାଦ ପଦ୍ମରେ ମୋ ମନ
ପୁଣି କେବେ ଗଳାହାର ।
ତୁମରି ହାତର ପରଶ ପାଇଲେ
ଜୀବନ ସାର୍ଥକ ମୋର ।



ପାଦ ତଳେ ତୁମ କମଳ ରୂପରେ
ଯେବେ ରହିଥିବି ମୁହିଁ
ପଦ୍ମ ଝରୁଥିବ ମକରନ୍ଦ ପାନେ
ପବିତ୍ର ମୁଁ ଯିବି ହୋଇ
ଦୁଃଖ ଶୋକ ମୋର ରହିବନି କିଛି
ଆହେ ପରମ ଈଶ୍ୱର ।
ଯେଉଁ ଫୁଲରେ ସରାଗ ତୁମର
ସେହି ଫୁଲ କର ମୋତେ
ତୁମ ଶରୀରରେ ରହିଥିବି ମୁହିଁ
ଜୀବନରେ ଅବିରତେ ।

ଏନ୍–୫/୪୨୮
ଆଇ.ଆର୍.ସି. ଭିଲେଜ୍

# ଆସିଛି ରଥ ଯାତରା

କୁନଲତା ତ୍ରିପାଠୀ

ଆସିଛି ରଥ ଯାତରା ବଡ଼ ତୋରାରେ
ମୋହିନିଏ ମନ ମୁନ ଅନନ୍ୟତାରେ ।
ଚୁମ୍ବକରୁ ବଳି ପଡ଼େ କି ଆକର୍ଷଣ
ବିଶ୍ୱକୋଣ ଅନୁକୋଣେ ଭରି କମ୍ପନ ।
ଭାବ ଭକ୍ତିର ପସରା ବଡ଼ଦାଣ୍ଡରେ
ଆଶରା ଭରି ଉଠିଛି ଆଖ ପାଖରେ
ଦର୍ଶନ କରିବାକୁ ଚତୁର୍ଦ୍ଧା ମୂରତି
କି ଶିଶୁ କି ଅବା ବୃଦ୍ଧ ଉଠନ୍ତି ମାତି ।





ଜନ ସମୁଦ୍ରେ ତରଙ୍ଗମାଳା ଉତ୍ତାଳ
ତିନି ରଥେ ଚାରିଦିଅଁ ବଡ଼ବାନଳ
ଶୁଭଇ ଘଣ୍ଟ ଘଣ୍ଟା ମୃଦଙ୍ଗ କାହାଳୀ
ଦିବ୍ୟ ଆନନ୍ଦେ ଭକ୍ତ ଦିଏ କରତାଳି ।
ଅଭିନବେ ଉଛୁଳେ ମୁଗ୍ଧ ଅନୁଭବ
ଭୂମିରୁ ଭୂମାଙ୍କୁ ଛୁଇଁ ଏ ଦିବ୍ୟ ଭାବ ।

ଦୁର୍ନୀତି ନିବାରଣ ନିର୍ଦ୍ଦେଶାଳୟ, କଟକ–୧



# ପଞ୍ଚଭୂତ ଶ୍ରୀଜଗନ୍ନାଥ

ଯମେଶ୍ୱର ରାଉତ

ଜୀବ ମାନେ ଯିବ ସଭିଏଁ ମରଣଶୀଳ ଜନ୍ମଯା'ର ଅଛି ।
ସମାନତା ଗୁଣ ଧରି ରହିଥିବ ସ୍ଥାୟୀ
ଯୁଗଚକ୍ର, ସୃଷ୍ଟିଚକ୍ର ଏହି ପଞ୍ଚଭୂତ ।
ସଭ୍ୟତା ଓ ସଂସ୍କୃତିର କଲ୍ୟାଣ ନିମିତ୍ତ
ଏ ଜୀବ ଜଗତ ପାଇଁ
ସୃଷ୍ଟି ଚକ୍ର ଏ ପଞ୍ଚଭୂତର ସମାନତା ଭାଗୀଦାରୀ
କଳ୍ପରୁ କଳ୍ପାନ୍ତ ପଞ୍ଚଭୂତ ବିନା ଆଉ କିଏବା ବିକଳ୍ପ

ମଦରଙ୍ଗ, ପୁରୀ

# କଳ୍ପବଟ

ମନୋରମା ପ୍ରଧାନ

ସେଦିନକୁ ମୁହିଁ ବସିଛି ଅନାଇ
ସୁଦିନ ଆସିବ ଫେରି
ଉଣାକର ନାହିଁ କରୁଣା ସାଗର
ସଂସାର କରତା ହରି
ଜୀବନ ରଥରେ ସାରଥି ହୋଇବ
ଯିବି ଯେବେ ଆର ପାରି ।
ଶ୍ରୀକ୍ଷେତ୍ରେ ଆସିକି କାଳିଆ ସୁନାରେ
ଲଗାଇଲୁ ଭାବ ଡୋରି
ପ୍ରସାଦ ପାଇ ମୁଁ ପ୍ରଶାନ୍ତି ଲଭିଲି
ବସିଛି ମୁଁ ଥକାମାରି ।
କଳ୍ପବଟେ ଡୋରି ବାନ୍ଧିଲି ପ୍ରଭୁ ହେ
ଆଶାରଖି ଅସୁମାରୀ
ପୂରିଲେ କାମନା ଉଡାଇବି ବାନା
ମାନସିକ ଅଛି କରି
ମାନସିକ ମୋର ପୂରିଲେ କାଳିଆ
ମନ ସୁଖେ ଯିବି ପୁରୀ ।

ହରିପୁର, ପିପିଲି, ପୁରୀ

# ଅନୁଭବର ଠାକୁର

କରୁଣାକର ଦୀକ୍ଷିତ୍

ରତନ ବେଦୀରେ ଦରଶନ କଲି ପାଦେ କରି ମଥାନତ
ମୋ ଅଳି–ଅର୍ଦ୍ଧଳି କ୍ଷମାକର ପ୍ରଭୁ ତୋ'ଚରଣେ ଦଣ୍ଡବତ ।
ନଖାଇ ଖାଇଲି ଅବଢ଼ା ଭାତକୁ ମୁଣ୍ଡେ ବୋଳି ଦେଲି ହାତ
ମୁଣ୍ଡେ ହାତ ରଖି ଆଶୀର୍ବାଦ ନେଲି କରୁଣା ହେଲା କୃତାର୍ଥ ।
ନକହି କହିଲି ପୁରୀ ଯିବି ବୁଲି ଚାଲି ଚାଲି ପୁରୀ ଗଲି
ନଶୁଣି ଶୁଣିଲି ପଥଚାରୀ ମୁଖେ ହରିବୋଲ ହୁଳ–ହୁଳି ।
ନଦେଖି ଦେଖିଲି ବଡ଼ ଦେଉଳିଆ ଚିତ୍ତ ହୋଇଗଲା ବାନ୍ଧି
ନଛୁଇଁ ଛୁଇଲି ଚକାନୟନଙ୍କୁ ଲୁହ ପୋଛି ଦେଲି କାନ୍ଦି ।

ଉତ୍ତରଣ, ଅଡ଼ଶପୁର, କଟକ



# ନନ୍ଦିଘୋଷ ରଥେ କଳା ବାମନ

ଅନନ୍ତ ଗୋପାଳ ପଣ୍ଡା

ସଖୀ ଦେଖ ଦେଖ ସେ କଳା ଶ୍ରୀମୁଖ ଆସନ୍ତି ପହଣ୍ଡି ହୋଇ
ପାଟର ଦଉଡ଼ି ହୋଇଛନ୍ତି ଭିଡ଼ି ଟାହିଆ ଶିରେ ଲଗାଇ
ଅଣସର ଘରୁ ବାହାର ହୋଇଣ
ନବ ଯଉବନେ ଦେଇ ଦରଶନ
ମତ୍ତ ଗଜ ପ୍ରାୟେ କରନ୍ତି ଗମନ
ସିଂହର ଠାଣିରେ ଚାହିଁ ଚାହିଁ
ଏପରି ଠାକୁର ତ୍ରିଭୁବନେ ନାହିଁ
ଛପନ ଭୋଗକୁ ତୁଚ୍ଛ କରିଦେଇ
ରତ୍ନସିଂହାସନୁ ଆସନ୍ତି ଓହ୍ଲାଇ
ଭକ୍ତ ସୁଖ ଦୁଃଖ ବୁଝିବା ପାଇଁ
ଭକତଙ୍କ ପ୍ରାଣ ଭକତ ଜୀବନ
ଭକତି ଡୋରିରେ ହୁଅନ୍ତି ବନ୍ଧନ
ସବୁ ଲୀଳା ଖେଳା ଭକତ ପାଇଁଣ
କରନ୍ତି ସଦା କଳା କହ୍ନାଇ
ନନ୍ଦିଘୋଷ ରଥେ ସେ କଳାବାମନ
ରୂପକୁ କରିଲେ ଥରେ ଦରଶନ
ହେବ ନାହିଁ ଆଉ ଜନମ ମରଣ
ଏ ଭବୁ ଉଦ୍ଧାର କରିବେ ସେହି ।

ଶାଖା ପ୍ରବନ୍ଧକ, ସିଣ୍ଡିକେଟ୍ ବ୍ୟାଙ୍କ୍
ଆଇ ଆଇ ଟି ଖଡ଼ଗପୁର ଶାଖା

# ଶ୍ରୀଲକ୍ଷ୍ମୀପତି ଜଗନ୍ନାଥ

ଇଂ. ଫରିଦା ବେଗମ୍

କାହିଁକି ବସିଛ ହୋଇ ମଉନ
କଳ୍କୀ-ଠାକୁର ଶ୍ରୀଲକ୍ଷ୍ମୀପତି, ଜଗନ୍ନାଥ ।
ନିତି ନବ ନବ ଦାରୁଣ ଦୁଃଖେ
ନିରୀହ ଭକତ-ପ୍ରାଣ ହୁଏ ଖଣ୍ଡିତ, ବିଦରିତ ।
ପ୍ରଚଣ୍ଡ ରୌଦ୍ର ଜ୍ୱାଳାରେ
ଉଦ୍‌ଗାରେ ଧରା ଅନଳ, ହନ୍ତସନ୍ତ ଜୀବଜଗତ ।
ଋତୁପୂର୍ଣ୍ଣା ଆଦ୍ୟା ଅପର୍ଣ୍ଣା
ଚିତ୍କାରେ ଉଦ୍ଧାର ଶ୍ରୀପତି କାରୁଣିମା ଜର୍ଜରିତ ।
ଗଗନ-ପବନ, ବୀଜ-କ୍ଷିତିଜ
ଜଳ ସ୍ଥଳ ବିଷର୍ଣ୍ଣ କରାଳ ବନ୍ଧନେ ବିନାଶ ବିମୋହିତ ।
ଉଠ, ତେଜ ଶ୍ରୀମନ୍ଦିର, ଦାରୁବ୍ରହ୍ମ
ଅଜ୍ଞତା, ଅହଂକାର ଉପଦ୍ରବେ ବିଶ୍ୱମ୍ଭରା ହତାହତ ।
ସଂଗମ ଯୁଗେ ସାମ୍ୟତା ଚକ୍ରେ
ଦମନି ପାଷାଣ, ଫେଡ଼ ଶିକୁଳି, ମୁକ୍ତହେଉ ଭକତ ।
ରଥାରୂଢ଼ ଶ୍ରୀଜୀଉ ଦରଶନେ
ଅତି-ଇନ୍ଦ୍ରିୟ ସୁଖ-ଆନନ୍ଦର ହେଉ ଆତ୍ମ-ଅନୁଭୂତ ।
ଅସୀମ-ଅନନ୍ତ ଦିବ୍ୟ ପ୍ରକାଶେ
ପୁଲକୁ କୋଣ-ଅନୁକୋଣ ହେଉ ବ୍ରହ୍ମ-ଉଦ୍‌ଭାସିତ ।
ଗୁଂଜରୁ ଆଉ ଶ୍ରୀକ୍ଷେତ୍ର
ଦାସିଆ ଭକତ ପୀରତି, ସାଲବେଗ ଭକ୍ତି-ଗୀତ ।

ସୂଚନା ଓ ଲୋକସମ୍ପର୍କ ବିଭାଗ, ଭୁବନେଶ୍ୱର